


# ଆମ ସମ୍ବିଧାନ ଓ ସାଧାରଣତନ୍ତ୍ର

**ଦୀ**ର୍ଘ ଅର୍ଦ୍ଧଶତାବ୍ଦୀରୁ ଊର୍ଦ୍ଧ୍ୱକାଳ ଅତିବାହିତ ହେବାପରେ ଆମ ସାଧାରଣତନ୍ତ୍ରର ସଫଳତା ଓ ବିଫଳତା ବିଷୟରେ ନିଜେ ନିଜେ ସମୀକ୍ଷା କରିବା ପାଇଁ ଏହା ହିଁ ଉପଯୁକ୍ତ ସମୟ । ଯେଉଁ ସମ୍ବିଧାନକୁ ଆଧାର କରି ଆମେ ଅଗ୍ରସର ହେବା ଲାଗି ପ୍ରୟାସ ଜାରି ରଖିଛୁଁ, ଅର୍ଦ୍ଧଶତାବ୍ଦୀ ବା ତଦୂର୍ଦ୍ଧ୍ୱ ସମୟ ମଧ୍ୟରେ ତାହା ପ୍ରାୟ ଶତ ବାର ସଂଶୋଧିତ ହେଲାଣି । ଭାରତୀୟ ନାଗରିକଙ୍କ ଆଶା ଓ ଆକାଂକ୍ଷା ପୂରଣ କରିବା ସହିତ ଭାରତବର୍ଷକୁ ଏକ ସମୃଦ୍ଧ ରାଷ୍ଟ୍ରରେ ଏହି ସମ୍ବିଧାନ ପରିଣତ କରିପାରିବ ବୋଲି ସମ୍ବିଧାନ ପ୍ରଣେତାମାନେ ମନେ କରିଥିଲେ । ଭାରତକୁ ଦିଗଦର୍ଶନ ଦେବାବେଳେ ନାନାଦି ପ୍ରତିବନ୍ଧକର ସମ୍ମୁଖୀନ ହେଉଥିବାରୁ ଏହି ସମ୍ବିଧାନର ସଂଶୋଧନ ଓ ପରିବର୍ତ୍ତନ ଖୁବ୍ ଜରୁରୀ ବୋଲି କେହି କେହି ମଧ୍ୟ ଅନୁଭବ କରିଛନ୍ତି । ଏଥିପାଇଁ ଏଇ କେତେବର୍ଷ ତଳେ ସମ୍ବିଧାନର କାର୍ଯ୍ୟକାରିତାକୁ ନେଇ ଏକ ଉଚ୍ଚସ୍ତରୀୟ ସମୀକ୍ଷା କମିଟି ମଧ୍ୟ ଗଠିତ ହୋଇଥିଲା । ମାତ୍ର ସେ କମିଟି ଦେଇଥିବା ପରାମର୍ଶକୁ କେନ୍ଦ୍ର ସରକାର କେତେ ଦୂର ଗ୍ରହଣ କରିଛନ୍ତି ତାହା ଏ ପର୍ଯ୍ୟନ୍ତ ଜଣା ପଡ଼ିନାହିଁ ।

ଆମ ସମ୍ବିଧାନର ଦିଗଦର୍ଶନ ତାହାର ମୁଖବନ୍ଧରେ ପରିସ୍ଫୁଟ । ଆମ ସମ୍ବିଧାନ ପ୍ରସ୍ତୁତ କରିବାବେଳେ ଭାରତୀୟ ଜନସାଧାରଣଙ୍କ ଉପଯୁକ୍ତ ପ୍ରତିନିଧିତ୍ୱ ଅବଶ୍ୟ ରହିଥିଲା - ଯାହାକି ଅନ୍ୟାନ୍ୟ ଗଣତାନ୍ତ୍ରିକ ରାଷ୍ଟ୍ରରେ ସମ୍ଭବ ହୋଇନାହିଁ । ଏହା ସତ୍ତ୍ୱେ, ଅର୍ଦ୍ଧଶତାବ୍ଦୀ ଅତିବାହିତ ହୋଇଥିଲେ ମଧ୍ୟ ଭାରତର ଜନସାଧାରଣଙ୍କ ଅବସ୍ଥାର ପରିବର୍ତ୍ତନ ହୋଇପାରି ନଥିଲା । ସ୍ୱାଧୀନତା ପ୍ରାପ୍ତି ପରେ ଭାରତ ସାଧାରଣତନ୍ତ୍ର ନୀତିରେ ହୁଏତ ଆଗକୁ ଯାଇଛି, ପୁଣି ସେହି ନୀତିରେ ଅଗ୍ରସର ହେବା ଅତ୍ୟନ୍ତ କଷ୍ଟସାଧ୍ୟ ବୋଲି ମଧ୍ୟ ମନେ ହୋଇଛି । ପ୍ରାୟ ଏକ ସମୟରେ ସ୍ୱାଧୀନତା ଲାଭ କରିଥିଲେ ମଧ୍ୟ ଭାରତ ପରି ପାକିସ୍ତାନରେ ସାଧାରଣତନ୍ତ୍ର ଆଜି ଭୁଷୁଡ଼ି ପଡ଼ିଛି । ଅବଶ୍ୟ ଭାରତରେ ପାକିସ୍ତାନ ପରି ଅବସ୍ଥା ସୃଷ୍ଟି ହୋଇନାହିଁ । ମାତ୍ର ସ୍ୱାବଲମ୍ବନଶୀଳତା ବିନା ଭାରତରେ ଏହି ସ୍ୱାଧୀନତା ବା ସାଧାରଣତନ୍ତ୍ରର ଅର୍ଥ କ'ଣ ବୋଲି ମଧ୍ୟ ପ୍ରଶ୍ନ ହୋଇଛି ।

ସାବାଳକ ଭୋଟ ପ୍ରଥାଦ୍ୱାରା ଆମେ ନିଜକୁ ନିଜେ ଶାସନ କରିବାର ଅଧିକାର ଲାଭ କରିଛୁଁ । ଆମର ରାଷ୍ଟ୍ର ଧର୍ମନିରପେକ୍ଷ ରାଷ୍ଟ୍ର । ମାତ୍ର ଧର୍ମ ପାଇଁ ଆମ ନିଜ ନିଜ ମଧ୍ୟରେ ଯେପରି କନ୍ଦଳ ସୃଷ୍ଟି ହୋଇ ବେଳେବେଳେ ତାହା ଉଗ୍ର ହିଂସାକାଣ୍ଡରେ ପରିଣତ ହୋଇଛି, ତାହା ଭାବିଲେ ଅବାକ୍ ହେବାକୁ ପଡ଼େ । ସମସ୍ତ ନାଗରିକଙ୍କୁ ସମାନ ଅଧିକାର ଦେଇ ଏକ ଶୋଷଣମୁକ୍ତ ଓ ଶ୍ରେଣୀହୀନ ସମାଜ ଗଠନ କରିବା ହେଉଛି ଆମ ସମ୍ବିଧାନର ଲକ୍ଷ୍ୟ ।

ମାତ୍ର ବଢ଼ି ଚାଲିଛି ଆମ ଭିତରେ ଶ୍ରେଣୀ, ବଢ଼ି ଚାଲିଛି ବି ଶୋଷଣର ମନୋବୃତ୍ତି । ଧନୀ ଓ ଦରିଦ୍ରଙ୍କ ମଧ୍ୟରେ ଶ୍ରେଣୀ ସୃଷ୍ଟି ଯୋଗୁଁ ଅସନ୍ତୋଷ ସଦାସର୍ବଦା ଲାଗି ରହିଛି । ଆମେ ଆମର ମୌଳିକ ଅଧିକାର ପାଇଁ ବାରମ୍ବାର ଦାବି କରି ଆସୁଥିଲେ ମଧ୍ୟ ନିଜର ମୌଳିକ କର୍ତ୍ତବ୍ୟ ଓ ସାମାଜିକ ଦାୟିତ୍ୱବୋଧ ପାଇଁ ଆମେ ସତେ ଯେପରି ସଚେତନ ହୋଇ ପାରିନାହୁଁ ।

ଭାରତରେ ଗଣତାନ୍ତ୍ରିକ ଶାସନ ବ୍ୟବସ୍ଥା ପଡ଼ୋଶୀ ପାକିସ୍ତାନଠାରୁ ଉନ୍ନତ ବୋଲି କୁହାଯାଉଥିଲେ ମଧ୍ୟ ଏହା ଏକକୈନ୍ଦ୍ରିକ ବା କେନ୍ଦ୍ର ଶାସନକୁ ସୁହାଇଲା ପରି ହୋଇଥିବା ଅଭିଯୋଗ ହୋଇଛି । ଆଇନ ପ୍ରଣୟନ ବା ରାଜସ୍ୱ ଆଦାୟ କ୍ଷେତ୍ରରେ କେତେକ କ୍ଷମତା କେନ୍ଦ୍ର ସରକାର ରାଜ୍ୟ ସରକାରମାନଙ୍କୁ ଦେଇଥିଲେ ମଧ୍ୟ କେନ୍ଦ୍ର ସରକାରଙ୍କ ଉପରେ ଅର୍ଥ ପାଇଁ ନିର୍ଭର କରିବାକୁ ରାଜ୍ୟମାନେ ବାଧ୍ୟ ହୋଇଥାନ୍ତି । ଦ୍ୱିତୀୟ ଥର ମୁଖ୍ୟମନ୍ତ୍ରୀ ହେବାପରେ ବିଜୁବାବୁ ରାଜ୍ୟଗୁଡ଼ିକୁ ଆର୍ଥିକ ସ୍ୱାଧୀନତା ଦେବା ଲାଗି ପ୍ରଥମେ ସ୍ୱର ଉତ୍ତୋଳନ କରିଥିଲେ । ଆମର ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ମଧ୍ୟ ରାଜ୍ୟର ସ୍ୱାର୍ଥରକ୍ଷା ପାଇଁ କେନ୍ଦ୍ର ନିକଟରେ ବାରମ୍ବାର ନିବେଦନ କରିବା ସଂଗେସଂଗେ ଓଡ଼ିଶା ପରି ଏକ ଅନଗ୍ରସର ରାଜ୍ୟକୁ ସ୍ୱତନ୍ତ୍ର ରାଜ୍ୟପାହ୍ୟା ଦେବାକୁ ଦାବି କରି ଚାଲିଛନ୍ତି । କେନ୍ଦ୍ର ଓ ରାଜ୍ୟ ସରକାରଙ୍କ ମଧ୍ୟରେ କୌଣସି ବିବାଦ ଘଟିଲେ ସର୍ବୋଚ୍ଚ ଅଦାଲତ ବା ସୁପ୍ରିମ କୋର୍ଟ ସେ ବିଷୟରେ ନିଷ୍ପତ୍ତି ନେବେ ବୋଲି ସମ୍ବିଧାନରେ ନିର୍ଦ୍ଦେଶ ରହିଛି । ମାତ୍ର ସଂସଦ ଓ ନ୍ୟାୟପାଳିକା ମଧ୍ୟରେ ଯେପରି ସୁସଂପର୍କ ରହିବା କଥା ଅର୍ଦ୍ଧଶତାବ୍ଦୀ ଅତିକ୍ରାନ୍ତ ହୋଇଥିଲେ ହେଁ ତାହା ଆଉ ରହୁ ନଥିବା ପରିଲକ୍ଷିତ ହୋଇଛି । ସାଧାରଣତନ୍ତ୍ର ଦିବସରେ ଆମେ ସମସ୍ତେ ଏ ବିଷୟରେ ଚିନ୍ତା କରିବା ଆବଶ୍ୟକ ।

# ଉତ୍କଳ ପ୍ରସଙ୍ଗ

**The Utkal Prasanga**

୬୪ ଭାଗ ୭ମ-୮ମ ସଂଖ୍ୟା ମାଘ-ଚୈତ୍ର ଫେବୃଆରୀ-ମାର୍ଚ୍ଚ - ୨୦୦୮

**ସୁରେଶଚନ୍ଦ୍ର ପଟ୍ଟନାୟକ**
କମିଶନର ତଥା ଶାସନ ସଚିବ

**ବୈଷ୍ଣବ ପ୍ରସାଦ ମହାନ୍ତି**
ନିର୍ଦ୍ଦେଶକ

**ଗୁରୁକଲ୍ୟାଣ ମହାପାତ୍ର**
ମୁଖ୍ୟ ସମ୍ପାଦକ

ସମ୍ପାଦନା ସହଯୋଗୀ
**ଗୋବିନ୍ଦଚନ୍ଦ୍ର ମଲ୍ଲିକ**
**ସଚ୍ଚିଦାନନ୍ଦ ବାରିକ**

ପ୍ରଚ୍ଛଦପଟ ଓ ଲେ-ଆଉଟ ଡ଼ିଜାଇନିଂ
**ମାନସ ନାୟକ**
ଫଟୋ :
**ରାଜୁ ସିଂ ଓ ମନୋରଂଜନ ମହାନ୍ତି**

କମ୍ପ୍ୟୁଟର ସେଟିଂ ଓ
ଡ଼ିଜାଇନିଂ
**ମନୋଜ କୁମାର ପାତ୍ର**
**ହେମନ୍ତ କୁମାର ସାହୁ**

**ପ୍ରତିଖଣ୍ଡ : ଟ.୫.୦୦**


ପ୍ରଚ୍ଛଦପଟ

୧. ଭୁବନେଶ୍ୱରରେ ଓଡ଼ିଶାରେ ପାଇକ ବିଦ୍ରୋହର ୧୯୦ ବର୍ଷ ପୂର୍ତ୍ତି ତଥା ଭାରତ ପ୍ରଥମ ସ୍ୱାଧୀନତା ସଂଗ୍ରାମର ୧୫୦ ବର୍ଷ ପୂର୍ତ୍ତି ଉତ୍ସବରେ ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ସ୍ୱାଧୀନତା ସଂଗ୍ରାମୀଙ୍କୁ ସମ୍ବର୍ଦ୍ଧିତ କରୁଛନ୍ତି ।
୨. ସ୍କୁଲଛାତ୍ରୀମାନଙ୍କୁ ମୁଖ୍ୟମନ୍ତ୍ରୀ ପୋଷାକ ବଣ୍ଟନ କରୁଛନ୍ତି ।
୩. ମଧ୍ୟପ୍ରଦେଶରୁ ଆସିଥିବା ତୀର୍ଥଯାତ୍ରୀମାନଙ୍କର ବସ୍ ଦୁର୍ଘଟଣାଗ୍ରସ୍ତ ହେବା ପରେ ଚିକିତ୍ସାଧୀନ ଆହତ ଯାତ୍ରୀଙ୍କ ନିକଟରେ ମୁଖ୍ୟମନ୍ତ୍ରୀ ।
୪. କେବିକେ ଅଞ୍ଚଳରେ 'ଖାଦ୍ୟ ପାଇଁ କାମ' ପ୍ରକଳ୍ପରେ ଆମ ଲୋକେ ।
୫. କୋରାପୁଟରେ କୋବି ଚାଷର ଏକ ଦୃଶ୍ୟ ।




ଓଡ଼ିଶା ସରକାରଙ୍କର ସୂଚନା ଓ ଲୋକ ସମ୍ପର୍କ ବିଭାଗଦ୍ୱାରା ପ୍ରକାଶିତ ଏବଂ ଓଡ଼ିଶା ସରକାରୀ ମୁଦ୍ରଣାଳୟ, କଟକ - ୧୦ରେ ମୁଦ୍ରିତ ।



ଠିକଣା : 'ଉତ୍କଳ ପ୍ରସଙ୍ଗ', ରାଜ୍ୟ ସୂଚନା ଓ ଲୋକ ସଂପର୍କ ବିଭାଗ, ଲୋକ ସଂପର୍କ ଭବନ, ଭୁବନେଶ୍ୱର - ୭୫୧୦୦୧
ଇ-ମେଲ୍ : iprsec@rediffmail.com, ୱେବ୍‌ସାଇଟ୍ : www.orissagov.nic.in
ଫୋନ : ୨୫୩୦୨୧୧

# ସୂଚୀ

# ଜନ୍ମମାସରେ ଶ୍ରଦ୍ଧାଞ୍ଜଳି



ବିଜୁ ପଟ୍ଟନାୟକ



# ଓଡ଼ିଶା ବିଧାନସଭାରେ ରାଜ୍ୟପାଳ ଶ୍ରୀ ମୁରଲୀଧର ଚନ୍ଦ୍ରକାନ୍ତ ଭଣ୍ଡାରେଙ୍କ ଅଭିଭାଷଣ

ଓଡ଼ିଶା ବିଧାନସଭାରେ

ରାଜ୍ୟପାଳ

ଶ୍ରୀ ମୁରଲୀଧର ଚନ୍ଦ୍ରକାନ୍ତ ଭଣ୍ଡାରେଙ୍କ

ଅଭିଭାଷଣ

ଫେବ୍ରୁଆରୀ ୧୩, ୨୦୦୮

ବାଚସ୍ପତି ମହୋଦୟ ଓ ମାନ୍ୟବର ସଦସ୍ୟବୃନ୍ଦ,

ତ୍ରୟୋଦଶ ବିଧାନସଭାର ତ୍ରୟୋଦଶ ଅଧିବେଶନ ଅବସରରେ ଆପଣମାନଙ୍କୁ ସ୍ୱାଗତ ଜଣାଇ ମୁଁ ବିଶେଷ ଆନନ୍ଦିତ । ଆପଣମାନଙ୍କ ଜରିଆରେ ମୁଁ ରାଜ୍ୟବାସୀଙ୍କୁ ନବବର୍ଷ-୨୦୦୮ର ହାର୍ଦ୍ଦିକ ଅଭିନନ୍ଦନ ଓ ଶୁଭେଚ୍ଛା ଜଣାଇବା ସଂଗେସଂଗେ ସେମାନଙ୍କର ସୁଖ ଓ ସମୃଦ୍ଧି କାମନା କରୁଛି ।

ଭାରତର ପୂର୍ବତନ ପ୍ରଧାନମନ୍ତ୍ରୀ ସ୍ୱର୍ଗତଃ ଚନ୍ଦ୍ରଶେଖର, ପୂର୍ବତନ ମନ୍ତ୍ରୀ ପ୍ରଦୀପ୍ତ କିଶୋର ଦାସ, ମୁରାରୀ ପ୍ରସାଦ ମିଶ୍ର, ବିଧାନସଭା ସଦସ୍ୟ ଅନନ୍ତରାମ ମାଝୀ, ପୂର୍ବତନ ବିଧାୟକ ରାମଚନ୍ଦ୍ର ସେଠୀ, ବିଦ୍ୟାଧର ନାୟକ, କିଶୋରୀମଣି ସିଂହ, ବରଦା ପ୍ରସନ୍ନ କଅଁର, ରାଜାସାହେବ ତ୍ରିଲୋଚନ ସିଂହଦେଓ, ଭୀମସେନ ମଣ୍ଡଳ, ରାମେଶ୍ୱର ସିଂହ ନାଏକ, ଜଗନ୍ନାଥ ତ୍ରିପାଠୀ, ଭଗବାନ ଭୋଇ, ଶଶିଭୂଷଣ ପ୍ରଧାନ, ସୀମା ସୁରକ୍ଷା ବାହିନୀର ପୂର୍ବତନ କନେଷ୍ଟବଳ ଦୀନବନ୍ଧୁ ପାଳ ଓ ଭାରତୀୟ ସେନାବାହିନୀର ଭୂତପୂର୍ବ ସିପାହୀ କୁନାଲ ପ୍ରଧାନଙ୍କ ବିୟୋଗରେ ଗୃହ ଗଭୀର ଶୋକ ପ୍ରକାଶ କରିସାରିଛି । ଗୃହର ପୂର୍ବତନ ସଦସ୍ୟ ଉଚ୍ଛବ ଚରଣ ଜେନା, ଗୌରୀଶ୍ୟାମ ନାୟକ ଓ ତ୍ରିବିକ୍ରମ ମଲ୍ଲିକ ଯେଉଁମାନେକି ଆଜି ଆମ ଗହଣରେ ନାହାନ୍ତି, ସେମାନଙ୍କ ପ୍ରତି ମୋ' ସହିତ ଗଭୀର ଶ୍ରଦ୍ଧାଞ୍ଜଳି ଜ୍ଞାପନ କରିବାକୁ ମୁଁ ଆପଣମାନଙ୍କୁ ନିବେଦନ କରୁଛି । ସେମାନଙ୍କ ଶୋକାକୁଳ ପରିବାରବର୍ଗଙ୍କୁ ଗୃହ ଗଭୀର ସମବେଦନା ଜଣାଉଛି । ରାଜ୍ୟ ତଥା ଦେଶ ପାଇଁ ସେମାନଙ୍କର ନିଃସ୍ୱାର୍ଥପର ସେବା ଓ ତ୍ୟାଗ ନିମନ୍ତେ ଆମ୍ଭେମାନେ ସର୍ବଦା ସେମାନଙ୍କୁ ମନେ ରଖିବୁ ।

ଦଶମ ପଞ୍ଚବାର୍ଷିକ ଯୋଜନା କାଳରେ ଓଡ଼ିଶାର ହାରାହାରି ବାର୍ଷିକ ଅର୍ଥନୈତିକ ଅଭିବୃଦ୍ଧିର ଧାର୍ଯ୍ୟଲକ୍ଷ୍ୟ ୬.୨ ଶତାଂଶ ଥିଲାବେଳେ ଏହି ହାର ୭.୨ ଶତାଂଶକୁ ବୃଦ୍ଧି ଘଟିଛି । ଅଷ୍ଟମ ପଞ୍ଚବାର୍ଷିକ ଯୋଜନା କାଳର ବାର୍ଷିକ ହାରାହାରି ଅଭିବୃଦ୍ଧି ହାର ୨.୩୦ ଶତାଂଶ ଓ ନବମ ପଞ୍ଚବାର୍ଷିକ ଯୋଜନା କାଳର ହାରାହାରି ଅଭିବୃଦ୍ଧି ହାର ୫.୨ ଶତାଂଶଠାରୁ ଏହା ଅନେକ ପରିମାଣରେ ଅଧିକ ।

ଏକାଦଶ ଯୋଜନା ପ୍ରସ୍ତୁତି ଚିଠା ଅନୁଯାୟୀ ଓଡ଼ିଶାର ଉନ୍ନୟନ ଆବଶ୍ୟକତାକୁ ଦୃଷ୍ଟିରେ ରଖି ମୋ' ସରକାର (୧) କୃଷି ଓ ଆନୁଷଙ୍ଗିକ କ୍ଷେତ୍ରରେ ବାର୍ଷିକ ୪ ଶତାଂଶରୁ ଊର୍ଦ୍ଧ୍ୱ ବାର୍ଷିକ ଅଭିବୃଦ୍ଧି ସହିତ ଦ୍ରୁତ ଓ ସାର୍ବଜନୀନ ବାର୍ଷିକ ହାରାହାରି ଅଭିବୃଦ୍ଧି ହାର ୯ ଶତାଂଶ ଏବଂ (୨) ଏକାଦଶ ପଞ୍ଚବାର୍ଷିକ ଯୋଜନା କାଳରେ ଅଧିକ ମାତ୍ରାରେ ଦାରିଦ୍ର୍ୟ ଦୂରୀକରଣର ଲକ୍ଷ୍ୟ ରଖିଛି । ଏହାକୁ ଦୃଷ୍ଟିରେ ରଖି ଦଶମ ଯୋଜନାକାଳ ମଧ୍ୟରେ ଥିବା ବ୍ୟୟଅଟକଳ ୧୯,୦୦୦ କୋଟି ଟଙ୍କାରୁ ଏକାଦଶ ଯୋଜନା ଅବଧି ପାଇଁ ୩୨,୨୨୫ କୋଟି ଟଙ୍କାକୁ ବୃଦ୍ଧି କରାଯାଇଛି ।

ଉନ୍ନତ କୃଷି ଉତ୍ପାଦନ ନିମନ୍ତେ ଜଳସେଚନ ଅତ୍ୟନ୍ତ ଅପରିହାର୍ଯ୍ୟ । ୨୦୦୮ ବର୍ଷକୁ 'ଜଳସେଚନର ବର୍ଷ' ରୂପେ ଘୋଷଣା କରାଯାଇଛି । ଚାଲୁ ରହିଥିବା ଜଳସେଚନ ପ୍ରକଳ୍ପଗୁଡ଼ିକର କାର୍ଯ୍ୟ ସଂପୂର୍ଣ୍ଣ କରିବା ସହିତ ନୂତନ ଜଳସେଚନ ପ୍ରକଳ୍ପଗୁଡ଼ିକ ହାତକୁ ନେଇ ଜଳସେଚନର ସାମର୍ଥ୍ୟ ବୃଦ୍ଧି କରିବା ପାଇଁ ମୋ' ସରକାର ପ୍ରୟାସ କରୁଛନ୍ତି । ୨୦୦୭-୦୮ ବର୍ଷର ଡିସେମ୍ବର ମାସ ସୁଦ୍ଧା ୨୩,୨୧୪ ହେକ୍ଟର ପାଇଁ ଅତିରିକ୍ତ

ଜଳସେଚନର ସାମର୍ଥ୍ୟ ସୃଷ୍ଟି କରାଯାଇଛି । କାର୍ଯ୍ୟକ୍ରମ ଆରମ୍ଭରୁ ୨୦୦୭ ମସିହାର ଡିସେମ୍ବର ମାସ ସୁଦ୍ଧା ବୃହତ୍, ମଧ୍ୟମ ଓ କ୍ଷୁଦ୍ର ଜଳସେଚନ ପ୍ରକଳ୍ପଗୁଡ଼ିକ ଜରିଆରେ ୨୧.୯୮ ଲକ୍ଷ ହେକ୍ଟର ଅଧିକ ଜଳସେଚନ ସାମର୍ଥ୍ୟ ସୃଷ୍ଟି ହୋଇପାରିଛି । ସମସ୍ତ ଅଞ୍ଚଳକୁ ଦ୍ରୁତ ଗତିରେ ଜଳସେଚନର ସୁବିଧା ଯୋଗାଇ ଦେବାପାଇଁ କ୍ଷୁଦ୍ର ଜଳସେଚନ ପ୍ରକଳ୍ପଗୁଡ଼ିକ ଉପରେ ଗୁରୁତ୍ୱ ଦିଆଯାଉଛି । ଶତକଡ଼ା ୩୫ ପ୍ରତିଶତରୁ କମ୍ ଜଳସେଚନ ସୁବିଧା ଥିବା ପ୍ରତ୍ୟେକ ଗ୍ରାମରେ ୫ ଲକ୍ଷ ଟଙ୍କା ବ୍ୟୟରେ ଜଳସେଚନ ପ୍ରକଳ୍ପ ନିର୍ମାଣ କରିବା ପାଇଁ ମୋ' ସରକାର ଏକ ସାହସିକ ପଦକ୍ଷେପ ଗ୍ରହଣ କରିଛନ୍ତି ।

ବୃହତ୍ ଓ ମଧ୍ୟମ ଜଳସେଚନ ପ୍ରକଳ୍ପଗୁଡ଼ିକରେ ଉପଯୁକ୍ତ ଜଳସେଚନ ଲକ୍ଷ୍ୟରେ କମାଣ୍ଡ ଏରିଆର ଉନ୍ନୟନ କାର୍ଯ୍ୟ ହାତକୁ ନିଆଯାଇଛି । ହୀରାକୁଦ କମାଣ୍ଡ ଏରିଆର ଶେଷ ଭାଗରେ ଜଳସେଚନ ସୁବିଧା ନିଶ୍ଚିତ କରିବା ଉଦ୍ଦେଶ୍ୟରେ ପଦକ୍ଷେପ ଗ୍ରହଣ କରାଯାଇଛି । କମାଣ୍ଡ ଏରିଆର ଉନ୍ନୟନ ଓ ଅଂଶିଦାରୀ ଜଳସେଚନ ବ୍ୟବସ୍ଥା ମଧ୍ୟରେ ସମନ୍ୱୟ ରକ୍ଷା କରିବା ନିମନ୍ତେ ସି.ଏ.ଡି. ଓ ପି.ଆଇ.ଏମ୍. ନାମକ ଏକ ନିର୍ଦ୍ଦେଶାଳୟ ଜଳ ସମ୍ପଦ ବିଭାଗରେ ଖୋଲାଯାଇଛି । ୨୦୦୭ ମସିହା ଡିସେମ୍ବର ସୁଦ୍ଧା କ୍ଷୁଦ୍ର କେନାଲଗୁଡ଼ିକର ତଳଭାଗରେ ଜଳସେଚନ ବ୍ୟବସ୍ଥାର କାର୍ଯ୍ୟକାରିତା ଓ ପରିଚାଳନା ନିମନ୍ତେ ୧୪,୫୫୪ଟି ପାଣିପଞ୍ଚାୟତକୁ ୯.୮୩ ଲକ୍ଷ ହେକ୍ଟର ଜଳସେଚିତ କମାଣ୍ଡ ଏରିଆ ହସ୍ତାନ୍ତର କରାଯାଇଛି । ୨୦୦୦ ମସିହାରେ ଅଂଶିଦାରୀ ଜଳସେଚନ ବ୍ୟବସ୍ଥା ନିମନ୍ତେ ଓଡ଼ିଶା ସରକାର ପାଣିପଞ୍ଚାୟତ ଆନ୍ଦୋଳନ ସୃଷ୍ଟି କରିଥିଲେ । ଏହାଫଳରେ ଆମର ସମସ୍ତ ଜଳସେଚନ ପ୍ରକଳ୍ପଗୁଡ଼ିକର ଜଳକୁ ସଠିକ୍ ବ୍ୟବହାର ସମ୍ଭବ ହୋଇପାରିଛି । ଏହି ସମୟ ମଧ୍ୟରେ ୪.୩୦ ଲକ୍ଷ ହେକ୍ଟର ଜମିରେ ଚ୍ୟାନେଲ ଓ ୧.୨୩ ଲକ୍ଷ ହେକ୍ଟର ଜମିରେ ନାଳ ନିର୍ମାଣ କାର୍ଯ୍ୟ ଶେଷ ହୋଇଛି ।

ବିଶ୍ୱବ୍ୟାଙ୍କ ସାହାଯ୍ୟପ୍ରାପ୍ତ ଓଡ଼ିଶା ଗୋଷ୍ଠୀ ପୁଷ୍କରିଣୀ ପରିଚାଳନା ପ୍ରକଳ୍ପ ମାଧ୍ୟମରେ ୯୦୦ ଗୋଟି କ୍ଷୁଦ୍ର ଜଳସେଚନ ପ୍ରକଳ୍ପର ଉଦ୍ଧାର କାର୍ଯ୍ୟର ପ୍ରସ୍ତାବ ରହିଛି । ଏହାଫଳରେ ୧.୨୦ ଲକ୍ଷ ହେକ୍ଟର ଜମିରେ ଜଳସେଚନ ବ୍ୟବସ୍ଥାକୁ ସୁଦୃଢ଼ କରାଯାଇପାରିବ ।

ଏସିଆନ ଡେଭେଲପ୍‌ମେଣ୍ଟ ବ୍ୟାଙ୍କ ସାହାଯ୍ୟପ୍ରାପ୍ତ ଓଡ଼ିଶା ସମନ୍ୱିତ ଜଳସେଚିତ କୃଷି ଓ ଜଳ ସୁପରିଚାଳନା ପ୍ରକଳ୍ପ ଶୀଘ୍ର ଆରମ୍ଭ ହେବାକୁ ଯାଉଛି । ଏହି କାର୍ଯ୍ୟକ୍ରମ ଅନୁଯାୟୀ ବ୍ରାହ୍ମଣୀ-ବୈତରଣୀ-ବୁଢ଼ାବଳଙ୍ଗ-ସୁବର୍ଣ୍ଣରେଖା ନଦୀ ଉପତ୍ୟକା ଓ ମହାନଦୀ ତ୍ରିକୋଣଭୂମି ପ୍ରଥମ ଭାଗର ଅଞ୍ଚଳଗୁଡ଼ିକରେ ୬ ଗୋଟି ବୃହତ୍ ଜଳସେଚନ ପ୍ରକଳ୍ପ, ୯ ଗୋଟି ମଧ୍ୟମ ଜଳସେଚନ ପ୍ରକଳ୍ପ ଓ ୧୪୦୦ଟି କ୍ଷୁଦ୍ର ଉଠାଜଳସେଚନ ଯୋଜନାଗୁଡ଼ିକର ଆଧୁନିକୀକରଣ କାର୍ଯ୍ୟ ହାତକୁ ନିଆଯିବ ।

ବିଶ୍ୱବ୍ୟାଙ୍କ ସାହାଯ୍ୟପ୍ରାପ୍ତ ପ୍ରସ୍ତାବିତ ଓଡ଼ିଶା ଜଳସେଚିତ ଅଞ୍ଚଳ ଉନ୍ନୟନ ପ୍ରକଳ୍ପ ଜରିଆରେ ୧.୫୨ ଲକ୍ଷ ହେକ୍ଟର ଜମିର ଜଳସେଚନ ବ୍ୟବସ୍ଥାକୁ ସୁଦୃଢ଼ କରାଯିବ ।

ଓଡ଼ିଶାରେ କୃଷି ହେଉଛି ଗ୍ରାମ୍ୟ ଅର୍ଥନୀତିର ମେରୁଦଣ୍ଡ । ଏହି କ୍ଷେତ୍ରର ଉନ୍ନତି ଉପରେ ମୋ' ସରକାର ଅଧିକ ଗୁରୁତ୍ୱ ଦେଉଛନ୍ତି ।

ରାଜ୍ୟରେ କୃଷକମାନଙ୍କ ସର୍ବାଙ୍ଗୀନ ଉନ୍ନତି ପାଇଁ ମୋ' ସରକାର ଏକ ଆକର୍ଷଣୀୟ ପ୍ୟାକେଜ୍ ଘୋଷଣା କରିଛନ୍ତି । ଏକାଦଶ ପଞ୍ଚବାର୍ଷିକ ଯୋଜନା ସୁଦ୍ଧା ଜାତୀୟ ଲକ୍ଷ୍ୟ ଅନୁଯାୟୀ ମୋ' ସରକାର କୃଷି କ୍ଷେତ୍ରରେ ୪ ପ୍ରତିଶତ ଅଭିବୃଦ୍ଧି ପାଇଁ ଆଶାପୋଷଣ କରିଛନ୍ତି ।

କୃଷି ଉତ୍ପାଦନ ଓ ଉତ୍ପାଦିକା ଶକ୍ତି ବୃଦ୍ଧି ପାଇଁ ବିହନ ହେଉଛି ମୌଳିକ ଆବଶ୍ୟକତା । ବିଭିନ୍ନ ଶସ୍ୟଗୁଡ଼ିକର ଉନ୍ନତମାନର ବିହନ ଯୋଗାଣ ଦ୍ୱାରା ବିହନ ପରିବର୍ତ୍ତନ ହାରକୁ ବୃଦ୍ଧି କରାଯାଉଛି । ଏହାଫଳରେ ଧାନ ଓ ଅଣଧାନ ଚାଷପାଇଁ ଉନ୍ନତମାନର ବିହନ ଯୋଗାଣ ଦ୍ୱାରା ବିହନ ପରିବର୍ତ୍ତନ ହାର ବୃଦ୍ଧି କରିବା କ୍ଷେତ୍ରରେ ସଫଳତା ହାସଲ କରାଯାଇପାରିଛି । ଏହାବ୍ୟତୀତ ଉନ୍ନତମାନର ବିହନ ଉତ୍ପାଦନ କ୍ଷେତ୍ରରେ ଆତ୍ମନିର୍ଭରଶୀଳତା ହାସଲ କରାଯିବା ପାଇଁ ପ୍ରୟାସ ଜାରି ରହିଛି । ବର୍ତ୍ତମାନ ୨୭ ଗୋଟି ଜିଲ୍ଲାରେ ବିହନ ପ୍ରକ୍ରିୟାକରଣ ପ୍ଲାଣ୍ଟ ରହିଛି । ଏହା ସହିତ ଆଉ ତିନିଗୋଟି ଜିଲ୍ଲାରେ ଏହି ପ୍ଲାଣ୍ଟ ପ୍ରତିଷ୍ଠା କରାଯିବାର କାର୍ଯ୍ୟକ୍ରମ ରହିଛି, ଯଦ୍ଦ୍ୱାରାକି ରାଜ୍ୟର ସମସ୍ତ ଜିଲ୍ଲାରେ ଏହି ସୁବିଧା ଉପଲବ୍ଧ ହେବ ।

ଜୈବିକ ଚାଷ ହେଉଛି ସାଂପ୍ରତିକ ସ୍ଲୋଗାନ । ବିଶ୍ୱ ବଜାରରେ ଜୈବିକ ଉତ୍ପାଦନର ଚାହିଦା ଥିବା ଦୃଷ୍ଟିରୁ ସରକାର ରାଜ୍ୟରେ ଜୈବିକ ଚାଷ ଉପରେ ଗୁରୁତ୍ୱ ଦେଉଛନ୍ତି । କନ୍ଧମାଳ ପରି କେତେକ ଜିଲ୍ଲାରେ ଜୈବିକ ଚାଷ ପାଇଁ ପ୍ରକୃଷ୍ଟ ସୁଯୋଗ ରହିଛି । ମୋ' ସରକାର କନ୍ଧମାଳରେ ଜୈବିକ ଚାଷ ପାଇଁ ସ୍ୱତନ୍ତ୍ର ପଦକ୍ଷେପ ନେଉଛନ୍ତି । ରାଜ୍ୟରେ ୫୭ ଗୋଟି ଜିଆଖତ ଉତ୍ପାଦନ କେନ୍ଦ୍ର ପ୍ରତିଷ୍ଠା କରାଯାଇଛି ଓ ୨୦୦୭-୦୮ ବର୍ଷ ମଧ୍ୟରେ ଆହୁରି ୧୦୦ ଗୋଟି ଜିଆଖତ ଉତ୍ପାଦନ କେନ୍ଦ୍ର ଖୋଲାଯିବା ନିମନ୍ତେ ଦ୍ରୁତ ପ୍ରସ୍ତୁତି ଚାଲିଛି । ଆସନ୍ତା ବର୍ଷ ସୁଦ୍ଧା ପ୍ରତ୍ୟେକ ୩୧୪ଟି ବ୍ଲକ୍‌ରେ ଗୋଟିଏ ଲେଖାଏଁ ଜିଆଖତ ଉତ୍ପାଦନ କେନ୍ଦ୍ର ହୋଇପାରିବ ।

ରାଜ୍ୟସାରା ସଘନ ଚାଷ କରାଯାଉଥିବା ହେତୁ ମୃତ୍ତିକାର ଅବସ୍ଥା ଏକ ଗୁରୁତ୍ୱପୂର୍ଣ୍ଣ ବିଷୟ । ମୃତ୍ତିକାର ଅବସ୍ଥାକୁ ସୁରକ୍ଷା କରିବା ଉଦ୍ଦେଶ୍ୟରେ ବହୁବିଧ କାର୍ଯ୍ୟକ୍ରମ ହାତକୁ ନିଆଯାଉଛି । ମୃତ୍ତିକାର ଅବସ୍ଥାକୁ ପରୀକ୍ଷାନିରୀକ୍ଷା କରିବା ଲକ୍ଷ୍ୟରେ ମୃତ୍ତିକା ପରୀକ୍ଷଣ ଓ ଉନ୍ନତିକରଣ କାର୍ଯ୍ୟ ବ୍ୟାପକ ଭାବେ ହାତକୁ ନିଆଯାଇଛି । ସମାନୁପାତିକ ସାର ବ୍ୟବହାରର ପ୍ରସ୍ତାବ ସହିତ କୃଷକମାନଙ୍କୁ ୭୭,୧୪୦ଟି ମୃତ୍ତିକା ଅବସ୍ଥା ସଂପର୍କରେ କାର୍ଡ଼ ଯୋଗାଇ ଦିଆଯାଇଛି । ଏହା ଏକ ଉଲ୍ଲେଖନୀୟ ବିଷୟ ଯେ ରାଜ୍ୟରେ ଗତ ଖରିଫ ଋତୁରେ ସାର ବ୍ୟବହାର ହେକ୍ଟର ପିଛା ୪୭ କେ.ଜି.ରୁ ୫୩ କେ.ଜି.କୁ ବୃଦ୍ଧିପାଇଛି ।

କୃଷି କ୍ଷେତ୍ରରେ ଅଧିକ ଉତ୍ପାଦନ ନିମନ୍ତେ ନୂତନ ଜ୍ଞାନକୌଶଳ ହାସଲ ପାଇଁ କୃଷକମାନଙ୍କ ପ୍ରଶିକ୍ଷଣ ହେଉଛି ଏକ ମାଧ୍ୟମ । କୃଷି ଜ୍ଞାନକୌଶଳର ବିକାଶ ସଂପର୍କରେ କୃଷକ ତଥା କ୍ଷେତ୍ର କର୍ମଚାରୀମାନଙ୍କ ଜ୍ଞାନ ବୃଦ୍ଧି ନିମନ୍ତେ ବିଭିନ୍ନ ଯୋଜନା ଅନ୍ତର୍ଗତ ଅନେକ ପ୍ରଶିକ୍ଷଣ କାର୍ଯ୍ୟକ୍ରମ ଆୟୋଜନ କରାଯାଉଛି । ଏହା ସହିତ ଧାନ ଉତ୍ପାଦନ ବୃଦ୍ଧି ନିମନ୍ତେ ସଘନ ଧାନ ଚାଷର ପ୍ରଣାଳୀ ଉପରେ ଚାଷୀମାନଙ୍କୁ ଶିକ୍ଷା ଦେବାପାଇଁ ରାଜ୍ୟରେ ୪୨୦୦ଟି କ୍ଷେତ୍ର ପ୍ରଦର୍ଶନୀ କାର୍ଯ୍ୟକ୍ରମ ଆୟୋଜନ କରାଯାଇଛି ।

ଭୂତଳ ଓ ଉପରିସ୍ଥ ଜଳର ସଦୁପଯୋଗ ଦ୍ୱାରା ଜଳସେଚନ ବ୍ୟବସ୍ଥା ବୃଦ୍ଧି କରିବା ସକାଶେ ୨୦୦୦-୨୦୦୧ ବର୍ଷଠାରୁ ୫୪,୪୭୮ଟି ଅଗଭୀର, ୬,୪୩୬ଟି ଗଭୀର କୂପ ଓ ୫୯୨ଟି ଉପରିସ୍ଥ ଜଳ ଉଠାଣ ବ୍ୟବସ୍ଥା ସଂପୂର୍ଣ୍ଣ କରାଯାଇଛି । ପ୍ରତ୍ୟେକ ବ୍ଲକର ଶତକଡ଼ା ୩୫ ଭାଗ ଜମିକୁ ଜଳସେଚନ ଲକ୍ଷ୍ୟରେ ଯୁଦ୍ଧକାଳୀନ ଭିତ୍ତିରେ କାର୍ଯ୍ୟକ୍ରମ ସବୁ ହାତକୁ ନିଆଯାଉଛି । 'ଜଳନିଧି' ନାମରେ ଏକ ନୂଆ କାର୍ଯ୍ୟକ୍ରମ ହାତକୁ ନିଆଯାଇଛି ଯଦ୍ଦ୍ୱାରାକି ରିହାତି ଦରରେ ଚାଷୀମାନଙ୍କ ଜମିଗୁଡ଼ିକରେ ଗଭୀର କୂପ ଓ ନଳକୂପ ଖୋଳାଯାଇପାରିବ ।

କୃଷି କ୍ଷେତ୍ରରେ ସର୍ବବିଧ ଉନ୍ନତି ଲକ୍ଷ୍ୟରେ ମୋ' ସରକାର ଯଥାଶୀଘ୍ର 'ନୂତନ କୃଷି ନୀତି' ଘୋଷଣା କରିବାକୁ ମନସ୍ଥ କରୁଛନ୍ତି ।

୨୦୦୭-୦୮ ବର୍ଷରେ ଜାତୀୟ ଉଦ୍ୟାନ କୃଷି ମିଶନରେ ଆଉ ପାଞ୍ଚଗୋଟି ଜିଲ୍ଲା ଯଥା- ଅନୁଗୋଳ, ବରଗଡ଼, ଦେବଗଡ଼, ସମ୍ବଲପୁର ଓ ସୁନ୍ଦରଗଡ଼କୁ ସାମିଲ କରାଯାଇଛି । ବର୍ତ୍ତମାନ ଏହି ମିଶନରେ ସମୁଦାୟ ୨୪ ଗୋଟି ଜିଲ୍ଲାକୁ ସାମିଲ କରାଯାଇଛି । ଏହା ଫଳରେ ୨୦୦୭-୦୮ ବର୍ଷରେ ୧୫,୨୦୦ ହେକ୍ଟର ଆମ୍ବ, ୬,୧୦୦ ହେକ୍ଟରରେ କାଜୁ, ୬୬୯ ହେକ୍ଟରରେ ଅଁଳା, ୪୮୩ ହେକ୍ଟରରେ ଲେମ୍ବୁ ଜାତୀୟ ଫଳ ଓ ୩୦୨ ହେକ୍ଟରରେ କଦଳୀଚାଷ କରାଯାଇଛି । ୨୦୦୮-୦୯ ବର୍ଷରେ ଅତିରିକ୍ତ ୨୫,୦୦୦ ହେକ୍ଟରରେ ବିଭିନ୍ନ ଫଳଚାଷ କରାଯିବ । ଏହି ସମୟ ମଧ୍ୟରେ ୯୪୬ ହେକ୍ଟରରେ ଫୁଲଚାଷ କରାଯାଇଛି । ୨୦୦୮-୦୯ ବର୍ଷରେ ୨,୨୦୦ ହେକ୍ଟରରେ ଫୁଲଚାଷ କରାଯିବାର ବ୍ୟବସ୍ଥା ରହିଛି ।

୨୦୦୭-୦୮ ବର୍ଷ ଶେଷସୁଦ୍ଧା ୩୦ ଲକ୍ଷ କିଷାନ କ୍ରେଡ଼ିଟ୍ କାର୍ଡ଼ ପ୍ରଦାନ ନିମନ୍ତେ ଲକ୍ଷ୍ୟଧାର୍ଯ୍ୟ ହୋଇଥିବା ସ୍ଥଳେ ୧୯୯୮-୯୯ରେ ଏହି ଯୋଜନା ଆରମ୍ଭ ହେବାଠାରୁ ସମବାୟ ବ୍ୟାଙ୍କ ଜରିଆରେ ୨୦୦୭ ମସିହା ନଭେମ୍ବର ୩୦ ତାରିଖ ସୁଦ୍ଧା ପ୍ରାଥମିକ କୃଷି ସମବାୟ ସମିତି କୃଷକମାନଙ୍କୁ ୨୮.୧୭ ଲକ୍ଷ କିଷାନ କ୍ରେଡ଼ିଟ୍ କାର୍ଡ଼ ପ୍ରଦାନ କରାଯାଇଛି । ଏଥିମଧ୍ୟରୁ ୨୦୦୭-୦୮ ବର୍ଷରେ ତା.୩୦.୧୧.୦୭ରିଖ ସୁଦ୍ଧା ୧.୨୯ ଲକ୍ଷ କିଷାନ କ୍ରେଡ଼ିଟ କାର୍ଡ଼ ବିତରଣ କରାଯାଇଛି ।

ସମବାୟ ବ୍ୟାଙ୍କକୁ ବାର୍ଷିକ ଶତକଡ଼ା ୭ ଭାଗ ସୁଧରେ କୃଷିଋଣ ପ୍ରଦାନ କରିବାପାଇଁ ସମର୍ଥ କରିବା ନିମନ୍ତେ ମୋ' ସରକାର ୨୦୦୬-୦୭ ଏବଂ ୨୦୦୭-୦୮ ଆର୍ଥିକ ବର୍ଷରେ ଏସ୍.ଟି.ସି.ସି.ଏସ୍.କୁ ୩୩.୦୦ କୋଟି ଟଙ୍କା ସୁଧ ସବ୍‌ସିଡି ଭାବେ ପ୍ରଦାନ କରିଛନ୍ତି । ଆଉମଧ୍ୟ ୨୦୦୮-୦୯ ମସିହାରେ ସମବାୟ ବ୍ୟାଙ୍କକୁ ଶତକଡ଼ା ୭ ଭାଗ ସୁଧ ହିସାବରେ କୃଷିଋଣ ପ୍ରଦାନ ପାଇଁ ସମର୍ଥ କରିବା ଲକ୍ଷ୍ୟରେ ମୋ' ସରକାର ସୁଧ ବାବଦ ଅର୍ଥ ଭରଣା କରିବା ପ୍ରୟାସ ଜାରି ରଖିଛନ୍ତି ।

କୃଷିଋଣ ପ୍ରଦାନ ପ୍ରକ୍ରିୟାକୁ ଅବ୍ୟାହତ ରଖିବା ଲକ୍ଷ୍ୟରେ ରାଜ୍ୟରେ ଥିବା ସମବାୟ ଋଣ ପ୍ରଦାନ ସମିତିଗୁଡ଼ିକର କ୍ରମାଗତ କ୍ଷତିକୁ ଭରଣା କରାଯିବା ପାଇଁ ଆର୍ଥିକ ସହାୟତା ଯୋଗାଇ ଦିଆଯିବ । ବୈଦ୍ୟନାଥନ କମିଟିର ସୁପାରିଶ ଅନୁସାରେ ଚଳିତ ବର୍ଷ ସଂଶୋଧିତ ପ୍ୟାକେଜ୍ କାର୍ଯ୍ୟକାରୀ କରାଯିବ । ସମସ୍ତ ପ୍ରାଥମିକ ସମିତିଗୁଡ଼ିକର ସ୍ୱତନ୍ତ୍ର ପରୀକ୍ଷା କରାଯାଇ ମୋଟ ୭୭୨.୨୦ କୋଟି ଟଙ୍କା ଆର୍ଥିକ ସହାୟତା ଆକାରରେ ପି.ଏ.ସି.ଏସ୍. କାର୍ଯ୍ୟକୁ ପ୍ରଦାନ କରିବାକୁ ନିର୍ଦ୍ଧାରିତ କରାଯାଇଛି । ସେଥିମଧ୍ୟରୁ କେନ୍ଦ୍ର ସରକାର, ରାଜ୍ୟ ସରକାର ଏବଂ ସମବାୟ ସମିତିଗୁଡ଼ିକ ଯଥାକ୍ରମେ ୬୪୪.୭୯ କୋଟି, ୭୧.୫୬ କୋଟି ଏବଂ ୫୫.୮୫ କୋଟି ଟଙ୍କା ପ୍ରଦାନ କରିବେ ।

ରାଜ୍ୟର ଗ୍ରାମାଞ୍ଚଳର ଅଧିବାସୀ ବିଶେଷତଃ ଦାରିଦ୍ର୍ୟ ସୀମାରେଖା ତଳେ ଥିବା ଲୋକମାନଙ୍କ ନିଶ୍ଚିତ ଉପାର୍ଜନ ଏବଂ ନିଯୁକ୍ତି ନିମନ୍ତେ ଗ୍ରାମ୍ୟ ଅର୍ଥନୀତିରେ ପଶୁ ସଂପଦର ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଛି । ରାଜ୍ୟରେ ମାଛ ଚାଷର ଯଥେଷ୍ଟ ଚାହିଦା ଥିବାରୁ ଏହି କ୍ଷେତ୍ରରେ ନିଯୁକ୍ତି ଏବଂ

ଉପାର୍ଜନ ବୃଦ୍ଧି ପାଇଁ ମୋ' ସରକାର ବିଶେଷ ଗୁରୁତ୍ୱ ଦେଉଛନ୍ତି । ୨୦୦୩-୦୪ ମସିହାରେ ରାଜ୍ୟରେ ଜଳାଶୟ ମତ୍ସ୍ୟଚାଷ ନୀତି ପ୍ରଣୟନ ହୋଇଛି । ଗରିବ ମତ୍ସ୍ୟଜୀବୀମାନଙ୍କୁ ଜୀବିକା ଉପାର୍ଜନ ଯୋଗାଇ ଦେବା ନିମନ୍ତେ ମତ୍ସ୍ୟ ଉତ୍ପାଦନ ବୃଦ୍ଧି କରିବା ଏହି ନୀତିର ଲକ୍ଷ୍ୟ । ରାଜ୍ୟ ସରକାର ଏବଂ କେନ୍ଦ୍ର ସରକାରଙ୍କ ଦ୍ୱାରା ପରିଚାଳିତ କାର୍ଯ୍ୟକ୍ରମର ବୈଜ୍ଞାନିକ ପରିଚାଳନା ଏବଂ ମତ୍ସ୍ୟ ଉତ୍ପାଦନ ବୃଦ୍ଧି ସକାଶେ ମାଷ୍ଟର ପ୍ଲାନ ଅନୁସାରେ ସମସ୍ତ ସୁବିଧା ସୁଯୋଗ ଯୋଗାଇ ଦିଆଯାଉଛି । ଆହୁରିମଧ୍ୟ ସଂଶୋଧିତ ଦୀର୍ଘମିଆଦୀ କ୍ରିୟାଭିମୁଖୀ ଯୋଜନା (ଆର୍.ଏଲ୍.ଟି.ଏ.ପି.) କାର୍ଯ୍ୟକ୍ରମ ବନ୍ଦ ହେବା ପରେ କେ.ବି.କେ. ଜିଲ୍ଲାମାନଙ୍କରେ ବାକି ଥିବା ପୁଷ୍କରିଣୀରେ ମତ୍ସ୍ୟ ଚାଷର ବିକାଶ ପାଇଁ ବିଜୁ କେ.ବି.କେ. ଯୋଜନା ଅନୁସାରେ ଯୋଜନା ପ୍ରସ୍ତୁତ ହୋଇଛି । ମତ୍ସ୍ୟଜୀବୀମାନଙ୍କୁ ଆବଶ୍ୟକୀୟ ସହାୟତା ଯୋଗାଇଦେବା ସହିତ ମୋ' ସରକାର ମତ୍ସ୍ୟଜୀବୀମାନଙ୍କ ପାଇଁ ଗୋଷ୍ଠୀ ଦୁର୍ଘଟଣା ବୀମା, ସଞ୍ଚୟ ତଥା ସହାୟତା ଏବଂ ସ୍ୱଳ୍ପ ମୂଲ୍ୟର ଗୃହ ଯୋଗାଇ ଦେବା ପ୍ରଭୃତି ବିଭିନ୍ନ କଲ୍ୟାଣମୂଳକ କାର୍ଯ୍ୟକ୍ରମ ମଧ୍ୟ ଆରମ୍ଭ କରିଛନ୍ତି ।

ମୋ' ସରକାର ଆତ୍ମନିଯୁକ୍ତି ସୁଯୋଗ ସୃଷ୍ଟି କରିବା ଉପରେ ଅଧିକ ଗୁରୁତ୍ୱ ଦେଉଛନ୍ତି । ଏକ ମିଶନ ଢାଞ୍ଚାରେ ଅନେକ ଆତ୍ମନିଯୁକ୍ତି କାର୍ଯ୍ୟକ୍ରମ କାର୍ଯ୍ୟକାରୀ ହେଉଛି । ୨୦୦୬ ମସିହାରୁ ରାଜ୍ୟରେ ପ୍ରତିଷ୍ଠିତ ହୋଇଥିବା ରାଜ୍ୟ ନିଯୁକ୍ତି ମିଶନ ଉପରୋକ୍ତ ଲକ୍ଷ୍ୟଧାର୍ଯ୍ୟ ଅନୁସାରେ ବିଭିନ୍ନ ବିଭାଗ ମାଧ୍ୟମରେ କାର୍ଯ୍ୟକାରୀ ହେଉଥିବା କାର୍ଯ୍ୟକ୍ରମଗୁଡ଼ିକୁ ତଦାରଖ କରୁଛି ।

ମୋ' ସରକାର ରାଜ୍ୟର ସମସ୍ତ ୩୧୪ଟି ବ୍ଲକରେ ସମନ୍ୱିତ ଶିଶୁ ବିକାଶ ଯୋଜନା (ଆଇ.ସି.ଡି.ଏସ୍.) କାର୍ଯ୍ୟକ୍ରମକୁ କାର୍ଯ୍ୟକାରୀ କରିଛନ୍ତି । ରାଜ୍ୟରେ ଗଠିତ ହୋଇଥିବା ମୋଟ ୪୧,୬୯୭ଟି ଅଙ୍ଗନବାଡ଼ି କେନ୍ଦ୍ର କେତେକ ନିର୍ଦ୍ଦିଷ୍ଟ ସେବା ଯଥା- ୬ ବର୍ଷ ବୟସରୁ କମ୍ ୪୨.୦୨ ଲକ୍ଷ ପିଲା ଏବଂ ୭.୮୪ ଲକ୍ଷ ଗର୍ଭବତୀ ମହିଳା ଓ ସ୍ତନ୍ୟପାନ କରାଉଥିବା ମା'ମାନଙ୍କୁ ସହାୟକ ସୁଷମଖାଦ୍ୟ ଯୋଗାଉଛନ୍ତି ।

ନିଶ୍ଚିତ ଶିକ୍ଷା ଯୋଜନା (ଇ.ଜି.ଏସ୍.)/ବିକଳ୍ପ ଏବଂ ଅଭିନବ ଶିକ୍ଷା (ଏ.ଆଇ.ଇ.) କେନ୍ଦ୍ର ସମେତ ସରକାରୀ ସାହାଯ୍ୟପ୍ରାପ୍ତ ପ୍ରାଥମିକ ବିଦ୍ୟାଳୟଗୁଡ଼ିକରେ ପ୍ରଥମରୁ ପଞ୍ଚମ ଶ୍ରେଣୀ ମଧ୍ୟରେ ଅଧ୍ୟୟନ କରୁଥିବା ୪୨.୩୧ ଲକ୍ଷ ଛାତ୍ରଛାତ୍ରୀଙ୍କୁ ମଧ୍ୟାହ୍ନ ଭୋଜନ ଯୋଗାଇ ଦିଆଯାଉଛି । ରାଜ୍ୟର ୨୨ଟି ଜିଲ୍ଲାରେ ଚିହ୍ନଟ କରାଯାଇଥିବା ୧୭୨ ଶିକ୍ଷା କ୍ଷେତ୍ରରେ ଅନୁନ୍ନତ ବ୍ଲକରେ ୬ଷ୍ଠରୁ ୮ମ ଶ୍ରେଣୀ ମଧ୍ୟରେ ୫.୨୬ ଲକ୍ଷ ଛାତ୍ରଛାତ୍ରୀଙ୍କୁ ମଧ୍ୟାହ୍ନ ଭୋଜନ ପ୍ରଦାନ କରାଯାଉଛି ।

ବି.ପି.ଏଲ୍. ତାଲିକାରେ ଅନ୍ତର୍ଭୁକ୍ତ ଥିବା ଦୁଇ ଲକ୍ଷ ଅସହାୟ ବୃଦ୍ଧ ଓ ଦୁଃସ୍ଥ ବ୍ୟକ୍ତିମାନଙ୍କୁ ବର୍ଷସାରା ପ୍ରତିଦିନ ରନ୍ଧନଖାଦ୍ୟ ଯୋଗାଇ ଦିଆଯାଉଛି । ଜରୁରୀ ଖାଦ୍ୟ ପ୍ରଦାନ କାର୍ଯ୍ୟକ୍ରମ ଅନୁସାରେ ସମସ୍ତ ଆଠଟି କେ.ବି.କେ. ଜିଲ୍ଲାର ଅଙ୍ଗନବାଡ଼ି କେନ୍ଦ୍ର ଜରିଆରେ କାର୍ଯ୍ୟକାରୀ କରାଯାଉଛି ।

୨୦୦୭ ମସିହା ନଭେମ୍ବର ମାସ ସୁଦ୍ଧା ମିଶନ ଶକ୍ତି କାର୍ଯ୍ୟକ୍ରମ ଜରିଆରେ ୩ ଲକ୍ଷ ମହିଳା ସ୍ୱୟଂ ସହାୟକ ଗୋଷ୍ଠୀ ଗଠନ କରାଯାଇ ସେମାନଙ୍କୁ ୭୧୦.୭୩ କୋଟି ଟଙ୍କାରୁ ଅଧିକ ଋଣ ଯୋଗାଇ ଦିଆଯାଇଛି । ମିଶନ ଶକ୍ତି ଜରିଆରେ ଗୋଷ୍ଠୀ ଗଠନ, ସାମର୍ଥ୍ୟ ବୃଦ୍ଧି, ବଜାର ସୁବିଧା ଓ ବୀମା ବ୍ୟବସ୍ଥାର ସୁଦୃଢ଼ୀକରଣ ଉପରେ ଗୁରୁତ୍ୱ ଦିଆଯାଉଛି ।

ରାଜ୍ୟ ବାର୍ଦ୍ଧକ୍ୟଭତ୍ତା ଯୋଜନା ଓ ରାଜ୍ୟ ଅକ୍ଷମଭତ୍ତା ଯୋଜନାକୁ ସାମିଲ କରାଯାଇ ମଧୁବାବୁ ପେନ୍‌ସନ ଯୋଜନାର ଶୁଭାରମ୍ଭ କରାଯାଇଛି । ଏହି ପେନ୍‌ସନ୍ ସୁବିଧାରେ ଏଡ୍‌ସ ଆକ୍ରାନ୍ତ ବ୍ୟକ୍ତିମାନଙ୍କୁ ମଧ୍ୟ ଅନ୍ତର୍ଭୁକ୍ତ କରାଯାଇଛି । ସଂପ୍ରତି ଏହି ଯୋଜନାରେ ୯ ଲକ୍ଷ ବ୍ୟକ୍ତି ଉପକୃତ ହେଉଛନ୍ତି । ୨୦୦୮ ମସିହା ଜାନୁଆରୀ ସୁଦ୍ଧା ଏହି ମଧୁବାବୁ ପେନ୍‌ସନ୍ ଯୋଜନାରେ ଆହୁରି ଅଧିକ ୩ ଲକ୍ଷ ଅତିରିକ୍ତ ହିତାଧିକାରୀ ସାମିଲ ହେବେ ।

ରାଜ୍ୟରେ ଭିନ୍ନକ୍ଷମ ବ୍ୟକ୍ତିମାନଙ୍କ ପାଇଁ ଉଦ୍ଦିଷ୍ଟ ସମସ୍ତ ଯୋଜନାକୁ ଏକାସାଙ୍ଗରେ କାର୍ଯ୍ୟକାରୀ କରିବା ଉଦ୍ଦେଶ୍ୟରେ ପ୍ରତି ବ୍ଲକ୍‌ରେ ଆତ୍ମନିଯୁକ୍ତି ପରାମର୍ଶ ମେଳା ଆୟୋଜନ କରାଯାଉଛି ।

ମୋ' ସରକାର ରାଜ୍ୟର ଉଚ୍ଚ ସାଂସ୍କୃତିକ ପରମ୍ପରା, ବେଳାଭୂମି, ହ୍ରଦ, ଜଙ୍ଗଲ ଏବଂ ବନ୍ୟଜନ୍ତୁ ପ୍ରଭୃତି ପ୍ରାକୃତିକ ସମ୍ପଦ ସକାଶେ ପର୍ଯ୍ୟଟକମାନଙ୍କୁ ରାଜ୍ୟକୁ ଆକର୍ଷଣ କରିବା ଉପରେ ଗୁରୁତ୍ୱ ପ୍ରଦାନ କରୁଛନ୍ତି । ପର୍ଯ୍ୟଟକମାନଙ୍କୁ ଆକର୍ଷିତ କରିବା ପାଇଁ ମୋ' ସରକାର ପ୍ରଚାରମୂଳକ ପଦକ୍ଷେପକୁ ଗୁରୁତ୍ୱ ଦେଇ ବୈଦେଶିକ ଭାଷାରେ ବିଭିନ୍ନ ପ୍ରକାଶନ, ଦୃଶ୍ୟଶ୍ରାବ୍ୟ ପ୍ରସ୍ତୁତ, ମୁଦ୍ରଣ ଓ ସମ୍ବାଦ ସରବରାହ ମାଧ୍ୟମରେ ବିଜ୍ଞାପନ ପ୍ରଦାନ ପ୍ରଭୃତି କାର୍ଯ୍ୟ ହାତକୁ ନେଇଛନ୍ତି ।

ମୋ' ସରକାର ରାଜ୍ୟରେ ଇସ୍ପାତ କାରଖାନା ପ୍ରତିଷ୍ଠା କରିବା ଦିଗରେ ପ୍ରାୟ ୧,୯୭,୦୨୫.୦୦ କୋଟି ଟଙ୍କା ବିନିଯୋଗରେ ପ୍ରାୟ ୭୪.୬୬ ମିଲିଅନ ଟନ୍ ଇସ୍ପାତ ଉତ୍ପାଦନ ପାଇଁ ସମୁଦାୟ ୪୯ଟି ବୁଝାମଣାପତ୍ର ସ୍ୱାକ୍ଷର କରିଛନ୍ତି । ଏଥିରେ ୪.୦୦ ମିଲିୟନ ଟନ୍ କ୍ଷମତା ସମ୍ପନ୍ନ ଏକ ପେଲେଟିସେସନ କାରଖାନା ଅନ୍ତର୍ଭୁକ୍ତ । ସ୍ୱାକ୍ଷରିତ ହୋଇଥିବା ୪୯ଟି ବୁଝାମଣାପତ୍ର ମଧ୍ୟରୁ ଅଦ୍ୟାବଧି ୨୬ଟି କମ୍ପାନୀ ଆଂଶିକ ଭାବେ ଉତ୍ପାଦନ ଆରମ୍ଭ କରି ବାର୍ଷିକ ୩.୩୨ ମେଟ୍ରିକ ଟନ୍ ଇସ୍ପାତ, ୩.୯୬ ମେଟ୍ରିକ ଟନ୍ ସ୍ପଞ୍ଜ ଆଇରନ, ୦.୪୫ ମେଟ୍ରିକ ଟନ୍ ପିଗ୍ ଆଇରନ୍ ଏବଂ ୦.୧୫ ମେଟ୍ରିକ୍ ଟନ୍ ଫେରୋକ୍ରୋମ ଉତ୍ପାଦନ କରୁଛନ୍ତି । ଏହିସବୁ ଶିଳ୍ପାନୁଷ୍ଠାନ ମାଧ୍ୟମରେ ୧୨,୩୪୫ ଜଣ ପ୍ରତ୍ୟକ୍ଷ ଭାବେ ଏବଂ ୨୫,୩୫୯ ଜଣ ପରୋକ୍ଷ ଭାବେ ନିଯୁକ୍ତି ସୁଯୋଗ ପାଇଛନ୍ତି । ଏହି ଶିଳ୍ପାନୁଷ୍ଠାନଗୁଡ଼ିକ ପ୍ରତିଷ୍ଠା ପାଇଁ ଅଦ୍ୟାବଧି ବିଭିନ୍ନ ପୁଞ୍ଜି ନିବେଶକାରୀମାନଙ୍କ ଦ୍ୱାରା ମୋଟ ୧୬,୫୬୦.୦୦ କୋଟି ଟଙ୍କା ବିନିଯୋଗ ହୋଇଛି ।

ରାଜ୍ୟର ଅଣ ଟିକସ ରାଜସ୍ୱ ବୃଦ୍ଧି କ୍ଷେତ୍ରରେ ଖଣିଜ ରୟାଲଟି ପ୍ରମୁଖ ଭୂମିକା ଗ୍ରହଣ କରିଥାଏ । ଭାରତ ସରକାର ତା.୦୧.୦୮.୦୭ରିଖର ବିଜ୍ଞପ୍ତି ଅନୁଯାୟୀ କୋଇଲା ରୟାଲଟିର ମୂଲ୍ୟକୁ ଟନେଜ୍ ବ୍ୟବସ୍ଥାରୁ ସଂଶୋଧିତ କରି ହାଇବ୍ରିଡ଼ ପ୍ରକ୍ରିୟାରେ ସ୍ଥିରୀକୃତ କରିଛନ୍ତି । ସେ ଯାହାହେଉ, ଏହି ପ୍ରକ୍ରିୟା ପାଇଁ ଦୁଇ ବର୍ଷ ଅତିକ୍ରାନ୍ତ ହୋଇଯାଇଛି । ଏହି ସଂଶୋଧିତ ବ୍ୟବସ୍ଥା ପ୍ରଚଳନ ପାଇଁ ବିଳମ୍ବ ହେଉଥିବାରୁ ମୋ' ସରକାର କେନ୍ଦ୍ର ସରକାରଙ୍କୁ ଉପଯୁକ୍ତ କ୍ଷତିପୂରଣ ପାଇଁ ଦାବୀ କରିଛନ୍ତି । ରୟାଲଟି ବାବଦ ଦେୟ ଅନ୍ୟାନ୍ୟ ଶୁଳ୍କ କର ଇତ୍ୟାଦିରେ ବୁଝାମଣା ବ୍ୟବସ୍ଥାକୁ ଲୋପକରି ସଂପୂର୍ଣ୍ଣ ରୟାଲଟି ପ୍ରାପ୍ତ ଦେୟ ପ୍ରଦାନ ଉପରେ ରାଜ୍ୟ ସରକାର ମଧ ଦାବୀ କରିଛନ୍ତି ।

ନୂତନ ଶିଳ୍ପ ନୀତି-୨୦୦୭ରେ ସନ୍ତୁଳିତ ଶିଳ୍ପ ଅଭିବୃଦ୍ଧି ପାଇଁ ସମସ୍ତ ପ୍ରକାର ବ୍ୟବସ୍ଥା ରହିଛି । ଏଥିରେ ଗୁଣାତ୍ମକ ଆନୁଷ୍ଠାନିକ ସହାୟତା, ଭିତ୍ତିଭୂମି ଉନ୍ନୟନ, ଅଧିକ ପ୍ରୋତ୍ସାହନ ପ୍ୟାକେଜ୍, ମାନବ ସମ୍ବଳ ବୃଦ୍ଧି ଏବଂ ସମୟାନୁଯାୟୀ ଏବଂ ଦାୟିତ୍ୱବାନ ଭାବରେ ଅଭିଯୋଗର ପ୍ରତିକାର ପାଇଁ ଅଧିକ ଗୁରୁତ୍ୱାରୋପ କରାଯାଇଛି । ୨୦୦୭ ବର୍ଷରେ ରାଜ୍ୟ ସରକାର ମଟରଯାନ ଯନ୍ତ୍ରପାତି ଉତ୍ପାଦନକାରୀ ସଂସ୍ଥା, ଜାହାଜ ନିର୍ମାଣ ସଂସ୍ଥା ଏବଂ ବିରଳ ମୃତ୍ତିକା ଆଧାରିତ ଧାତୁ ସଂସ୍ଥା ପରି ପର୍ଯ୍ୟାପ୍ତ ନିଯୁକ୍ତି ସୁଯୋଗ ସୃଷ୍ଟିକାରୀ ଏବଂ ମୂଲ୍ୟଯୁକ୍ତ କ୍ଷେତ୍ରଗୁଡ଼ିକର ଅଭିବୃଦ୍ଧି ପାଇଁ ସମର୍ଥ ହୋଇପାରିଛନ୍ତି । ଚୌଦ୍ୱାରଠାରେ ଆର.ଏସ୍.ବି. ଗ୍ରୁପ୍ ଦ୍ୱାରା ଏକ ମଟରଯାନ ଯନ୍ତ୍ରପାତି କାରଖାନା ପ୍ରତିଷ୍ଠା ପାଇଁ ପ୍ରସ୍ତୁତି ଚାଲିଛି । ଆପିଜେ ସୁରେନ୍ଦ୍ର ଗ୍ରୁପ୍ ଦ୍ୱାରା ଭଦ୍ରକ ଜିଲ୍ଲାରେ ଏକ ବୃହତ୍ ଜାହାଜ ନିର୍ମାଣ ୟାର୍ଡ଼ର ବିକାଶ  କାର୍ଯ୍ୟ ଆରମ୍ଭ କରାଯାଇଛି । ଗଞ୍ଜାମ ଜିଲ୍ଲାରେ ସରାଫ୍ ଗ୍ରୁପ୍ ଦ୍ୱାରା ଟିଟାନିୟମ ଆଧାରିତ ମେଟାଲ କାରଖାନାର ବିକାଶ କରାଯାଉଛି । ରାଜ୍ୟର ୩୧୪ ଗୋଟି ବ୍ଲକରେ ଅନ୍ୟୂନପକ୍ଷେ ଗୋଟିଏ ଲେଖାଏଁ ଆଇ.ଟି.ଆଇ. ସ୍ଥାପନ ଲକ୍ଷ୍ୟରେ ମୋ' ସରକାର ଆଇ.ଟି.ଆଇ.ଏସ୍, ପଲିଟେକ୍ନିକ୍ ଏବଂ ଅନ୍ୟାନ୍ୟ ଧନ୍ଦାମୂଳକ ଶିକ୍ଷା କ୍ଷେତ୍ରରେ ଏକ ମହତ୍ୱପୂର୍ଣ୍ଣ ସଂସ୍କାର କାର୍ଯ୍ୟକ୍ରମ ଆରମ୍ଭ କରିଛନ୍ତି । ଭିତ୍ତିଭୂମିକ ଅଭିବୃଦ୍ଧି, ପ୍ରଶିକ୍ଷଣ ସୁବିଧା ପରୀକ୍ଷାଗାର, ପାଠ୍ୟକ୍ରମରେ ଉନ୍ନତି ଆଣିବା ସହିତ ସ୍ଥାନୀୟ ଯୁବଗୋଷ୍ଠୀମାନଙ୍କର ସାମର୍ଥ୍ୟ ଏବଂ ବୈଷୟିକ କୌଶଳ ବୃଦ୍ଧି ଘଟାଇବା ସହ ସେମାନଙ୍କୁ ପୂର୍ଣ୍ଣମାତ୍ରାରେ ବ୍ୟବହାରଯୋଗୀ କରିବା ଉଦ୍ଦେଶ୍ୟରେ ଗଢ଼ି ଉଠୁଥିବା ଶିଳ୍ପ ପ୍ରକଳ୍ପଗୁଡ଼ିକ ସ୍ଥାନୀୟ ଆଇ.ଟି.ଆଇ.ଗୁଡ଼ିକୁ ସହାୟତା ପ୍ରଦାନ ପାଇଁ ଆଗ୍ରହାନ୍ୱିତ ।

ହସ୍ତତନ୍ତ ଓ ବୟନଶିଳ୍ପ, ହସ୍ତକଳା ଓ କୁଟୀର ଶିଳ୍ପ ଏବଂ ଆନୁଷଙ୍ଗିକ ଶିଳ୍ପକ୍ଷେତ୍ରରେ ଥିବା କ୍ଷୁଦ୍ର ଓ ମଧ୍ୟମ ଧରଣର ଉଦ୍ୟୋଗର ବିକାଶ ପାଇଁ ସାମୂହିକ ପଦକ୍ଷେପ ସମୟକ୍ରମେ ଗ୍ରହଣ କରାଯାଉଛି । ଅତି କ୍ଷୁଦ୍ର, କ୍ଷୁଦ୍ର ଓ ମଧ୍ୟମ ଉଦ୍ୟୋଗଗୁଡ଼ିକର ପରିସରକୁ ବ୍ୟାପକ କରିବା ନିମନ୍ତେ ମୋ' ସରକାର ଏକ ପ୍ରସ୍ତାବିତ ନୀତି ଆଧାରରେ କାର୍ଯ୍ୟ କରୁଛନ୍ତି । ଏହା ମାଧ୍ୟମରେ କ୍ଷୁଦ୍ର ଶିଳ୍ପଗୁଡ଼ିକୁ ସହାୟତା କରିବା ଦିଗରେ ଉତ୍ସର୍ଗୀକୃତ ତଥା ଫଳପ୍ରଦ ପଦକ୍ଷେପ ନିଆଯିବ ।

ଆଠ ଗୋଟି ଗୁରୁତ୍ୱପୂର୍ଣ୍ଣ ଉଦ୍ୟୋଗ କ୍ଷେତ୍ରରେ ଉତ୍ତମ ଉଦ୍ୟୋଗ ପରିଚାଳନା ପଦ୍ଧତି ଅନୁସରଣ କରିବା ପାଇଁ ପଦକ୍ଷେପ ଗ୍ରହଣ କରାଯାଇଛି । ଓଡ଼ିଶା ଉଠାଜଳସେଚନ ନିଗମ, ଓଡ଼ିଶା ରାଜ୍ୟ ଅର୍ଥ ନିଗମ, ଓଡ଼ିଶା ରାଜ୍ୟ ସଡ଼କ ପରିବହନ ନିଗମ ଓ ଓଡ଼ିଶା ବନ ଉନ୍ନୟନ ନିଗମର ପୁନର୍ଗଠନ ଯୋଜନା ମୋ' ସରକାର କାର୍ଯ୍ୟକାରୀ କରୁଛନ୍ତି । ଏହାବ୍ୟତୀତ ୨୦୦୭-୦୮ ଆର୍ଥିକ ବର୍ଷରେ ଓଡ଼ିଶା ରାଜ୍ୟ ବିହନ ନିଗମ, ଓଡ଼ିଶା ରାଜ୍ୟ ଯୋଗାଣ ନିଗମ, ଓଡ଼ିଶା ସେତୁ ନିର୍ମାଣ ନିଗମ ଏବଂ ଓଡ଼ିଶା ନିର୍ମାଣ ନିଗମକୁ ପୁନର୍ଗଠନ ନିମନ୍ତେ ଚିହ୍ନଟ କରାଯାଇଛି ।

ଓଡ଼ିଶାରେ ଉନ୍ନତମାନର ହସ୍ତତନ୍ତ ଓ ହସ୍ତଶିଳ୍ପର ଏକ ସମୃଦ୍ଧ ପରମ୍ପରା ରହିଛି । ହସ୍ତତନ୍ତ ଉତ୍ପାଦନ କ୍ଷେତ୍ରରେ ଦେଶର ପ୍ରମୁଖ ରାଜ୍ୟମାନଙ୍କ ଭିତରୁ ଓଡ଼ିଶା ଅନ୍ୟତମ । ଏହି କ୍ଷେତ୍ରରେ ୪ ଲକ୍ଷରୁ ଅଧିକ ବୁଣାକାର ଓ ଦେଢ଼ଲକ୍ଷରୁ ଅଧିକ କାରିଗର ନିଯୁକ୍ତିର ସୁବିଧା ପାଇଛନ୍ତି । ବର୍ତ୍ତମାନ ରାଜ୍ୟର ବୁଣାକାରମାନଙ୍କ ସୁବିଧା ପାଇଁ ଏକ ସ୍ୱତନ୍ତ୍ର ପ୍ୟାକେଜ୍ କାର୍ଯ୍ୟକାରୀ ହେଉଛି । ମୋ' ସରକାର ରାଜ୍ୟର ବୁଣାକାରମାନଙ୍କ ଉନ୍ନତି ପାଇଁ ଏକ ପ୍ୟାକେଜ୍ ପ୍ରସ୍ତୁତ କରିଛନ୍ତି । କର୍ମକୁଶଳୀର ବୃଦ୍ଧି, ସୂତା ବ୍ୟାଙ୍କ ପ୍ରତିଷ୍ଠା ଓ ଭିତ୍ତିଭୂମିର ବିକାଶ ପାଇଁ ହସ୍ତତନ୍ତ କ୍ଷେତ୍ରରେ ଅଧିକ ପାଣ୍ଠି ଯୋଗାଣ ସହିତ ଆପାରେଲ ଟ୍ରେନିଙ୍ଗ ଆଣ୍ଡ୍ ଡିଜାଇନିଂ ସେଣ୍ଟର ସହିତ ସଂଯୋଗ ସ୍ଥାପନ କରିବା ପାଇଁ ଯତ୍ନ ନିଆଯାଇଛି । ରେଶମ, ଟସର ଓ

ଏଣ୍ଡିସୂତା ଉତ୍ପାଦନ ପାଇଁ ହସ୍ତତନ୍ତ ସହିତ ରେଶମ ଉତ୍ପାଦନର ସଂଯୋଗ ସ୍ଥାପନ ନିମନ୍ତେ ବଳିଷ୍ଠ ପଦକ୍ଷେପ ଗ୍ରହଣ କରାଯାଇଛି । ସେହିପରି ହସ୍ତଶିଳ୍ପ ପାଇଁ ଏକ ସ୍ୱତନ୍ତ୍ର ପ୍ୟାକେଜ୍ ମଧ୍ୟ ଘୋଷଣା କରାଯାଇଛି । ଏଥିରେ କର୍ମକୁଶଳୀର ଅଭିବୃଦ୍ଧି, ନମୂନା ପ୍ରସ୍ତୁତିରେ ସାହାଯ୍ୟ, କାରିଗରମାନଙ୍କ ଶିକ୍ଷଣୀୟ ପରିଭ୍ରମଣର ସୁବିଧା ଓ ହସ୍ତଶିଳ୍ପୀମାନଙ୍କ ପାଇଁ କଲ୍ୟାଣପାଣ୍ଠିର ବ୍ୟବସ୍ଥା ପ୍ରଭୃତି ରଖାଯାଇଛି ।

ମୋ’ ସରକାର ବର୍ତ୍ତମାନ ସରକାରୀ ପ୍ରକ୍ରିୟାରେ ନାଗରିକ କୈନ୍ଦ୍ରିକ ଇ-ଗଭର୍ଣ୍ଣାନ୍ସ ସେବା, ବିନିଯୋଗ ସୁବିଧା ସୁଯୋଗ ଓ ସୂଚନା ପ୍ରଯୁକ୍ତି ବିଦ୍ୟା ପ୍ରୟୋଗ ପାଇଁ ଅନୁକୂଳ ବାତାବରଣ ସୃଷ୍ଟି ପରି ୩ ଗୋଟି ଗୁରୁତ୍ୱପୂର୍ଣ୍ଣ କ୍ଷେତ୍ରକୁ ପ୍ରାଥମିକତା ଦେଇ ସରକାରୀ କର୍ମଚାରୀମାନଙ୍କୁ ପ୍ରଶିକ୍ଷଣ ତଥା ପରିବର୍ତ୍ତିତ ପରିଚାଳନା ପଦ୍ଧତି ଶିକ୍ଷା ଦେଉଛନ୍ତି ।

ଜାତୀୟ ଇ-ଗଭର୍ଣ୍ଣାନ୍ସ ଯୋଜନା ଅନୁଯାୟୀ ୩୦ ଗୋଟି ଜିଲ୍ଲାରେ ୫୮ଟି ଉପଖଣ୍ଡ, ୧୭୧ଟି ତହସିଲ ଓ ୩୧୪ଟି ବ୍ଲକକୁ ରାଜ୍ୟ ସଦରମହକୁମା ସହିତ ସଂଯୋଗ କରାଯିବା ଲକ୍ଷ୍ୟରେ ରାଜ୍ୟରେ ଏକ ବ୍ୟାପକ କାର୍ଯ୍ୟକ୍ରମ ଚାଲୁ ରହିଛି । ଗ୍ରାମାଞ୍ଚଳ ଲୋକମାନଙ୍କୁ ଗ୍ରାମପଞ୍ଚାୟତ ସ୍ତରରେ ନାଗରିକ କୈନ୍ଦ୍ରିକ ସରକାରୀ ସେବା ଉପଲବ୍ଧ ହେବା ଉଦ୍ଦେଶ୍ୟରେ ରାଜ୍ୟରେ ସୂଚନା କିଓସ୍କ ସହିତ ୮୫୫୮ଟି ସାଧାରଣ ସେବା କେନ୍ଦ୍ର ପ୍ରତିଷ୍ଠା କରାଯାଉଛି । ଜିଲ୍ଲାସ୍ତରରେ ଇ-ଗଭର୍ଣ୍ଣାନ୍ସ କାର୍ଯ୍ୟକ୍ରମକୁ ପରିଚାଳନା କରିବା ନିମନ୍ତେ ଜିଲ୍ଲା ସୂଚନା ସେବା ପରିଷଦଗୁଡ଼ିକ ଗଠନ କରାଯାଇଛି । ୱେବ୍‌ସାଇଟ୍ ମାଧ୍ୟମରେ ଟେଣ୍ଡର ଓ କ୍ରୟ ପ୍ରକ୍ରିୟାକୁ ଆଗୁଆ ପ୍ରକଳ୍ପ ଭାବେ ଆରମ୍ଭ କରାଯାଇଛି ।

ମୋ’ ସରକାର ବିଭିନ୍ନ ସରକାରୀ ବିଭାଗଗୁଡ଼ିକରେ ବହୁବିଧ ସୂଚନା ପ୍ରଯୁକ୍ତି ପଦକ୍ଷେପ ସଫଳତାର ସହିତ ଆରମ୍ଭ କରିଛନ୍ତି । ଏହା ମାଧ୍ୟମରେ ବିଦ୍ୟାଳୟ ଓ ଗଣଶିକ୍ଷା ବିଭାଗର ଇ-ଶିଶୁ ପ୍ରକଳ୍ପ ଅନ୍ୟତମ । ଏହି ପ୍ରକଳ୍ପ ‘ପଞ୍ଚମ ଭାରତୀୟ ପ୍ରଯୁକ୍ତି ଉତ୍କର୍ଷତା ପୁରସ୍କାର’ ହାସଲ କରିବା ସଂଗେସଂଗେ ୨୦୦୭ ମସିହାରେ ଅନୁଷ୍ଠିତ ‘ଦଶମ ଜାତୀୟ ଇ-ଗଭର୍ଣ୍ଣାନ୍ସ ସମ୍ମିଳନୀ’ରେ ସର୍ବଶ୍ରେଷ୍ଠ ସରକାରୀ ୱେବ୍‌ସାଇଟ୍ ଭାବେ ବିବେଚିତ ହୋଇଥିଲା । ଓଡ଼ିଶାର ୩୧୪ ଗୋଟି ବ୍ଲକ୍ ଓ ସମସ୍ତ ସରକାରୀ ବିଭାଗଗୁଡ଼ିକରେ ବେତନ ନାମକ ଏକ ଦରମା ସୂଚନା ପଦ୍ଧତି କାର୍ଯ୍ୟକାରୀ କରାଯାଇଛି । ରାଜ୍ୟରେ ଶିଶୁ, ମହିଳା, ବୃଦ୍ଧ, ଅସହାୟ ଓ ପରିତ୍ୟକ୍ତଙ୍କ କଲ୍ୟାଣ ସକାଶେ ମହିଳା ଓ ଶିଶୁ ବିକାଶ ବିଭାଗ ଦ୍ୱାରା ଇ-ପ୍ରଗତି ପ୍ରକଳ୍ପ କାର୍ଯ୍ୟକାରୀ କରାଯାଉଛି । ରାଜ୍ୟର ୧୦୩ ଗୋଟି ପୌରାଞ୍ଚଳରେ ବ୍ୟାପକ ଇ-ଗଭର୍ଣ୍ଣାନ୍ସ ପଦକ୍ଷେପ ଗ୍ରହଣ କରାଯାଉଛି । ରାଜ୍ୟରେ ସମସ୍ତ ରାଜସ୍ୱ ମାନଚିତ୍ରଗୁଡ଼ିକର ଡିଜିଟାଇଜେସନ୍ ନିମନ୍ତେ ଏକ ବ୍ୟାପକ କାର୍ଯ୍ୟକ୍ରମ ଗ୍ରହଣ କରାଯାଇଛି ।

ସମାଜ ପ୍ରତି ଜୈବ ପ୍ରଯୁକ୍ତିର ବହୁବିଧ ଉପକାରିତାକୁ ବିଚାରକୁ ନେଇ ମୋ’ ସରକାର ରାଜ୍ୟରେ ଏକ ଜୈବ ପ୍ରଯୁକ୍ତି ପାର୍କ ପ୍ରତିଷ୍ଠା ନିମନ୍ତେ ପଦକ୍ଷେପ ଗ୍ରହଣ କରିଛନ୍ତି । ସରକାରୀ ଘରୋଇ ଅଂଶୀଦାରୀ ସହଯୋଗରେ ଭୁବନେଶ୍ୱର ତହସିଲ ଅନ୍ତର୍ଗତ ଅନ୍ଧାରୁଆ ମୌଜାର ୬୫ ଏକର ଜମିରେ ଏକ ଜୈବପ୍ରଯୁକ୍ତି ଭେଷଜ ଆଇ.ଟି. ପାର୍କର ବିକାଶ କାର୍ଯ୍ୟ ଚାଲୁ ରହିଛି । ପ୍ରଥମ ପର୍ଯ୍ୟାୟରେ ଏହି ପାର୍କ ପରିସରରେ ୧୦ ଏକର ଜମି ଉପରେ ଏକ ଜୈବପ୍ରଯୁକ୍ତି କୃତ୍ରିମ ତାପ ସଂଚାର କେନ୍ଦ୍ର ଖୋଲାଯିବ । ଦ୍ୱିତୀୟ ପର୍ଯ୍ୟାୟରେ ବିଜ୍ଞାନ ଓ କାରିଗରୀ କୌଶଳ ବିଭାଗକୁ ଡେରାସ ଫାର୍ମ ଅଞ୍ଚଳରେ ଦିଆଯାଇଥିବା ୨୦୦ ଏକର ଜମିରେ ଏକ ଜୈବପ୍ରଯୁକ୍ତି ଶିଳ୍ପ ପ୍ରତିଷ୍ଠା କରାଯିବ । ମୋ’ ସରକାର ରାଜ୍ୟରେ ଜୈବପ୍ରଯୁକ୍ତି ଶିଳ୍ପ ସ୍ଥାପନ ପାଇଁ ପୁଞ୍ଜି ନିବେଶକାରୀ/ଉଦ୍ୟୋଗୀମାନଙ୍କୁ ଆକୃଷ୍ଟ କରିବା ନିମନ୍ତେ ଖୁବ୍‌ଶୀଘ୍ର ଏକ ଜୈବପ୍ରଯୁକ୍ତି ଶିଳ୍ପ ନୀତି ପ୍ରଣୟନ କରିବାକୁ ଯାଉଛନ୍ତି ।

ଓଡ଼ିଶାର ଗ୍ରାମବାସୀମାନଙ୍କୁ ପାନୀୟ ଜଳ ଓ ପରିମଳ ସୁବିଧା ଯୋଗାଇ ଦେବା ଉପରେ ମୋ’ ସରକାର ଗୁରୁତ୍ୱ ଦେଉଛନ୍ତି । ଏଥିପାଇଁ ସମୁଦାୟ ୨,୫୫,୭୬୬ଟି ହସ୍ତଚାଳିତ ନଳକୂପ, ୮୨୯୪ଟି ପରିମଳ କୂପ ଓ ୧୨୮୬ଟି ପାଇପ୍ ଯୋଗେ ଜଳଯୋଗାଣ ପ୍ରକଳ୍ପ କାର୍ଯ୍ୟକାରୀ କରାଯାଇଛି । ୨୦୦୭-୦୮ ମସିହା ଡିସେମ୍ବର ମାସ ସୁଦ୍ଧା ୬୦୪୨ଟି ହସ୍ତଚାଳିତ ନଳକୂପ, ୩୪୦ଟି ପରିମଳ କୂପ ଓ ୧୬୦ଟି ପାଇପ୍ ଯୋଗେ ଜଳ ଯୋଗାଣ ପ୍ରକଳ୍ପ କାର୍ଯ୍ୟ ସଂପୂର୍ଣ୍ଣ ହୋଇଛି । ୨୦୦୭-୦୮ ମସିହାରେ ଜଳଉତ୍ସରୁ ୧୫୪୪ଟି ପ୍ରାଥମିକ ବିଦ୍ୟାଳୟ ଓ ଉଚ୍ଚବିଦ୍ୟାଳୟକୁ ପରିଷ୍କାର ପାନୀୟ ଜଳ ଯୋଗାଇ ଦିଆଯିବାର ଲକ୍ଷ୍ୟଧାର୍ଯ୍ୟ ହୋଇଥିବାବେଳେ ୨୦୦୭ ଡିସେମ୍ବର ଶେଷସୁଦ୍ଧା ୬୦୦ଟିର କାର୍ଯ୍ୟ ସଂପୂର୍ଣ୍ଣ ହୋଇଛି । ସ୍ୱଜଳଧାରା ଯୋଜନାରେ ଗୋଷ୍ଠୀମାନଙ୍କ ସହାୟତାରେ ୧୧୨୫ଟି ପ୍ରକଳ୍ପ କାର୍ଯ୍ୟ ସଂପୂର୍ଣ୍ଣ କରାଯାଇଛି ।

ରାଜ୍ୟର ୩୦ଟି ଜିଲ୍ଲାର ସମସ୍ତ ଗାଁ ଘର, ବିଦ୍ୟାଳୟ ଓ ଅଙ୍ଗନବାଡ଼ିଗୁଡ଼ିକରେ ପରିମଳର ସୁବିଧା ଯୋଗାଇ ଦିଆଯିବା ପାଇଁ ମୋ’ ସରକାର ସଂପୂର୍ଣ୍ଣ ପରିମଳ ଅଭିଯାନ ହାତକୁ ନେଇଛନ୍ତି ।

ରାଜ୍ୟର ଗ୍ରାମାଞ୍ଚଳଗୁଡ଼ିକର ଉନ୍ନତି ଆଣିବା ନିମନ୍ତେ ଯୋଗାଯୋଗ ବ୍ୟବସ୍ଥା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ପ୍ରତିଗ୍ରାମକୁ ରାସ୍ତା ସଂଯୋଗ କରିବା ଉପରେ ମୋ’ ସରକାର ପ୍ରାଥମିକତା ଦେଉଛନ୍ତି । ପ୍ରଧାନମନ୍ତ୍ରୀ ଗ୍ରାମ୍ୟ ସଡ଼କ ଯୋଜନାରେ ୨୦୦୭ ମସିହା ମାର୍ଚ୍ଚ ମାସ ସୁଦ୍ଧା ୬୬୩୬.୨୪

କିଲୋମିଟର ସବୁଦିନିଆ ରାସ୍ତା ନିର୍ମାଣ କରାଯାଇଛି ଯଦ୍ଦ୍ୱାରାକି ୨୬୦୪ ଗୋଟି ରାସ୍ତା ନଥିବା ଗ୍ରାମକୁ ରାସ୍ତା ଦ୍ୱାରା ସଂଯୋଗ କରାଯାଇପାରିଛି । ୨୦୦୮ ମସିହା ମାର୍ଚ୍ଚ ମାସ ସୁଦ୍ଧା ୩,୧୨୪ କିଲୋମିଟର ରାସ୍ତା ନିର୍ମାଣର ଲକ୍ଷ୍ୟ ଥିଲା । ଏହା ମଧ୍ୟରୁ ୧୧୪୨.୮୮୭ କି.ମି. ରାସ୍ତା ନିର୍ମାଣ କରାଯାଇଛି ଯାହାଫଳରେ କି ୩୬୦୩ଟି ବସତିକୁ ରାସ୍ତା ଦ୍ୱାରା ସଂଯୋଗ କରାଯାଇଛି । ୨୦୦୮-୦୯ ବର୍ଷରେ ପ୍ରଧାନମନ୍ତ୍ରୀ ଗ୍ରାମସଡ଼କ ଯୋଜନାରେ ୩୫୦୦ କି.ମି. ଅତିରିକ୍ତ ରାସ୍ତା ନିର୍ମାଣର ପ୍ରସ୍ତାବ ରହିଛି ।

ଶିଳ୍ପ ତଥା ସାମାଜିକ ଓ ଅର୍ଥନୈତିକ ବିକାଶ ନିମନ୍ତେ ଭିତ୍ତିଭୂମି ସୁଦୃଢ଼ୀକରଣର ଆବଶ୍ୟକତା ରହିଛି । ଏହି ଲକ୍ଷ୍ୟ ହାସଲ ପାଇଁ ମୋ' ସରକାର ନାବାର୍ଡ଼, ଆର୍.ଆଇ.ଡି.ଏଫ୍. ଯୋଜନା, ଭାରତ ସରକାରଙ୍କ ଅର୍ଥନୈତିକ ଗୁରୁତ୍ୱ ଯୋଜନା, କେନ୍ଦ୍ରୀୟ ସଡ଼କ ପାଣ୍ଠି, ଅତିରିକ୍ତ କେନ୍ଦ୍ରୀୟ ସହାୟତା ଓ ସ୍ୱତନ୍ତ୍ର କେନ୍ଦ୍ରୀୟ ସହାୟତା ପ୍ରଭୃତି ତଥା ରାଜ୍ୟର ନିଜସ୍ୱ ସମ୍ବଳରୁ ପାଣ୍ଠି ସଂଗ୍ରହ କରିଚାଲିଛି । ଚରମପନ୍ଥୀ ଉପଦ୍ରବ ଅଞ୍ଚଳରେ ଉତ୍ତମ ଯୋଗାଯୋଗ ବ୍ୟବସ୍ଥାର ଗୁରୁତ୍ୱକୁ ଉପଲବ୍ଧି କରି ମୋ' ସରକାର ମୋଟୁ-ମାଲକାନଗିରିଠାରୁ ଯଶିପୁର-ରାଇରଙ୍ଗପୁର (ବିଜୟୱାଡ଼ା-ରାଞ୍ଚି) ରାସ୍ତା ଯାହାକି ଆଦିବାସୀ ଓ ଚରମପନ୍ଥୀ ଉପଦ୍ରବ ଅଞ୍ଚଳ ମଧ୍ୟଦେଇ ଯାଇଛି, ସେହି ୧୨୧୯ କି.ମି. ଲମ୍ବ ରାସ୍ତାକୁ ୧୨୧୯ କୋଟି ଟଙ୍କା ବ୍ୟୟରେ ନିର୍ମାଣ କରିବାକୁ ଏକ ବୃହତ୍ ପ୍ରକଳ୍ପ ହାତକୁ ନେଇଛନ୍ତି । ଏଥିପାଇଁ ଭାରତ ସରକାରଙ୍କ ବିଭିନ୍ନ ଯୋଜନା ଓ ରାଜ୍ୟ ସରକାରଙ୍କ ନିଜସ୍ୱ ସମ୍ବଳରୁ ଅର୍ଥ ଖର୍ଚ୍ଚ ହେବ । ପ୍ରଥମ ପର୍ଯ୍ୟାୟରେ ୧୨୦ କୋଟି ଟଙ୍କା ବ୍ୟୟରେ ମାଲକାନଗିରିଠାରୁ ଜୟପୁର ପର୍ଯ୍ୟନ୍ତ ୧୦୭ କି.ମି. ରାସ୍ତାର ନିର୍ମାଣ କାର୍ଯ୍ୟ ହାତକୁ ନିଆଯାଇଛି । ବିଶ୍ୱବ୍ୟାଙ୍କର ୯୫୩ କୋଟି ଟଙ୍କା ସହାୟତାରେ ରାଜ୍ୟ ସରକାର ଓଡ଼ିଶା ରାଜ୍ୟ ସଡ଼କ ପ୍ରକଳ୍ପ ଜରିଆରେ ୧୪୩୧ କୋଟି ଟଙ୍କା ବ୍ୟୟରେ ଏକ ବହୁମୁଖୀ ରାସ୍ତା ଭିତ୍ତିଭୂମି ଉନ୍ନୟନ କାର୍ଯ୍ୟ ଯୋଜନା ମଧ୍ୟ ପ୍ରସ୍ତୁତ କରିଛନ୍ତି ।

ଧାମରାଠାରେ ଆନ୍ତର୍ଜାତୀୟ ମାନର ଏକ ବୃହତ୍ ବନ୍ଦର ନିର୍ମାଣ କାର୍ଯ୍ୟ ଆରମ୍ଭ ହୋଇଅଛି । ଗୋପାଳପୁରକୁ ସବୁଦିନିଆ ବନ୍ଦରରେ ପରିଣତ କରିବା ନିମନ୍ତେ ନିର୍ମାଣ କାର୍ଯ୍ୟ ଆଗେଇ ଚାଲିଛି । ବାଲେଶ୍ୱରର ସୁବର୍ଣ୍ଣରେଖା ମୁହାଣ ଓ ଅସ୍ତରଙ୍ଗର ଦେବୀ ମୁହାଣଠାରେ ସବୁଦିନିଆ ବନ୍ଦର ପ୍ରତିଷ୍ଠା ପାଇଁ ଅନେକ ବନ୍ଦର ଉନ୍ନୟନକାରୀ ଆଗ୍ରହ ପ୍ରକାଶ କରିଛନ୍ତି । ଏହିସବୁ ବନ୍ଦରଗୁଡ଼ିକର ଉନ୍ନତି ହେବା ଦ୍ୱାରା ଓଡ଼ିଶା ଉପକୂଳ ଆନ୍ତର୍ଜାତୀୟ ବାଣିଜ୍ୟର ଏକ ପ୍ରମୁଖ କେନ୍ଦ୍ର ହେବ ।

ଶକ୍ତି କ୍ଷେତ୍ରରେ ସଂସ୍କାର ଆଣିବାରେ ଓଡ଼ିଶା ହେଉଛି ପ୍ରଥମ ରାଜ୍ୟ । ପ୍ରାରମ୍ଭିକ ସମସ୍ୟା ସତ୍ତ୍ୱେ, ଶକ୍ତି କ୍ଷେତ୍ରରେ ହୋଇଥିବା ସଂସ୍କାର, ବର୍ତ୍ତମାନ ସକାରାତ୍ମକ ଫଳାଫଳ ପ୍ରଦାନ କରିବା ଆରମ୍ଭ କରିଛି । ଶକ୍ତି କ୍ଷେତ୍ରରେ ରାଜ୍ୟ ସରକାରଙ୍କ ଉପଯୋଗିତା ସରକାରଙ୍କ ବଜେଟ୍ ସହାୟତା ଉପରେ ଆଉ ଅଧିକ ନିର୍ଭରଶୀଳ ନୁହେଁ । ସମଗ୍ର ଦେଶରେ ସର୍ବନିମ୍ନ ବିଦ୍ୟୁତ୍ ଦେୟଧାର୍ଯ୍ୟ ଥିବା ରାଜ୍ୟମାନଙ୍କ ମଧ୍ୟରୁ ଓଡ଼ିଶା ଅନ୍ୟତମ । ୨୦୦୧ ମସିହାଠାରୁ ବିଦ୍ୟୁତ୍ ଉପଭୋକ୍ତାଙ୍କ ଦେୟରେ କୌଣସି ବୃଦ୍ଧି ଘଟିନାହିଁ । ବିଦ୍ୟୁତ୍ କ୍ଷେତ୍ରରେ କ୍ରମାଗତ ଭାବେ ବଳକା ରାଜ୍ୟ ହେବା ସଂଗେସଂଗେ ରାଜ୍ୟରେ ବିଦ୍ୟୁତ୍‌କାଟ ହେଉନାହିଁ । ୨୦୦୬-୦୭ ବର୍ଷରେ ବଳକା ବିଦ୍ୟୁତ୍ ବିକ୍ରୀ କରି ଗ୍ରୀଡ୍‌କୋ ୧୩୪୨ କୋଟି ଟଙ୍କା ଉପାର୍ଜନ କରିବାରେ ସମର୍ଥ ହୋଇଛି । ଚଳିତ ଆର୍ଥିକ ବର୍ଷର ଡିସେମ୍ବର ମାସ ୨୦୦୭ ସୁଦ୍ଧା ଏହା ୧୦୧୦ କୋଟି ଟଙ୍କା ଉପାର୍ଜନ କରିପାରିଛି ।

ବ୍ୟାପକ ଶିଳ୍ପାୟନ ଓ ଗ୍ରାମ୍ୟ ବିଦ୍ୟୁତ୍‌କରଣ ଦୃଷ୍ଟିରୁ ରାଜ୍ୟରେ ବିଦ୍ୟୁତ୍‌ର ଚାହିଦା ଦ୍ରୁତଗତିରେ ବୃଦ୍ଧି ପାଉଛି । ବର୍ଦ୍ଧିତ ଚାହିଦା ପୂରଣ ଓ ବିଦ୍ୟୁତ୍ କ୍ଷେତ୍ରରେ ଏକ ବଳକା ରାଜ୍ୟ ଭାବେ ସ୍ଥିତି ବଜାୟ ରଖିବା ପାଇଁ ମୋ' ସରକାର ରାଜ୍ୟରେ ବିଦ୍ୟୁତ୍ ଉତ୍ପାଦନ ସାମର୍ଥ୍ୟ ବୃଦ୍ଧି ଉପରେ ଗୁରୁତ୍ୱ ପ୍ରଦାନ କରୁଛନ୍ତି । ୧୬,୦୦୦ ମେଗାୱାଟରୁ ଊର୍ଦ୍ଧ୍ୱ ବିଦ୍ୟୁତ୍ ଉତ୍ପାଦନ କରିବା ପାଇଁ ରାଜ୍ୟ ସରକାରଙ୍କ ସହିତ ୧୩ ଗୋଟି ସ୍ୱାଧୀନ ବିଦ୍ୟୁତ୍ ଉତ୍ପାଦନ କମ୍ପାନୀ ବୁଝାମଣାପତ୍ର ସ୍ୱାକ୍ଷର କରିଛନ୍ତି । ରାଜ୍ୟରେ ୪୦୦୦ ମେଗାୱାଟ୍ ସାମର୍ଥ୍ୟ ବିଶିଷ୍ଟ ଏକ ଅତ୍ୟାଧୁନିକ ବୃହତ୍ ବିଦ୍ୟୁତ୍ ପ୍ଲାଣ୍ଟ ସ୍ଥାପନ ନିମନ୍ତେ ପ୍ରସ୍ତାବ ରହିଛି । ରାଜ୍ୟର ଦୁଇଟି ସାଧାରଣ ଉଦ୍ୟୋଗ ଯଥା- ଓଡ଼ିଶା ଖଣି ନିଗମ ଓ ଓଡ଼ିଶା ଜଳ ବିଦ୍ୟୁତ୍ ନିଗମ ଦୁଇଟି ପର୍ଯ୍ୟାୟରେ ୨୦୦୦ ମେଗାୱାଟ ବିଶିଷ୍ଟ ଏକ ଜଳ ବିଦ୍ୟୁତ୍ ପ୍ଲାଣ୍ଟ ପ୍ରତିଷ୍ଠା କରିବାକୁ ମିଳିତ ଉଦ୍ୟମ ଆରମ୍ଭ କରିଛନ୍ତି ।

'ରାଜୀବ ଗାନ୍ଧୀ ଗ୍ରାମୀଣ ବିଦ୍ୟୁତ୍‌କରଣ ଯୋଜନା' ଓ 'ବିଜୁ ଗ୍ରାମଜ୍ୟୋତି ଯୋଜନା' କାର୍ଯ୍ୟକାରୀ ହେବା ଦ୍ୱାରା ଗ୍ରାମ ବିଦ୍ୟୁତ୍‌କରଣ ଏକ ନୂତନ ଅଧ୍ୟାୟ ସୃଷ୍ଟି କରିଛି । ବର୍ତ୍ତମାନ ରାଜ୍ୟର ୪ ଗୋଟି ଜିଲ୍ଲା ଯଥା- ଅନୁଗୋଳ, ନୟାଗଡ଼, ଗଞ୍ଜାମ ଏବଂ ଗଜପତିରେ ରାଜୀବ ଗାନ୍ଧୀ ଗ୍ରାମୀଣ ବିଦ୍ୟୁତ୍‌କରଣ ଯୋଜନା କାର୍ଯ୍ୟକାରୀ ହେଉଅଛି । ଭାରତ ସରକାରଙ୍କଠାରୁ ପାଣ୍ଠି ଉପଲବ୍ଧ ହେବା ପରେ ଅବଶିଷ୍ଟ ୨୬ ଗୋଟି ଜିଲ୍ଲାରେ ରାଜୀବ ଗାନ୍ଧୀ ଗ୍ରାମ ବିଦ୍ୟୁତ୍‌କରଣ ଯୋଜନା କାର୍ଯ୍ୟକାରୀ କରାଯିବ । ''ସମସ୍ତଙ୍କୁ ବିଦ୍ୟୁତ୍ ଯୋଗାଣ''କୁ ନିଶ୍ଚିତ କରିବା ପାଇଁ ମୋ' ସରକାର ରାଜୀବ ଗାନ୍ଧୀ ଗ୍ରାମୀଣ ବିଦ୍ୟୁତ୍‌କରଣ ଯୋଜନାରେ ଅନ୍ତର୍ଭୁକ୍ତ ହୋଇନଥିବା ତଥା ୧୦୦ରୁ କମ୍ ଜନସଂଖ୍ୟା ବିଶିଷ୍ଟ ବସତିଗୁଡ଼ିକୁ ବିଦ୍ୟୁତ୍ ଯୋଗାଇ ଦେବା ନିମନ୍ତେ ନିଜସ୍ୱ 'ବିଜୁ ଗ୍ରାମଜ୍ୟୋତି ଯୋଜନା' ଆରମ୍ଭ କରିଛନ୍ତି । ବିଜୁ ଗ୍ରାମଜ୍ୟୋତି ଯୋଜନାର କାର୍ଯ୍ୟକାରିତା ନିମନ୍ତେ ପ୍ରତି ବ୍ଲକ୍ ପାଇଁ ୫୦ ଲକ୍ଷ ଟଙ୍କାର ପାଣ୍ଠି ଜିଲ୍ଲାପାଳମାନଙ୍କୁ ଯୋଗାଇ ଦିଆଯାଇଛି ।

ପ୍ରାଥମିକ ଶିକ୍ଷାର ସାର୍ବଜନୀନକରଣ ପାଇଁ ମୋ' ସରକାର ଗୁରୁତ୍ୱ ଆରୋପ କରୁଛନ୍ତି । 'ଓଡ଼ିଶା ଶିଶୁ ଗଣନା କାର୍ଯ୍ୟକ୍ରମ' ଜରିଆରେ ରାଜ୍ୟର ୬ରୁ ୧୪ ବର୍ଷ ବୟସର ସମସ୍ତ ପିଲାମାନଙ୍କୁ ବ୍ୟକ୍ତିଗତ ଭାବେ ଚିହ୍ନଟ କରାଯାଇଛି । ବିଦ୍ୟାଳୟରେ ସେମାନଙ୍କର ନାମ ଲେଖାଇବା ନିମନ୍ତେ ସ୍ୱତନ୍ତ୍ର ପଦକ୍ଷେପ ଗ୍ରହଣ କରାଯାଇଛି । ଫଳରେ ଅଧାରୁ ପାଠପଢ଼ା ଛାଡ଼ିବା ହାର ୧୮.୪୯ ପ୍ରତିଶତରୁ ୧୦.୫୩ ପ୍ରତିଶତକୁ ହ୍ରାସ ପାଇଛି । ଚଳିତ ଶିକ୍ଷାବର୍ଷରେ ଗ୍ରାମ୍ୟ ଶିକ୍ଷା କମିଟି ମାଧ୍ୟମରେ ପ୍ରାଥମିକ ବିଦ୍ୟାଳୟ ସ୍ତରର ୮ମ ଶ୍ରେଣୀ ପର୍ଯ୍ୟନ୍ତ ୫୯,୭୦,୬୧୪ ଜଣ ଛାତ୍ରଛାତ୍ରୀଙ୍କୁ ମାଗଣାରେ ପାଠ୍ୟପୁସ୍ତକ ବଣ୍ଟନ କରାଯାଇଛି ଓ ପ୍ରାଥମିକ ସ୍ତରରେ ସପ୍ତମ ଶ୍ରେଣୀ ପର୍ଯ୍ୟନ୍ତ ୨୨,୯୦,୭୨୩ ଜଣ ଛାତ୍ରୀଙ୍କୁ ମାଗଣା ସ୍କୁଲ ପୋଷାକ ବଣ୍ଟନ କରାଯାଇଛି । ଶିକ୍ଷା ସହାୟକମାନଙ୍କ ପାଇଁ କ୍ୟାରିଅର ଆଡ଼ଭାନ୍ସମେଣ୍ଟ ନିୟମ ସଂଶୋଧନ କରାଯାଇଛି । ବର୍ତ୍ତମାନ ୯ ବର୍ଷ ପରିବର୍ତ୍ତେ ୬ ବର୍ଷର ସନ୍ତୋଷଜନକ ନିଯୁକ୍ତି ଦ୍ୱାରା ଶିକ୍ଷା ସହାୟକମାନେ ସ୍ଥାୟୀ ପ୍ରାଥମିକ ବିଦ୍ୟାଳୟ ଶିକ୍ଷକ ନିମନ୍ତେ ଯୋଗ୍ୟ ବିବେଚିତ ହେବେ । ସେମାନଙ୍କର ପାରିଶ୍ରମିକ ମଧ୍ୟ ମାସିକ ୨୦୦୦ ଟଙ୍କାରୁ ୩୦୦୦ ଟଙ୍କାକୁ ବୃଦ୍ଧି କରାଯାଇଛି । ଶିକ୍ଷା କ୍ଷେତ୍ରରେ ପଛୁଆ ପଡ଼ିଥିବା ୧୧୪ ଗୋଟି ବ୍ଲକ୍‌ର ଛାତ୍ରୀମାନଙ୍କର ଶିକ୍ଷାର ଉନ୍ନତି ନିମନ୍ତେ ୧୧୪ ଗୋଟି କସ୍ତୁରବା ଗାନ୍ଧୀ ବାଳିକା ବିଦ୍ୟାଳୟ (କେ.ଜି.ଭି.ପି.) ଏବଂ ୩୦୫୨ ଗୋଟି ଆଦର୍ଶ ଗୋଷ୍ଠୀ ବିଦ୍ୟାଳୟ ପ୍ରତିଷ୍ଠା କରାଯାଇଛି । ଅନୁସୂଚିତ ଜନଜାତି ଛାତ୍ରଛାତ୍ରୀମାନଙ୍କର ଶିକ୍ଷାର ବିକାଶ ନିମନ୍ତେ ମୋ' ସରକାର ବିଭିନ୍ନ ପଦକ୍ଷେପ ଗ୍ରହଣ କରିଛନ୍ତି । ଆମର ଜନଜାତି ପିଲାମାନଙ୍କର ସୁବିଧା ପାଇଁ ୭ ଗୋଟି ଜନଜାତି ଭାଷାରେ ଦ୍ୱିଭାଷୀ ପ୍ରଥମ ପାଠ୍ୟପୁସ୍ତକର ବିକାଶ କରାଯାଇଛି । ସ୍ୱତନ୍ତ୍ର ସହାୟତା ଆବଶ୍ୟକ କରୁଥିବା ୧,୦୨,୫୫୦ ଜଣ ପିଲାଙ୍କୁ ଚିହ୍ନଟ କରାଯାଇଛି । ତନ୍ମଧ୍ୟରୁ ୯୦,୮୯୮ ଜଣ ପିଲାଙ୍କର ସ୍କୁଲରେ ନାମ ଲେଖା ଯାଇଛି ଏବଂ ସେମାନଙ୍କୁ ଆବଶ୍ୟକ ସହାୟତା ଓ ଉପକରଣ ଯୋଗାଇ ଦିଆଯାଇଛି । ରାଜ୍ୟର ୨୪ ଗୋଟି ଜିଲ୍ଲାର ୬୦୦ ପ୍ରାଥମିକ ଏବଂ ଉଚ୍ଚ ପ୍ରାଥମିକ ବିଦ୍ୟାଳୟରେ ବିଜୁ ପଟ୍ଟନାୟକ କମ୍ପ୍ୟୁଟର ସହାୟତା ଶିକ୍ଷା କାର୍ଯ୍ୟକ୍ରମ ପ୍ରବର୍ତ୍ତନ କରାଯାଇଛି । ପୁନଶ୍ଚ ୨୦୦୭-୦୮ ମସିହାରେ ଏହି ସଂଖ୍ୟା ବୃଦ୍ଧି ପାଇବ ।

ଚଳିତ ବର୍ଷ ସରକାର ୧୦୦ ଗୋଟି ବାଳିକା ଉଚ୍ଚ ବିଦ୍ୟାଳୟକୁ ଶତ ପ୍ରତିଶତ ଅନୁଦାନ ଏବଂ ୧୬୯ ଗୋଟି ଉଚ୍ଚ ବିଦ୍ୟାଳୟକୁ ବ୍ଲକ୍ ଗ୍ରାଣ୍ଟ ପ୍ରଦାନ କରିଛନ୍ତି । ଏହା ମଧ୍ୟ ସ୍ଥିର ହୋଇଛି ଯେ ଆସନ୍ତା ଶିକ୍ଷାବର୍ଷରୁ ସର୍ବଶିକ୍ଷା ଅଭିଯାନ କାର୍ଯ୍ୟକ୍ରମରେ ୧୦୪୭ଟି ହାଇସ୍କୁଲର ଅନ୍ତତଃ ଗୋଟିଏ ଉଚ୍ଚପ୍ରାଥମିକ ବିଦ୍ୟାଳୟକୁ ଅଷ୍ଟମ ଶ୍ରେଣୀ ମାନ୍ୟତା ଦେଇ ଉନ୍ନୀତ କରାଯିବ ।

ସବୁସ୍ତରରେ ଗୁଣାତ୍ମକ ଶିକ୍ଷାର ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଛି ଏବଂ ମୋ' ସରକାର ରାଜ୍ୟରେ ଉଚ୍ଚଶିକ୍ଷାର ଗୁଣାତ୍ମକ ବିକାଶ ନିମନ୍ତେ ବହୁବିଧ ସକରାତ୍ମକ ପଦକ୍ଷେପ ଗ୍ରହଣ କରୁଛନ୍ତି । ରାଜ୍ୟରେ ଆଇନ ବିଶ୍ୱବିଦ୍ୟାଳୟ, ବେଦାନ୍ତ ବିଶ୍ୱବିଦ୍ୟାଳୟ ଏବଂ ଶ୍ରୀ ଶ୍ରୀ ରବିଶଙ୍କର ବିଶ୍ୱବିଦ୍ୟାଳୟଗୁଡ଼ିକର ସ୍ଥାପନ ନିମନ୍ତେ ପଦକ୍ଷେପ ଗ୍ରହଣ କରାଯାଉଛି । ରାଜ୍ୟ ସରକାରଙ୍କର ନିଷ୍ଠାପର ଉଦ୍ୟମକ୍ରମେ ଭାରତ ସରକାରଙ୍କ ଦ୍ୱାରା ରାଜ୍ୟରେ ଜାତୀୟ ବିଜ୍ଞାନ ଶିକ୍ଷା ଓ ଗବେଷଣା ପ୍ରତିଷ୍ଠାନ ପ୍ରତିଷ୍ଠା କରାଯାଇଛି ଏବଂ ଏହା ୨୦୦୭-୦୮ ଶିକ୍ଷା ବର୍ଷଠାରୁ କାର୍ଯ୍ୟ ଆରମ୍ଭ କରିଛି ।

ଅନୁସୂଚିତ ଜାତି ଓ ଜନଜାତି ଲୋକଙ୍କର ସାମାଜିକ ଏବଂ ଅର୍ଥନୈତିକ ବିକାଶ ନିମନ୍ତେ ଶିକ୍ଷା ହେଉଛି ଏକ ଗୁରୁତ୍ୱପୂର୍ଣ୍ଣ ମାଧ୍ୟମ । ତେଣୁ ଏହି ଗୋଷ୍ଠୀର ଶିକ୍ଷାଗତ ଅବସ୍ଥାରେ ଉନ୍ନତି ଆଣିବା ପାଇଁ ମୋ' ସରକାର ଅନୁସୂଚିତ ଜାତି ଏବଂ ଜନଜାତି ଉନ୍ନୟନ ବିଭାଗ ଜରିଆରେ ଯଥେଷ୍ଟ ଗୁରୁତ୍ୱ ପ୍ରଦାନ କରୁଛନ୍ତି । ଅନୁସୂଚିତ ଜନଜାତି ଛାତ୍ରୀମାନଙ୍କର ଶିକ୍ଷାର ବିକାଶ ଏବଂ ଅଧାରୁ ପାଠ ଛାଡୁଥିବା ଛାତ୍ରୀମାନଙ୍କ ସଂଖ୍ୟାକୁ ହ୍ରାସ କରିବା ପାଇଁ ମୋ' ସରକାର ୧ ଲକ୍ଷ ଅନ୍ତେବାସିନୀଙ୍କ ନିମନ୍ତେ ୧୦୦୦ ଗୋଟି ନୂତନ ଛାତ୍ରୀ ନିବାସ ସ୍ଥାପନ କରିଛନ୍ତି । ଏତଦ୍‌ବ୍ୟତୀତ ଆଗାମୀ ୨୦୦୮-୦୯ ଶିକ୍ଷାବର୍ଷରେ ୫୨ ଗୋଟି ନୂତନ ଆବାସିକ ଛାତ୍ରୀ ନିବାସ ସ୍ଥାପନ କରାଯିବା ପାଇଁ ପ୍ରସ୍ତାବ ରହିଛି । ଅନୁସୂଚିତ ଜାତି ଓ ଜନଜାତିର ଛାତ୍ର ଏବଂ ଆବାସିକ ଛାତ୍ରୀ ନିବାସର ଅନ୍ତେବାସିନୀଙ୍କ ପାଇଁ ଉଦ୍ଦିଷ୍ଟ ପ୍ରିମାଟ୍ରିକ୍ ବୃତ୍ତିର ପରିମାଣ ଯଥାକ୍ରମେ ୩୦୦ରୁ ୪୦୦ ଟଙ୍କା ଏବଂ ୩୨୫ରୁ ୪୨୫ ଟଙ୍କାକୁ ତା.୦୧.୦୪.୦୭ରିଖରୁ ବୃଦ୍ଧି କରାଯାଇଛି । ପରୀକ୍ଷାରେ ଭଲ ଫଳାଫଳର ଲକ୍ଷ୍ୟ ରଖି ଅନୁସୂଚିତ ଜାତି ଓ ଜନଜାତି ଉନ୍ନୟନ ବିଭାଗ ଅନ୍ତର୍ଗତ ସମସ୍ତ ଉଚ୍ଚ ବିଦ୍ୟାଳୟର ୯ମ ଓ ୧୦ମ ଶ୍ରେଣୀର ଛାତ୍ରଛାତ୍ରୀମାନଙ୍କୁ ସ୍ୱତନ୍ତ୍ର ଭାବେ କୋଚିଂ ଦିଆଯାଉଛି । ଟି.ଏସ୍.ପି. ଅଞ୍ଚଳରେ ନବମ ଶ୍ରେଣୀରୁ ଦ୍ୱାଦଶ ଶ୍ରେଣୀରେ ପାଠ ପଢ଼ିଥିବା ଆଦିବାସୀ ବାଳିକାମାନଙ୍କୁ ଏବଂ ଅଣ ଟି.ଏସ୍.ପି. ଅଞ୍ଚଳରେ ଏକାଦଶ ଏବଂ ଦ୍ୱାଦଶ ଶ୍ରେଣୀରେ ଅଧ୍ୟୟନ କରୁଥିବା ଛାତ୍ରୀମାନଙ୍କୁ ସାଇକେଲ ପ୍ରଦାନ କରାଯାଉଛି ।

ଏହା ଜଣାଶୁଣା ବିଷୟ ଯେ, ଯଦିଓ ଦାରିଦ୍ର୍ୟ ନିରକ୍ଷରତା ପାଇଁ ଦାୟୀ ତଥାପି ସାକ୍ଷରତା ଏବଂ ଶିକ୍ଷା ଦାରିଦ୍ର୍ୟ ଦୂର କରିଥାଏ ।

ବର୍ତ୍ତମାନ ରାଜ୍ୟର ୪ ଗୋଟି ଜିଲ୍ଲାରେ ଥିବା ୧୯ ଗୋଟି ପଛୁଆ ବ୍ଲକ୍‌ରେ ଆନ୍ତର୍ଜାତିକ କୃଷି ଉନ୍ନୟନ ପାଣ୍ଠି (ଆଇ.ଏଫ୍.ଏ.ଡି.), ଆନ୍ତର୍ଜାତିକ ଉନ୍ନୟନ ସଂସ୍ଥା (ଡି.ଏଫ୍.ଆଇ.ଡି.) ଏବଂ ୟୁନାଇଟେଡ୍ ନେସନ୍ସ ୱାର୍ଲ୍ଡ ଫୁଡ୍ ପ୍ରୋଗ୍ରାମ ଦ୍ୱାରା ସାହାଯ୍ୟପ୍ରାପ୍ତ ଓଡ଼ିଶା ଆଦିବାସୀ

ସଶକ୍ତିକରଣ ଏବଂ ଜୀବିକା ନିର୍ବାହ ପ୍ରକଳ୍ପ (ଓ.ଟି.ଇ.ଏଲ୍.ପି.) କାର୍ଯ୍ୟକାରୀ କରାଯାଉଛି । ଓଡ଼ିଶାର ଦକ୍ଷିଣାଞ୍ଚଳରେ ଥିବା ଆଦିବାସୀଙ୍କ ଉନ୍ନତି ପାଇଁ ଏହା ଏକ ନିରବଚ୍ଛିନ୍ନ ମୂଳସ୍ତରର କାର୍ଯ୍ୟକ୍ରମ ଅଟେ ।

ରାଜ୍ୟର ଗରିବ ଅନୁସୂଚିତ ଜାତି ଓ ଜନଜାତିର ଲୋକ ଏବଂ ଝାଡୁଦାରମାନଙ୍କର ସୁବିଧା ନିମନ୍ତେ ଓଡ଼ିଶା ଅନୁସୂଚିତ ଜାତି ଓ ଜନଜାତି ଉନ୍ନୟନ ଆର୍ଥିକ ସମବାୟ ନିଗମ ବିଭିନ୍ନ ପ୍ରକାର ରୋଜଗାର ସୃଷ୍ଟିକାରୀ ଯୋଜନା କାର୍ଯ୍ୟକାରୀ କରୁଛନ୍ତି । ୨୦୦୭-୦୮ ବର୍ଷର ଡିସେମ୍ବର ମାସ ୨୦୦୭ ଶେଷ ସୁଦ୍ଧା ଏହି ନିଗମ କ୍ରେଡ଼ିଟ୍ ସୁବିଧା ଥାଇ ରୋଜଗାର ସୃଷ୍ଟିକାରୀ ଯୋଜନା ଅଧୀନରେ ବ୍ୟାଙ୍କ୍ ଜରିଆରେ ବି.ପି.ଏଲ୍. ତାଲିକାଭୁକ୍ତ ୩,୭୨୦ ଜଣ ଅନୁସୂଚିତ ଜାତି, ୧,୩୯୫ ଜଣ ଅନସୂଚିତ ଜନଜାତି ଏବଂ ୨୨୦ ଜଣ ଝାଡୁଦାରଙ୍କୁ ଆର୍ଥିକ ସହାୟତା ପ୍ରଦାନ କରିଛି ।

ରାଜ୍ୟର ୨୪ ଗୋଟି ଜିଲ୍ଲାରେ ଜାତୀୟ ଗ୍ରାମୀଣ ନିଶ୍ଚିତ କର୍ମନିଯୁକ୍ତି ଯୋଜନା କାର୍ଯ୍ୟକାରୀ ହେଉଛି ଏବଂ ଅବଶିଷ୍ଟ ୬ ଗୋଟି ଜିଲ୍ଲାରେ ଏହି ଯୋଜନାକୁ ପରିବର୍ଦ୍ଧିତ କରି ଆସନ୍ତା ୨୦୦୮ ଏପ୍ରିଲ୍ ପହିଲାରୁ ରାଜ୍ୟର ସମସ୍ତ ୩୦ ଗୋଟି ଜିଲ୍ଲାରେ କାର୍ଯ୍ୟକାରୀ ହେବ । ଅଦ୍ୟାବଧି ଏହି ୨୪ ଗୋଟି ଜିଲ୍ଲାରେ ଥିବା ୩୭ ଲକ୍ଷ ଗ୍ରାମୀଣ ପରିବାର ନିଜକୁ ପଞ୍ଜିକରଣ କରିଛନ୍ତି ଏବଂ କାର୍ଯ୍ୟପତ୍ର ହାସଲ କରିଛନ୍ତି । ୨୦୦୭ ମସିହା ଡିସେମ୍ବର ମାସ ଶେଷ ସୁଦ୍ଧା ପ୍ରାୟ ୮ ଲକ୍ଷ ପରିବାର ମଜୁରିଭିତ୍ତିକ କାର୍ଯ୍ୟ ପାଇଁ ଆବେଦନ କରିଥିଲେ ଏବଂ ଏହି ଯୋଜନାର ନିୟମ ମୁତାବକ ସମସ୍ତଙ୍କୁ କାମ ଯୋଗାଇ ଦିଆଯାଇଛି ।

ଜାତୀୟ ଗ୍ରାମୀଣ ନିଶ୍ଚିତ ରୋଜଗାର ଯୋଜନା ଅଧୀନରେ ଆସୁଥିବା ବି.ପି.ଏଲ୍. ତାଲିକାଭୁକ୍ତ ପରିବାରର ବ୍ୟକ୍ତିଗତ ମାଲିକାନାରେ ଥିବା ଜମିରେ ଫାର୍ମ ପୋଖରୀ ଖୋଳିବାକୁ ମୋ' ସରକାର ସକ୍ରିୟ ଭାବେ ଉତ୍ସାହିତ କରୁଛନ୍ତି, ଯାହାକି ସ୍ୱଳ୍ପବୃଷ୍ଟି ହେଉଥିବା ଅଞ୍ଚଳର ଗ୍ରାମୀଣ ଜନସାଧାରଣଙ୍କ ଦ୍ୱାରା ଆଦୃତ ହୋଇଛି । ଏହି ଫାର୍ମ ପୋଖରୀଗୁଡ଼ିକ କେବଳ ମୃତ୍ତିକା ଏବଂ ଜଳ ସଂରକ୍ଷଣ କ୍ଷେତ୍ରରେ ସାହାଯ୍ୟ କରୁ ନାହିଁ, ପରନ୍ତୁ ବର୍ଷାଋତୁରେ ସ୍ୱଳ୍ପବୃଷ୍ଟି ହେଉଥିବା ସମୟରେ ଏହା ଜୀବନ ରକ୍ଷକ ଜଳସେଚନର ସୁବିଧା ଯୋଗାଉଛି ।

ଜାତୀୟ ଗ୍ରାମୀଣ ନିଶ୍ଚିତ କର୍ମ ନିଯୁକ୍ତି ଯୋଜନାର କାର୍ଯ୍ୟକାରିତାରେ ସ୍ୱଚ୍ଛତା ବଜାୟ ରଖିବା ନିମନ୍ତେ ଏହି ଯୋଜନା ସମ୍ପର୍କିତ ସମସ୍ତ ତଥ୍ୟ ଓ ସୂଚନା ଇଣ୍ଟରନେଟରେ ଉପଲବ୍ଧ ହେବା କ୍ଷେତ୍ରରେ ଓଡ଼ିଶା ହେଉଛି ଏକ ଅଗ୍ରଣୀ ରାଜ୍ୟ ।

କାର୍ଯ୍ୟକ୍ରମର ରୂପାୟନରେ ସାଧୁତା, ସ୍ୱଚ୍ଛତା ଏବଂ ଦାୟବଦ୍ଧତାକୁ ନିଶ୍ଚିତ କରିବା ନିମନ୍ତେ ବର୍ଦ୍ଧିତ ସଚେତନତାସହ ସ୍ୱଚ୍ଛତା ରକ୍ଷାର ବ୍ୟବସ୍ଥା କରି ମୋ' ସରକାର ଅନେକଗୁଡ଼ିଏ ସକ୍ରିୟ ପଦକ୍ଷେପ ଗ୍ରହଣ କରିଛନ୍ତି ଏବଂ ଏହାମଧ ନିଶ୍ଚିତ କରୁଛନ୍ତି ଯେ ସମସ୍ତ ଦାରିଦ୍ର୍ୟ ଦୂରୀକରଣ ଏବଂ ଉନ୍ନୟନ କାର୍ଯ୍ୟକ୍ରମର ସୁଫଳ ଯେପରି ପ୍ରତ୍ୟେକ ଯୋଗ୍ୟ ହିତାଧିକାରୀଙ୍କ ନିକଟରେ ପହଞ୍ଚି ପାରିବ ।

ଆଞ୍ଚଳିକ ବୈଷମ୍ୟ ଦୂର କରିବା ଲକ୍ଷ୍ୟରେ ରାଜ୍ୟର ୧୯ ଗୋଟି ଜିଲ୍ଲାରେ କେନ୍ଦ୍ରୀୟ ଅନୁଦାନ ଦ୍ୱାରା ପଛୁଆ ଅଞ୍ଚଳ ଅନୁଦାନ ପାଣ୍ଠି (ବି.ଆର୍.ଜି.ଏଫ୍.) ଯୋଜନା କାର୍ଯ୍ୟକାରୀ ହେଉଛି । ବି.ଆର୍.ଜି.ଏଫ୍. ଯୋଜନାରେ ଅନ୍ତର୍ଭୁକ୍ତ ହୋଇନଥିବା ରାଜ୍ୟର ୧୧ ଗୋଟି ଜିଲ୍ଲାର ସାମଗ୍ରିକ ବିକାଶ ନିମନ୍ତେ ମୋ' ସରକାର ୨୦୦୬-୦୭ ମସିହାରୁ ରାଜ୍ୟ ଯୋଜନା ଅନ୍ତର୍ଗତ ନିଜସ୍ୱ 'ଗୋପବନ୍ଧୁ ଗ୍ରାମୀଣ ଯୋଜନା' ଆରମ୍ଭ କରିଛନ୍ତି । 'ଗୋପବନ୍ଧୁ ଗ୍ରାମୀଣ ଯୋଜନା' ଅଧୀନରେ ବିଜୁଳି, ସଡ଼କ ଓ ପାଣି ପରି କ୍ଷେତ୍ରର ବିକାଶ ପାଇଁ ପ୍ରତି ଜିଲ୍ଲାକୁ ବାର୍ଷିକ ୧୦ କୋଟି ଟଙ୍କା ଯୋଗାଇ ଦିଆଯାଉଛି ।

ବିଭିନ୍ନ ପ୍ରକାର ଗ୍ରାମ୍ୟ ଉନ୍ନୟନ ଏବଂ ଦାରିଦ୍ର୍ୟ ଦୂରୀକରଣ ଯୋଜନାର ସଫଳ ରୂପାୟନ ପାଇଁ ତଳସ୍ତରର ପ୍ରଶାସନକୁ ସୁଦୃଢ଼ କରିବା ଏବଂ ପଞ୍ଚାୟତିରାଜ ଅନୁଷ୍ଠାନର ନିର୍ବାଚିତ ପ୍ରତିନିଧି ଏବଂ କର୍ମକର୍ତ୍ତାମାନଙ୍କ ସାମର୍ଥ୍ୟ ବୃଦ୍ଧି କରିବା ଏକ ଗୁରୁତ୍ୱପୂର୍ଣ୍ଣ ଆବଶ୍ୟକତା । ଏ ଦିଗରେ ମୋ' ସରକାର ଅନେକ ପଦକ୍ଷେପ ଗ୍ରହଣ କରିଛନ୍ତି । ଜାତୀୟ ଗ୍ରାମୀଣ ନିଶ୍ଚିତ ନିଯୁକ୍ତି ଯୋଜନାର ସଫଳ କାର୍ଯ୍ୟକାରିତା ପାଇଁ ବ୍ଲକ୍ ସ୍ତରରେ ବୈଷୟିକ ସହାୟତା କର୍ମଚାରୀଙ୍କ ବ୍ୟତୀତ ପ୍ରତି ଗ୍ରାମପଞ୍ଚାୟତରେ ଜଣେ ଲେଖାଏଁ ଗ୍ରାମ ରୋଜଗାର ସେବକ ନିଯୁକ୍ତ ହୋଇଛନ୍ତି । ଏନ୍.ଆର୍.ଜି.ଏସ୍. କାର୍ଯ୍ୟର ସୁପରିଚାଳନା ନିମନ୍ତେ ସହାୟତା କରିବା ପାଇଁ ପ୍ରତି ରାଜସ୍ୱ ଗ୍ରାମରେ ଦୁଇଜଣ ଲେଖାଏଁ ଗାଁ ସାଥୀ ନିଯୁକ୍ତି କରିବାକୁ ମୋ' ସରକାର ନିକଟରେ ନିଷ୍ପତ୍ତି ଗ୍ରହଣ କରିଛନ୍ତି ।

ଯେଉଁ ହିତାଧିକାରୀମାନେ ଇନ୍ଦିରା ଆବାସ ଯୋଜନାରେ ଅନ୍ତର୍ଭୁକ୍ତ ହେବା ପାଇଁ ଅପେକ୍ଷା କରିଛନ୍ତି କିନ୍ତୁ ବି.ପି.ଏଲ୍. ତାଲିକାର ସମ୍ଭାବ୍ୟ ସଂଶୋଧନ ଯୋଗୁଁ ଏହି ସୁବିଧାରୁ ବଞ୍ଚିତ ହେବାର ଆଶଙ୍କା ରହିଛି, ସେମାନଙ୍କ ପାଇଁ 'ମୋ କୁଡ଼ିଆ' ନାମକ ଏକ ନୂତନ ଯୋଜନା ଆରମ୍ଭ କରିବାକୁ ମୋ' ସରକାର ମଧ ସ୍ଥିର କରିଛନ୍ତି ।

ଓଡ଼ିଶାର ଜନସାଧାରଣଙ୍କ ସ୍ୱାସ୍ଥ୍ୟସେବା ଆବଶ୍ୟକତା ବିଷୟରେ ମୋ' ସରକାର ସମ୍ପୂର୍ଣ୍ଣ ଭାବେ ସଚେତନ ଅଛନ୍ତି । ରାଜ୍ୟର ଜନସାଧାରଣଙ୍କ ପାଇଁ ଗୁଣାତ୍ମକ, ପ୍ରତିରୋଧକ ଏବଂ ଆରୋଗ୍ୟକାରୀ ସ୍ୱାସ୍ଥ୍ୟସେବାର ସୁବିଧା ପ୍ରଦାନ ନିମନ୍ତେ ଯଥେଷ୍ଟ ବ୍ୟବସ୍ଥା କରାଯାଇଛି । ସ୍ୱାସ୍ଥ୍ୟସେବା କ୍ଷେତ୍ରକୁ ସୁଦୃଢ଼ କରିବା ପାଇଁ ନିର୍ଦ୍ଦିଷ୍ଟ ପଛୁଆ ଅଞ୍ଚଳଗୁଡ଼ିକରେ ସ୍ୱାସ୍ଥ୍ୟସେବା ଆବଶ୍ୟକ କରୁଥିବା ବ୍ୟକ୍ତି ଏବଂ ପଛୁଆବର୍ଗର ବ୍ୟକ୍ତିଙ୍କୁ ଭ୍ରାମ୍ୟମାଣ ସ୍ୱାସ୍ଥ୍ୟସେବା ୟୁନିଟ୍ ମାଧ୍ୟମରେ ସ୍ୱାସ୍ଥ୍ୟସେବା ଯୋଗାଇ ଦିଆଯାଉଛି । ବର୍ତ୍ତମାନ ୮ ଗୋଟି କେ.ବି.କେ. ଜିଲ୍ଲାରେ ୯୦ ଗୋଟି ଭ୍ରାମ୍ୟମାଣ ସ୍ୱାସ୍ଥ୍ୟ ୟୁନିଟ୍ କାର୍ଯ୍ୟ କରୁଅଛି ।

ଡାକ୍ତରମାନଙ୍କର ଅଭାବକୁ ପୂରଣ କରିବା ନିମନ୍ତେ ମେଡ଼ିକାଲ କଲେଜମାନଙ୍କରେ ଏମ୍.ବି.ବି.ଏସ୍. ପାଠ୍ୟକ୍ରମ ସହିତ ବି.ଡି.ଏସ୍. ପାଠ୍ୟକ୍ରମର ସ୍ଥାନ ସଂଖ୍ୟା ବୃଦ୍ଧି କରାଯାଇଛି । ଏତଦ୍‌ବ୍ୟତୀତ ଘରୋଇ ପରିଚାଳନାରେ ମେଡ଼ିକାଲ ଓ ଦନ୍ତ ଚିକିତ୍ସା ମହାବିଦ୍ୟାଳୟ ସ୍ଥାପନ କରିବା ପାଇଁ ୧୭ ଗୋଟି ସଂସ୍ଥାକୁ ଏନ୍.ଓ.ସି. ପ୍ରଦାନ କରାଯାଇଛି ।

ମ୍ୟାଲେରିଆ ଜନିତ ମୃତ୍ୟୁ କ୍ରମଶଃ ହ୍ରାସ ପାଉଛି । ଅଧିକନ୍ତୁ ମ୍ୟାଲେରିଆ ପ୍ରତିରୋଧକ ପଦକ୍ଷେପ ବ୍ୟାପକ କରାଯାଇଛି । ଜଳବାହିତ ରୋଗ ଏବଂ ହଇଜା ପରି ମହାମାରୀ ରୋକିବା ଦିଗରେ ସମସ୍ତ ସମ୍ଭାବ୍ୟ ପଦକ୍ଷେପ ନେବାକୁ ମୋ' ସରକାର ମଧ୍ୟ ପ୍ରତିଶ୍ରୁତିବଦ୍ଧ ।

ରାଜ୍ୟରେ ଏଚ୍.ଆଇ.ଭି. ସଂକ୍ରମଣକୁ ହ୍ରାସ କରିବା ପାଇଁ ଜାତୀୟ ଏଡ୍‌ସ ନିୟନ୍ତ୍ରଣ କାର୍ଯ୍ୟକ୍ରମ ସଫଳ ଭାବେ କାର୍ଯ୍ୟକାରୀ ହେଉଛି ।

ରାଜ୍ୟର ଗ୍ରାମାଞ୍ଚଳ ଲୋକମାନଙ୍କୁ ଉପଯୁକ୍ତ ସ୍ୱାସ୍ଥ୍ୟସେବା ଯୋଗାଇ ଦେବା ନିମନ୍ତେ ୧୭ ଜୁନ୍ ୨୦୦୫ ମସିହାଠାରୁ ଜାତୀୟ ଗ୍ରାମୀଣ ସ୍ୱାସ୍ଥ୍ୟ ମିଶନ୍ କାର୍ଯ୍ୟକାରୀ ହୋଇଛି । ଏନ୍.ଆର୍.ଏଚ୍.ଏମ୍. ଅଧୀନରେ 'ଆଶା' ନାମକ ଏକ ନୂତନ ଯୋଜନା ମାଧ୍ୟମରେ ଗ୍ରାମସ୍ତରରେ ସ୍ୱାସ୍ଥ୍ୟସେବା ପହଞ୍ଚାଇ ଦିଆଯାଉଛି । ବର୍ତ୍ତମାନ ୩୦ଟି ଜିଲ୍ଲାରେ ୩୪,୨୩୧ ଜଣ ଆଶାକର୍ମୀଙ୍କୁ ତାଲିମ୍ ପ୍ରଦାନ କରାଯାଇଛି । ସେହିପରି ଗ୍ରାମାଞ୍ଚଳର ଜନସାଧାରଣଙ୍କୁ ଉପଯୁକ୍ତ ସ୍ୱାସ୍ଥ୍ୟସେବା ଯୋଗାଇ ଦେବା ନିମନ୍ତେ ଗ୍ରାମ୍ୟ ସ୍ୱାସ୍ଥ୍ୟ ଯୋଜନା ଜନନୀ ସୁରକ୍ଷା ଯୋଜନା, ଆୟୁଷ, ଟୀକାକରଣ ଇତ୍ୟାଦି କାର୍ଯ୍ୟକ୍ରମ ଜାତୀୟ ଗ୍ରାମୀଣ ସ୍ୱାସ୍ଥ୍ୟ ମିଶନ ଜରିଆରେ କାର୍ଯ୍ୟକାରୀ କରାଯାଉଛି । ରୋଗୀମାନଙ୍କୁ ଟେଲି ସ୍ୱାସ୍ଥ୍ୟସେବା ଯୋଗାଇ ଦେବା ଲକ୍ଷ୍ୟରଖି ଟେଲିମେଡ଼ିସିନ୍ କାର୍ଯ୍ୟକ୍ରମ ଆରମ୍ଭ କରିବାରେ ଅଧିକ ପରାମର୍ଶ ଲୋଡୁଥିବା ସମଗ୍ର ଦେଶରେ ଓଡ଼ିଶା ହେଉଛି ଏକ ଅଗ୍ରଣୀ ରାଜ୍ୟ ।

ଦାରିଦ୍ର୍ୟ ସୀମାରେଖା ତଳେ ଥିବା ପରିବାରମାନଙ୍କୁ ରିହାତି ମୂଲ୍ୟରେ ଖାଦ୍ୟଶସ୍ୟ ଯୋଗାଇ ଦେବା ପାଇଁ ରାଜ୍ୟରେ ଏକ ବ୍ୟାପକ ବ୍ୟବସ୍ଥା ଜରିଆରେ ସାଧାରଣ ବଣ୍ଟନ ବ୍ୟବସ୍ଥା କାର୍ଯ୍ୟ କରୁଅଛି ।

ଧାନ ସଂଗ୍ରହ କ୍ଷେତ୍ରରେ ମୋ' ସରକାରଙ୍କର ପଦକ୍ଷେପଗୁଡ଼ିକ ଧାନର ଅଭାବୀ ବିକ୍ରୀକୁ ପ୍ରତିହତ କରିବାରେ ଏବଂ କୃଷକମାନଙ୍କୁ ସେମାନଙ୍କର ଉପଯୁକ୍ତ ମୂଲ୍ୟ ପ୍ରଦାନ କରିବାରେ ସହାୟକ ହୋଇଛି । ୨୦୦୭-୦୮ ଖରିଫ୍ ବିପଣନ ସମୟରେ ମୋ' ସରକାର ୨୫ ଲକ୍ଷ ମେଟ୍ରିକ୍ ଟନ୍ ଚାଉଳ ସଂଗ୍ରହର ଲକ୍ଷ୍ୟ ରଖିଛନ୍ତି । ଏହାମଧ୍ୟରୁ ୨୩ ଲକ୍ଷ ମେଟ୍ରିକ୍ ଟନ୍ ଚାଉଳ ହେବାଭଳି ଧାନ ସଂଗ୍ରହ ପାଇଁ ମୋ' ସରକାର ବିଭିନ୍ନ ସରକାରୀ ସଂସ୍ଥା ମାଧ୍ୟମରେ କୃଷକମାନଙ୍କଠାରୁ ସିଧାସଳଖ ସଂଗ୍ରହ କରିବା ନିମନ୍ତେ ଲକ୍ଷ୍ୟ ରଖିଛନ୍ତି । ଯଦ୍ଦ୍ୱାରା କୃଷକମାନେ ସହାୟକ ମୂଲ୍ୟ ନୀତି ନିର୍ଦ୍ଧାରଣରେ ସମ୍ପୂର୍ଣ୍ଣ ସୁବିଧା ହାସଲ କରିପାରିବେ । ଏହି ଅନୁଷ୍ଠାନଗୁଡ଼ିକୁ ସୁଦୃଢ଼ କରିବା ପାଇଁ ଧାନ ସଂଗ୍ରହ କାର୍ଯ୍ୟକ୍ରମ ସହିତ ମହିଳା ସ୍ୱୟଂ ସହାୟକ ଗୋଷ୍ଠୀ ଏବଂ ପାଣିପଞ୍ଚାୟତକୁ ସାମିଲ କରାଯାଇଛି । ଗୋଟିଏ ରାଜ୍ୟ ଖାଉଟି ବିବାଦ ସମାଧାନ ଫୋରମ୍ ଏବଂ ୩୧ ଗୋଟି ଜିଲ୍ଲା ଖାଉଟି ବିବାଦ ସମାଧାନ ଫୋରମ୍ ରାଜ୍ୟରେ କାର୍ଯ୍ୟ କରୁଅଛି । ଏହି ଫୋରମଗୁଡ଼ିକ ଅଧିକ ସକ୍ରିୟ କରିବା ନିମନ୍ତେ ଆବଶ୍ୟକୀୟ ଭିତ୍ତିଭୂମିଗୁଡ଼ିକର ବିକାଶ କରାଯାଉଛି ।

ଅଣ ସଂଗଠିତ କ୍ଷେତ୍ରରେ କାର୍ଯ୍ୟ କରୁଥିବା ବହୁ ସଂଖ୍ୟକ ଶ୍ରମିକ ସାମାଜିକ ନିରାପତ୍ତା ସୁବିଧା ପାଇଁ ମୋ' ସରକାର ନିରାପତ୍ତା, ସ୍ୱାସ୍ଥ୍ୟ, ଶିକ୍ଷା, ପରିବାର ପେନ୍‌ସନ, ଗୋଷ୍ଠୀ ବୀମାକରଣ ପରି ସୁବିଧା ଥାଇ ସାମାଜିକ ନିରାପତ୍ତା ଅଧୀନରେ କୋଠାବାଡ଼ି ଏବଂ ଅନ୍ୟାନ୍ୟ ନିର୍ମାଣ କାର୍ଯ୍ୟରେ ନିୟୋଜିତ ଶ୍ରମିକ କଲ୍ୟାଣ ଯୋଜନା କାର୍ଯ୍ୟକାରୀ କରିଛନ୍ତି । ବିପଦପୂର୍ଣ୍ଣ କାର୍ଯ୍ୟରେ ଥିବା ଶିଶୁ ଶ୍ରମିକମାନଙ୍କର ନିୟୋଜନକୁ ନିୟନ୍ତ୍ରଣ କରିବା ଉଦ୍ଦେଶ୍ୟରେ ଜିଲ୍ଲାପାଳଙ୍କ ଅଧକ୍ଷତାରେ ପ୍ରତି ଜିଲ୍ଲାରେ ଜିଲ୍ଲାସ୍ତରୀୟ ଟାସ୍କଫୋର୍ସ ଗଠନ କରାଯାଇଛି । ଏହି ଟାସ୍କଫୋର୍ସଗୁଡ଼ିକ ଶିଶୁ ଶ୍ରମିକ ଚିହ୍ନଟ, ସେମାନଙ୍କର ମୁକ୍ତି ଏବଂ ଥଇଥାନ ପାଇଁ ବ୍ୟାପକ ଚଢ଼ାଉ ଏବଂ ତଦାରଖ କରୁଛନ୍ତି । ମୋ' ସରକାର ୨୦୦୮ ମସିହା ଏପ୍ରିଲ୍ ପହିଲାରୁ କେନ୍ଦ୍ରୀୟ ପ୍ରାୟୋଜିତ ''ରାଷ୍ଟ୍ରୀୟ ସ୍ୱାସ୍ଥ୍ୟ ବୀମା ଯୋଜନା'' କାର୍ଯ୍ୟକାରୀ କରିବାକୁ ଯାଉଛନ୍ତି ।

ଦୁରାରୋଗ୍ୟ ବ୍ୟାଧିର ଚିକିତ୍ସା ପାଇଁ ଦୁଃସ୍ଥ ଆବେଦନକାରୀଙ୍କୁ ମୁଖ୍ୟମନ୍ତ୍ରୀଙ୍କ ରିଲିଫ୍ ପାଣ୍ଠିରୁ ଆର୍ଥିକ ସହାୟତା ଯୋଗାଇ ଦିଆଯାଉଛି । ଏତଦ୍‌ବ୍ୟତୀତ ଗୁରୁତର ଦୁର୍ଘଟଣା, ଉଗ୍ରବାଦ ହିଂସା ଏବଂ ପ୍ରାକୃତିକ ବିପର୍ଯ୍ୟୟ ଦ୍ୱାରା କ୍ଷତିଗ୍ରସ୍ତ ବ୍ୟକ୍ତିମାନଙ୍କୁ ମଧ୍ୟ ଆର୍ଥିକ ସହାୟତା ଯୋଗାଇ ଦିଆଯାଉଛି । ରାଜ୍ୟର କୋଣ ଅନୁକୋଣରେ ଥିବା ଅଭାବୀ ଏବଂ ପୀଡ଼ିତ ବ୍ୟକ୍ତିବିଶେଷଙ୍କ ସହାୟତା ପାଇଁ ମୁଖ୍ୟମନ୍ତ୍ରୀଙ୍କ ରିଲିଫ୍ ପାଣ୍ଠି ନିୟମାବଳୀରେ ସଂଶୋଧନ କରାଯାଇଛି ।

ରାଜସ୍ୱ ପ୍ରଶାସନକୁ ଲୋକମାନଙ୍କର ନିକଟତର କରିବା ପାଇଁ ଏବଂ ଇ-ପ୍ରଶାସନ ପଦକ୍ଷେପର ଏକ ଅଂଶ ସ୍ୱରୂପ ଉନ୍ନତ ସେବାକୁ ନିଶ୍ଚିତ କରିବା ଲକ୍ଷ୍ୟରେ ମୋ' ସରକାର ରାଜ୍ୟର ବିଭିନ୍ନ ତହସିଲରେ ଥିବା ଜମିଜମା ସମ୍ପର୍କିତ କାଗଜପତ୍ରର କମ୍ପ୍ୟୁଟରୀକରଣ କରିଛନ୍ତି । ନାଗରିକମାନେ ଦାବୀ ମୁତାବକ ତହସିଲ କମ୍ପ୍ୟୁଟର କେନ୍ଦ୍ର ଜରିଆରେ ଏସବୁ କାଗଜପତ୍ର ପାଇପାରିବେ । ରାଜ୍ୟର ସମସ୍ତ ଜମି ସ୍ୱତ୍ତ୍ୱାଧିକାରୀ ପରିବାରବର୍ଗଙ୍କୁ ଜମି ପାଶ୍‌ବୁକ୍ ବଣ୍ଟନ ପାଇଁ ମୋ' ସରକାର ପଦକ୍ଷେପ ଗ୍ରହଣ କରିଛନ୍ତି । ଏହି ଜମି ପାଶ୍‌ବୁକ୍ ଜାତି, ଆୟ, ଆବାସିକ, ଉତ୍ତରାଧିକାରୀ ଏବଂ ବି.ପି.ଏଲ୍. ପ୍ରଭୃତି ଉଦ୍ଦେଶ୍ୟରେ ପ୍ରମାଣପତ୍ର ରୂପେ ବ୍ୟବହାର କରାଯାଇପାରିବ । ୨୦୦୭ ମସିହା ନଭେମ୍ବର ମାସ ଶେଷ ସୁଦ୍ଧା ୧୩,୯୫,୦୧୧ ସଂଖ୍ୟକ ଜମି ପାଶ୍‌ବୁକ୍ ବଣ୍ଟନ କରାଯାଇଛି ।

୨୦୦୫-୦୬ରୁ ୨୦୦୭-୦୮ ବର୍ଷର ଅବଧି ମଧ୍ୟରେ ଚିହ୍ନଟ ହୋଇଥିବା ୨,୪୯,୩୩୪ ଗୋଟି ବାସହୀନ ପରିବାରଙ୍କୁ ୪ ଡେସିମିଲି ପରିମିତ ଘରଡିହ ଯୋଗାଇ ଦେବାକୁ ମୋ' ସରକାର ପ୍ରତିଶ୍ରୁତିବଦ୍ଧ । ଏହି କାର୍ଯ୍ୟକ୍ରମ ଅଧୀନରେ ୨୦୦୭ ମସିହା ଅକ୍ଟୋବର ମାସ ଶେଷସୁଦ୍ଧା ୧ ଲକ୍ଷ ୬୪ ହଜାର ୪୨୮ ଗୋଟି ଭୂମିହୀନ ପରିବାରଙ୍କୁ ଘରଡିହ ଯୋଗାଇ ଦିଆଯାଇଛି ।

ଗରିବମାନଙ୍କର ଜମି ଅଧିକାରକୁ ସୁରକ୍ଷା କରିବା ପାଇଁ ମୋ' ସରକାର 'ମୋ ଜମି ମୋ ଡିହ' ନାମକ ଏକ ଯୋଜନା ଆରମ୍ଭ କରିଛନ୍ତି । ଏହି କାର୍ଯ୍ୟକ୍ରମର ପ୍ରଥମ ପର୍ଯ୍ୟାୟରେ ଗତ ସେପ୍ଟେମ୍ବର ଏବଂ ଅକ୍ଟୋବର ମାସ ମଧ୍ୟରେ ରାଜ୍ୟର ପ୍ରତ୍ୟେକ ତହସିଲରେ 'ମୋ ଜମି ମୋ ଡିହ' ମେଳା ଆୟୋଜନ କରାଯାଇଛି ।

ମୋ' ସରକାର ଏକ ପୁନର୍ବାସ ଓ ଥଇଥାନ ନୀତି ପ୍ରଣୟନ କରିଛନ୍ତି, ଯାହାକି ଦେଶରେ ସର୍ବୋତ୍ତମ ଭାବେ ବିବେଚିତ ହେଉଛି । ଏକ ନିର୍ଦ୍ଦିଷ୍ଟ ସମୟସୀମା ମଧ୍ୟରେ ଏହି ପୁନର୍ବାସ ଓ ଥଇଥାନ ଯୋଜନାର ସଠିକ୍ ରୂପାୟନ ପାଇଁ ପ୍ରକଳ୍ପ ଦ୍ୱାରା କ୍ଷତିଗ୍ରସ୍ତ ପରିବାର ଏବଂ ପ୍ରକଳ୍ପ କର୍ତ୍ତୃପକ୍ଷଙ୍କ ମଧ୍ୟରେ ଏକ ଫଳପ୍ରଦ ଆଲୋଚନାର ଭିତ୍ତିଭୂମି ଯୋଗାଇ ଦେବା ସହ କ୍ଷତିଗ୍ରସ୍ତ ପରିବାର ଯେପରି ସ୍ୱଇଚ୍ଛାରେ ବିସ୍ଥାପିତ ହୋଇପାରିବେ ସେଥିପାଇଁ ଏହି ନୀତିରେ ବ୍ୟବସ୍ଥା କରାଯାଇଛି । ଏହି ନୀତି ଅଂଶୀଦାରୀ ପ୍ରକ୍ରିୟା ଜରିଆରେ ପରିବେଶ ସୁରକ୍ଷା ନିଶ୍ଚିତ କରିବା ସହ କାର୍ଯ୍ୟକ୍ରମର ରୂପାୟନ, ତଦାରଖ, ଅଭିଯୋଗ ଶୁଣାଣି ଓ ବିବାଦ ସମାଧାନର ସୁବିଧା ମଧ୍ୟ ଯୋଗାଇ ଦେବ ।

୨୦୦୭ ମସିହା ଡିସେମ୍ବର ମାସର ଶେଷ ଭାଗରେ କନ୍ଧମାଳ ଜିଲ୍ଲାରେ ଏକ ସାମ୍ପ୍ରଦାୟିକ ପରିସ୍ଥିତି ଉପୁଜି ଥିଲା । ପ୍ରଶାସନ ଦ୍ୱାରା ବିହିତ ପଦକ୍ଷେପ ଗ୍ରହଣ କରାଯାଇ ଏହାକୁ ଯତ୍ନ ସହକାରେ ଏବଂ ସମ୍ବେଦନପୂର୍ବକ ସମାଧାନ କରାଯାଇଥିଲା । ଯାହାଫଳରେ ଏହାମାତ୍ର ୪ ଦିନ ମଧ୍ୟରେ ନିୟନ୍ତ୍ରଣକୁ ଆସି ପାରିଥିଲା । ଜିଲ୍ଲାର ସମ୍ବେଦନଶୀଳ ଅଞ୍ଚଳରେ ପ୍ରଶାସନ ଦ୍ୱାରା ଶାନ୍ତି କମିଟି ଗଠନ କରାଯାଇ ଏବଂ କ୍ଷତିଗ୍ରସ୍ତଙ୍କ ସହ ନିରବଚ୍ଛିନ୍ନ ଆଲୋଚନା ମାଧ୍ୟମରେ କନ୍ଧମାଳ ଜିଲ୍ଲାରେ ସ୍ୱାଭାବିକ ଅବସ୍ଥା ଫେରାଇ ଅଣାଯାଇଛି ।

କଟକ ଏବଂ ଭୁବନେଶ୍ୱର ଦ୍ୱୈତ ନଗରୀରେ ଅପରାଧ ନିୟନ୍ତ୍ରଣ କରିବା ପାଇଁ ୨୦୦୮ ମସିହା ଜାନୁଆରୀ ପହିଲାରୁ ଓଡ଼ିଶା ସହରାଞ୍ଚଳ ଆରକ୍ଷୀ ଅଧିନିୟମ, ୨୦୦୩ କାର୍ଯ୍ୟକାରୀ କରାଯାଇଛି । ଆରକ୍ଷୀ ବଳର ଆଧୁନିକୀକରଣ ଏବଂ ଦୁର୍ବଳ ପ୍ରତିଷ୍ଠାନଗୁଡ଼ିକୁ ସୁଦୃଢ଼ୀକରଣ ପାଇଁ ମୋ' ସରକାର ସର୍ବାଧିକ ଗୁରୁତ୍ୱ ଆରୋପ କରିଆସୁଛନ୍ତି । ଜେଲ୍‌ରେ ବର୍ଦ୍ଧିତ କଏଦୀମାନଙ୍କ ସଂଖ୍ୟାକୁ ଦୃଷ୍ଟିରେ ରଖି ୧୫ ଗୋଟି ନୂତନ ଉପକାରାଗାର, ୩୫ ଗୋଟି ଅତିରିକ୍ତ ୱାର୍ଡ଼, ୩୬୫ଟି ପକ୍କା ପାଇଖାନା ଏବଂ ୨୬ଟି ଜଳଯୋଗାଣ ବ୍ୟବସ୍ଥାର ସୁବିଧା କରିଛନ୍ତି । ୨୪ଟି ଜେଲ୍‌ର ପ୍ରାଚୀର ସୁଦୃଢ଼ୀକରଣ କରାଯାଇଛି ।

ଅନ୍ୟ ରାଜ୍ୟ ତୁଳନାରେ ଆମ ରାଜ୍ୟରେ ଉଗ୍ରବାଦୀ ହିଂସା ଯଥେଷ୍ଟ କମ୍ । ତଥାପି ନିରବଚ୍ଛିନ୍ନ ଚଢ଼ାଉ ଏବଂ କୋମ୍ବିଂ ଅପରେସନ୍ ଜରିଆରେ ଉଗ୍ରବାଦୀ କାର୍ଯ୍ୟକଳାପକୁ ଦମନ କରିବା ପାଇଁ ମୋ' ସରକାର ପଦକ୍ଷେପ ଗ୍ରହଣ କରିଛନ୍ତି । ମୋ' ସରକାର ଦ୍ୱାରା ଘୋଷିତ ଆତ୍ମସମର୍ପଣ ନୀତିର ଫଳାଫଳ ସ୍ୱରୂପ ଅନେକ ଦୁର୍ଦ୍ଧର୍ଷ ମାଓବାଦୀ ପ୍ରଶାସନ ନିକଟରେ ଆତ୍ମସମର୍ପଣ କରିଛନ୍ତି ।

ଗତ ଦଶନ୍ଧିରେ ରାଜ୍ୟର ସହରାଞ୍ଚଳରେ ୩୦ ଶତାଂଶ ଅଭିବୃଦ୍ଧି ଘଟିଛି । ନଗରାଞ୍ଚଳରେ ଅଧିକ ନାଗରିକ ସୁବିଧା ଓ ଭିତ୍ତିଭୂମିର ସୁବିଧା ପାଇଁ କ୍ରମବର୍ଦ୍ଧିଷ୍ଣୁ ଦାବୀ ସରକାରଙ୍କ ପାଇଁ ଏକ ଆହ୍ୱାନ ସୃଷ୍ଟି କରିଛି । ଏହି ଆହ୍ୱାନକୁ ଗ୍ରହଣ କରି ଲୋକଙ୍କୁ ଅଧିକ ସୁବିଧା ସୁଯୋଗ ଯୋଗାଇ ଦେବାକୁ ମୋ' ସରକାର ପ୍ରତିଶ୍ରୁତିବଦ୍ଧ ।

ଗତ ୨୦୦୭-୦୮ରେ ବିଭିନ୍ନ ନଗରାଞ୍ଚଳ ସ୍ଥାନୀୟ ସଂସ୍ଥା ଦ୍ୱାରା ୧୪୮ ଗୋଟି ସହରାଞ୍ଚଳ ପାନୀୟ ଯୋଗାଣ ବ୍ୟବସ୍ଥାର ଉନ୍ନୟନ / କ୍ଷମତାବୃଦ୍ଧି / ସଂପ୍ରସାରଣ କାର୍ଯ୍ୟ ହାତକୁ ନିଆଯାଇଛି । କେତେକ ଅଞ୍ଚଳରେ ଆର୍.ଏଲ୍.ଟି.ଏ.ପି. ଯୋଜନାରେ ୧୧ଟି ଜଳଯୋଗାଣ ପ୍ରକଳ୍ପ ହାତକୁ ନିଆଯାଇଛି । ତନ୍ମଧ୍ୟରୁ ବଲାଙ୍ଗୀର, ଜୟପୁର ଓ ନବରଙ୍ଗପୁର ଟାଉନରେ ୩ଟି ପ୍ରକଳ୍ପ ପୂର୍ଣ୍ଣାଙ୍ଗ ହୋଇଥିଲାବେଳେ ଅବଶିଷ୍ଟ ପ୍ରକଳ୍ପଗୁଡ଼ିକର କାର୍ଯ୍ୟ ବିଭିନ୍ନ ପର୍ଯ୍ୟାୟରେ ରହିଛି ।

ତ୍ୱରିତ ସହରାଞ୍ଚଳ ଜଳଯୋଗାଣ କାର୍ଯ୍ୟକ୍ରମ (ଏ.ୟୁ.ଡବ୍ଲ୍ୟୁ.ଏସ୍.ପି.)ରେ ୩୪ ଗୋଟି ଜଳଯୋଗାଣ ପ୍ରକଳ୍ପର କାମ ହାତକୁ ନିଆଯାଇଛି । ଏଥିମଧ୍ୟରୁ ୧୭ଟି ପ୍ରକଳ୍ପ ଶେଷ ହୋଇଥିଲାବେଳେ ୭ଟିର କାର୍ଯ୍ୟ ଚାଲୁରହିଛି, ୨ଟି ପ୍ରକଳ୍ପ ଆଂଶିକଭାବେ କାର୍ଯ୍ୟକାରୀ ହୋଇଛି ଓ ଅବଶିଷ୍ଟ ୮ ଗୋଟି ପ୍ରକଳ୍ପଗୁଡ଼ିକର ନିର୍ମାଣ ବିଭିନ୍ନ ପର୍ଯ୍ୟାୟରେ ରହିଛି ।

ଭାରତ ସରକାର ଭୁବନେଶ୍ୱର ଓ ପୁରୀକୁ ଜବାହରଲାଲ ନେହରୁ ଜାତୀୟ ସହରାଞ୍ଚଳ ନବୀକରଣ ମିଶନ (ଜେ.ଏନ୍.ଏନ୍.ୟୁ.ଆର୍.ଏମ୍.)ରେ ଅନ୍ତର୍ଭୁକ୍ତ କରିଛନ୍ତି । ଉଭୟ ସହର ପାଇଁ ନଗର ଉନ୍ନୟନ ଯୋଜନା ଅନୁମୋଦିତ ହୋଇଛି । ଜେ.ଏନ୍.ଏନ୍.ୟୁ.ଆର୍.ଏମ୍.ରେ ଅନ୍ତର୍ଗତ ନଗରାଞ୍ଚଳ ଭିତ୍ତିଭୂମି ପ୍ରଶାସନ ଅଧୀନରେ ଭୁବନେଶ୍ୱର ସହରର ସମନ୍ୱିତ ସୋରେଜ୍ ପ୍ରକଳ୍ପ ପାଇଁ ୭୫୪ କୋଟି ଟଙ୍କା ମଂଜୁର ହୋଇଥିଲାବେଳେ ୪୯୮.୯୧ କୋଟି ଟଙ୍କା ଜେ.ଏନ୍.ଏନ୍.ୟୁ.ଆର୍.ଏମ୍. ବହନ କରିବ ।

ସହରାଞ୍ଚଳ ଦରିଦ୍ର ଜନସାଧାରଣଙ୍କ ମୌଳିକ ସେବାଯୋଜନା (ବି.ଏସ୍.ୟୁ.ପି.) ଅଧୀନରେ ଜେ.ଏନ୍.ଏନ୍.ୟୁ.ଆର୍.ଏମ୍. ଯୋଜନା ଅନୁଯାୟୀ ଭୁବନେଶ୍ୱର ଓ ପୁରୀର ୪ଟି ବସ୍ତି ଅଞ୍ଚଳର ବିକାଶ ପାଇଁ ୪,୩୫୫.୫୮ ଲକ୍ଷ ଟଙ୍କା ମଂଜୁର ହୋଇଛି । ଏହାଦ୍ୱାରା ନଗରାଞ୍ଚଳରେ ୨୦୦୮ ଗରିବ ପରିବାର ଉପକୃତ ହେବେ ।

କ୍ଷୁଦ୍ର ଓ ମଧ୍ୟମ ସହରାଞ୍ଚଳ ଭିତ୍ତିଭୂମି ଉନ୍ନୟନ (ୟୁ.ଆଇ.ଡି.ଏସ୍.ଏସ୍.ଏମ୍.ଟି.) ଯୋଜନାରେ ୩୪ଟି ମ୍ୟୁନିସିପାଲିଟି, ୮ଟି ଜିଲ୍ଲା ସଦରମହକୁମାରେ ଥିବା ବିଜ୍ଞାପିତ ଅଞ୍ଚଳ ପରିଷଦ ଓ କଟକ ମହାନଗର ନିଗମକୁ ଅନ୍ତର୍ଭୁକ୍ତ କରାଯାଇଛି । ୭ଟି ଟାଉନ୍ ପାଇଁ ଭାରତ ସରକାର ୧୪୪୦୬.୪୬ ଲକ୍ଷ ଟଙ୍କାର ୧୧ଟି ପ୍ରକଳ୍ପ ମଂଜୁର କରିଛନ୍ତି । ଅନ୍ୟ ମ୍ୟୁନିସିପାଲିଟି ଓ ଜିଲ୍ଲା ସଦର ମହକୁମାରେ ବିଜ୍ଞାପିତ ଅଞ୍ଚଳ ପରିଷଦ ପାଇଁ ଉଦ୍ଦିଷ୍ଟ ପ୍ରକଳ୍ପଗୁଡ଼ିକୁ ୨୦୦୭-୦୮ରେ ମଂଜୁର ମିଳିବା ପାଇଁ ଅପେକ୍ଷାରେ ରହିଛି ।

ଆନ୍ତର୍ଜାତିକ ସହଯୋଗ ପାଇଁ ଉଦ୍ଦିଷ୍ଟ ଜାପାନ ବ୍ୟାଙ୍କ (ଜେ.ବି.ଆଇ.ସି.)ରୁ ୭୫,୭୪୪.୦୦ ଲକ୍ଷ ଟଙ୍କାର ଋଣ ସହାୟତା ନିଆଯାଇ କଟକର ସମନ୍ୱିତ ସ୍ୱରେଜ୍ ଓ ଡ୍ରେନେଜ୍ ପ୍ରକଳ୍ପ କାମ ହାତକୁ ନିଆଯାଇଛି ।

ଭୁବନେଶ୍ୱର, କଟକ, ଚୌଦ୍ୱାର, ଖୋର୍ଦ୍ଧା ଓ ଜଟଣୀର ନଗରାଞ୍ଚଳକୁ ନେଇ ବୃହତ୍ତର କଟକ-ଭୁବନେଶ୍ୱର ଅର୍ବାନ କମ୍ପ୍ଲେକ୍ସ ପାଇଁ ଆଗାମୀ ଯୋଜନା ଓ ଭିଜନ ୨୦୩୦ ଆଇ.ଆଇ.ଟି., ଖଡ଼ଗପୁର ଦ୍ୱାରା ପ୍ରସ୍ତୁତ କରାଯାଇଛି । ଭୁବନେଶ୍ୱର ଉନ୍ନୟନ ଯୋଜନା ଓ କଟକ ଉନ୍ନୟନ ଯୋଜନା ପାଇଁ ବିସ୍ତୃତ ଯୋଜନା ପ୍ରସ୍ତୁତ କରାଯାଇଛି ।

ରାଉରକେଲା, ସମ୍ବଲପୁର, ବ୍ରହ୍ମପୁର, ପୁରୀ, ପାରାଦୀପ, ଅନୁଗୋଳ-ତାଳଚେର, କଳିଙ୍ଗନଗର ଓ ଝାରସୁଗୁଡ଼ାର ଶିଳ୍ପାଞ୍ଚଳମାନଙ୍କ ବିସ୍ତୃତ ଉନ୍ନୟନ ଯୋଜନା ଓ ମାଷ୍ଟର ପ୍ଲାନ ପ୍ରସ୍ତୁତି ମଧ୍ୟ ମୋ' ସରକାର ହାତକୁ ନେଇଛନ୍ତି ।

ପ୍ରଶାସନର କଡ଼ା ନଜରରେ ମଦ ପ୍ରସ୍ତୁତି, ଡିଷ୍ଟିଲେସନ ଓ ବିକ୍ରୀବଟା ପାଇଁ ଏକ ନୀତି ମୋ' ସରକାର ପ୍ରଣୟନ କରିଛନ୍ତି । ଏହା ଅତିରିକ୍ତ ସମ୍ବଳ ସଂଗ୍ରହ ସହିତ ମଦର ବେଆଇନ କାରବାରକୁ ରୋକିବାକୁ ସାହାଯ୍ୟ କରିପାରିଛି ।

ମଦର ବେଆଇନ କାରବାରକୁ ରୋକିବା ପାଇଁ ୨୦୦୬-୦୭ ମସିହାରେ ବିହାର ଓ ଓଡ଼ିଶା ଅବକାରୀ ଆଇନ, ୧୯୧୫କୁ ସଂଶୋଧନ କରାଯାଇ ଅବକାରୀ ଅପରାଧ ଜନିତ ଦଣ୍ଡବିଧାନକୁ ଅଧିକ କଠୋର କରାଯାଇଛି । ଅବକାରୀ ଏନ୍‌ଫୋର୍ସମେଣ୍ଟ ବ୍ୟବସ୍ଥାକୁ କଡ଼ାକଡ଼ି କରାଯାଇଛି । ସନ୍ଦିଗ୍ଧ ବେଆଇନ ମଦ ପ୍ରସ୍ତୁତି କେନ୍ଦ୍ର ଓ ନକଲି ମଦ ପ୍ରସ୍ତୁତି ଓ କାରବାର ଉପରେ ତୀକ୍ଷ୍ଣ ଦୃଷ୍ଟି ରଖିବାପାଇଁ ଜିଲ୍ଲାପାଳ ଓ ଏସ୍.ପି.ମାନଙ୍କୁ ନିର୍ଦ୍ଦେଶ ଦିଆଯାଇଛି । ବେଆଇନ ମଦ ପ୍ରସ୍ତୁତି, ଯୋଗାଣ ଓ ବିକ୍ରୀ କାରବାର ରୋକିବା ପାଇଁ ଏନ୍‌ଫୋର୍ସମେଣ୍ଟ ବ୍ୟବସ୍ଥାକୁ ଅଧିକ ଜୋରଦାର୍ କରିବା ଜିଲ୍ଲାସ୍ତର ପୋଲିସ ଓ ଅବକାରୀ କର୍ମଚାରୀମାନଙ୍କ ଦ୍ୱାରା ମିଳିତ ଚଢ଼ାଉ କରାଯାଇଛି ।

୨୦୦୭-୦୮ରେ ମୋ' ସରକାର କଟକ, ବାଲେଶ୍ୱର, ଜୟପୁର, ବଲାଙ୍ଗୀର ଓ ଭୁବନେଶ୍ୱରରେ ୫ଟି ଅତିରିକ୍ତ ଜିଲ୍ଲା ଓ ଦୌରା ଜଜ୍ ତଥା ସ୍ୱତନ୍ତ୍ର ଜଜ୍ (ଭିଜିଲାନ୍ସ) କୋର୍ଟ ପ୍ରତିଷ୍ଠା କରିଛନ୍ତି । ଏହାଛଡ଼ା ଯାଜପୁର ରୋଡ଼ରେ ଏକ ସିଭିଲ ଜଜ୍ (ସିନିୟର ଡିଭିଜନ) ଓ ଚଣ୍ଡିଖୋଲଠାରେ ଏକ ସିଭିଲ ଜଜ୍ (ଜୁନିୟର ଡିଭିଜନ) କୋର୍ଟ ମଧ୍ୟ ପ୍ରତିଷ୍ଠା କରାଯାଇଛି ।

ସୂଚନା ଅଧିକାର ଅଧିନିୟମର ସଠିକ୍ କାର୍ଯ୍ୟକାରିତା ଜରିଆରେ ମୋ' ସରକାର ଅଧିକ ସ୍ୱଚ୍ଛତା ଓ ଉତ୍ତରଦାୟିତ୍ୱ ଭାବକୁ ବଜାୟ ରଖିବା ପାଇଁ ପ୍ରତିଶ୍ରୁତିବଦ୍ଧ । ପ୍ରତ୍ୟେକଙ୍କୁ ତୁରନ୍ତ ନ୍ୟାୟ ପ୍ରଦାନ ପାଇଁ ମୋ' ସରକାର ପ୍ରତିଶ୍ରୁତିବଦ୍ଧ । ସେଥିପାଇଁ ୨୦୦୭-୦୮ ମସିହାରେ ଓଡ଼ିଶା ରାଜ୍ୟ ଲିଗାଲ ସର୍ଭିସ୍‌ର କର୍ତ୍ତୃପକ୍ଷଙ୍କ ଦ୍ୱାରା ଆୟୋଜିତ ୪୭୭ଟି ଲୋକ ଅଦାଲତ ମାଧ୍ୟମରେ ଜିଲ୍ଲା ଲିଗାଲ ସର୍ଭିସେସ୍ କର୍ତ୍ତୃପକ୍ଷ ଓ ତାଲୁକ ଲିଗାଲ ସର୍ଭିସେସ କମିଟିଙ୍କ ଦ୍ୱାରା ମୋଟ ୧,୦୧,୮୮୦ଟି ମାମଲାର ଫଏସଲା କରାଯାଇଛି ।

ଗ୍ରାମାଞ୍ଚଳର ଜନସାଧାରଣଙ୍କ ମଧ୍ୟରେ ଆଇନଗତ ସଚେତନତା ଜାଗ୍ରତ କରିବା ପାଇଁ ୨୦୦୭-୦୮ରେ ୪୮୩ ଗୋଟି ଆଇନଗତ ସଚେତନତା/ସାକ୍ଷରତା ଶିବିର ଆୟୋଜନ କରାଯାଇଛି ।

ରାଜ୍ୟରେ କ୍ରୀଡ଼ାର ବିକାଶ ପାଇଁ ମୋ' ସରକାର ଆଗ୍ରହ ପ୍ରକାଶ କରିଛନ୍ତି । ନଭେମ୍ବର ୨୦୦୭ରେ ଗୋଆରେ ଅନୁଷ୍ଠିତ ସର୍ବଭାରତୀୟ ଗ୍ରାମ୍ୟ ସ୍ପୋର୍ଟସ ଟୁର୍ଣ୍ଣାମେଣ୍ଟରେ ରାଜ୍ୟ ଗ୍ରାମାଞ୍ଚଳ ଫୁଟବଲ୍ ଟିମ୍ ଚାମ୍ପିଅନ୍ ହୋଇଛି । ଗତବର୍ଷ ଶ୍ରୀଲଙ୍କାରେ ଅନୁଷ୍ଠିତ ଏସ୍.ଏ.ଏଫ୍. ଜୁନିୟର ଆଥ୍‌ଲେଟିକ୍ ମିଟ୍‌ରେ ଭୁବନେଶ୍ୱର ସ୍ପୋର୍ଟସ୍ ହଷ୍ଟେଲର ଶ୍ରାବଣୀ ନନ୍ଦ ଓ ରେଣୁବାଳା ମହାନ୍ତ ପଦକ ଜିତିଛନ୍ତି । ଜାତୀୟ ହକିଦଳର ସଫଳତାରେ ଉଲ୍ଲେଖନୀୟ ଅବଦାନ ଓଡ଼ିଶାର ହକି ଖେଳାଳୀଙ୍କୁ ଗୌରବ ଆଣି ଦେଇଛି ।

ସଙ୍ଗୀତ ଓ ନୃତ୍ୟରେ ଶାସ୍ତ୍ରୀୟ ଏବଂ ମନ୍ଦିର କଳାରେ ଓଡ଼ିଶାର ସାଂସ୍କୃତିକ ଐତିହ୍ୟ ପ୍ରତିଫଳିତ । ଦ୍ୱାଦଶ ଅର୍ଥ କମିଶନଙ୍କ ଅନୁଦାନରେ ମୋ' ସରକାର ମନ୍ଦିର ପ୍ରାଚୀନ କଳାର ସଂରକ୍ଷଣ କାମ ହାତକୁ ନେଇଛନ୍ତି । ଓଡ଼ିଶୀ ନୃତ୍ୟ ଓ ସଂଗୀତର ବିକାଶ ପାଇଁ ଭୁବନେଶ୍ୱରରେ ପ୍ରତିବର୍ଷ ଓଡ଼ିଶୀ ନୃତ୍ୟ ମହୋତ୍ସବର ଆୟୋଜନ କରିବାକୁ ସଂସ୍କୃତି ବିଭାଗ ନିଷ୍ପତ୍ତି ନେଇଛନ୍ତି । ଚଣ୍ଡୀଗଡ଼ ଓ ନୂଆଦିଲ୍ଲୀରେ ଓଡ଼ିଶୀ ଉତ୍ସବ ଓ ଓଡ଼ିଶୀ ସନ୍ଧ୍ୟା କାର୍ଯ୍ୟକ୍ରମ ଅନୁଷ୍ଠିତ ହୋଇଯାଇଛି । ଅଧିକ ଦୁଃସ୍ଥ କଳାକାରମାନଙ୍କୁ ସାମାଜିକ ସୁରକ୍ଷା ଯୋଗାଇ ଦେବାପାଇଁ ମୋ' ସରକାର ଚଳିତବର୍ଷ ପେନ୍‌ସନ୍‌ଧାରୀଙ୍କ ସଂଖ୍ୟା ଆହୁରି ୫୦୦ ବୃଦ୍ଧି କରିବାକୁ ସ୍ଥିର କରିଛନ୍ତି । ପ୍ରଚଳିତ ମାସିକ ୫୦୦ ଟଙ୍କା ପେନ୍‌ସନ୍‌କୁ ବୃଦ୍ଧି କରିବା ପାଇଁ ମଧ୍ୟ ମୋ' ସରକାର ଚିନ୍ତା କରୁଛନ୍ତି ।

ଜନସାଧାରଣଙ୍କ ସକ୍ରିୟ ସହଯୋଗରେ ୨୦୦୭-୦୮ ମସିହାରେ ବିଭିନ୍ନ ଯୋଜନା ମାଧ୍ୟମରେ ରାଜ୍ୟର ୫୭,୭୨୯ ହେକ୍ଟରରେ ବନୀକରଣ କାର୍ଯ୍ୟକ୍ରମ ହାତକୁ ନିଆଯାଇଛି । ଲୋକଙ୍କ ଭିତରେ ବିଶେଷ କରି ଅନୁସୂଚିତ ଜନଜାତି ଲୋକଙ୍କ ଭିତରେ ଯୁଗ୍ମ ଜଙ୍ଗଲ ପରିଚାଳନା ଯୋଜନାରେ ସଂଶ୍ଳିଷ୍ଟ ହେବା ଦ୍ୱାରା 'ଜଙ୍ଗଲ ମୋର' ଭାବନା ସୃଷ୍ଟି ହୋଇଛି । ବର୍ତ୍ତମାନ ରାଜ୍ୟରେ ୧୦,୫୦୪ ଗୋଟି ବନ ସଂରକ୍ଷଣ ସମିତି ଗଠିତ ହୋଇଛି । ଏମାନେ ଜଙ୍ଗଲ ସୁରକ୍ଷା ଓ ନୂତନ ଜଙ୍ଗଲ ସୃଷ୍ଟି ପାଇଁ ସକ୍ରିୟ ଭାବରେ କାମ କରୁଛନ୍ତି । ୨୦୦୭-୦୮ ବର୍ଷରେ ବନୀକରଣ କାର୍ଯ୍ୟକ୍ରମରେ ୫୦୦ଟି ବିକେନ୍ଦ୍ରୀକୃତ ନର୍ସରୀରୁ ୫୦ ଲକ୍ଷ ଚାରା ଉତ୍ପାଦନ କରାଯାଇ ୫୦୦ଟି ବଛାବଛା ବନସଂରକ୍ଷଣ ସମିତି / ସ୍ୱୟଂ ସହାୟକ ଗୋଷ୍ଠୀ / ବ୍ୟକ୍ତିବିଶେଷଙ୍କ ଜରିଆରେ ବିକ୍ରୀ କରାଯିବ ।

ବାୟୁ ଓ ଜଳ ପ୍ରଦୂଷଣ ଉପରେ ନିରନ୍ତର ନଜର ରଖାଯାଇଛି । 'ଜଳ ଆଇନ', 'ବାୟୁ ଆଇନ' ଓ 'ବାୟୋମେଡ଼ିକାଲ ୱେଷ୍ଟ ନିୟମାବଳୀ' ଅନୁଯାୟୀ ଯେକୌଣସି ଆଦେଶର ଶୁଣାଣି ପାଇଁ ରାଜ୍ୟ ସରକାର ତିନିଗୋଟି ଅପିଲ କର୍ତ୍ତୃପକ୍ଷ ଗଠନ କରିଛନ୍ତି । ଜିଲ୍ଲାପାଳମାନଙ୍କ ଅଧ୍ୟକ୍ଷତାରେ ୩୦ଟି ଜିଲ୍ଲା ପରିବେଶ ସମିତି ଗଠନ କରାଯାଇଛି ।

ଆଞ୍ଚଳିକ ବୈଷମ୍ୟ ଦୂରୀକରଣ ଉପରେ ରାଜ୍ୟ ସରକାରଙ୍କ ଦୃଷ୍ଟି କେନ୍ଦ୍ରିତ ରହିଛି । ଆଞ୍ଚଳିକ ବୈଷମ୍ୟ ଦୂରୀକରଣ ପାଇଁ ଅନେକଗୁଡ଼ିଏ କାର୍ଯ୍ୟକ୍ରମ ଆରମ୍ଭ ହୋଇଛି । ସେଗୁଡ଼ିକ ମଧ୍ୟରେ -

(କ) କେତେକ ଜିଲ୍ଲା ପାଇଁ ସଂଶୋଧିତ ଦୀର୍ଘମିଆଦି କ୍ରିୟାଭିମୁଖୀ ଯୋଜନା

(ଖ) ପଛୁଆ ଅଞ୍ଚଳ ମଂଜୁରୀପାଣ୍ଠିରେ ୧୯ଟି ଜିଲ୍ଲାର ଅନ୍ତର୍ଭୁକ୍ତ

(ଗ) କେ.ବି.କେ. ଜିଲ୍ଲା ପାଇଁ ବିଜୁ କେ.ବି.କେ. ଯୋଜନା

(ଘ) ପଛୁଆ ଅଞ୍ଚଳ ମଂଜୁରୀ ପାଣ୍ଠିରୁ ବାଦ ପଡ଼ିଥିବା ଜିଲ୍ଲାମାନଙ୍କ ପାଇଁ ଗୋପବନ୍ଧୁ ଗ୍ରାମୀଣ ଯୋଜନା

(ଙ) ବିଜୁ ଗ୍ରାମଜ୍ୟୋତି ଯୋଜନା

(ଚ) ପଶ୍ଚିମ ଓଡ଼ିଶା ବିକାଶ ପରିଷଦ ଦ୍ୱାରା ବିଶେଷ ଭିତ୍ତିଭୂମିର ସୁବିଧା

(ଛ) ସମ୍ବିଧାନର ୨୭୫(୧) ଧାରା ଅନୁଯାୟୀ ଓ ଆଦିବାସୀ ଉପଯୋଜନା ଅନୁଯାୟୀ ଅନୁସୂଚିତ ଜନଜାତି ଅଞ୍ଚଳରେ ଭିତ୍ତିଭୂମିର ବିକାଶ ଅନ୍ତର୍ଭୁକ୍ତ ।

ଗତ କିଛି ବର୍ଷ ଧରି ମୋ' ସରକାର ବ୍ୟୟ ସମୀକରଣ ଓ ରାଜସ୍ୱ ଅଭିବୃଦ୍ଧି ପାଇଁ ଆର୍ଥିକ ସଂସ୍କାର ମାଧ୍ୟମରେ ରାଜ୍ୟର ଆର୍ଥିକ ଅବସ୍ଥାରେ ଉନ୍ନତି ଆଣିବାକୁ ନାନାବିଧ ପଦକ୍ଷେପ ଗ୍ରହଣ କରିଛନ୍ତି । ଫଳରେ, ୨୦୦୫-୦୬ ଆର୍ଥିକ ବର୍ଷ ଶେଷରେ ୪୮୧.୧୯ କୋଟି ଟଙ୍କା ରାଜସ୍ୱ ବଳକା ସୃଷ୍ଟି ହୋଇପାରିଛି । ପରବର୍ତ୍ତୀ ବର୍ଷମାନଙ୍କରେ ମଧ୍ୟ ଏହି ଅବସ୍ଥା ଅବ୍ୟାହତ ରହିଛି । ୨୦୦୦-୦୧ରୁ ୨୦୦୬-୦୭ ମଧ୍ୟରେ ରାଜ୍ୟର ନିଜସ୍ୱ ଟିକସ ଓ ଅଣଟିକସ ରାଜସ୍ୱରେ ଆଖିଦୃଶିଆ ଅଭିବୃଦ୍ଧି ଘଟିଛି ।

କିନ୍ତୁ ଏ କ୍ଷେତ୍ରରେ ଆତ୍ମସନ୍ତୋଷର ସ୍ଥାନ ନାହିଁ । ଋଣହାରକୁ ଠିକ୍ ବାଟରେ ପରିଚାଳନା କରିବା ରାଜ୍ୟ ସରକାରଙ୍କ ପାଇଁ ଏକ ଧାରାବାହିକ ସମସ୍ୟା ଭାବରେ ରହିଆସିଛି । ଦ୍ୱାଦଶ ଅର୍ଥ କମିଶନଙ୍କ ଦ୍ୱାରା ଶତକଡ଼ା ୨୮ ଭାଗ ସୁପାରିଶ କରାଯାଇଥିବା ସ୍ଥଳେ ଆମର ୨୦୦୬-୦୭ ବର୍ଷରେ ଋଣ ଜି.ଏସ୍.ଡି.ପି. (୧୯୯୯-୨୦୦୦ ମୂଲ୍ୟରେ) ହାର ଶତକଡ଼ା ୪୪.୮୭ ଭାଗ ରହିଛି । ମୋ' ସରକାର ଋଣଭାର କମାଇବା ପାଇଁ ସଂକଳ୍ପବଦ୍ଧ, ଫଳରେ ଋଣଭାର ବୃଦ୍ଧି କମିବାରେ ଲାଗିଛି । ଉଦାହରଣ ସ୍ୱରୂପ- ୨୦୦୩-୦୪ରେ ମୋଟ ଋଣ ପରିମାଣ ୩୮୨୨.୭୭ କୋଟି ଟଙ୍କା ଥିଲାବେଳେ ୨୦୦୬-୦୭ରେ ଓଡ଼ିଶାର ଏ.ଜି.ଙ୍କ ପ୍ରଦତ୍ତ ତଥ୍ୟ ଅନୁଯାୟୀ ଏହା ୭୯୩.୦୬ କୋଟି ଟଙ୍କାକୁ ଖସି ଆସିଛି । ଏହା ମୋ' ସରକାରଙ୍କର ଏକ ଉଲ୍ଲେଖନୀୟ ସଫଳତା ।

ସାଧାରଣ ଲୋକଙ୍କ ଆଶା ଆକାଂକ୍ଷା ପୂରଣ ପାଇଁ ଏକ ଜନମଂଗଳ ରାଜ୍ୟ ଭାବରେ ମୋ' ସରକାର ସଂକଳ୍ପବଦ୍ଧ । କିନ୍ତୁ ଅଣଉତ୍ପାଦକ ଖର୍ଚ୍ଚ କାଟ ସହିତ ଭିତ୍ତିଭୂମିର ବିକାଶ ପାଇଁ ପୁଞ୍ଜି ବିନିଯୋଗ ବଢ଼ାଇବାକୁ ପଡ଼ିବ । ଯୋଜନା ଅଟକଳ ବୃଦ୍ଧି ଦ୍ୱାରା ଉନ୍ନୟନ ଓ କଲ୍ୟାଣମୂଳକ କାର୍ଯ୍ୟକ୍ରମକୁ ଅଧିକ କରିବା ପାଇଁ ପର୍ଯ୍ୟାପ୍ତ ସୁଯୋଗ ରହିଛି ।

ଏହି ଅବସରରେ ମୋ' ସରକାରଙ୍କ ଗୁରୁତ୍ୱପୂର୍ଣ୍ଣ ନୀତି ଓ କାଯ୍ୟକ୍ରମର ସଂକ୍ଷେପ ବିବରଣୀ ଦେବାପାଇଁ ମୁଁ ଉଦ୍ୟମ କରିଛି । ରାଜ୍ୟର ଜନସାଧାରଣଙ୍କର କଲ୍ୟାଣ ନିମନ୍ତେ ଗ୍ରହଣ କରାଯାଇଥିବା ସମସ୍ତ କାର୍ଯ୍ୟକ୍ରମ ଓ ଦେଇଥିବା ପ୍ରତିଶ୍ରୁତି ପୂରଣ କରିବା ଦିଗରେ ମୋ' ସରକାର ଯଥାସାଧ୍ୟ ଉଦ୍ୟମ କରୁଛନ୍ତି । ଆମର ଚରମ ଲକ୍ଷ୍ୟ ହେଉଛି ଏକ ନ୍ୟାୟପୂର୍ଣ୍ଣ, ଗଣତାନ୍ତ୍ରିକ ଓ ଧର୍ମ ନିରପେକ୍ଷ ସମାଜ ଗଠନ ଏବଂ ଅଭାବ, ବିଭେଦ ଓ ସକଳ ପ୍ରକାର ସଂକୀର୍ଣ୍ଣତା ଓ ଗୋଷ୍ଠୀଗତ ଭାବନାରୁ ମୁକ୍ତ ଏକ ଦୃଢ଼ ଆର୍ଥିକ ବ୍ୟବସ୍ଥା । ଏହି ପବିତ୍ର ଗୃହର ସମସ୍ତ ଶ୍ରମ ଏ ଦିଗରେ ବିନିଯୋଗ ହେବ ବୋଲି ମୁଁ ନିଃସନ୍ଦେହ ।

ଅବଶେଷରେ ଆପଣମାନଙ୍କର ବିତର୍କ ଓ ଏହି ଅଧିବେଶନର କାର୍ଯ୍ୟକ୍ରମଗୁଡ଼ିକୁ ସୂଚାରୁରୂପେ ତୁଲାଇବା ସହ ଏକ ସଫଳ ବଜେଟ୍ ଅଧିବେଶନ ନିମନ୍ତେ ଆପଣମାନଙ୍କୁ ଶୁଭେଚ୍ଛା ଜ୍ଞାପନ କରୁଛି । ଓଡ଼ିଶା ବିଧାନସଭା ଅନ୍ୟ ବିଧାନସଭାଗୁଡ଼ିକ ପାଇଁ ସୁଦୃଢ଼ ଗଣତନ୍ତ୍ରର ଏକ ଉଜ୍ଜ୍ୱଳ ଉଦାହରଣ ହେଉ ।

ଏଥିସହିତ ମୁଁ ଆପଣମାନଙ୍କର ବିଚାର ଆଲୋଚନାର ସଫଳତା କାମନା କରୁଛି ।

ଜୟହିନ୍ଦ୍

▬▬▬▬▬▬

# ୨୦୦୮-୦୯ ଆର୍ଥିକ ବର୍ଷର ବଜେଟ ଓଡ଼ିଶା ବିଧାନସଭାରେ ଆଗତ କରି ମାନ୍ୟବର ଅର୍ଥ ମନ୍ତ୍ରୀ ଶ୍ରୀ ପ୍ରଫୁଲ୍ଲଚନ୍ଦ୍ର ଘଡାଇଙ୍କ ଅଭିଭାଷଣ



ମାନ୍ୟବର ବାଚସ୍ପତି ମହୋଦୟ !

ଏହି ପବିତ୍ର ଗୃହରେ ୨୦୦୮-୦୯ ଆର୍ଥିକ ବର୍ଷ ପାଇଁ ବଜେଟ୍ ଆଗତ କରିବାକୁ ମୋତେ ସୁଯୋଗ ଦେଇଥିବାରୁ ମୁଁ ପ୍ରଥମେ ଆପଣଙ୍କୁ ଏବଂ ମାନ୍ୟବର ମୁଖ୍ୟମନ୍ତ୍ରୀଙ୍କୁ ମୋର କୃତଜ୍ଞତା ଜଣାଉଛି । ବିଗତ ବର୍ଷଗୁଡ଼ିକରେ ମୁଁ ଏହି ଗୃହର ମାନ୍ୟବର ବିରୋଧୀଦଳ ନେତା ଓ ମାନ୍ୟବର ସଦସ୍ୟ ଏବଂ ସଦସ୍ୟାମାନଙ୍କର ଅକୁଣ୍ଠ ସାହାଯ୍ୟ ସହଯୋଗ ପାଇଥିବା ଯୋଗୁଁ ଆପଣଙ୍କ ଜରିଆରେ ସେମାନଙ୍କୁ ମଧ୍ୟ ମୋର ଆନ୍ତରିକ କୃତଜ୍ଞତା ଜଣାଉଛି । ଅର୍ଥମନ୍ତ୍ରୀ ହିସାବରେ କ୍ରମାଗତ ଭାବେ ପଞ୍ଚମ ବର୍ଷ ପାଇଁ ବଜେଟ୍ ଉପସ୍ଥାପନ କରିବା ମୋର ସୌଭାଗ୍ୟ । ବିଗତ ଦିନରେ ବିପର୍ଯ୍ୟସ୍ତ ଆର୍ଥିକ ପରିସ୍ଥିତିକୁ ସୁଧାରିବା ଆମ ସରକାରଙ୍କ ପକ୍ଷରେ ଏକ ଆହ୍ୱାନ ଥିଲା । ଏହି ଆହ୍ୱାନକୁ ଆମେ ନମ୍ରତାର ସହିତ ଗ୍ରହଣ କରିଥିଲୁ । ଆଗାମୀ ବର୍ଷରେ ମଧ୍ୟ ଓଡ଼ିଶାର ଆର୍ଥିକ ସ୍ଥିତିକୁ ଅଧିକ ଶୃଙ୍ଖଳିତ ମାର୍ଗରେ ଆଗେଇନେବାକୁ ଆପଣମାନଙ୍କର ସାହାଯ୍ୟ ଓ ସହଯୋଗ ପୂର୍ବଭଳି ନିଶ୍ଚୟ ମିଳିବ, ଏ ଆଶା ଓ ବିଶ୍ୱାସ ମୋର ରହିଛି ।


ଓଡିଶା ସରକାର

ଓଡିଶା ବିଧାନ ସଭାରେ
୨୦୦୮-୦୯ ଆର୍ଥିକ ବର୍ଷ ପାଇଁ
ବଜେଟ୍ ଉପସ୍ଥାପନ କରି
ଶ୍ରୀ ପ୍ରଫୁଲ୍ଲ ଚନ୍ଦ୍ର ଘଡାଇ,
ଅର୍ଥ ମନ୍ତ୍ରୀଙ୍କର ଅଭିଭାଷଣ

୧୬ ଫେବୃଆରୀ, ୨୦୦୮

ବିଗତ ବର୍ଷଗୁଡ଼ିକରେ ରାଜ୍ୟର ଆର୍ଥିକ ପରିଚାଳନାରେ ଯେଉଁ ଉନ୍ନତି ସାଧିତ ହୋଇଛି, ଦାରିଦ୍ର୍ୟ ଦୂରୀକରଣ ଓ ବିଭିନ୍ନ ଉନ୍ନୟନମୂଳକ କାର୍ଯ୍ୟ ପାଇଁ ଯେଉଁ ପଦକ୍ଷେପ ନିଆଯାଇଛି ଏବଂ ଆଗାମୀ ଦିନରେ ସରକାର ଯେଉଁ ଯୋଜନା କାର୍ଯ୍ୟକାରୀ କରିବେ ତାହା ମହାମହିମ ରାଜ୍ୟପାଳଙ୍କ ଅଭିଭାଷଣରେ ବିସ୍ତୃତଭାବେ ବର୍ଣ୍ଣନା କରାଯାଇଛି । ମୁଁ ସେସବୁର ପୁନରାବୃତ୍ତି ନକରି ୨୦୦୮-୦୯ ଆର୍ଥିକ ବର୍ଷର ବଜେଟ୍ ଅଟକଳ ସମ୍ପର୍କରେ ଆଲୋକପାତ କରୁଅଛି ।

ଆମର ସମ୍ବଳ ସୀମିତ, କିନ୍ତୁ ଆବଶ୍ୟକତା ଅନେକ । ରାଜ୍ୟର ପ୍ରଗତି ଅଧିକ ସମ୍ବଳ ସଂଗ୍ରହ ଏବଂ ସଦୁପଯୋଗ ଉପରେ ନିର୍ଭର କରିଥାଏ । ଏହି ପରିପ୍ରେକ୍ଷୀରେ ଓଡ଼ିଶାର ଜନସାଧାରଣଙ୍କ ଆଶା ଆକାଂକ୍ଷାକୁ ପୂରଣ କରି ରାଜ୍ୟକୁ ପ୍ରଗତି ପଥରେ ଆଗେଇ ନେବା ପାଇଁ ୨୦୦୮-୦୯ ବଜେଟରେ ସୀମିତ ସମ୍ବଳ ମଧ୍ୟରେ କେତେଗୁଡ଼ିଏ ଗୁରୁତ୍ୱପୂର୍ଣ୍ଣ ଦିଗ ପ୍ରତି ଦୃଷ୍ଟି ଦିଆଯାଇଛି । ସେଗୁଡ଼ିକ ହେଲା-

- ଓଡ଼ିଶା ବିତ୍ତୀୟ ଉତ୍ତରଦାୟୀ ଓ ବଜେଟ ପରିଚାଳନା ଆଇନର ଧାରା ୫ରେ ସୂଚିତ ଆର୍ଥିକ ଲକ୍ଷ୍ୟ ହାସଲ
- ଦ୍ୱାଦଶ ଅର୍ଥ କମିଶନଙ୍କର ସୁପାରିଶ
- ଅଗ୍ରାଧିକାର ଭିତ୍ତିରେ ସୀମିତ ସମ୍ବଳର ବିନିଯୋଗ
- ଅଧିକ କେନ୍ଦ୍ରୀୟ ସହାୟତା ହାସଲ ପାଇଁ ରାଜ୍ୟ ସରକାରଙ୍କ ଅଂଶ ଧନ ବୃଦ୍ଧି

- ଅଣଯୋଜନା ରାଜସ୍ୱ ଖର୍ଚ୍ଚକୁ ଯଥାସମ୍ଭବ ସୀମିତ ରଖିବା
- ଭିତ୍ତିଭୂମି ଉନ୍ନୟନ ପାଇଁ ଅଧିକ ପୁଞ୍ଜି ବିନିଯୋଗ
- ସ୍ୱାସ୍ଥ୍ୟ ସେବାର ଭିତ୍ତିଭୂମି ଓ ମାନର ଉନ୍ନତି ସାଧନ
- ବିଦ୍ୟାଳୟ, ଉଚ୍ଚଶିକ୍ଷା ଏବଂ ବୈଷୟିକ ଶିକ୍ଷାର ବିକାଶ
- କୃଷି ଓ ଆନୁଷଙ୍ଗିକ କ୍ଷେତ୍ରର ବିକାଶ
- ଶିଳ୍ପ, କୁଟୀର ଓ ହସ୍ତଶିଳ୍ପର ବିକାଶ
- ଜଳସେଚନ ସଂପ୍ରସାରଣ ଓ ଉନ୍ନତି
- ସହରାଞ୍ଚଳ ଓ ଗ୍ରାମାଞ୍ଚଳର ଜଳଯୋଗାଣ ଓ ପରିମଳ ବ୍ୟବସ୍ଥାର ଉନ୍ନତି
- ଗ୍ରାମାଞ୍ଚଳର ବିକାଶ
- ସୂଚନା ଓ ପ୍ରଯୁକ୍ତି କ୍ଷେତ୍ରର ବିକାଶ
- ସମ୍ବଳର ସଦୁପଯୋଗ ଓ ଆତ୍ମନିଯୁକ୍ତି ସୁଯୋଗ
- ରାଜ୍ୟରେ ଖଣିଜ ଶିଳ୍ପର ବିକାଶ
- ଗ୍ରାମ୍ୟ ବିଦ୍ୟୁତିକରଣ
- ଆବଶ୍ୟକତା ଅନୁଯାୟୀ ବ୍ୟୟବରାଦ କରି ଅସଂପୂର୍ଣ୍ଣ ପ୍ରକଳ୍ପଗୁଡ଼ିକୁ ଯଥାସମ୍ଭବ ଶୀଘ୍ର ସଂପୂର୍ଣ୍ଣ କରିବା
- ବୃଦ୍ଧ ଓ ବୃଦ୍ଧା, ଭିନ୍ନକ୍ଷମ, ମହିଳା, ଅନୁସୂଚିତ ଜାତି ଓ ଜନଜାତି ତଥା ଅନ୍ୟାନ୍ୟ ଆର୍ଥିକ ଦୁର୍ବଳ ଶ୍ରେଣୀର ଲୋକମାନଙ୍କ ଉନ୍ନତି ଓ ସାମାଜିକ ସୁରକ୍ଷା ପାଇଁ ଅଧିକ ବ୍ୟୟବରାଦ
- ସରକାରୀ କୋଠାବାଡ଼ି, ରାସ୍ତାଘାଟ, ଜଳଯୋଗାଣ ପ୍ରକଳ୍ପ ଇତ୍ୟାଦିର ରକ୍ଷଣାବେକ୍ଷଣ ପାଇଁ ଅଧିକ ବ୍ୟୟବରାଦ

ମୁଁ ଏହି ପବିତ୍ର ଗୃହର ମାନ୍ୟବର ସଦସ୍ୟ ସଦସ୍ୟାମାନଙ୍କର ଅବଗତି ନିମନ୍ତେ ଏକଥା ସୂଚାଇ ଦେବାକୁ ଚାହେଁ ଯେ ରାଜ୍ୟ ସରକାର ବିଗତ କିଛିବର୍ଷ ହେଲା ଆର୍ଥିକ ପରିସ୍ଥିତିରେ ଉନ୍ନତି ପାଇଁ ବ୍ୟୟ ସଂଗତିକରଣ (Expenditure Rationalisation) ଓ ରାଜସ୍ୱ ବୃଦ୍ଧି ପଦକ୍ଷେପ ସମେତ ଅନେକଗୁଡ଼ିଏ ଆର୍ଥିକ ସଂଶୋଧନ କାର୍ଯ୍ୟକ୍ରମ ହାତକୁ ନେଇଛନ୍ତି । ଫଳସ୍ୱରୂପ ୨୦୦୫-୦୬ ଆର୍ଥିକ ବର୍ଷ ଶେଷରେ ଦୀର୍ଘ ୨୨ ବର୍ଷର ବ୍ୟବଧାନ ପରେ ପ୍ରଥମଥର ପାଇଁ ଆମ ରାଜ୍ୟର ରାଜସ୍ୱ ବଳକା ୪୮୧.୧୯ କୋଟି ଟଙ୍କା ହେଲା । ଏହି ରାଜସ୍ୱ ବଳକା ଦୃଶ୍ୟପଟ ପରବର୍ତ୍ତୀ ବର୍ଷରେ ମଧ୍ୟ ଜାରି ରହିଛି । କେବଳ ସେତିକି ନୁହେଁ, ୨୦୦୬-୦୭ ଆର୍ଥିକ ବର୍ଷରେ ଆମ ରାଜ୍ୟ ପ୍ରଥମଥର ପାଇଁ ବିତ୍ତୀୟ ବଳକା ରାଜ୍ୟରେ ପରିଣତ ହେଲା । କହିବା ବାହୁଲ୍ୟ ଯେ ଏହି ବର୍ଷ ଆମ ରାଜ୍ୟର ବିତ୍ତୀୟ ବଳକା ପରିମାଣ ୮୨୩.୧୮ କୋଟି ଟଙ୍କା ଅଟେ । ଏଠାରେ ଉଲ୍ଲେଖଯୋଗ୍ୟ ଯେ ୨୦୦୫-୦୬ ଆର୍ଥିକ ବର୍ଷରେ ରାଜସ୍ୱ ଖର୍ଚ୍ଚ ୧୩୬୦୩.୫୨ କୋଟି ଟଙ୍କା ହୋଇଥିବାବେଳେ ୨୦୦୬-୦୭ ଆର୍ଥିକ ବର୍ଷ ବେଳକୁ ଏହା ବୃଦ୍ଧି ପାଇ ୧୫୭୭୨.୦୨ କୋଟି ଟଙ୍କା ହୋଇଅଛି । ଅନ୍ୟପକ୍ଷରେ ୨୦୦୫-୦୬ ଆର୍ଥିକ ବର୍ଷରେ ରାଜସ୍ୱ ପ୍ରାପ୍ତି ୧୪୦୮୪.୭୧ କୋଟି ଟଙ୍କା ଥିବାବେଳେ ୨୦୦୬-୦୭ ଆର୍ଥିକ ବର୍ଷରେ ଏହା ବୃଦ୍ଧି ପାଇ ୧୮୦୩୨.୬୨ କୋଟି ଟଙ୍କା ହୋଇଅଛି । ୨୦୦୫-୦୬ ଆର୍ଥିକ ବର୍ଷରେ ରାଜ୍ୟର ନିଜସ୍ୱ ଟିକସ ରାଜସ୍ୱ ପରିମାଣ ୫୦୦୨.୨୮ କୋଟି ଟଙ୍କା ଥିବାବେଳେ ୨୦୦୬-୦୭ ଆର୍ଥିକ ବର୍ଷ ବେଳକୁ ଏହା ବୃଦ୍ଧି ପାଇ ୬୦୬୫.୦୬ କୋଟି ଟଙ୍କାରେ ପହଞ୍ଚିଛି । ଏହି ଅଭିବୃଦ୍ଧି ହାର ୨୧.୨୫ ପ୍ରତିଶତ ଅଟେ । ସେହିପରି ରାଜ୍ୟ ସରକାରଙ୍କର ତତ୍ପରତା ହେତୁ ନିଜ ଅଣଟିକସ ରାଜସ୍ୱ କ୍ଷେତ୍ରରେ ମଧ୍ୟ ଆଖିଦୃଶିଆ ଅଭିବୃଦ୍ଧି ଘଟିଛି । ୨୦୦୫-୦୬ ଆର୍ଥିକ ବର୍ଷରେ ରାଜ୍ୟର ନିଜ ଅଣଟିକସ ରାଜସ୍ୱ ପରିମାଣ ୧୫୩୧.୯୧ କୋଟି ଟଙ୍କା ଥିବାବେଳେ ୨୦୦୬-୦୭ ଆର୍ଥିକ ବର୍ଷରେ ଏହା ୧୮୨୪.୩୨ କୋଟି ଟଙ୍କାକୁ ବୃଦ୍ଧି ପାଇଥିଲା । ଏହି ଅଭିବୃଦ୍ଧି ହାର ୧୯.୦୯ ପ୍ରତିଶତ ଅଟେ । ଏତଦ୍‌ବ୍ୟତୀତ କେନ୍ଦ୍ର ସରକାରଙ୍କଠାରୁ ଋଣ ଛାଡ଼ ବାବଦକୁ ମିଳିଥିବା ପ୍ରାପ୍ୟ ୭୬୩.୮୦ ଟଙ୍କାକୁ ହିସାବକୁ ନେଲେ ମୋଟ ଅଣଟିକସ ରାଜସ୍ୱ ୨୫୮୮.୧୨ କୋଟି ଟଙ୍କା ହେବ ।

ସରକାରଙ୍କର ଆନ୍ତରିକ ଉଦ୍ୟମ ଫଳରେ ରାଜସ୍ୱ ଆଦାୟ ଓ ବ୍ୟୟ ସଂଗତିକରଣ କ୍ଷେତ୍ରରେ ଫଳପ୍ରଦ ପଦକ୍ଷେପ ଦ୍ୱାରା ରାଜ୍ୟର ଆର୍ଥିକ ପରିସ୍ଥିତିରେ ଯଥେଷ୍ଟ ଉନ୍ନତି ଆସିଛି । ଫଳତଃ ତା.୦୧.୧୨.୨୦୦୪ରିଖଠାରୁ ସରକାର ଗୋଟିଏ ଟଙ୍କା ମଧ୍ୟ ସାଧନୋପାୟ ଅଗ୍ରୀମ (Ways & Means Advance) ଆଣିନାହାନ୍ତି କିମ୍ବା ରିଜର୍ଭ ବ୍ୟାଙ୍କରୁ ଅଧିକ ଟଙ୍କା ଉଠାଣ (Over Draft) କରିନାହାନ୍ତି । ଉନ୍ନୟନ କାର୍ଯ୍ୟରେ ନିୟୋଜିତ ଥିବା ବିଭାଗଗୁଡ଼ିକୁ ଆବଶ୍ୟକତା ଅନୁଯାୟୀ ପ୍ରତ୍ୟୟ ପତ୍ର (Letter of Credit) ଦିଆଯାଉଅଛି ।

ଆର୍ଥିକ କ୍ଷେତ୍ରରେ ଉନ୍ନତି ହେତୁ ଆମର ପୁଞ୍ଜି ଖର୍ଚ୍ଚ (Capital Expenditure) ମଧ୍ୟ ବଢ଼ିବାରେ ଲାଗିଛି । ୨୦୦୫-୦୬ ଆର୍ଥିକ ବର୍ଷରେ ପୁଞ୍ଜି ଖର୍ଚ୍ଚ ପରିମାଣ ୧୦୩୮.୦୬ କୋଟି ଟଙ୍କା ଥିବାବେଳେ ୨୦୦୬-୦୭ ମସିହା ବେଳକୁ ଏହା ବଢ଼ି ୧୪୫୧.୪୭ କୋଟି ଟଙ୍କାରେ ପହଞ୍ଚିଥିଲା । ସେହିପରି ୨୦୦୭-୦୮ ଆର୍ଥିକ ବର୍ଷର ସଂଶୋଧିତ ଅଟକଳ ଅନୁସାରେ ଏହି ପୁଞ୍ଜି ଖର୍ଚ୍ଚ ପରିମାଣ ୨୭୪୦.୩୮ କୋଟି ଟଙ୍କା ଥିବାବେଳେ ୨୦୦୮-୦୯ ବଜେଟ ଆକଳନ ଅନୁସାରେ ୩୦୧୯.୬୩ କୋଟି ଟଙ୍କା ଅଟେ ।

୨୦୦୬-୦୭ ଆର୍ଥିକ ବର୍ଷରେ ରାଜ୍ୟ ଯୋଜନା ପାଇଁ ମୂଳ ବଜେଟ ବ୍ୟୟ ବରାଦ ୩୫୦୦ କୋଟି ଟଙ୍କା ଥିବାବେଳେ ସଂଶୋଧିତ ଅଟକଳରେ ୩୬୦୦ କୋଟି ଟଙ୍କାକୁ ବୃଦ୍ଧି କରାଯାଇଥିଲା । ୨୦୦୭-୦୮ ଆର୍ଥିକ ବର୍ଷ ପାଇଁ ଯୋଜନା ଅଟକଳକୁ ୫୧୦୫ କୋଟି ଟଙ୍କାକୁ ବୃଦ୍ଧି କରାଯାଇଥିଲା ଏବଂ ସଂଶୋଧିତ ଅଟକଳ ଅନୁସାରେ ଏହା ୫୫୨୦ କୋଟି ଟଙ୍କା ଅଟେ । ସବୁଠାରୁ ବଡ଼ କଥା ହେଉଛି ଆଗରୁ ନିଟ୍ ଋଣ ପରିମାଣ ଅଧିକ ଥିଲେ ସୁଦ୍ଧା ରାଜ୍ୟ ଯୋଜନା ଅଟକଳ ୨୫୦୦ କୋଟି ଟଙ୍କାରୁ ୩୦୦୦ କୋଟି ଟଙ୍କା ମଧ୍ୟରେ ସୀମିତ ରହୁଥିଲା । କିନ୍ତୁ ବର୍ତ୍ତମାନ ଯୋଜନା କଳେବର ଯଥେଷ୍ଟ ପରିମାଣରେ ବୃଦ୍ଧି ପାଇଥିଲେ ମଧ୍ୟ ନିଟ୍ ଋଣ ପରିମାଣ ସେହି ପରିମାଣରେ ବୃଦ୍ଧି ହୋଇନାହିଁ । ଉଦାହରଣ ସ୍ୱରୂପ ୨୦୦୩-୦୪ ଆର୍ଥିକ ବର୍ଷରେ ୩୨୦୦.୦୦ କୋଟି ଟଙ୍କାର ରାଜ୍ୟ ଯୋଜନା ପାଇଁ ୨୪୬୩.୯୩ କୋଟି ଟଙ୍କା ନିଟ୍ ଋଣ କରାଯାଇଥିଲା ବେଳେ ୨୦୦୮-୦୯ ଆର୍ଥିକ ବର୍ଷରେ ୭୧୦୦ କୋଟି ଟଙ୍କାର ରାଜ୍ୟ ଯୋଜନା ପାଇଁ ୨୭୦୦.୧୧ କୋଟି ଟଙ୍କା ନିଟ୍ ଋଣ ଆକଳନ କରାଯାଇଛି । ଯୋଜନା କମିଶନ ଉପାଧକ୍ଷଙ୍କ ସହ ମାନ୍ୟବର ମୁଖ୍ୟମନ୍ତ୍ରୀଙ୍କ ଆଲୋଚନା ପରେ ରାଜ୍ୟ ଯୋଜନା ଅଟକଳ ସ୍ଥିରୀକୃତ ହୋଇଥାଏ । କିନ୍ତୁ ଅଦ୍ୟାବଧି ଏଥିପାଇଁ ଆଲୋଚନା ହୋଇନଥିବାରୁ ବିଭିନ୍ନ ଯୋଜନାର ଆବଶ୍ୟକତାକୁ ଆଖି ଆଗରେ ରଖି ୨୦୦୮-୦୯ ଆର୍ଥିକ ବର୍ଷ ପାଇଁ ଯୋଜନା ବ୍ୟୟ ଅଟକଳକୁ ୭୧୦୦ କୋଟି ଟଙ୍କା ରଖାଯାଇଛି । ପୂର୍ବବର୍ଷ ତୁଳନାରେ ଏହି ବର୍ଷର ଯୋଜନା ଅଟକଳ ପ୍ରାୟ ୩୯ ପ୍ରତିଶତ ବୃଦ୍ଧି ହୋଇଛି । ଯୋଜନା କଳେବରର ଏପରି ବୃଦ୍ଧି ବିଶେଷ ଭାବରେ ଆମ ରାଜ୍ୟର ଆର୍ଥିକ କ୍ଷେତ୍ରରେ ଢାଞ୍ଚାଗତ ପରିବର୍ତ୍ତନ ଓ ସୁପରିଚାଳନା ହେତୁ ସମ୍ଭବ ହୋଇପାରିଛି । ଏଥିପାଇଁ ସମସ୍ତଙ୍କର ସହଯୋଗ ମିଳିଥିବାରୁ ମୁଁ କୃତଜ୍ଞତା ଜଣାଉଛି ।

ଜନସାଧାରଣଙ୍କର କ୍ରମବର୍ଦ୍ଧିଷ୍ଣୁ ଆଶା ଓ ଆକାଂକ୍ଷାକୁ ଆଖି ଆଗରେ ରଖି ଆମ ସରକାର ୨୦୦୮-୦୯ ବଜେଟରେ ବ୍ୟୟବରାଦ କରିଛନ୍ତି । ୨୦୦୭-୦୮ ଆର୍ଥିକ ବର୍ଷର ମୂଳ ବଜେଟରେ ରାଜ୍ୟ ଯୋଜନା, କେନ୍ଦ୍ର ଯୋଜନା, କେନ୍ଦ୍ରୀୟ ପ୍ରବର୍ତ୍ତିତ ଯୋଜନା ଓ ଅଣଯୋଜନା ପାଇଁ ଯଥାକ୍ରମେ ୪୬୨୩.୩୪ କୋଟି ଟଙ୍କା, ୫୪୯.୧୩ କୋଟି ଟଙ୍କା, ୮୨୧.୮୫ କୋଟି ଟଙ୍କା ଓ ୧୭୫୧୭.୨୮ କୋଟି ଟଙ୍କା ବ୍ୟୟବରାଦ ହୋଇଥିବାବେଳେ ୨୦୦୮-୦୯ ବଜେଟରେ ଏଥିପାଇଁ ଯଥାକ୍ରମେ ୬୫୮୧.୮୮ କୋଟି ଟଙ୍କା, ୫୩୮.୯୫ କୋଟି ଟଙ୍କା, ୧୨୦୪.୩୭ କୋଟି ଟଙ୍କା ଓ ୧୯୬୨୩.୨୯ କୋଟି ଟଙ୍କାକୁ ବୃଦ୍ଧି କରାଯାଇଛି ।

ରାଜ୍ୟବାସୀଙ୍କର ବିଭିନ୍ନ ଆବଶ୍ୟକତାକୁ ଆଖି ଆଗରେ ରଖି ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକଙ୍କ ନେତୃତ୍ୱରେ ଗଠିତ ଲୋକପ୍ରିୟ ସରକାର ରାଜ୍ୟର ବିକାଶ ପାଇଁ ଏବଂ ଜନସାଧାରଣଙ୍କର କଲ୍ୟାଣ ପାଇଁ ଅଗ୍ରାଧିକାର ଭିତ୍ତିରେ ବ୍ୟୟବରାଦ କରିଛନ୍ତି । ଗରିବ ଓ ସମାଜର ନିମ୍ନବର୍ଗର ଲୋକଙ୍କର ଆର୍ଥିକ ଓ ସାମାଜିକ ଉନ୍ନତି ପାଇଁ ଆମ ସରକାର ଅଙ୍ଗୀକାରବଦ୍ଧ । ସୀମିତ ସମ୍ବଳ ସତ୍ତ୍ୱେ ଆମ ସରକାର ନିଜସ୍ୱ ସମ୍ବଳରୁ 'ମୋ କୁଡ଼ିଆ ଯୋଜନା', ୩ ଲକ୍ଷ ଅତିରିକ୍ତ ହିତାଧିକାରୀଙ୍କୁ 'ମଧୁବାବୁ ପେନ୍‌ସନ୍ ଯୋଜନା'ରେ ସାମିଲ, ଆଦିବାସୀ ଓ ଅନଗ୍ରସର ଅଞ୍ଚଳରେ ଭ୍ରାମ୍ୟମାଣ ସ୍ୱାସ୍ଥ୍ୟ ୟୁନିଟ୍ ପ୍ରଚଳନ, ହୀରାକୁଦ ସେଚ ଅଞ୍ଚଳର ଉନ୍ନତି, ୧ ଲକ୍ଷ ସ୍ୱୟଂ ସହାୟିକା ଗୋଷ୍ଠୀକୁ ଆର୍ଥିକ ସହାୟତା, ସାଧାରଣ ବଣ୍ଟନ ପ୍ରକ୍ରିୟାରେ ଗରୀବ ଶ୍ରେଣୀର ଲୋକଙ୍କ ପାଇଁ ଚାଉଳ ଯୋଗାଣ ଦରରେ ରିହାତି (Subsidy), 'ଜଳନିଧି', ଏଡ୍‌ସ ଚିହ୍ନଟ ପାଇଁ ଯନ୍ତ୍ରପାତି ଯୋଗାଣ, ପ୍ରାକ୍ ମାଟ୍ରିକ୍ ବୃତ୍ତି ୨୦ ଟଙ୍କାରୁ ୧୦୦ ଟଙ୍କାକୁ ବୃଦ୍ଧି, ଉଚ୍ଚଶିକ୍ଷା ବିଭାଗରେ ବୃତ୍ତିଗତ ଶିକ୍ଷା ପାଇଁ (ଇଞ୍ଜିନିୟରିଂ/ଡାକ୍ତରୀ/ଏମ୍.ବି.ଏ./ଏମ୍.ସି.ଏ.) ୧୦୦୦୦ ଛାତ୍ରଛାତ୍ରୀଙ୍କୁ ପ୍ରତ୍ୟେକ ବାର୍ଷିକ ୧୦,୦୦୦ ଟଙ୍କା ବୃତ୍ତି ପ୍ରଦାନ, ଭିତ୍ତିଭୂମି ଉନ୍ନୟନ, ପ୍ରାଚୀନ ଓ ଐତିହ୍ୟ ସମ୍ପନ୍ନ କୀର୍ତ୍ତିରାଜର ସୁରକ୍ଷା ସହ ରାଜ୍ୟର ବିଭିନ୍ନ ପର୍ଯ୍ୟଟନସ୍ଥଳୀର ବିକାଶ ଇତ୍ୟାଦି କ୍ଷେତ୍ରରେ ବଜେଟ୍‌ରେ ବ୍ୟବସ୍ଥା କରିଛନ୍ତି ।

ଆପଣମାନେ ଜାଣନ୍ତି ଯେ, ପୂର୍ବରୁ ଯେଉଁ କେନ୍ଦ୍ରୀୟ ସହାୟତା ମିଳୁଥିଲା, ସେଥିରେ ୩୦ ପ୍ରତିଶତ ଅନୁଦାନ ଓ ୭୦ ପ୍ରତିଶତ ଋଣ ଥିଲା । କିନ୍ତୁ ଦ୍ୱାଦଶ ଅର୍ଥ କମିଶନଙ୍କ ସୁପାରିଶ ଅନୁସାରେ ଏଣିକି କେନ୍ଦ୍ରୀୟ ସହାୟତାର ଋଣ ଅଂଶ ରାଜ୍ୟ ସରକାରଙ୍କୁ ନିଜେ ହିଁ ଯୋଗାଡ଼ କରିବାକୁ

ପଡୁଛି । ଏହି ବ୍ୟବସ୍ଥା ୨୦୦୫-୦୬ ଆର୍ଥିକ ବର୍ଷରୁ ଲାଗୁ ହେଲାଣି । ପୁନଶ୍ଚ ଭାରତ ସରକାର ଦ୍ୱାଦଶ ଅର୍ଥ କମିଶନଙ୍କ ସୁପାରିଶ ଅନୁସାରେ କେଉଁ ରାଜ୍ୟ କେଉଁ ବର୍ଷ ପାଇଁ କେତେ ଋଣ କରିବେ ତାହା ଧାର୍ଯ୍ୟ କରିଥାନ୍ତି ।

ରାଜ୍ୟର ନିଜସ୍ୱ ଟିକସ, ଅଣଟିକସ, କେନ୍ଦ୍ରୀୟ ଟିକସରୁ ରାଜ୍ୟର ଅଂଶ ଓ କେନ୍ଦ୍ରୀୟ ଅନୁଦାନକୁ ହିସାବକୁ ନେଇ ୨୦୦୭-୦୮ ଆର୍ଥିକ ବର୍ଷ ପାଇଁ ମୋଟ ରାଜସ୍ୱ ୧୯୪୬୭.୨୦ କୋଟି ଟଙ୍କା ରଖାଯାଇଥିବା ବେଳେ ମୋଟ ରାଜସ୍ୱ ବ୍ୟୟବରାଦ ୧୮୪୨୧.୪୪ କୋଟି ଟଙ୍କା ରଖାଯାଇଛି । ୨୦୦୬-୦୭ ଆର୍ଥିକ ବର୍ଷରେ ରାଜସ୍ୱ ବଳକା ୨୨୬୦.୬୦ କୋଟି ଟଙ୍କା ଥିବାବେଳେ ୨୦୦୭-୦୮ ଆର୍ଥିକ ବର୍ଷର ସଂଶୋଧିତ ଅଟକଳ ଅନୁସାରେ ଏହି ରାଜସ୍ୱ ବଳକା ୧୬୮୨.୨୩ କୋଟି ଟଙ୍କା ଏବଂ ୨୦୦୮-୦୯ ଆର୍ଥିକ ବର୍ଷରେ ଏହା ୫୬୩.୮୭ କୋଟି ଟଙ୍କା ହେବ ବୋଲି ଆକଳନ କରାଯାଇଛି । ଅନ୍ୟପକ୍ଷରେ ପୁଞ୍ଜି ହିସାବ (Capital Account)ରେ ଆୟ ତୁଳନାରେ ବ୍ୟୟ ୮୯୩.୫୯ କୋଟି ଟଙ୍କା ଅଧିକ ହେବ ବୋଲି ଆକଳନ କରାଯାଇଛି । ବିଭିନ୍ନ ସୂତ୍ରରୁ ଯେତିକି ଋଣ ଓ ଅଗ୍ରୀମ ଆଦାୟ କରାଯିବ ଏବଂ ଋଣ ଅଣାଯିବ ତା'ଠାରୁ ଅଧିକ ପୁଞ୍ଜି ବିନିଯୋଗ ଓ ଆଗରୁ ଅଣାଯାଇଥିବା ଋଣର କିସ୍ତି ପରିଶୋଧ କରାଯିବ । ମୋଟ ଉପରେ କହିବାକୁ ଗଲେ ରାଜସ୍ୱ ହିସାବ ଓ ପୁଞ୍ଜି ହିସାବର ଆକଳନ ଅନୁସାରେ ସଂଗଠିତ ପାଣ୍ଠି (Consolidated Fund)ରେ ୩୨୯ କୋଟି ୭୨ ଲକ୍ଷ ୨୦ ହଜାର ଟଙ୍କା ନିଅଣ୍ଟ ଆକଳନ କରାଯାଇଛି ଏବଂ ସେହି ପରିମାଣର ବଳକା ସରକାରୀ ହିସାବ (Public Account)ରେ ଦର୍ଶାଯାଇଛି । ଏହାର ଅର୍ଥ ହେଲା ଯେ ରାଜସ୍ୱ ପୁଞ୍ଜି ଓ ସରକାରୀ ହିସାବର ଅଟକଳକୁ ବିଚାରକୁ ନେଇ ଉଭୟ ଆୟ ଓ ବ୍ୟୟକୁ ସମାନ କରାଯାଇଛି । ତେଣୁ ଏହା ଏକ ପକ୍ଷରେ ରାଜସ୍ୱ ବଳକା ବଜେଟ୍ ହେବା ସଂଗେସଂଗେ ଏକ ସମତୁଲ ବଜେଟ ଅଟେ ।

ସୀମିତ ସମ୍ବଳ ପରିପ୍ରେକ୍ଷୀରେ ମୁଁ ଏହି ପବିତ୍ର ଗୃହର ମାନ୍ୟବର ସଦସ୍ୟ/ସଦସ୍ୟାମାନଙ୍କୁ ଏକଥା ସ୍ପଷ୍ଟ କରିଦେବାକୁ ଚାହେଁ ଯେ, ରାଜ୍ୟର ଦ୍ରୁତ ବିକାଶ ପାଇଁ ଆମକୁ କୃଷି, ମତ୍ସ୍ୟ ଏବଂ ପଶୁସମ୍ପଦ ପ୍ରଭୃତି କ୍ଷେତ୍ରରେ ଅଭିବୃଦ୍ଧିର ହାର ବଢ଼ାଇବାକୁ ପଡ଼ିବ । ତେଣୁ ଆମର ଲୋକପ୍ରିୟ ମୁଖ୍ୟମନ୍ତ୍ରୀ ବର୍ତ୍ତମାନ କୃଷିଭିତ୍ତିକ କାର୍ଯ୍ୟକ୍ରମ ଉପରେ ଅଧିକ ଗୁରୁତ୍ୱାରୋପ କରୁଛନ୍ତି । ଆପଣମାନେ ଜାଣି ଖୁସି ହେବେ ଯେ, ଜଳଛାୟା କାର୍ଯ୍ୟକ୍ରମ ଅନ୍ତର୍ଗତ ୬ ଗୋଟି ଆଦିବାସୀ ଅଧ୍ୟୁଷିତ ଜିଲ୍ଲା ଯଥା- ମୟୂରଭଞ୍ଜ, କନ୍ଧମାଳ, ରାୟଗଡ଼ା, ନବରଙ୍ଗପୁର, ମାଲକାନଗିରି ଓ କୋରାପୁଟ ଜିଲ୍ଲାରେ ଚାଲୁ ରହିଥିବା ଜଳଛାୟା ଯୁକ୍ତ କାର୍ଯ୍ୟକ୍ରମ (Watershed Plus Programme)କୁ ଜୀବିକା (Jeebika) ନାମରେ ନାମିତ କରାଯାଇଛି । ଏଥିପାଇଁ ୨୦୦୭-୦୮ ଆର୍ଥିକ ବର୍ଷରେ ୭.୦୦ କୋଟି ଟଙ୍କାର ବ୍ୟୟବରାଦ ହୋଇଥିଲାବେଳେ ୨୦୦୮-୦୯ ଆର୍ଥିକ ବର୍ଷ ବଜେଟରେ ମଧ୍ୟ ୭.୦୦ କୋଟି ଟଙ୍କାର ବ୍ୟୟବରାଦ କରାଯାଇଛି । କୃଷି ଓ ଉଦ୍ୟାନ କୃଷି କ୍ଷେତ୍ରରେ ଉନ୍ନତ ଅଭିଜ୍ଞତା ହାସଲ ପାଇଁ ଚଳିତ ଆର୍ଥିକ ବର୍ଷରେ ୨୨୭୦ ଜଣ କୃଷକଙ୍କୁ ରାଜ୍ୟ ବାହାରକୁ ପଠାଯାଇଛି । ପୁନଶ୍ଚ ଚଳିତ ଆର୍ଥିକ ବର୍ଷରେ ବ୍ୟବସାୟଭିତ୍ତିକ ଉଦ୍ୟାନ କୃଷିରେ ଆତ୍ମନିଯୁକ୍ତି ପାଇଁ ୧୦୧୫୦ ଜଣ ବେକାର ଯୁବକଙ୍କୁ ପ୍ରଶିକ୍ଷଣ ଦିଆଯାଇଛି । ଏହି କାର୍ଯ୍ୟକ୍ରମ ମଧ୍ୟ ୨୦୦୮-୦୯ ଆର୍ଥିକ ବର୍ଷରେ ଚାଲୁ ରହିବ । ସେହିପରି ଉଦ୍ୟାନ କୃଷିର ଉନ୍ନତି ପାଇଁ ୨୦୦୭-୦୮ ଆର୍ଥିକ ବର୍ଷରେ ଅଧିକ ୫ ଗୋଟି ଜିଲ୍ଲା ଯଥା- ଅନୁଗୁଳ, ବରଗଡ଼, ଦେଓଗଡ଼, ସମ୍ବଲପୁର ଓ ସୁନ୍ଦରଗଡ଼ ଜିଲ୍ଲାକୁ ଏହିପରି ଭାବେ ମୋଟ ୨୪ ଗୋଟି ଜିଲ୍ଲାକୁ ଜାତୀୟ ଉଦ୍ୟାନ କୃଷି ମିଶନରେ ସାମିଲ କରାଯାଇଛି । ଆପଣମାନେ ଜାଣି ଖୁସି ହେବେ ଯେ ୨୦୦୭-୦୮ ଆର୍ଥିକ ବର୍ଷରେ ସରକାରୀ କୃଷିକ୍ଷେତ୍ର ଓ ବେସରକାରୀ ଚାରା ବଗିଚାରେ ବିଭିନ୍ନ କିସମର ୨୧.୨୦ ଲକ୍ଷ ଉନ୍ନତମାନର ଚାରା (Quality Planting Materials) ରୋପଣ କରାଯାଇଛି । ଆଗାମୀ ଆର୍ଥିକ ବର୍ଷ ଅର୍ଥାତ୍ ୨୦୦୮-୦୯ରେ ଏହିପରି ୩୦ ଲକ୍ଷ ଉନ୍ନତମାନର ଚାରାରୋପଣ କରିବାର ଲକ୍ଷ୍ୟଧାର୍ଯ୍ୟ କରାଯାଇଛି ।

ଆପଣମାନେ ସମସ୍ତେ ଜାଣନ୍ତି ଯେ, ଜଳସେଚନ ହେଉଛି କୃଷିର ପରିପୂରକ । ତେଣୁ କୃଷି କ୍ଷେତ୍ରରେ ଉତ୍ପାଦନ ବଢ଼ାଇବାକୁ ହେଲେ ଅଣଜଳସେଚିତ ଅଞ୍ଚଳରେ ବ୍ୟାପକ ଜଳସେଚନର ଆବଶ୍ୟକତା ଅଛି । ଓଡ଼ିଶାରେ ଜଳସେଚନ ପାଇଁ ଆବଶ୍ୟକ ସୁଯୋଗ ଅଛି । ତେଣୁ ଏକାଦଶ ପଞ୍ଚବାର୍ଷିକ ଯୋଜନାରେ ସରକାର ବ୍ୟାପକ ଜଳସେଚନ ପାଇଁ ଯୋଜନା ରଖିଛନ୍ତି ଏବଂ ଦଶମ ପଞ୍ଚବାର୍ଷିକ ଯୋଜନାରେ ସମ୍ପୂର୍ଣ୍ଣ ହୋଇପାରିନଥିବା ବୃହତ୍ ଓ ମଧ୍ୟମ ଜଳସେଚନ ଯୋଜନାକୁ ଏକାଦଶ ପଞ୍ଚବାର୍ଷିକ ଯୋଜନାରେ ସମ୍ପୂର୍ଣ୍ଣ କରିବା ପାଇଁ ଲକ୍ଷ୍ୟଧାର୍ଯ୍ୟ କରାଯାଇଛି । ଆପଣମାନେ ଜାଣି ଖୁସି ହେବେ ଯେ ଆମର ଲୋକପ୍ରିୟ ମୁଖ୍ୟମନ୍ତ୍ରୀ ୨୦୦୮-୦୯ ଆର୍ଥିକ ବର୍ଷକୁ ଜଳସେଚନ ବର୍ଷ ରୂପେ ଘୋଷଣା କରିଛନ୍ତି । ଏକାଦଶ ପଞ୍ଚବାର୍ଷିକ ଯୋଜନାରେ ରାଜ୍ୟର ପ୍ରତ୍ୟେକ ବ୍ଲକ୍‌ରେ ମୋଟ ଚାଷ ଜମିର ଅନ୍ତତଃ ୩୫ ପ୍ରତିଶତ ଜମି ଜଳସେଚିତ କରିବାକୁ ଲକ୍ଷ୍ୟଧାର୍ଯ୍ୟ କରାଯାଇଛି ।

ଓଡ଼ିଶାରେ ଶିଳ୍ପ ପ୍ରତିଷ୍ଠା ଉଦ୍ଦେଶ୍ୟରେ ଘରୋଇ ପୁଞ୍ଜିନିବେଶକାରୀଙ୍କୁ ଆକୃଷ୍ଟ କରିବା ପାଇଁ ସମସ୍ତ ପଦକ୍ଷେପ ନିଆଯାଉଛି । ଏଥିପାଇଁ ଏକକ ଅନୁମୋଦନ ପ୍ରକ୍ରିୟା (Single Window Clearance Mechanism), ସ୍ୱଚ୍ଛ ବ୍ୟବସ୍ଥା ଏବଂ ସୁଚିନ୍ତିତ ପୁନର୍ବାସ ଓ ଥଇଥାନ ନୀତି

ରାଜ୍ୟସରକାର ଗ୍ରହଣ କରିଛନ୍ତି । ଏହା ଫଳରେ ଘରୋଇ କ୍ଷେତ୍ରରେ ଆମ ରାଜ୍ୟରେ ବିଶେଷକରି ଖଣିଭିତ୍ତିକ ଶିଳ୍ପ ପ୍ରତିଷ୍ଠା ପାଇଁ ଘରୋଇ ପୁଞ୍ଜି ନିବେଶକାରୀମାନେ ଆକୃଷ୍ଟ ହୋଇଛନ୍ତି । ତେଣୁ ଏସବୁ ଅଞ୍ଚଳରେ ରାସ୍ତା, ବନ୍ଦର, ରେଳପଥ, ବିଜୁଳି ଉତ୍ପାଦନ ଓ ବଣ୍ଟନ ଆଦି ଭିତ୍ତିଭୂମିର ଉନ୍ନୟନ ପାଇଁ ବ୍ୟାପକ ପୁଞ୍ଜି ନିବେଶର ତୁରନ୍ତ ଆବଶ୍ୟକତା ଅଛି । ମୁଁ ଏହି ପବିତ୍ର ଗୃହର ମାନ୍ୟବର ସଦସ୍ୟ, ସଦସ୍ୟାମାନଙ୍କୁ ଜଣାଇ ଦେବାକୁ ଚାହେଁ ଯେ ବିଶେଷ ଭାବେ ବନ୍ଦର ଏବଂ ରାସ୍ତା ନିର୍ମାଣ ଏବଂ ସେତୁ ନିର୍ମାଣ ଆଦି ଭିତ୍ତିଭୂମି ଉନ୍ନୟନ ପାଇଁ ଆମ ଲୋକପ୍ରିୟ ସରକାର ବେସରକାରୀ ପୁଞ୍ଜି ବିନିଯୋଗ (Public Private Partnership) ଉପରେ ପ୍ରାଧାନ୍ୟ ଦେଉଛନ୍ତି ।

ଏଠାରେ ଉଲ୍ଲେଖଯୋଗ୍ୟ ଯେ ଗ୍ରାମ୍ୟ ଭିତ୍ତିଭୂମି ଉନ୍ନୟନ ପାଣ୍ଠି (RIDF) ପାଇଁ ୨୦୦୭-୦୮ ମୂଳ ବଜେଟରେ ୩୦୦ କୋଟି ଟଙ୍କାର ବ୍ୟୟବରାଦ କରାଯାଇଥିଲା ବେଳେ ୨୦୦୮-୦୯ ବଜେଟ ଅଟକଳ ଅନୁସାରେ ଏହାକୁ ୪୬୫.୦୦ କୋଟି ଟଙ୍କାକୁ ବୃଦ୍ଧି କରାଯାଇଛି । ସେହିପରି ତ୍ୱରିତ ଜଳସେଚନ ପ୍ରକଳ୍ପ (Accelerated Irrigation Benefit Programme) ପାଇଁ ୨୦୦୭-୦୮ ମୂଳ ବଜେଟରେ ୪୬୪.୨୮ କୋଟି ଟଙ୍କାର ବ୍ୟୟବରାଦ କରାଯାଇଥିଲା ବେଳେ ୨୦୦୮-୦୯ ବଜେଟ ଆକଳନ ଅନୁସାରେ ଏହା ୮୦୦.୦୦ କୋଟି ଟଙ୍କା ଅଟେ । ଜବାହରଲାଲ ନେହେରୁ ଜାତୀୟ ନଗରାଞ୍ଚଳ ନବୀକରଣ ମିଶନ (JNNURM) ପାଇଁ ୨୦୦୭-୦୮ ବଜେଟରେ ଆକଳନ ଅନୁସାରେ ୬୨.୨୫ କୋଟି ଟଙ୍କା ଥିବାବେଳେ ୨୦୦୮-୦୯ ବଜେଟ ଆକଳନ ଅନୁସାରେ ଏହା ୯୫.୨୩ କୋଟି ଟଙ୍କା ଅଟେ । ମୁଁ ଏଠାରେ ଏହି ପବିତ୍ର ଗୃହର ମାନ୍ୟବର ସଦସ୍ୟ ସଦସ୍ୟାମାନଙ୍କର ଅବଗତି ନିମନ୍ତେ ଏକଥା ସ୍ପଷ୍ଟ କରିଦେବାକୁ ଚାହେଁ ଯେ ବିଭିନ୍ନ କେନ୍ଦ୍ରୀୟ ପ୍ରବର୍ତ୍ତିତ ଯୋଜନା ପାଇଁ ପୂର୍ବବର୍ଷ ତୁଳନାରେ ଏହି ବଜେଟରେ ରାଜ୍ୟର ଅଂଶ ବାବଦରେ ଯଥେଷ୍ଟ ବ୍ୟୟବରାଦ କରାଯାଇଛି । ଉଦାହରଣ ସ୍ୱରୂପ ୨୦୦୭-୦୮ ଆର୍ଥିକ ବର୍ଷର ବଜେଟ ଆକଳନ ଅନୁସାରେ କେନ୍ଦ୍ର ପ୍ରବର୍ତ୍ତିତ ଯୋଜନାରେ ରାଜ୍ୟ ଅଂଶ ପାଇଁ ୬୬୨.୬୭ କୋଟି ଟଙ୍କାର ବ୍ୟୟବରାଦ କରାଯାଇଥିଲାବେଳେ ୨୦୦୮-୦୯ ବଜେଟରେ ଅଧିକ କେନ୍ଦ୍ରୀୟ ସହାୟତା ପାଇଁ ଏହାକୁ ୧୧୨୮.୨୧ କୋଟି ଟଙ୍କାକୁ ବୃଦ୍ଧି କରାଯାଇଛି ।

**ରାଜ୍ୟ ଯୋଜନା ଓ ଅଣଯୋଜନା ଖର୍ଚ୍ଚର ମୁଖ୍ୟାଂଶ**

୨୦୦୮-୦୯ ଆର୍ଥିକ ବର୍ଷ ପାଇଁ ଯେଉଁ ପୂର୍ଣ୍ଣାଙ୍ଗ ବଜେଟ ଏହି ପବିତ୍ର ଗୃହରେ ଆଗତ କରାଯାଇଛି ତହିଁରୁ କେତେକ ପ୍ରମୁଖ ରାଜ୍ୟ ଯୋଜନା ଓ ଅଣଯୋଜନା ବ୍ୟୟ ସମ୍ୱଳିତ କାର୍ଯ୍ୟକ୍ରମ ଉପରେ ମୁଁ ଆଲୋକପାତ କରୁଛି ।

**କୃଷି ବିଭାଗ**

- ଆମ ରାଜ୍ୟର ଅର୍ଥନୀତି କୃଷି ଉପରେ ନିର୍ଭରଶୀଳ ଏବଂ ରାଜ୍ୟର ପ୍ରାୟ ୭୦ ପ୍ରତିଶତ ଲୋକ କୃଷିକୁ ହିଁ ସେମାନଙ୍କ ଜୀବିକାରୂପେ ଆଦରି ନେଇଛନ୍ତି । ତେଣୁ ଆମ ସରକାର କୃଷି ଓ କୃଷକର ବିକାଶ ପାଇଁ ସର୍ବଦା ଯତ୍ନଶୀଳ । ନୂତନ ଭାବେ ନିଆଯାଇଥିବା 'ରାଷ୍ଟ୍ରୀୟ କୃଷି ବିକାଶ ଯୋଜନା' (RKVY) ପାଇଁ ୨୦୦୮-୦୯ ବଜେଟରେ ୧୦୦.୦୦ କୋଟି ଟଙ୍କାର ବ୍ୟୟବରାଦ କରାଯାଇଛି । ସେହିପରି କେନ୍ଦ୍ରୀୟ ପ୍ରବର୍ତ୍ତିତ ଯୋଜନା ପାଇଁ ରାଜ୍ୟର ଅଂଶ ବାବଦରେ ୨୦୦୮-୦୯ ଆର୍ଥିକ ବର୍ଷ ବଜେଟରେ ୧୩.୯୭ କୋଟି ଟଙ୍କାର ବ୍ୟବସ୍ଥା ରଖାଯାଇଛି ।
- 'ଗ୍ରାମ୍ୟ ଭିତ୍ତିଭୂମି ଉନ୍ନୟନ', ଓଡ଼ିଶା ଗ୍ରାମ୍ୟ ଜୀବିକା କାର୍ଯ୍ୟକ୍ରମ ଅନ୍ତର୍ଗତ 'ଜୀବିକା' ଓ 'ଜଳନିଧି' ପାଇଁ ୨୦୦୮-୦୯ ଆର୍ଥିକ ବର୍ଷ ବଜେଟରେ ଯଥାକ୍ରମେ ୫୦.୦୦ କୋଟି ଟଙ୍କା, ୭.୦୦ କୋଟି ଟଙ୍କା ଏବଂ ୧୫.୦୦ କୋଟି ଟଙ୍କା ବ୍ୟୟବରାଦ କରାଯାଇଛି ।
- କୃଷି ବିଭାଗ ଅଧୀନରେ ରାଜ୍ୟ ଯୋଜନାର ଅନ୍ୟାନ୍ୟ କାର୍ଯ୍ୟକ୍ରମ ପାଇଁ ୧୫.୦୦ କୋଟି ଟଙ୍କାର ସ୍ୱତନ୍ତ୍ର ବ୍ୟୟବରାଦ କରାଯାଇଛି । ଏହା ଆଳୁ, ପନିପରିବା ଓ ମସଲା ଉତ୍ପାଦନ ତଥା ଉନ୍ନତମାନଯୁକ୍ତ ଚାରା ଉତ୍ପାଦନ ପାଇଁ ଏବଂ ବିଭିନ୍ନ ପ୍ରଶିକ୍ଷଣ କେନ୍ଦ୍ରର ଉନ୍ନତି ତଥା କୃଷି ଉପକରଣ କାରଖାନା (Agricultural Implement Factory) ଇତ୍ୟାଦି ପାଇଁ ଉଦ୍ଦିଷ୍ଟ ।
- କ୍ଷାରଯୁକ୍ତ ମୃତ୍ତିକା ପରିଚାଳନା ନିମନ୍ତେ ୫୦ ଲକ୍ଷ ଟଙ୍କାର ବ୍ୟୟବରାଦ ବଜେଟରେ କରାଯାଇଥିବାବେଳେ ମଞ୍ଜି, ସାର, ଜୈବସାର ଓ ଜୈବ କୀଟନାଶକ ପାଇଁ ୧୦ କୋଟି ଟଙ୍କାର ବ୍ୟବସ୍ଥା ବଜେଟରେ ରଖାଯାଇଛି ।
- ବେସରକାରୀ ଉଦ୍ୟମରେ ଗ୍ରାମାଞ୍ଚଳରେ ୫୦ ହଜାର ଉଠାଜଳସେଚନ ପଏଣ୍ଟ ସ୍ଥାପନ ପାଇଁ କୃଷି ଉନ୍ନୟନ ଓ ବିନିଯୋଗ ନିଗମ ଲିଃ (Agriculture Promotion and Investment Corporation Limited)କୁ ୫୦ ଲକ୍ଷ ଟଙ୍କାର ଆର୍ଥିକ ସହାୟତା (Subsidy) ଦେବାପାଇଁ ବଜେଟରେ ବ୍ୟବସ୍ଥା ହୋଇଛି ।

- ବ୍ଲକ୍ ସ୍ତରରେ ଚାରା ବଗିଚାର ପୁନରୁଦ୍ଧାର ଓ ପ୍ରତିଷ୍ଠା ପାଇଁ ୨୦୦୮-୦୯ ଆର୍ଥିକ ବର୍ଷରେ ୬୨ ଲକ୍ଷ ଟଙ୍କାର ବ୍ୟୟବରାଦ କରାଯାଇଛି ।
- ଫଳ ବଗିଚାରେ ଆନ୍ତଃଫସଲ (Inter Cropping) ଉତ୍ପାଦନ ପାଇଁ ୫୩ ଲକ୍ଷ ଟଙ୍କାର ବ୍ୟବସ୍ଥା ବଜେଟରେ ହୋଇଅଛି ।

**ସମବାୟ ବିଭାଗ**

- ସ୍ୱଳ୍ପ ମିଆଦି ସମବାୟ ଋଣ ସମିତିର ପୁନରୁଦ୍ଧାର ପାଇଁ ବୈଦ୍ୟନାଥନ୍ କମିଟି ସୁପାରିଶ ଭିତରେ ୫୦ କୋଟି ଟଙ୍କାର ଆର୍ଥିକ ସାହାଯ୍ୟ ।
- ସମବାୟ ବ୍ୟାଙ୍କ ଦେଉଥିବା ସୁଧ ରିହାତି ଭରଣା ନିମନ୍ତେ ୧୧ କୋଟି ୪୦ ଲକ୍ଷ ଟଙ୍କାର ବ୍ୟୟବରାଦ କରାଯାଇଛି ।
- ଚିନିକଳମାନଙ୍କୁ ଆର୍ଥିକ ସହାୟତା ଦେବା ଉଦ୍ଦେଶ୍ୟରେ ୩ କୋଟି ଟଙ୍କାର ବ୍ୟବସ୍ଥା ବଜେଟରେ ରଖାଯାଇଛି ।
- ଶସ୍ୟବୀମା ପାଇଁ ବଜେଟରେ ୩ କୋଟି ଟଙ୍କାର ବ୍ୟୟବରାଦ ପ୍ରସ୍ତାବ ରଖାଯାଇଛି ।

**ଜଳସମ୍ପଦ ବିଭାଗ**

- ଆପଣମାନେ ଜାଣନ୍ତି ଯେ, ଜଳସେଚନର ଉନ୍ନତିରେ ହିଁ କୃଷିର ଉନ୍ନତି ସମ୍ଭବ । ତେଣୁ ଆମ ସରକାର ବ୍ୟାପକ ଜଳସେଚନ କାର୍ଯ୍ୟକ୍ରମ ଉପରେ ସଦାସର୍ବଦା ଗୁରୁତ୍ୱ ଦେଇଆସୁଛନ୍ତି । ଏହାଦ୍ୱାରା କୃଷିରେ ଉନ୍ନତି ହେବା ସହ ରାଜ୍ୟର ବିକାଶ ମଧ୍ୟ ସମ୍ଭବ ହୋଇପାରିବ । ଏସବୁ କଥାକୁ ଆଖି ଆଗରେ ରଖି ଜଳସେଚନ କ୍ଷେତ୍ରରେ ବ୍ୟାପକ ଅର୍ଥ ବିନିଯୋଗର ଆବଶ୍ୟକତା ଅଛି ଏବଂ ସରକାର ସୀମିତ ସମ୍ବଳକୁ ଦୃଷ୍ଟିରେ ରଖି ଜଳସେଚନ କ୍ଷେତ୍ରରେ ଆବଶ୍ୟକୀୟ ଅର୍ଥ ବ୍ୟବସ୍ଥା କରିଛନ୍ତି ।
- ତ୍ୱରିତ ଜଳସେଚନ ସୁବିଧା ଯୋଜନା (Accelerated Irrigation Benefit Programme) ପାଇଁ ୨୦୦୭-୦୮ ମୂଳ ବଜେଟରେ ୪୬୪.୨୮ କୋଟି ଟଙ୍କାର ବ୍ୟୟବରାଦ କରାଯାଇଥିବାବେଳେ ୨୦୦୮-୦୯ ବଜେଟରେ ଏହା ୮୦୦ କୋଟି ଟଙ୍କାକୁ ବୃଦ୍ଧି କରାଯାଇଛି ।
- ଗ୍ରାମ୍ୟ ଭିତ୍ତିଭୂମି ଉନ୍ନୟନ ପାଣ୍ଠି ପାଇଁ ୨୦୦୭-୦୮ ମୂଳ ବଜେଟରେ ୧୨୫ କୋଟି ଟଙ୍କାର ବ୍ୟବସ୍ଥା ଥିବାବେଳେ ୨୦୦୮-୦୯ ବଜେଟରେ ଏହା ୧୯୫.୦୦ କୋଟି ଟଙ୍କାକୁ ବୃଦ୍ଧି କରାଯାଇଛି ।
- ବନ୍ୟା ନିୟନ୍ତ୍ରଣ ଓ ଜଳ ନିଷ୍କାସନ ବାବଦରେ ୨୦୦୮-୦୯ ବଜେଟରେ ୪୯.୫୦ କୋଟି ଟଙ୍କାର ବ୍ୟୟବରାଦ କରାଯାଇଛି ।
- ସେହିପରି ହୀରାକୁଦ ସେଚ ଅଞ୍ଚଳର ଉନ୍ନତି ପାଇଁ ୨୦୦୮-୦୯ ବଜେଟରେ ୫୦ କୋଟି ଟଙ୍କାର ସ୍ୱତନ୍ତ୍ର ବ୍ୟୟବରାଦ କରାଯାଇଛି ।
- ଉଠାଜଳସେଚନ ନିଗମକୁ ୨୦୦୭-୦୮ ମୂଳ ବଜେଟରେ ୧୬.୩୨ କୋଟି ଟଙ୍କାର ଆର୍ଥିକ ସହାୟତା ବ୍ୟବସ୍ଥା ଥିବାବେଳେ ୨୦୦୮-୦୯ ବଜେଟରେ ଏଥିପାଇଁ ଅନୁରୂପ ବ୍ୟବସ୍ଥା କରାଯାଇଛି ।
- ବୃହତ୍, ମଧ୍ୟମ ଓ କ୍ଷୁଦ୍ର ଜଳସେଚନ ପ୍ରକଳ୍ପ ପରିଚାଳନା ପାଇଁ ୨୦୦୭-୦୮ ଆର୍ଥିକ ବର୍ଷ ବଜେଟରେ ୧୭୧.୨୨ କୋଟି ଟଙ୍କାର ବ୍ୟୟବରାଦ ହୋଇଥିବାବେଳେ ୨୦୦୮-୦୯ ଆର୍ଥିକ ବର୍ଷ ବଜେଟରେ ଏଥିପାଇଁ ୧୮୮.୦୦ କୋଟି ଟଙ୍କାର ବ୍ୟୟବରାଦ କରାଯାଇଛି ।
- ଜଟିଳ ବନ୍ୟା ନିୟନ୍ତ୍ରଣ ପରିଚାଳନା କାର୍ଯ୍ୟ ପାଇଁ ୨୦୦୭-୦୮ ଆର୍ଥିକ ବର୍ଷ ବଜେଟରେ ୪୮.୧୧ କୋଟି ଟଙ୍କାର ବ୍ୟୟବରାଦ ହୋଇଥିବାବେଳେ ୨୦୦୮-୦୯ ଆର୍ଥିକ ବର୍ଷ ବଜେଟରେ ଏହାକୁ ୫୨.୦୦ କୋଟି ଟଙ୍କାକୁ ବୃଦ୍ଧି କରାଯାଇଛି ।

**ପଞ୍ଚାୟତିରାଜ ବିଭାଗ**

- ୧୯ ଗୋଟି ଜିଲ୍ଲା ପାଇଁ ପଛୁଆ ଅଞ୍ଚଳ ଉନ୍ନୟନ ପାଣ୍ଠି (BRGF)ରେ ୩୨୪.୦୦ କୋଟି ଟଙ୍କା ବ୍ୟୟବରାଦ କରାଯାଇଛି ।
- ଇନ୍ଦିରା ଆବାସ ଯୋଜନା (IAY) ପାଇଁ ଆବଶ୍ୟକୀୟ କେନ୍ଦ୍ରୀୟ ସହାୟତାରୁ ବଞ୍ଚିତ ହେଉଥିବା ଗ୍ରାମାଞ୍ଚଳର ଗରିବ ଲୋକଙ୍କ ପାଇଁ ରାଜ୍ୟ ସରକାର ନିଜ ସମ୍ବଳରୁ 'ମୋ କୁଡ଼ିଆ' ନାମରେ ଏକ ନୂତନ ବାସଗୃହ ଯୋଗାଣ ଯୋଜନା ହାତକୁ ନେଇଛନ୍ତି ଏବଂ ଏଥିପାଇଁ ୨୦୦୮-୦୯ ବଜେଟରେ ୧୦୦.୦୦ କୋଟି ଟଙ୍କାର ବ୍ୟବସ୍ଥା ରଖାଯାଇଛି ।

- ପଞ୍ଚାୟତମାନଙ୍କୁ ପ୍ରୋତ୍ସାହନ (Incentive Awards) ଦେବା ଉଦ୍ଦେଶ୍ୟରେ ୫୮.୦୦ ଲକ୍ଷ ଟଙ୍କାର ବ୍ୟୟବରାଦ ୨୦୦୮-୦୯ ବଜେଟରେ ରଖାଯାଇଛି ।
- ଉପକୂଳବର୍ତ୍ତୀ ୧୧ଟି ଜିଲ୍ଲାର ଗ୍ରାମାଞ୍ଚଳ ଲୋକଙ୍କ ବିକାଶ ପାଇଁ ଉଦ୍ଦିଷ୍ଟ ଗୋପବନ୍ଧୁ ଗ୍ରାମୀଣ ଯୋଜନା ପାଇଁ ୨୦୦୮-୦୯ ଆର୍ଥିକ ବର୍ଷ ବଜେଟରେ ୧୧୦.୦୦ କୋଟି ଟଙ୍କାର ବ୍ୟୟବରାଦ କରାଯାଇଛି ।
- ଜାତୀୟ ନିଶ୍ଚିତ ଗ୍ରାମ୍ୟ ନିଯୁକ୍ତି ଯୋଜନା ପାଇଁ ରାଜ୍ୟ ସରକାରଙ୍କ ଅଂଶ ବାବଦରେ ୨୦୦୮-୦୯ ଆର୍ଥିକ ବର୍ଷ ବଜେଟରେ ୧୦୦.୦୦ କୋଟି ଟଙ୍କାର ବ୍ୟୟ ବରାଦ କରାଯାଇଛି ।
- ସ୍ୱର୍ଣ୍ଣ ଜୟନ୍ତୀ ଗ୍ରାମ୍ୟ ସ୍ୱରୋଜଗାର ଯୋଜନାର ରାଜ୍ୟ ଅଂଶ ବାବଦରେ ବଜେଟରେ ୨୨.୬୬ କୋଟି ଟଙ୍କାର ବ୍ୟୟବରାଦ ।

**ଶିଳ୍ପ ବିଭାଗ**

- ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ନବୀନ ପଟ୍ଟନାୟକଙ୍କ ନେତୃତ୍ୱରେ ଗଠିତ ସରକାର ଯୁବକଯୁବତୀମାନଙ୍କର ନିଯୁକ୍ତି ସୁଯୋଗ ସୃଷ୍ଟି ପାଇଁ ଶିଳ୍ପ ପ୍ରତିଷ୍ଠା ଉପରେ ଗୁରୁତ୍ୱାରୋପ କରୁଛନ୍ତି । ଏତଦ୍‌ବ୍ୟତୀତ ୨୦୦୮-୦୯ ବଜେଟରେ କେତେକ ନୂଆ ଯୋଜନା ହାତକୁ ନେବାର ପ୍ରସ୍ତାବ ରହିଛି ।
- ଏକ ବୃହତ୍ ଖାଦ୍ୟ ପାର୍କ ପ୍ରତିଷ୍ଠା ପାଇଁ ୨୦୦୮-୦୯ ବଜେଟରେ ୧.୦୦ କୋଟି ଟଙ୍କାର ବ୍ୟୟବରାଦ କରାଯାଇଛି ।
- ସେହିପରି ଶିଳ୍ପ ଭିତ୍ତିଭୂମିର ଉନ୍ନତିକରଣ ପାଇଁ ବଜେଟରେ ୧.୦୦ କୋଟି ଟଙ୍କାର ବ୍ୟବସ୍ଥା ରଖାଯାଇଛି ।
- ଭୁବନେଶ୍ୱରଠାରେ ସମନ୍ୱିତ ବୟନ ପାର୍କ (Apparel Park) ପ୍ରତିଷ୍ଠା ପାଇଁ ୯୨ ଲକ୍ଷ ଟଙ୍କାର ବ୍ୟୟବରାଦ କରାଯାଇଛି ।
- ଆନୁଷଙ୍ଗିକ ଶିଳ୍ପ ପାଇଁ ନୂଆ ଶିଳ୍ପାଞ୍ଚଳ ପ୍ରତିଷ୍ଠା ପାଇଁ ୨୦୦୮-୦୯ ଆର୍ଥିକ ବର୍ଷ ବଜେଟରେ ୧.୦୦ କୋଟି ଟଙ୍କାର ବ୍ୟବସ୍ଥା ରଖାଯାଇଛି ।
- ଉତ୍କଳିକାର ପୁନରୁଦ୍ଧାର ପାଇଁ ୨୦୦୭-୦୮ ମୂଳ ବଜେଟରେ ୫୨ ଲକ୍ଷ ଟଙ୍କାର ବ୍ୟବସ୍ଥା ଥିବାବେଳେ ୨୦୦୮-୦୯ ବଜେଟରେ ଏଥିପାଇଁ ୮୧ ଲକ୍ଷ ଟଙ୍କାର ବ୍ୟବସ୍ଥା କରାଯାଇଛି ।
- କତାଶିଳ୍ପର ଉନ୍ନତି ପାଇଁ ୨୦୦୭-୦୮ ମୂଳ ବଜେଟରେ ୩୯ ଲକ୍ଷ ଟଙ୍କାର ବ୍ୟବସ୍ଥା ଥିବାବେଳେ ୨୦୦୮-୦୯ ବଜେଟରେ ଏଥିପାଇଁ ୪୪.୦୩ ଲକ୍ଷ ଟଙ୍କାର ବ୍ୟୟବରାଦ କରାଯାଇଛି ।
- ଶିଳ୍ପ ବିଭାଗ ଅଧୀନରେ ହସ୍ତଶିଳ୍ପର ଉନ୍ନତି ପାଇଁ ମାନ୍ୟବର ମୁଖ୍ୟମନ୍ତ୍ରୀଙ୍କ ଘୋଷଣାକ୍ରମେ ୧୦.୧୯ କୋଟି ଟଙ୍କାର ସ୍ୱତନ୍ତ୍ର ବ୍ୟୟବରାଦ ବଜେଟରେ ରଖାଯାଇଛି ।
- ବିଭିନ୍ନ କେନ୍ଦ୍ରୀୟ ପ୍ରବର୍ତ୍ତିତ ଯୋଜନା ପାଇଁ ରାଜ୍ୟ ସରକାରଙ୍କ ଅଂଶ ବାବଦରେ ୨୦୦୭-୦୮ ମୂଳ ବଜେଟରେ ୫.୦୩ କୋଟି ଟଙ୍କାର ବ୍ୟବସ୍ଥା ରଖାଯାଇଥିଲା ବେଳେ ୨୦୦୮-୦୯ ବଜେଟରେ ଏହାକୁ ୫.୨୩ କୋଟି ଟଙ୍କାକୁ ବୃଦ୍ଧି କରାଯାଇଛି ।
- ଆଞ୍ଚଳିକ ଶିଳ୍ପ କେନ୍ଦ୍ର (Regional Industries Centre) ପ୍ରତିଷ୍ଠା ପାଇଁ ୧.୨୦ କୋଟି ଟଙ୍କାର ବ୍ୟୟବରାଦ ବଜେଟରେ କରାଯାଇଛି ।
- କାରିଗରୀ ଗ୍ରାମ (Craft Village) ପ୍ରତିଷ୍ଠା ପାଇଁ ୨୦୦୮-୦୯ ବଜେଟରେ ୨.୫୨ କୋଟି ଟଙ୍କାର ବ୍ୟୟବରାଦ କରାଯାଇଛି ।
- ଲବଣ ଶିଳ୍ପର ଉନ୍ନତି (Improvement of Salt Industries) ପାଇଁ ୧୯.୫୦ ଲକ୍ଷ ଟଙ୍କାର ବ୍ୟୟବରାଦ କରାଯାଇଛି ।
- ଖଦୀ ଓ ଗ୍ରାମ୍ୟ ଶିଳ୍ପ ଅନୁଷ୍ଠାନ ପାଇଁ ୨୦୦୭-୦୮ ଆର୍ଥିକ ବର୍ଷ ମୂଳ ବଜେଟରେ ୨.୮୦ କୋଟି ଟଙ୍କାର ବ୍ୟବସ୍ଥା ରଖାଯାଇଥିବାବେଳେ ୨୦୦୮-୦୯ ଆର୍ଥିକ ବର୍ଷ ବଜେଟରେ ୩.୧୩ କୋଟି ଟଙ୍କାର ବ୍ୟବସ୍ଥା ରଖାଯାଇଛି ।

**ବାଣିଜ୍ୟ ବିଭାଗ**

➢ ସରକାରୀ ଛାପାଖାନାର ଆଧୁନୀକିକରଣ ପାଇଁ ୨୦୦୮-୦୯ ଆର୍ଥିକ ବର୍ଷ ବଜେଟରେ ୭.୦୦ କୋଟି ଟଙ୍କାର ବ୍ୟୟବରାଦ କରାଯାଇଛି ।

**ସଂସ୍କୃତି ବିଭାଗ**

➢ ସଂସ୍କୃତି ବିଭାଗ ଅଧୀନରେ କଳାକାରମାନଙ୍କର ମାସିକ ପେନସନ୍‌ର ହାର ୫୦୦.୦୦ ଟଙ୍କାରୁ ୧୦୦୦ ଟଙ୍କାକୁ ବୃଦ୍ଧି କରାଯାଇଛି । ଏଥିସଂଗେ ସଂଗେ କଳାକାର ପେନସନଧାରୀଙ୍କ ସଂଖ୍ୟା ୧୦୦୦ରୁ ୧୫୦୦କୁ ବୃଦ୍ଧି କରାଯାଇଛି । ତଦନୁସାରେ ୨୦୦୮-୦୯ ଆର୍ଥିକ ବର୍ଷ ବଜେଟରେ ୧.୮୦ କୋଟି ଟଙ୍କାର ବ୍ୟୟବରାଦ କରାଯାଇଛି ।

➢ ରାଜ୍ୟ ସଂଗ୍ରହାଳୟରେ ସ୍ୱାଧୀନତା ସଂଗ୍ରାମୀଙ୍କ ପାଇଁ ଏକ ଗ୍ୟାଲେରି ପ୍ରତିଷ୍ଠା ଉଦ୍ଦେଶ୍ୟରେ ବଜେଟରେ ୩୦ ଲକ୍ଷ ଟଙ୍କାର ବ୍ୟୟବରାଦ କରାଯାଇଛି ।

**ଶକ୍ତି ବିଭାଗ**

➢ 'ବିଜୁ ଗ୍ରାମଜ୍ୟୋତି ଯୋଜନା' ପାଇଁ ୨୦୦୭-୦୮ ଆର୍ଥିକ ବର୍ଷ ମୂଳ ବଜେଟରେ ୫୦.୦୦ କୋଟି ଟଙ୍କାର ବ୍ୟୟବରାଦ ହୋଇଥିବାବେଳେ ୨୦୦୮-୦୯ ଆର୍ଥିକ ବର୍ଷ ବଜେଟରେ ଏଥିପାଇଁ ୧୦୦.୫୦ କୋଟି ଟଙ୍କାର ବ୍ୟବସ୍ଥା ରଖାଯାଇଛି ।

➢ କେନ୍ଦ୍ରୀୟ ପ୍ରବର୍ତ୍ତିତ ଯୋଜନାରେ ରାଜ୍ୟ ଅଂଶ ପାଇଁ (ରାଜୀବ ଗାନ୍ଧୀ ଗ୍ରାମୀଣ ବିଦ୍ୟୁତ୍ ଯୋଜନା ଅନ୍ତର୍ଗତ ଋଣ (Loan portion of RGGVY) ଆଗାମୀ ବର୍ଷ ବଜେଟରେ ୬୫.୦୦ କୋଟି ଟଙ୍କାର ବ୍ୟୟବରାଦ କରାଯାଇଛି । ସେହିପରି ତ୍ୱରିତ ବିଦ୍ୟୁତ୍ ଉନ୍ନୟନ ସଂସ୍କାର କାର୍ଯ୍ୟକ୍ରମ (APDRP) ପାଇଁ ୨୦୦୭-୦୮ ମୂଳ ବଜେଟରେ ୬୭.୨୦ କୋଟି ଟଙ୍କାର ବ୍ୟୟବରାଦ କରାଯାଇଥିବାବେଳେ ୨୦୦୮-୦୯ ଆର୍ଥିକ ବର୍ଷ ବଜେଟରେ ୭୦.୪୦ କୋଟି ଟଙ୍କାର ବ୍ୟବସ୍ଥା କରାଯାଇଛି ।

**ମତ୍ସ୍ୟ ଓ ପଶୁ ସଂପଦ ଉନ୍ନୟନ ବିଭାଗ**

➢ ମତ୍ସ୍ୟ ଓ ପଶୁ ସଂପଦ ଉନ୍ନୟନ ବିଭାଗରେ ଭିତ୍ତିଭୂମି ଉନ୍ନୟନ ପାଣ୍ଠି ପାଇଁ ୨୦୦୮-୦୯ ଆର୍ଥିକ ବର୍ଷ ବଜେଟରେ ୬.୦୦ କୋଟି ଟଙ୍କା ବ୍ୟୟବରାଦ କରାଯାଇଛି ।

➢ ମଧୁର ଜଳ ମତ୍ସ୍ୟ ଚାଷ ଉନ୍ନୟନ ସଂସ୍ଥା ଜରିଆରେ ମାଛ ଚାଷ ପାଇଁ ୬.୫୭ କୋଟି ଟଙ୍କାର ବ୍ୟୟବରାଦ କରାଯାଇଛି ।

**ଜଙ୍ଗଲ ଓ ପରିବେଶ ବିଭାଗ**

➢ ଜଙ୍ଗଲ ଓ ପରିବେଶ ବିଭାଗରେ ବନ୍ୟକ୍ଷେତ୍ର ଉନ୍ନୟନ ପ୍ରକଳ୍ପ ପାଇଁ ୨୦୦୭-୦୮ ଆର୍ଥିକ ବର୍ଷ ମୂଳ ବଜେଟରେ ୮୨.୨୦ କୋଟି ଟଙ୍କାର ବ୍ୟୟବରାଦ କରାଯାଇଥିବାବେଳେ ୨୦୦୮-୦୯ ଆର୍ଥିକ ବର୍ଷ ବଜେଟରେ ୧୧୩.୮୧ କୋଟି ଟଙ୍କାର ବ୍ୟୟବରାଦ କରାଯାଇଛି ।

➢ ସେହିପରି ଉକ୍ତ ବିଭାଗରେ ନନ୍ଦନକାନନ ଚିଡ଼ିଆଖାନା ଓ ଉଦ୍ଭିଦ ବଗିଚାର ଉନ୍ନୟନ ଓ ସୌନ୍ଦର୍ଯ୍ୟକରଣ ପାଇଁ ୨୦୦୮-୦୯ ଆର୍ଥିକ ବର୍ଷ ବଜେଟରେ ୨.୦୦ କୋଟି ଟଙ୍କା ହିସାବରେ ୪.୦୦ କୋଟି ଟଙ୍କାର ବ୍ୟୟବରାଦ କରାଯାଇଛି ।

➢ ଚନ୍ଦକା ହାତୀ ଅଭୟାରଣ୍ୟରେ ହାତୀଙ୍କ ଗତିପଥକୁ ନିୟନ୍ତ୍ରଣ କରିବା ପାଇଁ ଖାଇ ନିର୍ମାଣ ଉଦ୍ଦେଶ୍ୟରେ ୨.୦୦ କୋଟି ଟଙ୍କାର ବ୍ୟୟବରାଦ ।

➢ ଓଡ଼ିଶା ବନ ଉନ୍ନୟନ ନିଗମକୁ ଭୁବନେଶ୍ୱରରେ ବୃକ୍ଷ ରୋପଣ ପାଇଁ ୨.୦୦ କୋଟି ଟଙ୍କାର ବ୍ୟୟବରାଦ ।

**ସାଧାରଣ ପ୍ରଶାସନ ବିଭାଗ**

➢ ଭୁବନେଶ୍ୱରଠାରେ ଥିବା ସରକାରୀ ବାସଗୃହ ନିର୍ମାଣ/ନବୀକରଣ ପାଇଁ ୨୦୦୮-୦୯ ଆର୍ଥିକ ବର୍ଷ ବଜେଟରେ ୨.୦୦ କୋଟି ଟଙ୍କା ରଖାଯାଇଛି ।

- ଭଡ଼ାଘରେ ଚାଲୁଥିବା ସରକାରୀ କାର୍ଯ୍ୟାଳୟକୁ ତୋଷାଳି ପ୍ଲାଜାକୁ ସ୍ଥାନାନ୍ତରିତ କରିବା ପାଇଁ ସରକାର ନିଷ୍ପତ୍ତି ନେଇଛନ୍ତି । ସେଥିପାଇଁ ତୋଷାଳି ପ୍ଲାଜାର ନବୀକରଣ ପାଇଁ ୫.୦୦ କୋଟି ଟଙ୍କାର ବ୍ୟୟବରାଦ ।
- ଦୁର୍ନୀତି ନିବାରଣ ସଂସ୍ଥାରେ ସରକାରୀ ଅଫିସ ଗୃହ ନିର୍ମାଣ ପାଇଁ ୨୦୦୮-୦୯ ବଜେଟରେ ୨.୦୦ କୋଟି ଟଙ୍କାର ବ୍ୟବସ୍ଥା ରଖାଯାଇଛି ।
- ସାଧାରଣ ପ୍ରଶାସନ ବିଭାଗ ଅଧୀନରେ ଥିବା ରାଜ୍ୟ ପ୍ରଶିକ୍ଷଣ ଅନୁଷ୍ଠାନର ଉନ୍ନତିକରଣ ପାଇଁ ୧.୦୦ କୋଟି ଟଙ୍କାର ବ୍ୟୟବରାଦ କରାଯାଇଛି ।
- ମୁଖ୍ୟମନ୍ତ୍ରୀଙ୍କ ରିଲିଫ୍ ପାଣ୍ଠି ପାଇଁ ୨୦୦୮-୦୯ ବଜେଟରେ ୧୦ କୋଟି ଟଙ୍କାର ବ୍ୟୟବରାଦ କରାଯାଇଛି ।
- ଦୁର୍ନୀତି ନିବାରଣ ସଂସ୍ଥାର ଅଫିସ୍ ଗୃହ ଓ କର୍ମଚାରୀଙ୍କ ବାସଭବନ ନିର୍ମାଣ ନିମନ୍ତେ ୨୦୦୮-୦୯ ଆର୍ଥିକ ବଜେଟରେ ୧.୯୯ କୋଟି ଟଙ୍କାର ବ୍ୟବସ୍ଥା କରାଯାଇଛି ।
- ଭୁବନେଶ୍ୱରଠାରେ ସରକାରୀ ବାସଭବନର ମରାମତି ଓ ନବୀକରଣ ପାଇଁ ୨୩ କୋଟି ଟଙ୍କାର ବ୍ୟୟବରାଦ ।

**ଗୃହ ଓ ନଗର ଉନ୍ନୟନ ବିଭାଗ**

- ଜବାହରଲାଲ ନେହେରୁ ଜାତୀୟ ନବୀକରଣ ମିଶନ ପାଇଁ ୨୦୦୭-୦୮ ଆର୍ଥିକ ବର୍ଷ ମୂଳ ବଜେଟରେ ୬୨.୨୫ କୋଟି ଟଙ୍କାର ବ୍ୟବସ୍ଥା ଥିବାବେଳେ ୨୦୦୮-୦୯ ଆର୍ଥିକ ବର୍ଷ ବଜେଟରେ ୯୫.୨୩ କୋଟି ଟଙ୍କାର ବ୍ୟୟବରାଦ କରାଯାଇଛି ।
- ନଗରାଞ୍ଚଳ ଉନ୍ନୟନ ସଂସ୍ଥା (ULBs) ଅଧୀନରେ ରାସ୍ତାଘାଟର ଉନ୍ନତି ପାଇଁ ୨୦୦୮-୦୯ ବଜେଟରେ ୬୦.୦୦ କୋଟି ଟଙ୍କାର ବ୍ୟୟବରାଦ ।
- କେ.ବି.କେ. ଜିଲ୍ଲାର ନଗରାଞ୍ଚଳରେ ବାସ କରୁଥିବା ଗରିବ ଜନସାଧାରଣଙ୍କୁ ପାନୀୟ ଜଳ ଯୋଗାଣ ପାଇଁ ୨୦୦୮-୦୯ ବଜେଟରେ ୧୦.୦୦ କୋଟି ଟଙ୍କାର ବ୍ୟୟବରାଦ ।
- ଗୃହ ନିର୍ମାଣ ଓ ନଗର ଉନ୍ନୟନ ବିଭାଗରେ ଜଳ ଯୋଗାଣ ଓ ମଇଳା ପାଣି ନିଷ୍କାସନ କାର୍ଯ୍ୟ ସଂପନ୍ନ ପାଇଁ ୨୦୦୮-୦୯ ଆର୍ଥିକ ବର୍ଷ ବଜେଟରେ ୬ କୋଟି ଟଙ୍କାର ବ୍ୟୟବରାଦ କରାଯାଇଛି । ସେହିପରି ଜଳଯୋଗାଣ ଓ ପରିମଳ ବ୍ୟବସ୍ଥାରେ ଉନ୍ନତି ଆଣିବା ପାଇଁ ୨୦୦୭-୦୮ ଆର୍ଥିକ ବର୍ଷ ବଜେଟରେ ୧୦୮.୮୫ କୋଟି ଟଙ୍କାର ବ୍ୟୟବରାଦ କରାଯାଇଥିବାବେଳେ ଆଗାମୀ ବର୍ଷ ବଜେଟରେ ଏହାକୁ ୧୧୦.୦୦ କୋଟି ଟଙ୍କାକୁ ବୃଦ୍ଧି କରାଯାଇଛି ।

**ସ୍ୱାସ୍ଥ୍ୟ ଓ ପରିବାର କଲ୍ୟାଣ ବିଭାଗ**

- ଜୈବ ହାସପାତାଳ ବର୍ଯ୍ୟବସ୍ତୁ ନିଷ୍କାସନ ପାଇଁ ୨୦୦୭-୦୮ ମୂଳ ବଜେଟରେ କୌଣସି ବ୍ୟବସ୍ଥା ନଥିବାବେଳେ ୨୦୦୮-୦୯ ଆର୍ଥିକ ବର୍ଷ ବଜେଟରେ ୧୫.୦୦ କୋଟି ଟଙ୍କାର ବ୍ୟୟବରାଦ କରାଯାଇଛି । ଆଚାର୍ଯ୍ୟ ହରିହର କ୍ୟାନସର ପ୍ରତିଷ୍ଠାନକୁ ସହାୟତା ବାବଦରେ ୨୦୦୮-୦୯ ଆର୍ଥିକ ବର୍ଷ ବଜେଟରେ ୭.୫୦ କୋଟି ଟଙ୍କା ବ୍ୟୟବରାଦ କରାଯାଇଛି ।
- ଆଦିବାସୀ ଓ ଅନଗ୍ରସର ଜିଲ୍ଲାରେ ଭ୍ରାମ୍ୟମାଣ ସ୍ୱାସ୍ଥ୍ୟ ୟୁନିଟ୍ ସ୍ଥାପନ ପାଇଁ ୨୦୦୮-୦୯ ଆର୍ଥିକ ବର୍ଷ ବଜେଟରେ ୬.୦୦ କୋଟି ଟଙ୍କାର ବ୍ୟୟବରାଦ କରାଯାଇଛି ।
- ଏଡ଼୍ସ ପରୀକ୍ଷାଗାର, ଖାଦ୍ୟ ପରୀକ୍ଷାଗାର ଓ ଔଷଧ ପରୀକ୍ଷାଗାରର ଉନ୍ନତିକରଣ ପାଇଁ ୨୦୦୮-୦୯ ଆର୍ଥିକ ବର୍ଷ ବଜେଟରେ ୩ କୋଟି ଟଙ୍କାର ବ୍ୟୟବରାଦ କରାଯାଇଛି ।
- ଜାତୀୟ ଗ୍ରାମ୍ୟ ସ୍ୱାସ୍ଥ୍ୟ ମିଶନ ପାଇଁ ୨୦୦୮-୦୯ ବଜେଟରେ ୬୧ କୋଟି ଟଙ୍କାର ବ୍ୟୟବରାଦ କରାଯାଇଛି ।
- ପ୍ରାଥମିକ ସ୍ୱାସ୍ଥ୍ୟ କେନ୍ଦ୍ରଗୁଡ଼ିକର ଗୃହ ନିର୍ମାଣ ପାଇଁ ୫୦.୦୦ କୋଟି ଟଙ୍କାର ବ୍ୟୟବରାଦ କରାଯାଇଛି ।
- ସେହିପରି ନୂତନ ଭାବେ ୫୦ ଗୋଟି ପ୍ରାଥମିକ ସ୍ୱାସ୍ଥ୍ୟ କେନ୍ଦ୍ର ପ୍ରତିଷ୍ଠା ପାଇଁ ୫.୦୦ କୋଟି ଟଙ୍କାର ବ୍ୟବସ୍ଥା କରାଯାଇଛି ।

- ଡାକ୍ତରଖାନାରେ ଚିକିତ୍ସିତ ହେଉଥିବା ରୋଗୀଙ୍କ ଖାଦ୍ୟ ବାବଦରେ ୨୦୦୭-୦୮ ଆର୍ଥିକ ବର୍ଷର ମୂଳ ବଜେଟରେ ୩.୮୪ କୋଟି ଟଙ୍କାର ବ୍ୟବସ୍ଥା ଥିବାବେଳେ ୨୦୦୮-୦୯ ଆର୍ଥିକ ବର୍ଷ ବଜେଟରେ ୭.୪୨ କୋଟି ଟଙ୍କାକୁ ବୃଦ୍ଧି କରାଯାଇଛି ।
- ସରକାରୀ ଡାକ୍ତରଖାନାରେ ଔଷଧ ଓ ଯନ୍ତ୍ରପାତି କ୍ରୟ ନିମନ୍ତେ ଯଥାକ୍ରମେ ୨୪.୦୭ ଓ ୨୮.୪୧ କୋଟି ଟଙ୍କାର ବ୍ୟୟବରାଦ କରାଯାଇଛି ।

**ଆଇନ ବିଭାଗ**

- ଶ୍ରୀଜଗନ୍ନାଥ ମନ୍ଦିରର ଉନ୍ନୟନ ପାଇଁ ମନ୍ଦିର କର୍ପସ ପାଣ୍ଠିକୁ ୫.୦୦ କୋଟି ଟଙ୍କା ପ୍ରଦାନ କରାଯାଇଛି ।
- ବିବାହ ବିଚ୍ଛେଦ ହୋଇଥିବା ଅଧିକ ମୁସଲମାନ ମହିଳାମାନଙ୍କୁ ତଲାକୀ ପେନସନ୍ ଦେବାପାଇଁ ବିଭିନ୍ନ ସ୍ୱେଚ୍ଛାସେବୀ ଅନୁଷ୍ଠାନ ତଥା ମୁସଲମାନ ସଂପ୍ରଦାୟ ତରଫରୁ ବାରମ୍ବାର ଦାବୀ ହୋଇଆସୁଥିଲା । ସରକାର ଏହାକୁ ବିଚାରକୁ ନେଇ ରାଜ୍ୟ ବଜେଟରେ ୦.୩୧ କୋଟି ଟଙ୍କାର ବ୍ୟୟବରାଦ କରିଛନ୍ତି ।
- କନ୍ଧମାଳ, କଳାହାଣ୍ଡି ଓ କେନ୍ଦୁଝର ଜିଲ୍ଲାରେ ୩ ଗୋଟି ନୂଆ ଦୁର୍ନୀତି ନିବାରଣ ଅଦାଲତ (Vigilance Court) ସ୍ଥାପନ ପାଇଁ ୨୦୦୮-୦୯ ବଜେଟରେ ୬୨.୦୦ ଲକ୍ଷ ଟଙ୍କାର ବ୍ୟୟବରାଦ କରାଯାଇଛି ।

**ଉଚ୍ଚଶିକ୍ଷା ବିଭାଗ**

- ଶିକ୍ଷା ହେଉଛି ଜୀବନର ମାନଦଣ୍ଡ । ଯେଉଁ ଜାତି ଯେତେ ଶିକ୍ଷିତ, ସେ ଜାତି ସେତେ ଉନ୍ନତ । ଉଚ୍ଚଶିକ୍ଷାର ବିକାଶ ପାଇଁ ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ନବୀନ ପଟ୍ଟନାୟକଙ୍କ ନେତୃତ୍ୱରେ ଗଠିତ ସରକାର ସଦାସର୍ବଦା ଗୁରୁତ୍ୱ ଦେଇ ଆସିଛନ୍ତି ।
- ଉଚ୍ଚଶିକ୍ଷା ବିଭାଗରେ ବୃତ୍ତିଗତ ଶିକ୍ଷାପାଇଁ (ଇଞ୍ଜିନିୟରିଂ/ଡାକ୍ତରୀ/ଏମ୍.ବି.ଏ./ଏମ୍.ସି.ଏ.) ୧୦୦୦୦ ଛାତ୍ରଛାତ୍ରୀଙ୍କୁ ପ୍ରତ୍ୟେକ ବାର୍ଷିକ ୧୦୦୦୦ ଟଙ୍କା ବୃତ୍ତି ଦେବା ପାଇଁ ସ୍ଥିର ହୋଇଛି ଏବଂ ଏଥିପାଇଁ ୨୦୦୮-୦୯ ଆର୍ଥିକ ବର୍ଷ ବଜେଟ୍‌ରେ ୧୦ କୋଟି ଟଙ୍କାର ବ୍ୟୟବରାଦ କରାଯାଇଛି ।
- ରେଭେନ୍ସା ବିଶ୍ୱବିଦ୍ୟାଳୟର ଭିତ୍ତିଭୂମି ଉନ୍ନୟନ ପାଇଁ ୫ କୋଟି ଟଙ୍କା ଏବଂ ପ୍ରଥମ ଥର ପାଇଁ ପ୍ରସ୍ତାବିତ ଆଇନ୍ ବିଶ୍ୱବିଦ୍ୟାଳୟ ପାଇଁ ୩ କୋଟି ଟଙ୍କାର ବ୍ୟୟବରାଦ ଆଗାମୀ ବର୍ଷ ବଜେଟରେ କରାଯାଇଛି ।
- ବିଶ୍ୱବିଦ୍ୟାଳୟଗୁଡ଼ିକର ମାନଦଣ୍ଡରେ ଉନ୍ନତି ଆଣିବା ପାଇଁ ଆଗାମୀ ୨୦୦୮-୦୯ ଆର୍ଥିକ ବର୍ଷ ବଜେଟରେ ବିଭିନ୍ନ ବିଶ୍ୱବିଦ୍ୟାଳୟକୁ ବ୍ଲକ୍ ଅନୁଦାନ ଦେବାପାଇଁ ୭୧.୩୭ କୋଟି ଟଙ୍କାର ବ୍ୟୟବରାଦ ନିମ୍ନମତେ କରାଯାଇଛି -

| | | |
|---|---|---|
| ଉତ୍କଳ ବିଶ୍ୱବିଦ୍ୟାଳୟ | - | ୨୮.୦୪ କୋଟି ଟଙ୍କା |
| ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ | - | ୧୫.୩୩ କୋଟି ଟଙ୍କା |
| ସମ୍ବଲପୁର ବିଶ୍ୱବିଦ୍ୟାଳୟ | - | ୧୫.୯୪ କୋଟି ଟଙ୍କା |
| ଶ୍ରୀଜଗନ୍ନାଥ ସଂସ୍କୃତ ବିଶ୍ୱବିଦ୍ୟାଳୟ | - | ୨.୩୭ କୋଟି ଟଙ୍କା |
| ଫକୀରମୋହନ ବିଶ୍ୱବିଦ୍ୟାଳୟ | - | ୧.୯୪ କୋଟି ଟଙ୍କା |
| ଉତ୍ତର ଓଡ଼ିଶା ବିଶ୍ୱବିଦ୍ୟାଳୟ | - | ୧.୬୩ କୋଟି ଟଙ୍କା |
| ଉତ୍କଳ କୃଷି ଓ ବୈଷୟିକ ବିଶ୍ୱବିଦ୍ୟାଳୟ ଅଧୀନସ୍ଥ ମୌଳିକ ବିଜ୍ଞାନ ଓ କଳା ମହାବିଦ୍ୟାଳୟ | - | ୧.୧୨ କୋଟି ଟଙ୍କା |
| ରେଭେନ୍ସା ବିଶ୍ୱବିଦ୍ୟାଳୟ | - | ୫.୦୦ କୋଟି ଟଙ୍କା |

- ଉଚ୍ଚଶିକ୍ଷା ବିଭାଗ ଅଧୀନରେ ବେସରକାରୀ ମହାବିଦ୍ୟାଳୟମାନଙ୍କୁ ଅନୁଦାନ ପ୍ରଦାନ ପାଇଁ ୧୧୩.୦୧ କୋଟି ଟଙ୍କାର ବ୍ୟୟବରାଦ କରାଯାଇଥିବା ବେଳେ ତନ୍ମଧ୍ୟରୁ ୧୧.୦୦ କୋଟି ଟଙ୍କା ବକେୟା ଦରମା ପାଇଁ ଉଦ୍ଦିଷ୍ଟ ଅଟେ ।
- ସବୁଠାରୁ ଗୁରୁତ୍ୱପୂର୍ଣ୍ଣ କଥା ହେଉଛି ଉଚ୍ଚଶିକ୍ଷା ବିଭାଗରେ ପ୍ରଥମ ଥର ପାଇଁ ୧୭୨ କୋଟି ଟଙ୍କା ଯୋଜନା କ୍ଷେତ୍ରରୁ ଅଣଯୋଜନା କ୍ଷେତ୍ରକୁ ହସ୍ତାନ୍ତର ହୋଇଛି ଏବଂ ତନ୍ମଧ୍ୟରୁ ୨୯.୨୭ କୋଟି ଟଙ୍କା ବକେୟା ଦରମା ପାଇଁ ଉଦ୍ଦିଷ୍ଟ ଅଟେ ।
- ସରକାରୀ କଲେଜର କମ୍ପ୍ୟୁଟରୀକରଣ ପାଇଁ ୨୦୦୮-୦୯ ବଜେଟରେ ୧୬.୭୫ କୋଟି ଟଙ୍କାର ବ୍ୟୟବରାଦ କରାଯାଇଛି ।

**ବିଦ୍ୟାଳୟ ଓ ଗଣଶିକ୍ଷା ବିଭାଗ**

- ସର୍ବଶିକ୍ଷା ଅଭିଯାନ ପାଇଁ ରାଜ୍ୟ ଅଂଶ ବାବଦରେ ୨୦୦୮-୦୯ ଆର୍ଥିକ ବର୍ଷ ବଜେଟରେ ୩୦୦ କୋଟି ଟଙ୍କାର ବ୍ୟୟବରାଦ କରାଯାଇଛି ।
- ନୂଆ ମଡ଼େଲ ସ୍କୁଲ ସ୍ଥାପନ, ହାଇସ୍କୁଲମାନଙ୍କର ଭିତ୍ତିଭୂମି ଉନ୍ନୟନ ଓ ଛାତ୍ରୀଙ୍କୁ ପ୍ରୋତ୍ସାହନ ଯୋଗାଇ ଦେବା ଲକ୍ଷ୍ୟରେ SUCCESS ନାମରେ କେନ୍ଦ୍ରୀୟ ପ୍ରବର୍ତ୍ତିତ ଯୋଜନା ପାଇଁ ରାଜ୍ୟ ଅଂଶ ବାବଦରେ ୨୦୦୮-୦୯ ଆର୍ଥିକ ବର୍ଷ ବଜେଟରେ ୫ କୋଟି ଟଙ୍କାର ବ୍ୟୟବରାଦ କରାଯାଇଛି ।
- କସ୍ତୁରବା ଗାନ୍ଧୀ ବାଳିକା ବିଦ୍ୟାଳୟ ପାଇଁ ୨୦୦୭-୦୮ ଆର୍ଥିକ ବର୍ଷ ମୂଳ ବଜେଟରେ ୪.୦୧ କୋଟି ଟଙ୍କାର ବ୍ୟୟବରାଦ ହୋଇଥିବା ବେଳେ ୨୦୦୮-୦୯ ଆର୍ଥିକ ବର୍ଷ ବଜେଟରେ ଏଥିପାଇଁ ୧୨ କୋଟି ଟଙ୍କାର ବ୍ୟବସ୍ଥା ରଖାଯାଇଛି ।
- ପ୍ରାକ୍ ମାଟ୍ରିକ୍ ବୃତ୍ତି ୨୦ ଟଙ୍କାରୁ ୧୦୦ ଟଙ୍କାକୁ ବୃଦ୍ଧି କରାଯିବାର ପ୍ରସ୍ତାବ ଅଛି । ଏଥିନିମନ୍ତେ ଆଗାମୀ ବଜେଟରେ ୫ କୋଟି ଟଙ୍କାର ବ୍ୟୟବରାଦ କରାଯାଇଛି ।
- ଉଚ୍ଚବିଦ୍ୟାଳୟ (High School) ଓ ଉଚ୍ଚ ପ୍ରାଥମିକ ବିଦ୍ୟାଳୟ କ୍ଷେତ୍ରରେ ବ୍ଲକ୍ ଅନୁଦାନ ପାଇଁ ୨୦୦୮-୦୯ ବଜେଟରେ ଯଥାକ୍ରମେ ୪୫.୭୧ କୋଟି ଏବଂ ୪.୮୨ କୋଟି ଟଙ୍କାର ବ୍ୟୟବରାଦ କରାଯାଇଛି ।
- ସରକାରୀ ଉଚ୍ଚ ବିଦ୍ୟାଳୟରେ ଖାଲି ପଡ଼ୁଥିବା ଶିକ୍ଷକ ପଦବୀ ପୂରଣ ପାଇଁ ସରକାର ଚୁକ୍ତିଭିତ୍ତିରେ ଶିକ୍ଷକ ନିଯୁକ୍ତି କରିବା ସଂଗେସଂଗେ ମାସିକ ବେତନ ବୃଦ୍ଧି କରାଯାଇଛି । ଏଥିପାଇଁ ୨୦୦୮-୦୯ ବଜେଟରେ ୧୯.୫୭ କୋଟି ଟଙ୍କାର ବ୍ୟୟବରାଦ କରାଯାଇଛି ।
- ମୁଁ ମାନ୍ୟବର ସଦସ୍ୟ ଓ ସଦସ୍ୟାମାନଙ୍କୁ ଜଣାଇଦେବାକୁ ଚାହେଁ ଯେ, ନିଶ୍ଚିତ ଶିକ୍ଷା ଯୋଜନା (Education Guarantee Scheme) ଅଧୀନରେ ଛଟେଇ ହୋଇଥିବା ଶିକ୍ଷକମାନଙ୍କୁ ଗଣଶିକ୍ଷକ ରୂପେ ନିଯୁକ୍ତି ଦେବାପାଇଁ ସରକାର ଏକ ଗୁରୁତ୍ୱପୂର୍ଣ୍ଣ ନିଷ୍ପତ୍ତି ନେଇଛନ୍ତି ।
- ବିଦ୍ୟାଳୟ ଓ ଗଣଶିକ୍ଷା ବିଭାଗ ଅଧୀନରେ ୭୬୬୧ ଶିକ୍ଷା ସହାୟକଙ୍କୁ ୬ ବର୍ଷ ଚାକିରି କାଳପରେ ନିୟମିତ ଶିକ୍ଷକ ରୂପେ ଗ୍ରହଣ କରିବା ପାଇଁ ସରକାର ନୀତିଗତ ଭାବେ ନିଷ୍ପତ୍ତି ନେଇଛନ୍ତି ଏବଂ ଏଥିପାଇଁ ୨୦୦୮-୦୯ ଆର୍ଥିକ ବର୍ଷ ବଜେଟରେ ୭୨.୪୮ କୋଟି ଟଙ୍କାର ବ୍ୟୟବରାଦ କରାଯାଇଛି ।
- ଯୋଜନା କ୍ଷେତ୍ରରୁ ଅଣ ଯୋଜନା କ୍ଷେତ୍ରକୁ ହସ୍ତାନ୍ତର ପାଇଁ ୧୦୬.୬୩ କୋଟି ଟଙ୍କାର ବ୍ୟୟବରାଦ କରାଯାଇଛି ।
- ସେହିପରି ବେସରକାରୀ ଉଚ୍ଚ ବିଦ୍ୟାଳୟ, ଉଚ୍ଚ ପ୍ରାଥମିକ ବିଦ୍ୟାଳୟ, ପ୍ରାଥମିକ ବିଦ୍ୟାଳୟ, ସଂସ୍କୃତ ଟୋଲ୍ ଏବଂ ମଦ୍ରାସା ପାଇଁ ୨୦୦୮-୦୯ ଆର୍ଥିକ ବର୍ଷ ବଜେଟରେ ଯଥାକ୍ରମେ- ୯.୦୭, ୩.୧୨, ୫.୪୦, ୮.୨୩ ଏବଂ ୨.୧୮ କୋଟି ଟଙ୍କାର ବ୍ୟୟବରାଦ କରାଯାଇଛି ।
- ବିଦ୍ୟାଳୟମାନଙ୍କରେ ଶିକ୍ଷାଦାନ ସାମଗ୍ରୀ ଓ ବିଜ୍ଞାନ ଉପକରଣ କ୍ରୟ ନିମନ୍ତେ ଯଥାକ୍ରମେ ୫୦.୦୦ କୋଟି ଓ ୩.୪୭ କୋଟି ଟଙ୍କା ୨୦୦୮-୦୯ ବଜେଟରେ ବ୍ୟୟବରାଦ କରାଯାଇଛି ।

**ଯୋଜନା ଓ ସମନ୍ୱୟ ବିଭାଗ**

➢ ପଶ୍ଚିମ ଓଡ଼ିଶା ବିକାଶ ପରିଷଦ ପାଇଁ ୮୦ କୋଟି ଟଙ୍କାର ଅନୁଦାନ ବ୍ୟବସ୍ଥା ୨୦୦୮-୦୯ ବଜେଟରେ କରାଯାଇଛି । ଏଥିମଧ୍ୟରୁ ୫୦ କୋଟି ଟଙ୍କା ପଶ୍ଚିମ ଓଡ଼ିଶା ବିକାଶ ପରିଷଦର ସ୍ୱତନ୍ତ୍ର ପ୍ରକଳ୍ପ ପାଇଁ ଉଦ୍ଦିଷ୍ଟ ।

➢ ବିଜୁ କେ.ବି.କେ. ଯୋଜନା ପାଇଁ ୨୦୦୮-୦୯ ବଜେଟରେ ୧୨୦ କୋଟି ଟଙ୍କାର ବ୍ୟୟବରାଦ କରାଯାଇଛି ।

➢ ବିଧାୟକ ଆଞ୍ଚଳିକ ଉନ୍ନୟନ ପାଣ୍ଠି ପାଇଁ ବଜେଟରେ ୧୧୦.୨୫ କୋଟି ଟଙ୍କାର ବ୍ୟୟବରାଦ କରାଯାଇଛି ।

➢ ସ୍ୱତନ୍ତ୍ର ସମସ୍ୟା ପାଣ୍ଠି (Special Problem Fund) ପାଇଁ ୨୦୦୮-୦୯ ବଜେଟରେ ୨୦.୦୦ କୋଟି ଟଙ୍କାର ବ୍ୟୟବରାଦ କରାଯାଇଛି ।

➢ ଏକ ଲକ୍ଷ ଯୁବକଙ୍କୁ ଆତ୍ମନିଯୁକ୍ତି ମିଶନ ଜରିଆରେ କମ୍ପ୍ୟୁଟର ପ୍ରଶିକ୍ଷଣ ଦେବା ପାଇଁ ୨୦୦୮-୦୯ ବଜେଟରେ ୨୦ କୋଟି ଟଙ୍କାର ବ୍ୟୟବରାଦ କରାଯାଇଛି ।

**ରାଜସ୍ୱ ଓ ବିପର୍ଯ୍ୟୟ ପରିଚାଳନା ବିଭାଗ**

➢ କେନ୍ଦ୍ରୀୟ ପ୍ରବର୍ତ୍ତିତ ଯୋଜନା ପାଇଁ ରାଜ୍ୟ ଅଂଶ ବାବଦରେ ୨୦୦୭-୦୮ ଆର୍ଥିକ ବର୍ଷ ମୂଳ ବଜେଟରେ ମାତ୍ର ୦.୦୧ କୋଟି ଟଙ୍କାର ବ୍ୟୟବରାଦ କରାଯାଇଥିବା ବେଳେ ୨୦୦୮-୦୯ ବଜେଟରେ ଏହାକୁ ୨.୮୩ କୋଟି ଟଙ୍କାକୁ ବୃଦ୍ଧି କରାଯାଇଛି ।

➢ ସେହିପରି ଜମିଜମା ସମ୍ବନ୍ଧୀୟ ନକ୍ସା ନିରୀକ୍ଷଣ (Scanning of Cadastral Map) ପାଇଁ ୨୦୦୮-୦୯ ବଜେଟରେ ୨.୦୦ କୋଟି ଟଙ୍କାର ବ୍ୟୟବରାଦ ।

➢ ଏହି ପବିତ୍ର ଗୃହର ମାନ୍ୟବର ସଦସ୍ୟ/ସଦସ୍ୟାମାନଙ୍କୁ ମୁଁ ଜଣାଇଦେବାକୁ ଚାହେଁ ଯେ ଆମ ସରକାର ଗରିବ ଓ ସାଧାରଣ ଲୋକଙ୍କର ସୁବିଧାକୁ ଆଖି ଆଗରେ ରଖି ଚଳିତ ବର୍ଷ ୬୦ ଗୋଟି, ଆଗାମୀ ବର୍ଷରେ ୫୦ ଗୋଟି ଏବଂ ୨୦୦୯-୧୦ ଆର୍ଥିକ ବର୍ଷରେ ଅବଶିଷ୍ଟ ନୂଆ ତହସିଲ ପ୍ରତିଷ୍ଠା କରିବା ପାଇଁ ନିଷ୍ପତ୍ତି ନେଇଛନ୍ତି ଏବଂ ତଦନୁସାରେ ଆଗାମୀ ବର୍ଷ ବଜେଟରେ ୧୦.୦୦ କୋଟି ଟଙ୍କାର ବ୍ୟୟବରାଦ କରାଯାଇଛି ।

➢ ନୂତନ ଏବଂ ଆଗରୁ ଥିବା ତହସିଲ ଅଫିସ୍ ଗୃହ ନିର୍ମାଣ ପାଇଁ ୨୧.୬୦ କୋଟି ଟଙ୍କାର ବ୍ୟବସ୍ଥା ବଜେଟରେ ରଖାଯାଇଛି ।

➢ ତହସିଲ ଏବଂ ସବ୍‌ଡିଭିଜନର ସଦର ମହକୁମାରେ କର୍ମଚାରୀଙ୍କ ସରକାରୀ ବାସଗୃହ ନିର୍ମାଣ ପାଇଁ ୨୦୦୮-୦୯ ବଜେଟରେ ୧୧.୦୦ କୋଟି ଟଙ୍କାର ବ୍ୟୟବରାଦ କରାଯାଇଛି

➢ ସେହିପରି ବଜ୍ରପାତରେ ମୃତ୍ୟୁବରଣ କରିଥିବା ବ୍ୟକ୍ତିଙ୍କ ନିକଟ ସମ୍ପର୍କୀୟଙ୍କୁ ୫୦ ହଜାର ଟଙ୍କା ହାରରେ ଅନୁକମ୍ପା ଅର୍ଥ ପ୍ରଦାନ ପାଇଁ ଆଗାମୀ ଆର୍ଥିକ ବର୍ଷ ବଜେଟରେ ୧.୦୦ କୋଟି ଟଙ୍କାର ବ୍ୟବସ୍ଥା ରଖାଯାଇଛି ।

**କ୍ରୀଡ଼ା ଓ ଯୁବସେବା ବିଭାଗ**

➢ ଖେଳ ପଡ଼ିଆର ଉନ୍ନତି ପାଇଁ ୨୦୦୮-୦୯ ବଜେଟରେ ୭ କୋଟି ଟଙ୍କାର ବ୍ୟୟବରାଦ ।

➢ ସମ୍ବେଦନଶୀଳ ଅଞ୍ଚଳରେ କ୍ରୀଡ଼ା ଉପକରଣ ବଣ୍ଟନ ନିମନ୍ତେ ୧୦ କୋଟି ଟଙ୍କାର ବ୍ୟୟବରାଦ ।

➢ **ଇସ୍ପାତ ଓ ଖଣି ବିଭାଗ**

➢ ଖଣିଜ ପଥର ଚୋରା କାରବାରକୁ ରୋକିବାପାଇଁ ୨୦୦୮-୦୯ ଆର୍ଥିକ ବର୍ଷ ବଜେଟରେ ୨ କୋଟି ଟଙ୍କାର ବ୍ୟୟବରାଦ କରାଯାଇଛି ।

**ଗ୍ରାମ୍ୟ ଉନ୍ନୟନ ବିଭାଗ**

➢ ଗ୍ରାମ୍ୟ ଉନ୍ନୟନ ବିଭାଗରେ 'ଜଳଧାରା' ନାମରେ ଏକ ନୂତନ ଯୋଜନା ପ୍ରଣୟନ ପାଇଁ ୨୦୦୮-୦୯ ଆର୍ଥିକ ବର୍ଷ ବଜେଟରେ ୧ କୋଟି ଟଙ୍କାର ବ୍ୟବସ୍ଥା କରାଯାଇଛି ।

- ଗ୍ରାମ୍ୟ ଭିତ୍ତିଭୂମି ଉନ୍ନୟନ ପାଣ୍ଠି ପାଇଁ ୨୦୦୭-୦୮ ଆର୍ଥିକ ବର୍ଷ ମୂଳ ବଜେଟରେ ୫୮ କୋଟି ଟଙ୍କାର ବ୍ୟୟବରାଦ ହୋଇଥିବାବେଳେ ୨୦୦୮-୦୯ ଆର୍ଥିକ ବର୍ଷ ବଜେଟରେ ଏହାକୁ ୭୧ କୋଟି ଟଙ୍କାକୁ ବୃଦ୍ଧି କରାଯାଇଛି ।
- ଗ୍ରାମ୍ୟ ଉନ୍ନୟନ ବିଭାଗରେ ବିଭିନ୍ନ କେନ୍ଦ୍ରୀୟ ପ୍ରବର୍ତ୍ତିତ ଯୋଜନା ପାଇଁ ୨୦୦୭-୦୮ ମୂଳ ବଜେଟରେ ୧୦୮.୦୦ କୋଟି ଟଙ୍କାର ବ୍ୟୟବରାଦ ହୋଇଥିବାବେଳେ ୨୦୦୮-୦୯ ଆର୍ଥିକ ବର୍ଷ ବଜେଟରେ ଏହାକୁ ୧୮୨ କୋଟି ଟଙ୍କାକୁ ବୃଦ୍ଧି କରାଯାଇଛି ।
- ଗ୍ରାମ୍ୟ ଉନ୍ନୟନ ବିଭାଗ ଅଧୀନସ୍ଥ ବିଭିନ୍ନ କାର୍ଯ୍ୟାଳୟ ଏବଂ ଆବାସିକ ଗୃହ ନିର୍ମାଣ ପାଇଁ ୧୧.୦୦ କୋଟି ଟଙ୍କାର ବ୍ୟୟବରାଦ କରାଯାଇଛି ।
- ଗ୍ରାମ୍ୟ ଉନ୍ନୟନ ବିଭାଗରେ ଆବାସିକ ଓ ଅଣଆବାସିକ ଗୃହର ରକ୍ଷଣାବେକ୍ଷଣ ପାଇଁ ୨୦୦୭-୦୮ ଆର୍ଥିକ ବର୍ଷ ମୂଳ ବଜେଟରେ ୧୦୫.୮୬ କୋଟି ଟଙ୍କାର ବ୍ୟୟବରାଦ ହୋଇଥିବାବେଳେ ୨୦୦୮-୦୯ ଆର୍ଥିକ ବର୍ଷ ବଜେଟରେ ଏଥିପାଇଁ ୧୧୨.୩୬ କୋଟି ଟଙ୍କାର ବ୍ୟୟବରାଦ ହୋଇଛି । ସେହିପରି ଜଳଯୋଗାଣ ଓ ପରିମଳ ବ୍ୟବସ୍ଥା ପାଇଁ ୨୦୦୭-୦୮ ଆର୍ଥିକ ବର୍ଷ ମୂଳ ବଜେଟରେ ୧୯.୧୫ କୋଟି ଟଙ୍କାର ବ୍ୟୟବରାଦ ହୋଇଥିବାବେଳେ ୨୦୦୮-୦୯ ଆର୍ଥିକ ବର୍ଷ ବଜେଟରେ ଏହାକୁ ୨୦.୦୦ କୋଟି ଟଙ୍କାକୁ ବୃଦ୍ଧି କରାଯାଇଛି ।
- ଅପରପକ୍ଷେ ଅଣଯୋଜନା କ୍ଷେତ୍ରରେ ମଧ ରାସ୍ତାଘାଟର ରକ୍ଷଣାବେକ୍ଷଣ ଓ ଗ୍ରାମ୍ୟ ଭିତ୍ତିଭୂମି ଉନ୍ନୟନ ପାଣ୍ଠି ଓ ଅନ୍ୟ ପାଣ୍ଠି ଦ୍ୱାରା ଅସଂପୂର୍ଣ୍ଣ ପ୍ରକଳ୍ପକୁ ସମ୍ପୂର୍ଣ୍ଣ କରିବା ପାଇଁ ୨୦୦୮-୦୯ ଆର୍ଥିକ ବର୍ଷ ବଜେଟରେ ଯଥାକ୍ରମେ ୨୮୮.୭୦ କୋଟି ଟଙ୍କା ଏବଂ ୨୯.୦୦ କୋଟି ଟଙ୍କାର ବ୍ୟୟବରାଦ କରାଯାଇଛି ।

**ବିଜ୍ଞାନ ଓ କାରିଗରି ବିଭାଗ**

- ଭୁବନେଶ୍ୱରଠାରେ ଜୈବ ବୈଷୟିକ ସୂଚନା ଓ ପ୍ରଯୁକ୍ତି ପାର୍କ ପାଇଁ ୨୦୦୮-୦୯ ଆର୍ଥିକ ବର୍ଷରେ ୭ କୋଟି ଟଙ୍କାର ବ୍ୟୟବରାଦ କରାଯାଇଛି ।
- ଜୈବ-ଡିଜେଲ ପ୍ରକଳ୍ପ ପାଇଁ ୨୦୦୮-୦୯ ବଜେଟରେ ୧ କୋଟି ଟଙ୍କାର ବ୍ୟୟବରାଦ କରାଯାଇଛି ।

**ପରିବହନ ବିଭାଗ**

- ସଡ଼କ ସୁରକ୍ଷା ଏବଂ ରାଜ୍ୟ ପରିବହନ କର୍ତ୍ତୃପକ୍ଷ, ଆଞ୍ଚଳିକ ପରିବହନ କାର୍ଯ୍ୟାଳୟ ଏବଂ ତନଖି ଫାଟକ ଆଧୁନିକୀକରଣ ତଥା ନୂତନ ଆଞ୍ଚଳିକ ପରିବହନ କାର୍ଯ୍ୟାଳୟ ପାଇଁ ୧୮ କୋଟି ଟଙ୍କାର ବ୍ୟୟବରାଦ କରାଯାଇଛି ।

**ପର୍ଯ୍ୟଟନ ବିଭାଗ**

- ପୁରୀଠାରେ ଜଳଜ ଉଦ୍ଭିଦ ଓ ଜୀବଜନ୍ତୁ ରଖିବା ପାଇଁ ଜଳାଧାର (Aquarium) ପ୍ରତିଷ୍ଠା ପାଇଁ ୨୦୦୮-୦୯ ଆର୍ଥିକ ବର୍ଷ ବଜେଟରେ ୩ କୋଟି ଟଙ୍କାର ବ୍ୟୟବରାଦ ।
- ଶାମୁକା ପ୍ରକଳ୍ପ ପାଇଁ ୧୦ କୋଟି ଟଙ୍କାର ବ୍ୟୟବରାଦ ୨୦୦୮-୦୯ ବଜେଟରେ କରାଯାଇଛି ।
- ଓଡ଼ିଶାର ପର୍ଯ୍ୟଟନ କ୍ଷେତ୍ରରେ ଥିବା ପ୍ରାଚୀନ ଐତିହ୍ୟ ଓ କୀର୍ତ୍ତିରାଜିକୁ ବିଶ୍ୱବାସୀଙ୍କ ଦୃଷ୍ଟି ଆକର୍ଷଣ କରିବା ନିମନ୍ତେ ଉପଯୁକ୍ତ ବିଜ୍ଞାପନ ପାଇଁ ୨୦୦୮-୦୯ ବଜେଟରେ ୨.୦୦ କୋଟି ଟଙ୍କାର ବ୍ୟୟବରାଦ କରାଯାଇଛି ।
- ଖଣ୍ଡଗିରି ଏବଂ ପ୍ରାଚୀ ଐତିହ୍ୟର ଉନ୍ନତି ପାଇଁ ବଜେଟରେ ୧.୦୦ କୋଟି ଟଙ୍କାର ବ୍ୟୟବରାଦ କରାଯାଇଛି ।

**ବୟନ ଓ ହସ୍ତତନ୍ତ ବିଭାଗ**

- ମୁଖ୍ୟମନ୍ତ୍ରୀଙ୍କ ଘୋଷଣା ଅନୁସାରେ ଏହି ବିଭାଗରେ ହସ୍ତତନ୍ତର ଉନ୍ନତି ପାଇଁ ସ୍ୱତନ୍ତ୍ର ପ୍ୟାକେଜର ବ୍ୟବସ୍ଥା କରାଯାଇଛି । ଏଥିପାଇଁ ୨୦୦୮-୦୯ ଆର୍ଥିକ ବର୍ଷ ବଜେଟରେ ୭.୧୪ କୋଟି ଟଙ୍କା ବ୍ୟୟବରାଦ କରାଯାଇଛି ।

**ପୂର୍ତ୍ତ ବିଭାଗ**

- ପୂର୍ତ୍ତ ବିଭାଗ ଅଧୀନରେ କେନ୍ଦ୍ରୀୟ ସଡ଼କ ପାଣ୍ଠି ଓ କଟକ ପାରାଦୀପ ରାସ୍ତା ପାଇଁ ୨୦୦୭-୦୮ ବର୍ଷର ମୂଳ ବଜେଟରେ ଯଥାକ୍ରମେ ୧୪.୭୩ କୋଟି ଟଙ୍କା ଓ ୧୦.୨୯ କୋଟି ଟଙ୍କାର ବ୍ୟୟବରାଦ ହୋଇଥିଲା ବେଳେ ୨୦୦୮-୦୯ ଆର୍ଥିକ ବର୍ଷ ବଜେଟରେ ଏହାକୁ ଯଥାକ୍ରମେ ୫୮.୨୫ କୋଟି ଟଙ୍କା ଏବଂ ୫୦.୦୦ କୋଟି ଟଙ୍କାକୁ ବୃଦ୍ଧି କରାଯାଇଛି । ସେହିପରି ଗ୍ରାମ୍ୟ ଭିତ୍ତିଭୂମି ଉନ୍ନୟନ ପାଣ୍ଠି ଓ ଜମି ଅଧିଗ୍ରହଣ/ବିସ୍ତୃତ ପ୍ରକଳ୍ପ ରିପୋର୍ଟ ପ୍ରସ୍ତୁତି ଭିତ୍ତି ସଂରଚନା ପାଇଁ ୨୦୦୮-୦୯ ଆର୍ଥିକ ବର୍ଷ ବଜେଟରେ ଯଥାକ୍ରମେ ୧୪୩.୦୦ କୋଟି ଟଙ୍କା ଓ ୧୦.୦୦ କୋଟି ଟଙ୍କାର ବ୍ୟୟବରାଦ କରାଯାଇଛି ।
- ଗ୍ରାମ୍ୟ ଭିତ୍ତିଭୂମି ଉନ୍ନୟନ ପାଣ୍ଠି ଓ ଅନ୍ୟ ପାଣ୍ଠି ଦ୍ୱାରା ଅସମ୍ପୂର୍ଣ୍ଣ ପ୍ରକଳ୍ପକୁ ସମ୍ପୂର୍ଣ୍ଣ କରିବା ପାଇଁ ୨୦୦୭-୦୮ ଆର୍ଥିକ ବର୍ଷ ବଜେଟରେ ୨୫ କୋଟି ଟଙ୍କାର ବ୍ୟୟବରାଦ କରାଯାଇଥିବାବେଳେ ୨୦୦୮-୦୯ ଆର୍ଥିକ ବର୍ଷ ବଜେଟରେ ଏଥିପାଇଁ ୪୭ କୋଟି ଟଙ୍କାର ବ୍ୟବସ୍ଥା କରାଯାଇଛି ।
- ପୂର୍ତ୍ତ ବିଭାଗ ଅଧୀନରେ ଆବାସିକ ଓ ଅଣଆବାସିକ ଗୃହର ରକ୍ଷଣାବେକ୍ଷଣ ପାଇଁ ୨୦୦୭-୦୮ ଆର୍ଥିକ ବର୍ଷ ବଜେଟରେ ୧୯୨.୨୫ କୋଟି ଟଙ୍କାର ବ୍ୟୟବରାଦ କରାଯାଇଥିବାବେଳେ ୨୦୦୮-୦୯ ଆର୍ଥିକ ବର୍ଷ ବଜେଟରେ ଏଥିପାଇଁ ୨୧୨.୩୬ କୋଟି ଟଙ୍କାର ବ୍ୟୟବରାଦ କରାଯାଇଛି । ସେହିପରି ରାସ୍ତାଘାଟର ରକ୍ଷଣାବେକ୍ଷଣ ପାଇଁ ଆଗାମୀ ବର୍ଷ ବଜେଟରେ ୪୦୬.୯୫ କୋଟି ଟଙ୍କାର ବ୍ୟୟବରାଦ କରାଯାଇଛି ଏବଂ ତନ୍ମଧ୍ୟରୁ କଟକ, ସମ୍ବଲପୁର ଓ ବ୍ରହ୍ମପୁର ସହର ଓ ଏହାର ଆଖପାଖ ଅଞ୍ଚଳରେ ରାସ୍ତାଘାଟର ଉନ୍ନତି ପାଇଁ ୩୦.୦୦ କୋଟି ଟଙ୍କା ଉଦ୍ଦିଷ୍ଟ ।

**ଅବକାରୀ ବିଭାଗ**

- ଅବକାରୀ ପ୍ରଶାସନକୁ ସୁଦୃଢ଼ କରିବା ଉଦ୍ଦେଶ୍ୟରେ ବନ୍ଧୁକ, ଗାଡ଼ି ଇତ୍ୟାଦି କ୍ରୟ ଓ ମାନ ନିର୍ଦ୍ଧାରଣ ପରୀକ୍ଷାଗାର ତଥା ନୂତନ ଅବକାରୀ ଜିଲ୍ଲା ଗଠନ ଇତ୍ୟାଦି ନିମନ୍ତେ ୨୦୦୮-୦୯ ଆର୍ଥିକ ବର୍ଷ ବଜେଟରେ ୨.୧୭ କୋଟି ଟଙ୍କାର ବ୍ୟୟବରାଦ କରାଯାଇଛି ।
- ଅବକାରୀ ବିଭାଗର ଅଣଆବାସିକ ଗୃହ ନିର୍ମାଣ ପାଇଁ ୫.୦୦ କୋଟି ଟଙ୍କା ଓ କର୍ମଚାରୀମାନଙ୍କ ବାସଗୃହ ନିର୍ମାଣ ପାଇଁ ୫.୦୦ କୋଟି ଟଙ୍କା ଏହିପରି ମୋଟ ୧୦.୦୦ କୋଟି ଟଙ୍କାର ବ୍ୟୟବରାଦ କରାଯାଇଛି ।

**ଖାଦ୍ୟ ଯୋଗାଣ ଓ ଖାଉଟି କଲ୍ୟାଣ ବିଭାଗ**

- ମାପ ଓ ଓଜନ ନିର୍ଦ୍ଦେଶାଳୟକୁ ଅଧିକ ସକ୍ରିୟ କରିବା ପାଇଁ ୨୦୦୮-୦୯ ବଜେଟରେ ୨.୦୦ କୋଟି ଟଙ୍କାର ବ୍ୟୟବରାଦ କରାଯାଇଛି ।
- ଦାରିଦ୍ର୍ୟ ସୀମାରେଖା ତଳେ ରହୁଥିବା ଲୋକଙ୍କୁ ରିହାତି ଦରରେ ଚାଉଳ ଯୋଗାଇ ଦେବା ପାଇଁ ନୂତନ ଭାବେ ବଜେଟରେ ୩୦.୦୦ କୋଟି ଟଙ୍କାର ବ୍ୟୟବରାଦ କରାଯାଇଛି ।

**ମହିଳା ଓ ଶିଶୁ କଲ୍ୟାଣ ବିଭାଗ**

- ନୂତନ ଭାବେ ପ୍ରଚଳିତ ମଧୁବାବୁ ପେନ୍‌ସନ୍ ଯୋଜନାରେ ଅଧିକ ୩ ଲକ୍ଷ ହିତାଧିକାରୀଙ୍କ ପାଇଁ ୭୨.୦୦ କୋଟି ଟଙ୍କାର ବ୍ୟୟବରାଦ ବଜେଟରେ କରାଯାଇଛି ।
- ଜାତୀୟ ବାର୍ଦ୍ଧକ୍ୟ ଭତ୍ତା ଯୋଜନାରେ ୨୦୦୭-୦୮ ଆର୍ଥିକ ବର୍ଷ ମୂଳ ବଜେଟରେ ୧୫୨.୨୧ କୋଟି ଟଙ୍କା ବ୍ୟୟବରାଦ କରାଯାଇଥିଲା ବେଳେ ୨୦୦୮-୦୯ ଆର୍ଥିକ ବର୍ଷ ବଜେଟରେ ଏହାକୁ ୧୮୫.୬୬ କୋଟି ଟଙ୍କାକୁ ବୃଦ୍ଧି କରାଯାଇଛି ।
- ନାରୀ ଶିକ୍ଷାର ପ୍ରସାର ପାଇଁ ଅନୁସୂଚିତ ଜାତି ଓ ଜନଜାତି ବର୍ଗର ସ୍କୁଲ ଛାତ୍ରୀମାନଙ୍କୁ ସାଇକେଲ ପ୍ରଦାନ ପାଇଁ ୨୦.୦୦ କୋଟି ଟଙ୍କାର ବ୍ୟୟବରାଦ କରାଯାଇଛି ।
- ଏହି ବିଭାଗର ବିଭିନ୍ନ କେନ୍ଦ୍ରୀୟ ପ୍ରବର୍ତ୍ତିତ ଯୋଜନା ପାଇଁ ୨୦୦୮-୦୯ ଆର୍ଥିକ ବର୍ଷ ବଜେଟରେ ୧୬୩.୩୫ କୋଟି ଟଙ୍କାର ବ୍ୟୟବରାଦ କରାଯାଇଛି ।

- ନୂତନ ଭାବେ ଏକ ଲକ୍ଷ ମହିଳା ସ୍ୱୟଂ ସହାୟକ ଗୋଷ୍ଠୀଙ୍କୁ ୫୦୦୦ ଟଙ୍କା ହିସାବରେ ପ୍ରତ୍ୟେକ ଗୋଷ୍ଠୀକୁ ଆର୍ଥିକ ସହାୟତା ପ୍ରଦାନ ପାଇଁ ୫୦.୦୦ କୋଟି ଟଙ୍କାର ବ୍ୟୟବରାଦ ।
- ମଧ୍ୟାହ୍ନ ଭୋଜନ ଯୋଜନା (ଏମ୍.ଡି.ଏମ୍.) ଓ ଅତିରିକ୍ତ ପୁଷ୍ଟି ଯୋଜନା (ଏସ୍.ଏନ୍.ପି.) କାର୍ଯ୍ୟକ୍ରମ ପାଇଁ ୨୦୦୮-୦୯ ବଜେଟରେ ଯଥାକ୍ରମେ ୬୭.୧୯ କୋଟି ଟଙ୍କା ଏବଂ ୯୬.୦୭ କୋଟିର ବ୍ୟୟବରାଦ କରାଯାଇଛି ।
- ଶାରୀରିକ ଓ ମାନସିକ ଅନଗ୍ରସର ଲୋକଙ୍କ କଲ୍ୟାଣ ପାଇଁ ୨୦୦୮-୦୯ ବଜେଟରେ ୭.୦୦ କୋଟି ଟଙ୍କାର ବ୍ୟୟବରାଦ କରାଯାଇଛି ।
- ସେହିପରି ଅନାଥାଶ୍ରମ ଓ ଜରାନିବାସଗୁଡ଼ିକର ଉନ୍ନତି ପାଇଁ ବଜେଟରେ ୨.୦୦ କୋଟି ଟଙ୍କାର ବ୍ୟୟବରାଦ କରାଯାଇଛି ।
- ରାଜ୍ୟ ବାର୍ଦ୍ଧକ୍ୟ ଭତ୍ତା ଯୋଜନା ଓ ଭିନ୍ନକ୍ଷମ ଭତ୍ତା ଯୋଜନାକୁ ମିଶାଇ ଚଳିତ ବର୍ଷଠାରୁ ସରକାର ମଧୁବାବୁ ପେନ୍‌ସନ୍ ଯୋଜନା ପ୍ରଣୟନ କରିଛନ୍ତି । ଏଥିପାଇଁ ୨୦୦୮-୦୯ ଆର୍ଥିକ ବର୍ଷ ବଜେଟରେ ୨୧୮.୦୨ କୋଟି ଟଙ୍କାର ବ୍ୟୟବରାଦ କରାଯାଇଛି ।
- ସେହିପରି ଅନାଥାଶ୍ରମର ପରିଚାଳନା, ଅଙ୍ଗନୱାଡ଼ି କେନ୍ଦ୍ରର ମରାମତି ଓ ପରିଚାଳନା ଏବଂ ଭିନ୍ନକ୍ଷମ ଓ ମାନସିକ ଅନଗ୍ରସର ପିଲାଙ୍କୁ ଦେଖାଶୁଣା କରିବା ପାଇଁ ବିଭିନ୍ନ ସ୍ୱେଚ୍ଛାସେବୀ ଅନୁଷ୍ଠାନକୁ ୨୦୦୭-୦୮ ଆର୍ଥିକ ବର୍ଷ ବଜେଟରେ ଯଥାକ୍ରମେ ୩.୪୮, ୭.୦୦ ଏବଂ ୩.୮୦ କୋଟି ଟଙ୍କାର ବ୍ୟୟ ବରାଦ କରାଯାଇଥିବାବେଳେ ୨୦୦୮-୦୯ ଆର୍ଥିକ ବର୍ଷ ବଜେଟରେ ଏଥିପାଇଁ ଯଥାକ୍ରମେ ୩.୬୨, ୭.୦୦ ଏବଂ ୩.୮୦ କୋଟି ଟଙ୍କାର ବ୍ୟୟବରାଦ କରାଯାଇଛି ।

**ଅନୁସୂଚିତ ଜନଜାତି ଓ ଅନୁସୂଚିତ ଜାତି ଉନ୍ନୟନ ବିଭାଗ**

- ଅନୁସୂଚିତ ଜାତି, ଜନଜାତି ସଂଖ୍ୟା ଲଘୁ ଓ ଅନ୍ୟାନ୍ୟ ପଛୁଆ ବର୍ଗର ସାମାଜିକ ଉନ୍ନତି ପାଇଁ ଆମ ସରକାର ସବୁବେଳେ ଗୁରୁତ୍ୱ ଦେଇଆସୁଛନ୍ତି । ମୁଁ ଏହି ଗୃହର ମାନ୍ୟବର ସଦସ୍ୟ ସଦସ୍ୟାମାନଙ୍କର ଅବଗତି ନିମନ୍ତେ ଏହା ସୂଚାଇ ଦେବାକୁ ଚାହେଁ ଯେ ଏହି ବିଭାଗର ସମନ୍ୱିତ ଆଦିବାସୀ ଉନ୍ନୟନ ସଂସ୍ଥା ମାଧ୍ୟମରେ ବିଦ୍ୟାଳୟ ଓ ଛାତ୍ରାବାସର ମରାମତି ଓ ନବୀକରଣ ପାଇଁ ଏହି ବଜେଟରେ ୨୦ କୋଟି ଟଙ୍କାର ବ୍ୟୟବରାଦ କରାଯାଇଛି ।
- ଅନୁସୂଚିତ ଜନଜାତି ଓ ଜାତିର ଛାତ୍ରଛାତ୍ରୀମାନଙ୍କୁ ପ୍ରାକ୍ ମାଟ୍ରିକ୍ ବୃତ୍ତି ପାଇଁ ୨୦୦୭-୦୮ ଆର୍ଥିକ ବର୍ଷ ବଜେଟରେ ୩୮ କୋଟି ଟଙ୍କାର ବ୍ୟୟବରାଦ କରାଯାଇଥିବା ବେଳେ ୨୦୦୮-୦୯ ଆର୍ଥିକ ବର୍ଷ ବଜେଟରେ ଏହାକୁ ୪୨.୫୦ କୋଟି ଟଙ୍କାକୁ ବୃଦ୍ଧି କରାଯାଇଛି ।
- କେ.ବି.କେ. ଜିଲ୍ଲାର ଆଦିବାସୀ ଛାତ୍ରୀଙ୍କ ଛାତ୍ରୀନିବାସ ଭିତ୍ତିଭୂମି ପାଇଁ ୫.୫୦ କୋଟି ଟଙ୍କା, ଆଦିବାସୀ ଓ ହରିଜନ ଛାତ୍ରଛାତ୍ରୀଙ୍କ ସ୍କୁଲର ଶ୍ରେଣୀଗୃହ ନିମନ୍ତେ ୩.୯୯ କୋଟି ଟଙ୍କା, ଆଦିବାସୀ ଛାତ୍ରୀ ନିବାସ ଓ ଛାତ୍ରାବାସ ନିର୍ମାଣ ପାଇଁ ୧୬.୨୦ କୋଟି ଟଙ୍କା ବ୍ୟୟ ବରାଦ କରାଯାଇଛି ।

**ସ୍ୱରାଷ୍ଟ୍ର ବିଭାଗ**

- ଆବାସିକ ଓ ଅଣଆବାସିକ ଗୃହର ରକ୍ଷଣାବେକ୍ଷଣ ପାଇଁ ଏହି ବିଭାଗ ଅଧୀନରେ ୨୦୦୭-୦୮ ଆର୍ଥିକ ବର୍ଷ ବଜେଟରେ ୪୯.୨୫ କୋଟି ଟଙ୍କାର ବ୍ୟୟବରାଦ କରାଯାଇଥିବା ବେଳେ ୨୦୦୮-୦୯ ଆର୍ଥିକ ବର୍ଷ ବଜେଟରେ ଏହାକୁ ୫୪.୧୫ କୋଟି ଟଙ୍କାକୁ ବୃଦ୍ଧି କରାଯାଇଛି ।
- ୨୦୦୮-୦୯ ଆର୍ଥିକ ବର୍ଷ ବଜେଟରେ ରାଜ୍ୟ ସୈନିକ ବୋର୍ଡ଼କୁ ପୂର୍ବତନ ସୈନିକଙ୍କର ଆର୍ଥିକ ସହାୟତା ପାଇଁ ୧.୦୦ କୋଟି ଟଙ୍କାର ବ୍ୟୟବରାଦ କରାଯାଇଛି ।
- ଆପଣମାନଙ୍କ ଅବଗତି ନିମନ୍ତେ ମୁଁ ଜଣାଇଦେବାକୁ ଚାହୁଁଛି ଯେ, ଅଗ୍ନି ନିରୋଧକ ନିୟନ୍ତ୍ରଣ, ଗାଡ଼ି ଓ ସରଞ୍ଜାମ ନିମନ୍ତେ ଚଳିତ ବର୍ଷର ମୂଳ ବଜେଟରେ ୨.୧୨ କୋଟି ଟଙ୍କାର ବ୍ୟୟବରାଦ ହୋଇଥିବାବେଳେ ୨୦୦୮-୦୯ ଆର୍ଥିକ ବର୍ଷ ବଜେଟରେ ଏହାକୁ ୧୦.୦୦ କୋଟି ଟଙ୍କାକୁ ବୃଦ୍ଧି କରାଯାଇଛି ।
- ଏକ ସ୍ୱଚ୍ଛ ଓ ଉତ୍ତରଦାୟୀ ପ୍ରଶାସନ ପାଇଁ ଆମ ସରକାର ଅଙ୍ଗୀକାରବଦ୍ଧ । ଦୁର୍ନୀତି ନିବାରଣ ବିଭାଗ ତରଫରୁ ରୁଜୁ କରାଯାଇଥିବା ମାମଲାର ଶୀଘ୍ର ଫଏସଲା ପାଇଁ ରାଜ୍ୟ ସରକାର 'ଓଡ଼ିଶା ସ୍ୱତନ୍ତ୍ର କୋର୍ଟ ଆଇନ, ୨୦୦୬' (The Orissa Special Courts

Act, 2006) ପ୍ରଣୟନ କରିଛନ୍ତି । ଏହି ଆଇନକୁ କାର୍ଯ୍ୟକାରୀ କରିବା ପାଇଁ କଟକ ଓ ଭୁବନେଶ୍ୱରଠାରେ ସ୍ୱତନ୍ତ୍ର ଅଦାଲତର ଆନୁଷଙ୍ଗିକ ବ୍ୟୟ ପାଇଁ ୨୦୦୮-୦୯ ବଜେଟରେ ୬୩.୩୨ ଲକ୍ଷ ଟଙ୍କାର ବ୍ୟୟବରାଦ କରାଯାଇଛି ।

➢ ଗୃହ ବିଭାଗ ଅଧୀନରେ ବିଭିନ୍ନ କାର୍ଯ୍ୟକ୍ରମ ପାଇଁ ୨୦୦୮-୦୯ ଆର୍ଥିକ ବର୍ଷ ବଜେଟରେ ନିମ୍ନୋକ୍ତ ପ୍ରକାରେ ୮୬.୬୪ କୋଟି ଟଙ୍କାର ବ୍ୟୟବରାଦ କରାଯାଇଛି ।

| | | | |
|---|---|---|---|
| ୧. | ଭୁବନେଶ୍ୱର ଓ କଟକରେ କମିଶନରେଟ ବ୍ୟବସ୍ଥା ପ୍ରଚଳନ ପାଇଁ | - | ୪୬.୧୪ କୋଟି ଟଙ୍କା |
| ୨. | ୨୧ ଗୋଟି ନୂଆ ଜେଲକୁ କାର୍ଯ୍ୟକ୍ଷମ କରିବା ନିମନ୍ତେ | - | ୧.୫୦ କୋଟି ଟଙ୍କା |
| ୩. | ଥାନାମାନଙ୍କର ମରାମତି ଓ ପୁନରୁଦ୍ଧାର ପାଇଁ | - | ୫.୫୦ କୋଟି ଟଙ୍କା |
| ୪. | ନୂଆ ଅଗ୍ନି ନିରୋଧକ କେନ୍ଦ୍ର ସ୍ଥାପନ ପାଇଁ | - | ୨.୦୦ କୋଟି ଟଙ୍କା |
| ୫. | ପୋଲିସ କର୍ମଚାରୀଙ୍କ ବାସଗୃହ ମରାମତି ପାଇଁ | - | ୫.୫୦ କୋଟି ଟଙ୍କା |
| ୬. | ଜେଲ କର୍ମଚାରୀଙ୍କ ବାସଗୃହ ମରାମତି ପାଇଁ | - | ୧.୦୦ କୋଟି ଟଙ୍କା |
| ୭. | ଦୁଇ ଗୋଟି ନୂଆ ଭାରତୀୟ ରିଜର୍ଭ ବାଟାଲିୟନ ଗଠନ ପାଇଁ | - | ୨୫.୦୦ କୋଟି ଟଙ୍କା |

### ଅର୍ଥ ବିଭାଗ

➢ ଦେଶର ସ୍ୱାଧୀନତା ଆଣିବା କ୍ଷେତ୍ରରେ ସ୍ୱାଧୀନତା ସଂଗ୍ରାମୀମାନଙ୍କ ଭୂମିକାକୁ ଭୁଲି ହେବ ନାହିଁ । ଆଜି ଏମାନଙ୍କ ମଧ୍ୟରୁ ଅଧିକାଂଶ ଦୁଃସ୍ଥ ଏବଂ ନିରାଶ୍ରୟ । ସ୍ୱାଧୀନତା ସଂଗ୍ରାମରେ ସେମାନଙ୍କ ଭୂମିକାକୁ କୃତଜ୍ଞତାର ସହ ସ୍ୱୀକାର କରି ରାଜ୍ୟ ସରକାର ବନ୍ଦୀ ଓ ଅଣବନ୍ଦୀ ସ୍ୱାଧୀନତା ସଂଗ୍ରାମୀଙ୍କର ମାସିକ ପେନ୍‌ସନ୍ ଯଥାକ୍ରମେ ୧୦୦୦ ଟଙ୍କାରୁ ୧୫୦୦ ଟଙ୍କା ଏବଂ ୯୦୦ ଟଙ୍କାରୁ ୧୦୦୦ ଟଙ୍କାକୁ ବୃଦ୍ଧି କରିଛନ୍ତି । ତଦନୁସାରେ ୨୦୦୮-୦୯ ଆର୍ଥିକ ବର୍ଷ ବଜେଟରେ ୭୦ ଲକ୍ଷ ଟଙ୍କାର ବ୍ୟୟବରାଦ କରାଯାଇଛି ।

### ଅନ୍ୟାନ୍ୟ ମୁଖ୍ୟ ବ୍ୟୟବରାଦ

ଏତଦ୍‌ବ୍ୟତୀତ ଅନ୍ୟାନ୍ୟ କ୍ଷେତ୍ରରେ ଯେଉଁ ମୁଖ୍ୟ ବ୍ୟୟବରାଦ ହୋଇଛି ତାହାର ସମ୍ୟକ୍ ସୂଚନା ମୁଁ ଏଠାରେ ଦେବାକୁ ଉଚିତ୍ ମନେ କରୁଛି ।

### ରାସ୍ତା, ସରକାରୀ ଗୃହ ଓ ବାସଗୃହର ରକ୍ଷଣାବେକ୍ଷଣ ନିର୍ମାଣ ଓ ରକ୍ଷଣାବେକ୍ଷଣ

➢ ସରକାରୀ ଅଫିସ୍, ସରକାରୀ କର୍ମଚାରୀଙ୍କ ବାସଗୃହ, ରାସ୍ତାଘାଟ, ପାନୀୟ ଜଳଯୋଗାଣ, ଜଳସେଚନ ପ୍ରକଳ୍ପ ଓ ବନ୍ୟା ନିୟନ୍ତ୍ରଣ ତଥା ବନ୍ଧବାଡ଼ର ରକ୍ଷଣାବେକ୍ଷଣ ପାଇଁ ୨୦୦୭-୦୮ ମୂଳ ବଜେଟରେ ୧୫୪୬.୨୯ କୋଟି ଟଙ୍କାର ବ୍ୟୟବରାଦ କରାଯାଇଥିବାବେଳେ ୨୦୦୮-୦୯ ଆର୍ଥିକ ବର୍ଷ ବଜେଟରେ ଏଥିପାଇଁ ୧୬୫୧.୯୭ କୋଟି ଟଙ୍କାର ବ୍ୟୟବରାଦ କରାଯାଇଛି ।

### ସୁଧ ଦେୟ

➢ ଭାରତ ସରକାର ଏବଂ ଅନ୍ୟାନ୍ୟ ସଂସ୍ଥାରୁ ଅଣାଯାଇଥିବା ଋଣର ସୁଧ ଦେୟ ବାବଦରେ ୨୦୦୮-୦୯ ବଜେଟରେ ୪୩୧୨.୩୦ କୋଟି ଟଙ୍କାର ବ୍ୟୟବରାଦ କରାଯାଇଛି ।

### ପେନ୍‌ସନ୍ ଓ ଅବସରକାଳୀନ ଦେୟ

➢ ୨୦୦୭-୦୮ ଆର୍ଥିକ ବର୍ଷ ବଜେଟରେ ପେନ୍‌ସନ ଓ ଅନ୍ୟାନ୍ୟ ଅବସରକାଳୀନ ଦେୟ ପ୍ରଦାନ ପାଇଁ ୨୧୨୬.୨୬ କୋଟି ଟଙ୍କାର ବ୍ୟବସ୍ଥା ଥିବାବେଳେ ୨୦୦୮-୦୯ ବଜେଟରେ ୨୭୯୫.୬୫ କୋଟି ଟଙ୍କାର ବ୍ୟୟବରାଦ କରାଯାଇଛି ।

**ବାହ୍ୟ ସାହାଯ୍ୟ ପ୍ରକଳ୍ପ**

➢ ବିଭିନ୍ନ ବାହ୍ୟ ସାହାଯ୍ୟ ପ୍ରକଳ୍ପ (Externally Aided Projects) ପାଇଁ ୨୦୦୮-୦୯ ଆର୍ଥିକ ବର୍ଷ ବଜେଟରେ ୭୬୨.୮୬ କୋଟି ଟଙ୍କାର ବ୍ୟୟବରାଦ କରାଯାଇଛି ।

ମୁଁ ଏଠାରେ ସୂଚାଇ ଦେବାକୁ ଚାହେଁ ଯେ ରାଜ୍ୟର ଋଣଭାର ଓ ସାମଗ୍ରିକ ଘରୋଇ ଉତ୍ପାଦନ ଅନୁପାତ (Debt as percentage of GSDP) ଅଧିକ ଅଟେ । ଏ କଥା ସତ୍ୟ ଯେ ରାଜ୍ୟର ଉନ୍ନୟନ ପାଇଁ ଋଣ କରିବା ଆବଶ୍ୟକ । କିନ୍ତୁ ମୋଟ ରାଜସ୍ୱକୁ ଆଖି ଆଗରେ ରଖି ଋଣର ପରିମାଣ ନିର୍ଦ୍ଦିଷ୍ଟ ସୀମା ଭିତରେ ରହିବା ଉଚିତ । ଅର୍ଥନୀତି ବିଶାରଦମାନେ ଋଣର ପୋଷଣୀୟତା (Debt Sustainability)କୁ ହିସାବକୁ ନେଲାବେଳେ ଋଣବୋଝ ରାଜସ୍ୱ ପ୍ରାପ୍ତିର ୩୦୦ ପ୍ରତିଶତ ମଧ୍ୟରେ ସୀମିତ ରହିବା ଉଚିତ ବୋଲି ମତବ୍ୟକ୍ତ କରିଛନ୍ତି । ମୁଁ ଏଠାରେ ସ୍ପଷ୍ଟ କରିଦେବାକୁ ଚାହେଁ ଯେ ୧୯୯୮-୯୯ ଆର୍ଥିକ ବର୍ଷରେ ଋଣବୋଝ ରାଜସ୍ୱ ପ୍ରାପ୍ତିର ୩୨୪ ପ୍ରତିଶତ ଥିବାବେଳେ ୨୦୦୬-୦୭ ଆର୍ଥିକ ବର୍ଷ ଶେଷ ସୁଦ୍ଧା ଏହା ୨୦୬.୬ ପ୍ରତିଶତକୁ ହ୍ରାସ ପାଇଛି । ସେହିପରି ଦ୍ୱାଦଶ ଅର୍ଥ କମିଶନଙ୍କ ସୁପାରିଶ କ୍ରମେ ସୁଧଦେୟ ମୋଟ ରାଜସ୍ୱ ପ୍ରାପ୍ତିର ୧୫ ପ୍ରତିଶତ ରହିବା ବାଞ୍ଛନୀୟ । ୧୯୯୮-୯୯ ଆର୍ଥିକ ବର୍ଷରେ ସୁଧ ଦେୟ ମୋଟ ରାଜସ୍ୱ ପ୍ରାପ୍ତିର ୩୨.୬ ପ୍ରତିଶତ ଥିବାବେଳେ ୨୦୦୬-୦୭ ଆର୍ଥିକ ବର୍ଷ ସୁଦ୍ଧା ଏହା ୧୭.୭ ପ୍ରତିଶତରେ ପହଞ୍ଚିଛି । ପୁନଶ୍ଚ ଦ୍ୱାଦଶ ଅର୍ଥ କମିଶନଙ୍କ ସୁପାରିଶ ଅନୁସାରେ ଋଣ ଓ ସାମଗ୍ରିକ ଘରୋଇ ଉତ୍ପାଦନ ଅନୁପାତ ୨୮ ପ୍ରତିଶତରେ ସୀମିତ ରହିବା କଥା । ଏହି ପରିପ୍ରେକ୍ଷୀରେ ବିଚାର କଲେ ୨୦୦୫-୦୬ ଆର୍ଥିକ ବର୍ଷରେ ଋଣ ଓ ସାମଗ୍ରିକ ଘରୋଇ ଉତ୍ପାଦନର ଅନୁପାତ ୪୬.୪୨ ପ୍ରତିଶତ ଥିବାବେଳେ ୨୦୦୬-୦୭ ଆର୍ଥିକ ବର୍ଷ ଶେଷକୁ ଏହା ୪୦.୮୭ ପ୍ରତିଶତକୁ ଖସିଆସିଛି । ଋଣଭାରକୁ ଲାଘବ କରିବା ପାଇଁ ସରକାରଙ୍କର ଉଦ୍ୟମ ଅବ୍ୟାହତ ରହିଛି ।

ଆଗରୁ ନିଟ୍ ଋଣ (Total Loan incurred - Loan repaid) ଯେଉଁ ପରିମାଣରେ ବଢୁଥିଲା ତାହା ଗତ କିଛି ବର୍ଷ ହେଲା କମିବାରେ ଲାଗିଛି । ୨୦୦୩-୦୪ ଆର୍ଥିକ ବର୍ଷରେ କରାଯାଇଥିବା ନିଟ୍ ଋଣ ପରିମାଣ ୩୮୩୨.୭୭ କୋଟି ଟଙ୍କା ଥିବାବେଳେ ୨୦୦୪-୦୫ ଆର୍ଥିକ ବର୍ଷରେ ଏହା ୨୪୧୭.୨୨ କୋଟି ଟଙ୍କା ଏବଂ ୨୦୦୫-୦୬ ଆର୍ଥିକ ବର୍ଷରେ ଏହା ୨୪୦୫.୨୭ କୋଟି ଟଙ୍କା ଥିବାବେଳେ ୨୦୦୬-୦୭ ଆର୍ଥିକ ବର୍ଷ ଶେଷସୁଦ୍ଧା ଏହି ନିଟ୍ ଋଣ ପରିମାଣ ଉଲ୍ଲେଖନୀୟ ଭାବେ ହ୍ରାସ ପାଇ ୭୯୩.୦୬ କୋଟି ଟଙ୍କାରେ ପହଞ୍ଚିଛି ।

ରାଜସ୍ୱ ନିଅଣ୍ଟ ହ୍ରାସ ସମ୍ପର୍କରେ ଆଗରୁ ସୂଚାଇ ଦେଇଛି । ଭାରତ ସରକାରଙ୍କର ଋଣ ପ୍ରତିବଦଳ ଯୋଜନା (Debt Swap Scheme) ଅନୁସାରେ ଉଚ୍ଚ ସୁଧହାର ବିଶିଷ୍ଟ ଋଣକୁ ନିମ୍ନ ସୁଧହାର ବିଶିଷ୍ଟ ଋଣରେ ପରିବର୍ତ୍ତନ କରିବା ଦ୍ୱାରା ରାଜ୍ୟ ସରକାର ୨୫୪୩.୬୨ କୋଟି ଟଙ୍କାର ଉଚ୍ଚ ସୁଧହାର ବିଶିଷ୍ଟ ଋଣ ପରିଶୋଧ କରି ୧୪୪.୪୭ କୋଟି ଟଙ୍କାର ସୁଧ ରିହାତି ପାଇଛନ୍ତି । ଇତିମଧ୍ୟରେ ରାଜ୍ୟ ସରକାର ସରକାରୀ ଋଣଭାରକୁ ଲାଘବ କରିବା ଉଦ୍ଦେଶ୍ୟରେ ଖୋଲା ବଜାରରୁ ଅଣାଯାଇଥିବା ୩୯୪.୬୧ କୋଟି ଟଙ୍କାର ଉଚ୍ଚ ସୁଧହାର ବିଶିଷ୍ଟ ଋଣକୁ ଅବଧି ସଂପୂର୍ଣ୍ଣ ହେବା ପୂର୍ବରୁ ପୁନଃକ୍ରୟ ଓ ଆଗୁଆ ପୈଠ କରିଛନ୍ତି । (Debt Buy Back) ଏହା ଦ୍ୱାରା ଉନ୍ନୟନ କାର୍ଯ୍ୟ ପାଇଁ ଅଧିକ ସମ୍ବଳ ଉପଲବ୍ଧ ହୋଇଅଛି ।

ଉଚ୍ଚ ସୁଧହାରଯୁକ୍ତ ଜାତୀୟ ସ୍ୱଳ୍ପ ସଞ୍ଚୟ ନିଧି ଋଣକୁ (NSSF) ନିମ୍ନ ସୁଧହାରରେ ଏକତ୍ରିକରଣ କରିବା ଓ ସେହି ଋଣକୁ ଆଗୁଆ ପୈଠ କରିବା ପାଇଁ କେନ୍ଦ୍ର ସରକାରଙ୍କଠାରେ ରାଜ୍ୟ ସରକାର ପ୍ରସ୍ତାବ ରଖିଥିଲେ । ଭାରତ ସରକାର ଏହି ଉଚ୍ଚହାର ସୁଧ ବିଶିଷ୍ଟ ଏନ୍.ଏସ୍.ଏସ୍.ଏଫ୍. ଋଣ ୧୯୯.୭୨ କୋଟି ଟଙ୍କା ଆଗୁଆ ପୈଠ ଲାଗି ଅନୁମତି ପ୍ରଦାନ କରିବାରୁ ରାଜ୍ୟ ସରକାର ଏହାକୁ ଆଗୁଆ ପୈଠ କରିଛନ୍ତି । ଏତଦ୍ୱାରା ଏହି ଋଣ ଜନିତ ସୁଧଦେୟକୁ ହ୍ରାସ କରାଯାଇପାରିବ ଏବଂ ଉନ୍ନୟନ କାର୍ଯ୍ୟ ତଥା ଭିତ୍ତିଭୂମି ଉନ୍ନୟନ ପାଇଁ ଅଧିକ ପୁଞ୍ଜି ମିଳିପାରିବ ।

ଦ୍ୱାଦଶ ଅର୍ଥ କମିଶନଙ୍କ ସୁପାରିଶ ଭିତ୍ତିରେ ୨୦୦୪-୦୫ ଓ ୨୦୦୫-୦୬ ବର୍ଷର ଆର୍ଥିକ ସଫଳତା ପାଇଁ ରାଜ୍ୟ ସରକାର ୩୮୧.୯୦ କୋଟି ଟଙ୍କା ହାରରେ ମୋଟ ୭୬୩.୮୦ କୋଟି ଟଙ୍କାର ଋଣ ଛାଡ଼ ୨୦୦୬-୦୭ ଆର୍ଥିକ ବର୍ଷରେ ପାଇଛନ୍ତି । ୨୦୦୬-୦୭ ଆର୍ଥିକ ବର୍ଷର ସଫଳତା ପାଇଁ ମଧ୍ୟ ଅନୁରୂପ ୩୮୧.୯୦ କୋଟି ଟଙ୍କାର ଋଣ ରିହାତି ପାଇବେ ।

ଏକ ଗଣତାନ୍ତ୍ରିକ ତଥା ଜନମଙ୍ଗଳ ରାଷ୍ଟ୍ରରେ ଜନସାଧାରଣଙ୍କ ସୁଖ ସୁବିଧା ପାଇଁ ଦୃଷ୍ଟିଦେବା ସରକାରର ପ୍ରଥମ ତଥା ପ୍ରଧାନ କର୍ତ୍ତବ୍ୟ । ଏତଦ୍‌ବ୍ୟତୀତ ଯେଉଁ ଟିକସଗୁଡ଼ିକର ସ୍ଥିତି ସ୍ଥାପକତା (Elasticity) ଅଧିକ ସେଗୁଡ଼ିକ କେନ୍ଦ୍ର ସରକାରଙ୍କ ନିୟନ୍ତ୍ରଣାଧୀନ । କେତେକ କ୍ଷେତ୍ରରେ କେନ୍ଦ୍ର ସରକାରଙ୍କର ନୀତି ଯୋଗୁଁ କୋଇଲା ଆଦି ଖଣିଜ ଦ୍ରବ୍ୟ ଉପରେ ରୟାଲଟି ମୂଲ୍ୟଭିତ୍ତିକ ହେଉ ନାହିଁ କିମ୍ବା ଠିକଣା ସମୟରେ ସଂଶୋଧନ

ହେଉନାହିଁ । ଋଣ ବାବଦରେ ଯାହା କେନ୍ଦ୍ର ସରକାର ଦେଇ ଆସୁଥିଲେ ତାହା ଏବେ ରାଜ୍ୟ ସରକାର ନିଜେ ସଂଗ୍ରହ କରୁଛନ୍ତି । ତେଣୁ ଋଣ ନକରି ଯୋଜନା ଖର୍ଚ୍ଚ କରିବା ସମ୍ଭବ ନୁହେଁ ।

ଓଡ଼ିଶାରେ ଇସ୍ପାତ, ଆଲୁମିନିୟମ, ସିମେଣ୍ଟ, ପେଟ୍ରୋଲିୟମ ଓ ସୂଚନା ପ୍ରଯୁକ୍ତି ବିଜ୍ଞାନ ଆଦି କ୍ଷେତ୍ରରେ ବୃହତ୍ ଶିଳ୍ପ ପ୍ରତିଷ୍ଠା ପାଇଁ ବାତାବରଣ ସୃଷ୍ଟି ହୋଇଛି । ଏଥିପାଇଁ ମାନବ ସମ୍ବଳର ବିକାଶ ଜରୁରୀ ଅଟେ । ତେଣୁ ସରକାରୀ-ବେସରକାରୀ ମିଳିତ ଉଦ୍ୟୋଗରେ ଧନ୍ଦାମୂଳକ ଓ ବୈଷୟିକ ଶିକ୍ଷାନୁଷ୍ଠାନର ଉନ୍ନତି ପାଇଁ ସରକାର ଯତ୍ନଶୀଳ ଅଛନ୍ତି । ଓଡ଼ିଶାରେ କେନ୍ଦ୍ରୀୟ ବିଶ୍ୱବିଦ୍ୟାଳୟ, ଆଇ.ଆଇ.ଟି. ଓ ଆଇ.ଆଇ.ଏମ୍. ସ୍ଥାପନ ନେଇ କେନ୍ଦ୍ର ସରକାରଙ୍କ ନିକଟରେ ଆମ ସରକାର ବାରମ୍ବାର ଦାବୀ ଜଣାଇ ଆସୁଛନ୍ତି ।

ସୀମିତ ସମ୍ବଳ ପରିପ୍ରେକ୍ଷୀରେ ମୁଁ ଏକଥା ମଧ ସ୍ପଷ୍ଟ କରିବାକୁ ଚାହେଁ ଯେ ଆଗାମୀ ଦିନରେ ରାଜ୍ୟର ଉନ୍ନୟନମୂଳକ କାର୍ଯ୍ୟ ପାଇଁ ଯେଉଁ ବ୍ୟୟବରାଦ କରାଯାଇଛି ତାହା ଯେପରି ସଠିକ୍ ଭାବରେ ବିନିଯୋଗ ହୋଇପାରିବ ଏବଂ ଅସମ୍ପୂର୍ଣ୍ଣ ପ୍ରକଳ୍ପଗୁଡ଼ିକୁ ସମ୍ପୂର୍ଣ୍ଣ କରାଯାଇପାରିବ, ସେଥିପାଇଁ ରାଜ୍ୟ ସରକାର ଗୁରୁତ୍ୱାରୋପ କରୁଛନ୍ତି । ୨୦୦୭-୦୮ ଆର୍ଥିକ ବର୍ଷରେ ୧ କୋଟି ଟଙ୍କାରୁ ଊର୍ଦ୍ଧ୍ୱ ୬୦ଟି ପ୍ରକଳ୍ପ (ଜଳସମ୍ପଦ ୮, ଗ୍ରାମ୍ୟ ଉନ୍ନୟନ ୨୮, ପୂର୍ତ୍ତ ୨୦, ପର୍ଯ୍ୟଟନ ୩ ଓ ଶିଳ୍ପ ୧) ସମ୍ପୂର୍ଣ୍ଣ କରିବା ପାଇଁ ଚିହ୍ନଟ ହୋଇଛି । ଏତଦ୍‌ବ୍ୟତୀତ ୨୦୦୬-୦୭ ଆର୍ଥିକ ବର୍ଷରେ ସମ୍ପୂର୍ଣ୍ଣ ହୋଇନଥିବା ୪୭ଟି ପ୍ରକଳ୍ପକୁ ମିଶାଇ ମୋଟ ୧୦୭ଟି ପ୍ରକଳ୍ପ ସମ୍ପୂର୍ଣ୍ଣ କରିବା ପାଇଁ ଚଳିତ ୨୦୦୭-୦୮ ବର୍ଷରେ ଲକ୍ଷ୍ୟଧାର୍ଯ୍ୟ କରାଯାଇଛି ।

ଏଠାରେ ମୁଁ ଉଲ୍ଲେଖ କରିବାକୁ ଚାହେଁ ଯେ ବିଭିନ୍ନ କେନ୍ଦ୍ରୀୟ ଯୋଜନାରେ ମିଳୁଥିବା ଅର୍ଥର ସଠିକ୍ ସମୟରେ ସଦୁପଯୋଗ ଏବଂ ତତ୍‌ସଂକ୍ରାନ୍ତ ବିନିଯୋଗ ପ୍ରମାଣପତ୍ର ଦାଖଲରେ ଉନ୍ନତିକରଣ ସରକାରଙ୍କର ନୈତିକ ଦାୟିତ୍ୱ । ସରକାରଙ୍କ ଦ୍ୱାରା ବାରମ୍ବାର ସମୀକ୍ଷା ଓ ତାଗିଦ୍ କରିବା ଦ୍ୱାରା ବିଭିନ୍ନ କେନ୍ଦ୍ରୀୟ ସହାୟତା ବାବଦରେ ଆସୁଥିବା ଅର୍ଥର ବିନିଯୋଗ ପ୍ରମାଣପତ୍ର ଦାଖଲରେ ଯଥେଷ୍ଟ ଉନ୍ନତି ହୋଇଛି । ଉଦାହରଣ ସ୍ୱରୂପ ୨୦୦୫-୦୬ ଆର୍ଥିକ ବର୍ଷରେ ୨୪୭୦.୫୮ କୋଟି ଟଙ୍କାର ବିନିଯୋଗ ପ୍ରମାଣପତ୍ର ଦାଖଲ ହୋଇଥିବାବେଳେ ୨୦୦୬-୦୭ ଆର୍ଥିକ ବର୍ଷରେ ୨୮୫୨.୨୫ କୋଟି ଟଙ୍କାର ପ୍ରମାଣପତ୍ର ଦାଖଲ କରାଯାଇଛି । ଚଳିତ ଆର୍ଥିକ ବର୍ଷରେ ନଭେମ୍ବର ମାସ ଶେଷ ସୁଦ୍ଧା ୨୫୭୨.୧୯ କୋଟି ଟଙ୍କାର ବିନିଯୋଗ ପ୍ରମାଣପତ୍ର ଦାଖଲ କରାଯାଇଛି ।

ଆପଣମାନେ ସମସ୍ତେ ଜାଣନ୍ତି ଯେ ଇତି ମଧ୍ୟରେ ଭାରତ ସରକାରଙ୍କ ଦ୍ୱାରା ତ୍ରୟୋଦଶ ଅର୍ଥ କମିଶନ (Thirteenth Finance Commission) ଗଠନ କରାଯାଇଛି । ଏଥିପାଇଁ ତ୍ରୟୋଦଶ ଅର୍ଥ କମିଶନ ନିକଟରେ ଆମର ଯୁକ୍ତିଯୁକ୍ତ ଦାବି ଏବଂ ପରାମର୍ଶ ଉପସ୍ଥାପନ କରିବା ପାଇଁ ଦଳମତ ନିର୍ବିଶେଷରେ ସମସ୍ତଙ୍କର ସାହାଯ୍ୟ ଓ ସହଯୋଗ କାମନା କରୁଛି ।

ବିଗତ ବର୍ଷମାନଙ୍କରେ ମାନ୍ୟବର ମୁଖ୍ୟମନ୍ତ୍ରୀଙ୍କ ଦୃଢ଼ ସଂକଳ୍ପ ଫଳରେ ରାଜ୍ୟରେ ଆର୍ଥିକ ସଂସ୍କାର ପ୍ରକ୍ରିୟା କାର୍ଯ୍ୟକାରୀ ହୋଇ ଆର୍ଥିକ ପରିଚାଳନା କ୍ଷେତ୍ରରେ ଅନେକ ସୁଫଳ ମିଳିପାରିଛି । ଏହି ସଂସ୍କାର କାର୍ଯ୍ୟକ୍ରମକୁ ଆଗେଇ ନେବାକୁ ହେବ । ଆମକୁ ଲକ୍ଷ୍ୟସ୍ଥଳରେ ପହଞ୍ଚିବା ପାଇଁ ଗଭୀର ଆତ୍ମବିଶ୍ୱାସ ଓ ନିଷ୍ଠା ସହ ଅନେକ ପଥ ଅତିକ୍ରମ କରିବାକୁ ପଡ଼ିବ । ଏହି ରାଜ୍ୟ ଆମ ସମସ୍ତଙ୍କର ଏବଂ ଏହାର ସର୍ବବିଧ ଉନ୍ନତି ଆମ ସମସ୍ତଙ୍କର ନୈତିକ ଦାୟିତ୍ୱ । ରାଜ୍ୟର ଜନସାଧାରଣଙ୍କର ଅଭାବ, ଅସୁବିଧା ପୂରଣ କରିବାରେ ଏବଂ ରାଜ୍ୟର ବିକାଶ ପ୍ରକ୍ରିୟାକୁ ତ୍ୱରାନ୍ୱିତ କରିବା ଦିଗରେ ଆଜି ଆଗତ ହୋଇଥିବା ୨୦୦୮-୦୯ ବର୍ଷର ବଜେଟ୍ ନିଶ୍ଚିତ ଭାବେ ସହାୟକ ହେବ, ଏହା ମୋର ଦୃଢ଼ ଆଶା ଓ ବିଶ୍ୱାସ ।

ବାଚସ୍ପତି ମହୋଦୟ, ୨୦୦୮-୦୯ ଆର୍ଥିକ ବର୍ଷ ପାଇଁ ରାଜ୍ୟ ବଜେଟ ଉପସ୍ଥାପନ ବେଳେ ଦଳମତ ନିର୍ବିଶେଷରେ ମୁଁ ସମସ୍ତଙ୍କର ଆନ୍ତରିକ ସହଯୋଗ କାମନା କରୁଛି । ମୋର ଦୀର୍ଘ ଭାଷଣକୁ ଧୈର୍ଯ୍ୟର ସହିତ ଶୁଣିଥିବାରୁ ମୁଁ ଆପଣଙ୍କୁ, ଗୃହର ନେତା ମାନ୍ୟବର ମୁଖ୍ୟମନ୍ତ୍ରୀ, ମାନ୍ୟବର ବିରୋଧୀ ଦଳନେତା ଓ ସମସ୍ତ ସମ୍ମାନସ୍ପଦ ସଦସ୍ୟ ସଦସ୍ୟାମାନଙ୍କୁ ଆନ୍ତରିକ ଧନ୍ୟବାଦ ଜଣାଉଛି । ଆଗାମୀ ଆର୍ଥିକ ବର୍ଷ ଆମ ସମସ୍ତଙ୍କ ପାଇଁ ଶୁଭଙ୍କର ହେଉ ଏହା ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କ ନିକଟରେ ପ୍ରାର୍ଥନା କରି ମୋର ବକ୍ତବ୍ୟ ଶେଷ କରୁଛି ।

ଜୟହିନ୍ଦ୍
ବନ୍ଦେ ଉତ୍କଳ ଜନନୀ

(ଶ୍ରୀ ପ୍ରଫୁଲ୍ଲ ଚନ୍ଦ୍ର ଘଡ଼ାଇ, ଅର୍ଥ ମନ୍ତ୍ରୀ)

# ଚାଷୀମାନଙ୍କ ପାଇଁ ନୂଆ ସୁଯୋଗ

## (ଓଡ଼ିଶାର ଚାଷୀମାନଙ୍କ ପାଇଁ ମୁଖ୍ୟମନ୍ତ୍ରୀ ପ୍ୟାକେଜ)

ବିହନ

୧. ଉତ୍ପାଦନ ଓ ଉତ୍ପାଦକତା ବୃଦ୍ଧି ନିମନ୍ତେ ଚାଷୀଙ୍କ କ୍ଷେତରେ ଧାନର ଗୁଣାତ୍ମକ ବିହନ ଉତ୍ପାଦନ କରାଯାଇ ବିହନ ପ୍ରତିବଦଳ ହାର (Seed Replacement Rate) ଶତକଡ଼ା ୭ ଭାଗରୁ ବୃଦ୍ଧି କରି ୨୦୦୭-୦୮ ବର୍ଷରେ ୧୨%, ୨୦୦୮-୦୯ ବର୍ଷରେ ୧୮% ଓ ୨୦୦୯-୧୦ ବର୍ଷରେ ୨୫% କରାଯିବ ।



୨. ପ୍ରତ୍ୟେକ ବ୍ଲକ୍‌ରେ ବିହନ ଗ୍ରାମ ଯୋଜନା କରାଯାଇ ଆସନ୍ତା ଦୁଇ ବର୍ଷ ମଧ୍ୟରେ ୫ ଲକ୍ଷ କ୍ୱିଣ୍ଟାଲ ପ୍ରାମାଣିକ ବିହନ (Certified Seeds) ଉତ୍ପାଦନ କରାଯିବ ।

୩. ୨୦୦୯-୧୦ ମସିହା ଶେଷ ସୁଦ୍ଧା ପ୍ରତ୍ୟେକ ଜିଲ୍ଲାରେ ବିହନ ପ୍ରକ୍ରିୟାକରଣ କେନ୍ଦ୍ର (Seed Processing Plant) ପ୍ରତିଷ୍ଠା କରାଯିବ । ଉକ୍ତ ଲକ୍ଷ୍ୟକୁ ହାସଲ କରିବା ପାଇଁ ଗଜପତି, କେନ୍ଦ୍ରାପଡ଼ା ଓ ଝାରସୁଗୁଡ଼ା ଜିଲ୍ଲାରେ ଏହିଭଳି କେନ୍ଦ୍ର ଏହି ସମୟ ମଧ୍ୟରେ ସ୍ଥାପନ ହେବ ।

୪. ସ୍ପର୍ଶକାତର (Sensitive) ଉନ୍ନତ ବିହନଗୁଡ଼ିକର ଗୁଣ ଓ ସତେଜତା ବଜାୟ ରଖିବା ପାଇଁ ଆସନ୍ତା ୩ ବର୍ଷ ମଧ୍ୟରେ ବାଲେଶ୍ୱର, ଜୟପୁର, ବ୍ରହ୍ମପୁର, ଅନୁଗୋଳ ଓ ବରଗଡ଼ଠାରେ ପାଞ୍ଚଗୋଟି ଆର୍ଦ୍ରତାବିହୀନ କୋଠରୀ (De-humidified Chamber) ସ୍ଥାପନ କରାଯିବ ।

୫. ଗୁଣାତ୍ମକ ବିହନକୁ ନିରାପଦ ଭାବେ ସାଇତି ରଖିବା ପାଇଁ ସବୁ ଜିଲ୍ଲାରେ ୩ ବର୍ଷ ମଧ୍ୟରେ ଗୋଦାମ ଘର ପ୍ରତିଷ୍ଠା କରାଯିବ । ଏଥିପାଇଁ ୧୭ ଗୋଟି ନୂତନ ଗୋଦାମ ଘର ନିର୍ମାଣ କରାଯିବ ।

୬. ଓଡ଼ିଶା ରାଜ୍ୟ ବିହନ ନିଗମ ପ୍ରତ୍ୟେକ ଗ୍ରାମପଞ୍ଚାୟତରେ ବିହନ ବିକ୍ରୟ କେନ୍ଦ୍ର ଖୋଲିବ । ଏସବୁ ବେସରକାରୀ ବିହନ ବ୍ୟବସାୟୀ, ପାଣିପଞ୍ଚାୟତ କିମ୍ବା ସ୍ୱୟଂ ସହାୟକ ଗୋଷ୍ଠୀ ଇତ୍ୟାଦି ଅନୁଷ୍ଠାନମାନଙ୍କଦ୍ୱାରା ପରିଚାଳିତ ହେବ ।

ଜୈବିକ କୃଷି

ଜୈବିକ କୃଷିର ପ୍ରସାର ପାଇଁ ଗୁରୁତ୍ୱ ପ୍ରଦାନ କରାଯିବ ।

୧. ରାଜ୍ୟର ପ୍ରତ୍ୟେକ ବ୍ଲକ୍‌ରେ ଗୋଟିଏ ଲେଖାଏଁ ଜିଆ ପ୍ରଜନନ କେନ୍ଦ୍ର (Vermi-hatchery) ପ୍ରତିଷ୍ଠା ସହ ଗ୍ରାମ୍ୟ ସ୍ତରରେ ଜିଆ ପ୍ରସ୍ତୁତି କେନ୍ଦ୍ର ପ୍ରତିଷ୍ଠା ପାଇଁ ରାଜ୍ୟ ସରକାର ପ୍ରୋତ୍ସାହନ ଯୋଗାଇ ଦେବେ ।

୩. ସବୁଜ ସାରକୁ ପ୍ରୋତ୍ସାହିତ କରିବା ପାଇଁ ପ୍ରତ୍ୟେକ ବର୍ଷ ୧୦ ହଜାର ହେକ୍ଟର ଜମିରେ ଧଣିଚା ପ୍ରୟୋଗ ପାଇଁ ପ୍ରୋତ୍ସାହନ ଦିଆଯିବ ।

୪. ଜୈବିକ ଚାଷ ପାଇଁ ଅଧିକ ସମ୍ଭାବନା ଥିବା କନ୍ଧମାଳ ଓ କୋରାପୁଟ ପରି ଜିଲ୍ଲାରେ ଏହି ଚାଷ ପାଇଁ ଆବଶ୍ୟକୀୟ ବ୍ୟବସ୍ଥା କରାଯିବା ସହ ଜୈବ ପ୍ରମାଣିକରଣ ପାଇଁ ସରକାର ଆବର୍ତ୍ତି ପାଣ୍ଠି ଯୋଗାଇବେ ।

ମୃତ୍ତିକା ପରୀକ୍ଷା ସୁବିଧା

୧. ରାଜ୍ୟର ସମସ୍ତ ବ୍ଲକ୍‌ରେ ମୃତ୍ତିକା ପରୀକ୍ଷା ପାଇଁ ବ୍ୟବସ୍ଥା କରାଯାଇଛି । ପ୍ରତ୍ୟେକ ବର୍ଷ ଅନ୍ତତଃପକ୍ଷେ ରାଜ୍ୟର ୧.୫ ଲକ୍ଷ ଚାଷୀଙ୍କୁ ମୃତ୍ତିକା ସ୍ୱାସ୍ଥ୍ୟ କାର୍ଡ଼ (Soil Health Card) ପ୍ରଦାନ କରାଯିବ ।

୨. ଆସନ୍ତା ୩ ବର୍ଷ ମଧ୍ୟରେ ରାଜ୍ୟର ୨.୫ ଲକ୍ଷ ହେକ୍ଟର ଜମିରେ ଅମ୍ଳ ମାଟିର ପରିଚାଳନା ପାଇଁ ଚାଷୀମାନଙ୍କୁ ଚୂନ, କାଗଜକଳ ସ୍ଲଜ୍ ଓ ବେସିକ୍ ସ୍ଲାଗ୍ ଉପରେ ରିହାତି ସହ ଏହାର ପରିବହନ ପାଇଁ ମଧ୍ୟ ରିହାତି ପ୍ରଦାନ କରାଯିବ ।

କୃଷକ ତାଲିମ ଓ ସମ୍ପ୍ରସାରଣ

୧. ଆସନ୍ତା ଚାରିବର୍ଷ ମଧ୍ୟରେ ରାଜ୍ୟର ପ୍ରତି ବ୍ଲକ୍‌ରେ ଏକ ହଜାର ଚାଷୀଙ୍କୁ ଉନ୍ନତ କୃଷି ପଦ୍ଧତି ସମ୍ପର୍କରେ ତାଲିମ ଦିଆଯିବ ।

୨. ଅନ୍ୟ କୃଷକମାନଙ୍କୁ କୃଷି ସମ୍ପର୍କୀୟ ସୂଚନା ଓ କୌଶଳ ସମ୍ପର୍କରେ ଅବଗତ କରିବା ପାଇଁ ଆଗାମୀ ୩ ବର୍ଷରେ ପ୍ରତି ଗ୍ରାମପଞ୍ଚାୟତରେ ଅଗ୍ରଣୀ ଚାଷୀମାନଙ୍କୁ କୃଷକ ସାଥୀ ଭାବେ ତାଲିମ ପ୍ରଦାନ କରାଯିବ ।

୩. ଜଳସେଚିତ ଅଞ୍ଚଳରେ ସମ୍ଭାବ୍ୟ ଗ୍ରାମରେ ସଘନୀକରଣ ପଦ୍ଧତିରେ ଧାନଚାଷ (System of Rice Intensification)ର ପ୍ରଦର୍ଶନ କ୍ଷେତ୍ର ଓ କୃଷକ ତାଲିମ କାର୍ଯ୍ୟକ୍ରମ କରାଯିବ ।

୪. ସମସ୍ତ ବ୍ଲକ୍‌ରେ ୨୦୦୮-୦୯ ମସିହା ସୁଦ୍ଧା କୃଷି ସୂଚନା ଓ ପରାମର୍ଶ କେନ୍ଦ୍ର (Farm Information & Advisory Centre) ପ୍ରତିଷ୍ଠା କରାଯିବ ।

୫. ରାଜ୍ୟ, ଜିଲ୍ଲା ଓ ବ୍ଲକ୍ ସ୍ତରରେ ଶ୍ରେଷ୍ଠ ଚାଷୀଙ୍କୁ ପ୍ରତିବର୍ଷ ଆର୍ଥିକ ପୁରସ୍କାର ପ୍ରଦାନ କରାଯିବ ।

୬. ବୈଷୟିକ ଜ୍ଞାନକୌଶଳର ଅଭିବୃଦ୍ଧି ନିମନ୍ତେ ରାଜ୍ୟର ପ୍ରତ୍ୟେକ ସ୍ତରରେ ଥିବା କୃଷି ଅଧିକାରୀମାନଙ୍କୁ ସଦ୍ୟ ତାଲିମ (Refresher Training) ଦିଆଯିବ ।

୭. କୃଷକମାନଙ୍କ ଭାଗିଦାରୀରେ ଗ୍ରାମସ୍ତରରୁ ଫସଲ ଯୋଜନା ଆରମ୍ଭ ହେବ ।

କୃଷି ଯାନ୍ତ୍ରିକୀକରଣ

୧. ହସ୍ତ ଓ ପଶୁ ଚାଳିତ କୃଷି ଯନ୍ତ୍ରପାତି କ୍ରୟ ଉପରେ ସେଟ୍ ପ୍ରତି ଶତକଡ଼ା ୫୦ ଭାଗ ସର୍ବୋଚ୍ଚ ୨୫୦୦ ଟଙ୍କା ପର୍ଯ୍ୟନ୍ତ ରିହାତି ପ୍ରଦାନ କରାଯିବ ।

୨. କେ.ବି.କେ. ଜିଲ୍ଲା, ପଶ୍ଚିମ ଓଡ଼ିଶା ଉନ୍ନୟନ ପରିଷଦ ଅନ୍ତର୍ଭୁକ୍ତ ଜିଲ୍ଲା ଓ ଆଦିବାସୀ ଉପଯୋଜନା ଅନ୍ତର୍ଗତ ବ୍ଲକ୍‌ମାନଙ୍କରେ ଶତକଡ଼ା ୩୩ ଭାଗ ସର୍ବୋଚ୍ଚ ୫ ହଜାର ଟଙ୍କା ପର୍ଯ୍ୟନ୍ତ ରିହାତିରେ ଆସନ୍ତା ୩ ବର୍ଷରେ ୩୦ ହଜାର ଗୋଟି ଡିଜେଲ୍ ପମ୍ପସେଟ୍ ଯୋଗାଇ ଦିଆଯିବ ।

ଆଗ୍ରୋ କ୍ଲିନିକ୍

୧. କୃଷକମାନଙ୍କୁ ବିହନ, ସାର, ଜୈବସାର, କୃଷି ଯନ୍ତ୍ରପାତି ଆଦି ଆବଶ୍ୟକୀୟ ଉପାଦାନ ଏକ ସ୍ଥାନରେ ଯୋଗାଇଦେବା ପାଇଁ ପ୍ରତି ଜିଲ୍ଲାରେ ଆଗ୍ରୋ କ୍ଲିନିକ ସ୍ଥାପନ କରାଯିବ । ଆତ୍ମନିଯୁକ୍ତି ପାଇଁ ଆଗ୍ରହୀ ଯୁବକ/ଯୁବତୀ ଓ ସ୍ୱୟଂ ସହାୟକ ଗୋଷ୍ଠୀ, ପାଣିପଞ୍ଚାୟତ ପ୍ରଭୃତି ସଂସ୍ଥାମାନଙ୍କୁ ଏଥିପାଇଁ ରାଜ୍ୟ ନିଯୁକ୍ତି ମିଶନ ଯୋଜନା ମାଧ୍ୟମରେ ସହାୟତା ଯୋଗାଇ ଦିଆଯିବ ।

ଜଳସେଚନ

୧. ରାଜ୍ୟରେ ଆସନ୍ତା ୨ ବର୍ଷରେ ବ୍ୟକ୍ତିଗତ ମାଲିକାନାରେ ରିହାତି ପ୍ରଦାନ କରାଯାଇ ୩୫ ହଜାର ଉଠାଜଳସେଚନ ଉତ୍ସ ପ୍ରତିଷ୍ଠା କରାଯିବ ।

୨. ଆସନ୍ତା ୨୦୦୮ ବର୍ଷ ସୁଦ୍ଧା ଦାରିଦ୍ର୍ୟ ସୀମାରେଖା ତଳେ ଥିବା ୨ ଲକ୍ଷ ଚାଷୀଙ୍କ ଜମିରେ ଜାତୀୟ ଗ୍ରାମୀଣ ନିଶ୍ଚିତ କର୍ମନିଯୁକ୍ତି ଯୋଜନାରେ କ୍ଷୁଦ୍ର ପୋଖରୀ (Farm Pond) ଖୋଳାଯିବ ।



୩. ନିକଟସ୍ଥ ବିଦ୍ୟୁତ୍ ଉତ୍ସଠାରୁ ଏକ କିଲୋମିଟର ମଧ୍ୟରେ କ୍ଷୁଦ୍ର ଓ ନାମମାତ୍ର ଚାଷୀଙ୍କଦ୍ୱାରା ସ୍ଥାପିତ ଉଠାଜଳସେଚନ ପ୍ରକଳ୍ପକୁ ବିଦ୍ୟୁତ୍ ସଂଯୋଗ ପାଇଁ କେ.ବି.କେ. ଜିଲ୍ଲା ଓ ଆଦିବାସୀ ଉପଯୋଜନା ଅନ୍ତର୍ଗତ ବ୍ଲକ୍‌ମାନଙ୍କରେ ଖର୍ଚ୍ଚର ଶତକଡ଼ା ୮୦ ଭାଗ ବିଜୁ ଗ୍ରାମ ଜ୍ୟୋତି ଯୋଜନାରେ ସରକାର ବହନ କରିବେ । ଅନ୍ୟ ଜିଲ୍ଲା/ବ୍ଲକ୍‌ର କ୍ଷୁଦ୍ର ଓ ନାମମାତ୍ର ଚାଷୀଙ୍କ ପାଇଁ ଏହି ରିହାତି ଶତକଡ଼ା ୭୦ ଭାଗ ରହିବ ।

୪. ଆସନ୍ତା ୫ ବର୍ଷରେ ପ୍ରତି ବ୍ଲକ୍‌ରେ ଅନ୍ୟୂନ ୩୫ ଭାଗ ଜମିରେ ଜଳସେଚନ ସୁବିଧା ସୃଷ୍ଟି କରାଯିବା ପାଇଁ ପଦକ୍ଷେପ ନିଆଯିବ ।

ଉଦ୍ୟାନ କୃଷି

୧. ୭୫% ରିହାତିରେ ଆସନ୍ତା ୨ ବର୍ଷରେ ୨୫ ହଜାର ହେକ୍ଟର ଜମିରେ ଆମ୍ବ, ୧୫ ହଜାର ହେକ୍ଟର ଜମିରେ କାଜୁ ଓ ୨୫୦୦ ହେକ୍ଟର ଜମିରେ କଦଳୀ ଚାଷ କରାଯିବ ।

୨. ୫୦% ରିହାତିରେ ଆସନ୍ତା ୨ ବର୍ଷ ମଧ୍ୟରେ ରାଜ୍ୟରେ ୮,୧୦୦ ହେକ୍ଟର ଜମିରେ ବୁନ୍ଦା ଜଳସେଚନ ଓ ୬,୦୦୦ ହେକ୍ଟର ଜମିରେ ଛିଞ୍ଚା ଜଳସେଚନ ଯନ୍ତ୍ର ଯୋଗାଇ ଦିଆଯିବ ।

୩. ଆସନ୍ତା ଦୁଇ ବର୍ଷ ମଧ୍ୟରେ ଉତ୍ତମ ଦରରେ ପିଆଜ ବିକ୍ରୀ କରିବା ପାଇଁ ୫ ହଜାର କୃଷକଙ୍କୁ ସ୍ୱଳ୍ପମୂଲ୍ୟପିଆଜସାଇତାଗୃହ ନିର୍ମାଣ ନିମନ୍ତେ ସହାୟତା ଦିଆଯିବ ।

୪. ୨୦୦୭-୦୮ରେ ୩୫ ହଜାର, ୨୦୦୮-୦୯ରେ ୩୫ ହଜାର ଓ ୨୦୦୯-୧୦ରେ ୩୦ ହଜାର, ଏହିପରି ୧ ଲକ୍ଷ ବେକାର ଯୁବକ/ଯୁବତୀଙ୍କୁ ଆତ୍ମନିଯୁକ୍ତି ନିମନ୍ତେ ବ୍ୟବସାୟିକ ଉଦ୍ୟାନ କୃଷିରେ ତାଲିମ ଦିଆଯିବ ।

ଜଳବିଭାଜିକା ଉନ୍ନୟନ



୧. ୨୦୦୭-୦୮ରେ ୧୩୫ କୋଟି ଟଙ୍କା ଖର୍ଚ୍ଚ କରାଯାଇ ୨ ଲକ୍ଷ ୩୫ ହଜାର ହେକ୍ଟର ବୃଷ୍ଟିପୁଷ୍ଟ ପତିତ ଜମି ଉଦ୍ଧାର କରାଯିବ ।

୨. ଆସନ୍ତା ୩ ବର୍ଷରେ ପଶ୍ଚିମ ଓଡ଼ିଶା ଗ୍ରାମ୍ୟ ଜୀବିକା ଯୋଜନା ମାଧ୍ୟମରେ ବଲାଙ୍ଗିର, କଳାହାଣ୍ଡି, ନୂଆପଡ଼ା ଓ ବରଗଡ଼ ଜିଲ୍ଲାରେ ୩୮୭ଟି କ୍ଷୁଦ୍ର ଜଳ ବିଭାଜିକାରେ ଜୀବିକା ଉନ୍ନୟନ ପାଇଁ ୭୨ କୋଟି ଟଙ୍କା ଯୋଗାଇ ଦିଆଯିବ ।

୩. କୋରାପୁଟ, ନବରଙ୍ଗପୁର, ମାଲକାନଗିରି, ରାୟଗଡ଼ା, କନ୍ଧମାଳ ଓ ମୟୂରଭଞ୍ଜ ଜିଲ୍ଲାର ୪୬୦ଟି କ୍ଷୁଦ୍ର ଜଳବିଭାଜିକାରେ ଜୀବିକା ଉନ୍ନୟନ ପାଇଁ ଓଡ଼ିଶା ଗ୍ରାମ୍ୟ ଜୀବିକା ଯୋଜନାରେ ଆସନ୍ତା ୩ ବର୍ଷ ମଧ୍ୟରେ ୯୦.୫୦ କୋଟି ଟଙ୍କା ଯୋଗାଇ ଦିଆଯିବ ।

ମତ୍ସ୍ୟ ଚାଷ ବିକାଶ

୧. ମାଛ ଚାଷ ପାଇଁ ମତ୍ସ୍ୟଜୀବୀମାନଙ୍କୁ ସ୍ୱଳ୍ପ ମିଆଦି ଋଣର ବ୍ୟବସ୍ଥା କରାଯିବ ।

୨. ବ୍ଲକ୍ ସ୍ତରରେ ଆକ୍ୱା ସପ୍ (Aqua Shop) ମାନ ପ୍ରତିଷ୍ଠା କରାଯାଇ ବୈଜ୍ଞାନିକ ପଦ୍ଧତିରେ ମତ୍ସ୍ୟଚାଷ ପାଇଁ ଆବଶ୍ୟକୀୟ ସାମଗ୍ରୀ ବିକ୍ରୀ କରାଯିବା ସହ ମାଛଚାଷୀମାନଙ୍କୁ ମତ୍ସ୍ୟ ଚାଷ ସମ୍ବନ୍ଧୀୟ ବୈଜ୍ଞାନିକ କୌଶଳ ବିଷୟରେ ଅବଗତ କରାଯିବ । ଏଥିନିମନ୍ତେ ବ୍ୟବସାୟିକ ''କୃଷି ଉଦ୍ୟୋଗ'' ଯୋଜନାରୁ ଆପିକଲ ମାଧ୍ୟମରେ ରିହାତି ଦିଆଯିବ ।

ପଶୁ ସମ୍ପଦ ବିକାଶ

୧. ରାଜ୍ୟରେ ଥିବା ପଶୁ ସମ୍ପଦ ସ୍ୱାସ୍ଥ୍ୟର ସୁରକ୍ଷା ନିମନ୍ତେ ପ୍ରତିଷେଧକ ଟିକାମାନ ଦିଆଯିବାର ବ୍ୟବସ୍ଥା କରାଯିବ । ଭୁବନେଶ୍ୱରସ୍ଥିତ ଓଡ଼ିଶା ଜୈବ ବିଜ୍ଞାନ ଉତ୍ପାଦନ ପ୍ରତିଷ୍ଠାନ (OBPI) ଏବଂ ଏହାର ବ୍ରହ୍ମପୁରସ୍ଥିତ ଅନ୍ୟତମ ୟୁନିଟ୍‌ରେ ପ୍ରାୟ ୨ କୋଟି ୧ ଲକ୍ଷ ଗୋଟି ପ୍ରତିଷେଧକ ଟିକା ଉତ୍ପାଦିତ ହେବ ।

୨. ପଶୁ ସଂପଦ ଚାଷୀମାନେ ସହଜରେ ରୋଗକୁ ଚିହ୍ନିବା ପାଇଁ ପ୍ରତ୍ୟେକ ଜିଲ୍ଲାରେ ରୋଗ ଚିହ୍ନଟ ପ୍ରୟୋଗଶାଳା ପ୍ରତିଷ୍ଠା ହେବ ।

୩. ସମସ୍ତ ଜିଲ୍ଲାରେ କୁକୁଡ଼ା ଚିଆଁ ପ୍ରଜନନ କେନ୍ଦ୍ର ସ୍ଥାପନ କରାଯିବ ।

## ମାନ୍ୟବର ମୁଖ୍ୟମନ୍ତ୍ରୀଙ୍କ ଦ୍ୱାରା ଘୋଷିତ ଚାଷୀମାନଙ୍କ ନିମନ୍ତେ ପ୍ୟାକେଜ୍ ସମ୍ପର୍କିତ ସମବାୟ ବିଭାଗର ଯୋଜନା

୧. ସ୍ୱଳ୍ପମିଆଦୀ ସମବାୟ ଋଣ ସଂସ୍ଥାମାନଙ୍କର ପୁନରୁଦ୍ଧାର

ଆବଶ୍ୟକୀୟ କୃଷିଋଣ ଯୋଗାଇ ଦେବା ଉଦ୍ଦେଶ୍ୟରେ ରାଜ୍ୟର ସମବାୟ ଋଣ ସମିତିମାନଙ୍କୁ ସେମାନଙ୍କର ପୁଞ୍ଜିଭୂତ କ୍ଷତିର ଭରଣା ନିମନ୍ତେ ଆର୍ଥିକ ସହାୟତା ଯୋଗାଇ ଦିଆଯିବ । ବୈଦ୍ୟନାଥନ୍ କମିଟିଙ୍କ ସୁପାରିଶ ଅନୁଯାୟୀ ପୁନରୁଦ୍ଧାର ପ୍ୟାକେଜକୁ ଚଳିତ ବର୍ଷଠାରୁ କାର୍ଯ୍ୟକାରୀ କରାଯିବ ।

୨. ସମବାୟ ସମିତି ମାଧ୍ୟମରେ ସବୁ ଚାଷୀଙ୍କୁ କୃଷିଋଣ ସହାୟତା ପ୍ରଦାନ

କୌଣସି ଆନୁଷ୍ଠାନିକ ଋଣ ସହାୟତା ପାଉ ନଥିବା ସମସ୍ତ କୃଷିଜୀବୀ ପରିବାରଙ୍କୁ ଆସନ୍ତା ତିନି ବର୍ଷ ମଧ୍ୟରେ ସମବାୟ ଋଣ ଯୋଗାଇ ଦିଆଯିବ ।

୩. କପାଚାଷୀମାନଙ୍କୁ ଋଣ ସହାୟତା



କପା ଉତ୍ପାଦନ ହେଉଥିବା ଜିଲ୍ଲାମାନଙ୍କରେ କପାଚାଷୀମାନଙ୍କୁ ଅତ୍ୟଧିକ ସୁଧରେ ଋଣ ଦେଉଥିବା ମହାଜନମାନଙ୍କ ଶୋଷଣରୁ ମୁକ୍ତ ରଖିବା ଉଦ୍ଦେଶ୍ୟରେ ଚଳିତ ଖରିଫ ଋତୁରେ ସେମାନଙ୍କର କୃଷିକାର୍ଯ୍ୟ ପାଇଁ ଭବାନୀପାଟଣା, କୋରାପୁଟ, ବ୍ରହ୍ମପୁର, ବଲାଙ୍ଗିର ଓ ଆସ୍କା କେନ୍ଦ୍ର ସମବାୟ ବ୍ୟାଙ୍କ ମାଧ୍ୟମରେ ୭% ରିହାତି ସୁଧ ହାରରେ ଋଣ ଯୋଗାଇ ଦିଆଯିବ ।

୪. କପା ନିମନ୍ତେ ବିକ୍ରୀ ସୁବିଧା

କପାଚାଷୀମାନଙ୍କୁ ନିଶ୍ଚିତ ବିକ୍ରୀ ସୁବିଧା ଓ ଉପଯୁକ୍ତ ମୂଲ୍ୟ ପ୍ରଦାନ କରାଯିବା ସହିତ ଶୋଷଣରୁ ମୁକ୍ତ କରିବା ଲାଗି କପାଚାଷ କ୍ଷେତ୍ରରେ ଠିକା ଚାଷକୁ ପ୍ରୋତ୍ସାହନ ଦିଆଯିବ ।

୫. ସ୍ୱତନ୍ତ୍ର କପା ମଣ୍ଡି ସ୍ଥାପନ

ଗଜପତି ଜିଲ୍ଲାର ପାରଳାଖେମୁଣ୍ଡି ଓ ଗଞ୍ଜାମ ଜିଲ୍ଲାର ଦିଗପହଣ୍ଡିଠାରେ ପ୍ରକ୍ରିୟାକରଣ ସୁବିଧା ଥାଇ ଦୁଇଗୋଟି ସ୍ୱତନ୍ତ୍ର କପା ମଣ୍ଡି ସ୍ଥାପନ କରାଯିବ ।

୬. ସ୍ୱତନ୍ତ୍ର ମକା ମଣ୍ଡି ସ୍ଥାପନ

ଆଦିବାସୀ ଚାଷୀମାନଙ୍କ ସୁବିଧା ପାଇଁ ନବରଙ୍ଗପୁର ଜିଲ୍ଲାର ଉମରକୋଟ ଓ ରାଇଘରଠାରେ ଦୁଇଗୋଟି ସ୍ୱତନ୍ତ୍ର ମକା ମଣ୍ଡି ସ୍ଥାପନ କରାଯିବ ।

୭. ତୈଳବୀଜ ନିମନ୍ତେ ବଜାର ସୁବିଧା

ଚାଷୀମାନଙ୍କୁ ନିଶ୍ଚିତ ବିକ୍ରୀ ସୁବିଧା ଉପଯୁକ୍ତ ମୂଲ୍ୟ ପ୍ରଦାନ କରି ଶୋଷଣରୁ ମୁକ୍ତ କରିବା ନିମନ୍ତେ ନାଫେଡ୍ ମାଧ୍ୟମରେ ଚିନାବାଦାମ ଓ ରାଶି ଇତ୍ୟାଦି ତୈଳବୀଜ ଜାତୀୟ ଫସଲର ଠିକା ଚାଷକୁ ପ୍ରୋତ୍ସାହନ ଦିଆଯିବ ।

୮. ସମସ୍ତ ବ୍ଲକ୍‌ରେ ମାର୍କେଟ ୟାର୍ଡ଼ ପ୍ରତିଷ୍ଠା

ଆଗାମୀ ଚାରିବର୍ଷ ମଧ୍ୟରେ ମାର୍କେଟ ୟାର୍ଡ଼ ନଥିବା ରାଜ୍ୟର ୧୧୮ ଗୋଟି ବ୍ଲକ୍‌ରେ ନିୟନ୍ତ୍ରିତ ବଜାର କମିଟି ମାଧ୍ୟମରେ ମାର୍କେଟ ୟାର୍ଡ଼ ପ୍ରତିଷ୍ଠା କରାଯିବ ।

୯. ଗ୍ରାମ୍ୟ ଉତ୍ପାଦକ ସଂଗଠନ

ବିଭିନ୍ନ କୃଷିଜାତ ଦ୍ରବ୍ୟର ଉପଯୁକ୍ତ ବଜାର ସୁବିଧା ପ୍ରତିଷ୍ଠା ନିମନ୍ତେ ଦ୍ରବ୍ୟଭିତ୍ତିକ ଭିନ୍ନ ଭିନ୍ନ 'ଗ୍ରାମ୍ୟ ଉତ୍ପାଦନ ସଂଗଠନ' ଗଠନ କରାଯାଇ ବ୍ଲକ୍ ଅଥବା ଆଞ୍ଚଳିକ ସମବାୟ ବାଣିଜ୍ୟ ସମିତି ସ୍ତରରେ ମହାସଂଘମାନ ଗଠନ କରାଯିବ ।

୧୦. ସମବାୟ ଋଣ ବ୍ୟବସ୍ଥାର ସମ୍ପ୍ରସାରଣ

ଆଦିବାସୀ ଅଞ୍ଚଳରେ ଲ୍ୟାମ୍ପସ ବ୍ୟବସ୍ଥା ଯୋଗୁଁ ପ୍ରାଥମିକ ସମବାୟ ଋଣ ସମିତିମାନଙ୍କର ଆଶାନୁରୂପ ଅଭିବୃଦ୍ଧି ସଙ୍କୁଚିତ ହୋଇଥିବାରୁ ଏହି ଅଞ୍ଚଳର ଚାଷୀମାନଙ୍କ ପାଇଁ କୃଷି ଋଣକୁ ସହଜଲଭ୍ୟ କରିବା ଉଦ୍ଦେଶ୍ୟରେ ତୃଣମୂଳ ସ୍ତରରେ ସମବାୟ ଋଣ ସମିତିମାନ ଗଠନ କରାଯାଇ ସମବାୟ ଋଣ ବ୍ୟବସ୍ଥାକୁ ସମ୍ପ୍ରସାରିତ କରାଯିବ ।

---

# ୪୦ତମ ରାଜ୍ୟ ଅବକାରୀ କ୍ରୀଡ଼ା ଉତ୍ସବ

ଗତ ଫେବୃଆରୀ ପହିଲାରେ ୪୦ତମ ଅବକାରୀ କ୍ରୀଡ଼ା ପ୍ରତିଯୋଗିତା ଅନୁଷ୍ଠିତ ହୋଇଥିଲା । ରାଜ୍ୟ ଅବକାରୀ କ୍ରୀଡ଼ା କମିଟି ପକ୍ଷରୁ କଳିଙ୍ଗ ଷ୍ଟାଡ଼ିୟମଠାରେ ଆୟୋଜିତ ଏହି ପ୍ରତିଯୋଗିତାକୁ ଅବକାରୀ ଓ ପର୍ଯ୍ୟଟନ ମନ୍ତ୍ରୀ ଶ୍ରୀ ଦେବୀପ୍ରସାଦ ମିଶ୍ର ଆନୁଷ୍ଠାନିକ ଭାବେ ଉଦ୍‌ଘାଟନ କରିଥିଲେ । ଏହି ଅବସରରେ ଉଦ୍‌ବୋଧନ ଦେଇ ମନ୍ତ୍ରୀ ଶ୍ରୀ ମିଶ୍ର ଆମ ସାମାଜିକ ଜୀବନରେ କ୍ରୀଡ଼ାର ମହତ୍ୱ ସଂପର୍କରେ ଉଲ୍ଲେଖ କରି ଏକ ସୁସ୍ଥ ନିରାମୟ ଜୀବନଯାପନ ତଥା ଦୃଢ଼ ମନୋବଳ ନେଇ କାର୍ଯ୍ୟ ସଂପାଦନ ପାଇଁ କ୍ରୀଡ଼ାର ଆବଶ୍ୟକତା ରହିଛି ବୋଲି କହିଥିଲେ । ଦୁଇଦିନ ଧରି ଚାଲିଥିବା ଏହି ପ୍ରତିଯୋଗିତାରେ ୩୦ଟି ଜିଲ୍ଲାରୁ ୩୫ଟି ଦଳରେ ୪୦୦ରୁ ଊର୍ଦ୍ଧ୍ୱ ଅବକାରୀ ବିଭାଗର କାର୍ଯ୍ୟରତ ମହିଳା ଓ ପୁରୁଷ କର୍ମଚାରୀ ଅଂଶଗ୍ରହଣ କରିଥିଲେ ।

ଅବକାରୀ କମିଶନର ଶ୍ରୀ ସୁଦର୍ଶନ ନାୟକଙ୍କ ଅଧ୍ୟକ୍ଷତାରେ ଅନୁଷ୍ଠିତ ଉଦ୍‌ଘାଟନୀ ଉତ୍ସବରେ ରାଜ୍ୟ ପାନୀୟ ନିଗମ ପରିଚାଳନା ନିର୍ଦ୍ଦେଶକ ଶ୍ରୀ ସୌମ୍ୟପ୍ରସାଦ ମିଶ୍ର ମୁଖ୍ୟବକ୍ତା ଏବଂ ଅବକାରୀ ବିଭାଗ ଯୁଗ୍ମ ଶାସନ ସଚିବ ଶ୍ରୀ ବନବିହାରୀ ଜେନା ସମ୍ମାନିତ ଅତିଥି ଭାବେ ଯୋଗ ଦେଇଥିଲେ । ଖୋର୍ଦ୍ଧା ଅବକାରୀ ଅଧୀକ୍ଷକ ଶ୍ରୀ ଲକ୍ଷ୍ମୀନାରାୟଣ ମହାପାତ୍ର ସ୍ୱାଗତ ଭାଷଣ ଓ ସେଣ୍ଟ୍ରାଲ ଡିଭିଜନ କଟକର ଉପକମିଶନର ଏହି କ୍ରୀଡ଼ା ପ୍ରତିଯୋଗିତାର ଆୟୋଜନ ସଂପର୍କରେ ସୂଚନା ପ୍ରଦାନ କରିଥିଲେ ।

# ୨୦୦୮-୦୯ର ଓଡ଼ିଶା ବଜେଟ୍ : ଏକ ଦୃଷ୍ଟିପାତ

ଗୁରୁକଲ୍ୟାଣ ମହାପାତ୍ର

**ଗ**ତ ୨୦୦୭ ଡିସେମ୍ବର ୧୯ ତାରିଖରେ ଜାତୀୟ ଉନ୍ନୟନ ପରିଷଦର ବୈଠକରେ ଏକାଦଶ ପଞ୍ଚବାର୍ଷିକ ଯୋଜନା (୨୦୦୭-୧୨)କୁ ସୁପାରିଶ କରାଯିବାବେଳେ ପ୍ରଥମ ଚାରିବର୍ଷରେ ବାର୍ଷିକ ନଅ ପ୍ରତିଶତ ସାମଗ୍ରିକ ଘରୋଇ ଉତ୍ପାଦନର ଅଭିବୃଦ୍ଧି ହାରପ୍ରତି ଲକ୍ଷ୍ୟ ରଖାଯାଇଥିଲା । ସେହିପରି ୨୦୧୧-୧୨ରେ ଏହି ବର୍ଷକ ମଧରେ ଉପରୋକ୍ତ ନଅ ପ୍ରତିଶତ ଅଭିବୃଦ୍ଧି ହାରକୁ ଦଶ ପ୍ରତିଶତରେ ପରିଣତ କରାଯିବାକୁ ଲକ୍ଷ୍ୟଧାର୍ଯ୍ୟ ହୋଇଥିଲା । ନୂଆଦିଲ୍ଲୀଠାରେ ଏହି ବୈଠକ ଶେଷରେ କେନ୍ଦ୍ର ଯୋଜନା କମିଶନଙ୍କ ଉପାଧକ୍ଷ ଶ୍ରୀ ମଣ୍ଟେକ ସିଂ ଆଲୱାଲିଆ ସାମ୍ବାଦିକମାନଙ୍କୁ ସୂଚନା ଦେଇ କହିଥିଲେ ଯେ ରାଜ୍ୟ ଯୋଜନାମାନଙ୍କରେ ସେହି ଏକାଦଶ ପଞ୍ଚବାର୍ଷିକ ଯୋଜନାର ପ୍ରତିଫଳନ ହେବ । କେନ୍ଦ୍ର ଯୋଜନା କମିଶନଙ୍କ ସେହି ଦୃଷ୍ଟିଭଙ୍ଗୀର ପ୍ରତିଫଳନ ହିଁ ସମ୍ଭବ ହୋଇଛି ଓଡ଼ିଶା ସରକାରଙ୍କ ୨୦୦୮-୦୯ର ବଜେଟରେ, ଯାହାକି ଗତ ଫେବୃଆରୀ ୧୬ (୨୦୦୮)ରେ ଓଡ଼ିଶା ବିଧାନସଭାରେ ଅର୍ଥମନ୍ତ୍ରୀ ଶ୍ରୀ ପ୍ରଫୁଲ୍ଲଚନ୍ଦ୍ର ଘଡ଼ାଇଙ୍କଦ୍ୱାରା ଉପସ୍ଥାପିତ ହୋଇଥିଲା ।

ସେହି ବଜେଟ୍ ବିଧାନସଭାରେ ଉପସ୍ଥାପିତ ହେବା ପୂର୍ବରୁ ଓଡ଼ିଶାର ମାନ୍ୟବର ରାଜ୍ୟପାଳ ଶ୍ରୀ ମୁରଲୀଧର ଚନ୍ଦ୍ରକାନ୍ତ ଭଣ୍ଡାରେ ଓଡ଼ିଶା ବିଧାନସଭାର ବଜେଟ ଅଧିବେଶନକୁ ଗତ ଫେବୃଆରୀ ୧୩ (୨୦୦୮)ରେ ଉଦ୍‌ଘାଟନ କରି ତାଙ୍କ ଅଭିଭାଷଣରେ ଉଲ୍ଲେଖ କରିଥିଲେ, 'ଏକାଦଶ ଯୋଜନାର ପ୍ରସ୍ତୁତି ଚିଠା ଅନୁଯାୟୀ ଓଡ଼ିଶାର ଉନ୍ନୟନ ଆବଶ୍ୟକତାକୁ ଦୃଷ୍ଟିରେ ରଖି ମୋ' ସରକାର (୧) କୃଷି ଓ ଆନୁଷଙ୍ଗିକ କ୍ଷେତ୍ରରେ ବାର୍ଷିକ ୪ ଶତାଂଶରୁ ଊର୍ଦ୍ଧ୍ୱ ବାର୍ଷିକ ଅଭିବୃଦ୍ଧି ସହିତ ଦ୍ରୁତ ଓ ସାର୍ବଜନୀନ ବାର୍ଷିକ ହାରାହାରି ଅଭିବୃଦ୍ଧି ହାର ୯ ଶତାଂଶ ଏବଂ (୨) ଏକାଦଶ ପଞ୍ଚବାର୍ଷିକ ଯୋଜନା କାଳରେ ଅଧିକ ମାତ୍ରାରେ ଦାରିଦ୍ର୍ୟ ଦୂରୀକରଣର ଲକ୍ଷ୍ୟ ରଖିଛି । ଏହାକୁ ଦୃଷ୍ଟିରେ ରଖି ଦଶମ ଯୋଜନା କାଳ ମଧରେ ଥିବା ବ୍ୟୟଅଟକଳ ୧୯,୦୦୦ କୋଟି ଟଙ୍କାରୁ ଏକାଦଶ ଯୋଜନା ଅବଧି ପାଇଁ ୩୨,୨୨୫ କୋଟି ଟଙ୍କାକୁ ବୃଦ୍ଧି କରାଯାଇଛି ।'

ଏହି ଯୋଜନାକୁ ରାଜ୍ୟ ସରକାର ଟିକସରେ ଭାରାକ୍ରାନ୍ତ ନକରି ଜନସାଧାରଣଙ୍କ ସ୍ୱାର୍ଥକୁ ସୁରକ୍ଷା ଦେଲାପରି କରିଥିବା କୁହାଯାଉଛି । ଆଗାମୀ ବର୍ଷର ରାଜ୍ୟ ଯୋଜନା ବ୍ୟୟଅଟକଳକୁ ୩୯ ପ୍ରତିଶତ ଅର୍ଥାତ୍ ୭,୧୦୦ କୋଟି ଟଙ୍କାଯାଏଁ ବୃଦ୍ଧି କରାଯାଇଛି । ଯୋଜନା ଅଟକଳରେ ୪୦ ପ୍ରତିଶତ (୨୭୦୦ କୋଟି ଟଙ୍କା) ଋଣ ଉଠାଇ ଭରଣା କରାଯିବ ବୋଲି ରାଜ୍ୟ ଅର୍ଥ ମନ୍ତ୍ରୀ ତାଙ୍କ ବଜେଟ ଭାଷଣରେ ସୂଚନା ଦେଇଛନ୍ତି । ବିତ୍ତୀୟ ନିଅଣ୍ଟ (Fiscal Deficit)ର ପରିମାଣ ଗତ ବଜେଟ ତୁଳନାରେ ୩୫ ପ୍ରତିଶତ ଅର୍ଥାତ୍ ୧୧୪୫ କୋଟି ଟଙ୍କାକୁ ଏହି ବଜେଟରେ ବୃଦ୍ଧି କରାଯାଇଛି । ଗତ ବଜେଟରେ ଏହାଥିଲା ୩,୨୮୬ କୋଟି ଟଙ୍କା ଏବଂ ଚଳିତ ବଜେଟରେ ତାହା ୪,୪୩୧ କୋଟି ଟଙ୍କା କରାଯିବାକୁ ପ୍ରସ୍ତାବ ରହିଛି ।

> ଆର୍ଥିକ ସଂସ୍କାର ଓ ଆର୍ଥିକ ପରିଚାଳନାକୁ ଏହି ବଜେଟ୍‌ରେ ଗୁରୁତ୍ୱ ଦିଆଯିବା ସହିତ ରାଜ୍ୟବାସୀଙ୍କ ଅଭାବ ଓ ଅସୁବିଧାକୁ ଦୂର କରି ରାଜ୍ୟର ବିକାଶ ପ୍ରକ୍ରିୟାକୁ ତ୍ୱରାନ୍ୱିତ କରିବାକୁ ଏହି ବଜେଟ ଲକ୍ଷ୍ୟ ରଖିଛି ବୋଲି ରାଜ୍ୟ ଅର୍ଥ ମନ୍ତ୍ରୀ ତାଙ୍କ ବଜେଟ ଭାଷଣରେ ସୂଚନା ଦେଇ ସାରିଛନ୍ତି ।

ଟିକସ, ଅଣଟିକସ, ଋଣ ପରିଶୋଧ ଓ ଅନ୍ୟାନ୍ୟ ସୂତ୍ରରୁ ଯେତିକି ରାଜସ୍ୱ ମିଳିବ, ତାହାଠାରୁ ରାଜ୍ୟ ସରକାର ଅଧିକ ୪,୪୩୧ କୋଟି ଟଙ୍କା ଖର୍ଚ୍ଚ କରିବେ । ତେବେ ଆସନ୍ତା ବର୍ଷ ୫୬୩ କୋଟି ଟଙ୍କାର ରାଜସ୍ୱ ବଳକା ହେବ ବୋଲି ଏହି ବଜେଟ୍‌ରେ ଦର୍ଶାଯାଇଛି । ତଦ୍ୱାରା ଯେତିକି ରାଜସ୍ୱ ଆୟ ଆକାରରେ ମିଳିବ, ତା' ତୁଳନାରେ ଖର୍ଚ୍ଚ କମ୍ ହୋଇଯିବ ।

ଆର୍ଥିକ ସଂସ୍କାର ଓ ଆର୍ଥିକ ପରିଚାଳନାକୁ ଏହି ବଜେଟ୍‌ରେ ଗୁରୁତ୍ୱ ଦିଆଯିବା ସହିତ ରାଜ୍ୟବାସୀଙ୍କ ଅଭାବ ଓ ଅସୁବିଧାକୁ ଦୂର କରି ରାଜ୍ୟର ବିକାଶ ପ୍ରକ୍ରିୟାକୁ ତ୍ୱରାନ୍ୱିତ କରିବାକୁ ଏହି ବଜେଟ ଲକ୍ଷ୍ୟ ରଖିଛି ବୋଲି ରାଜ୍ୟ ଅର୍ଥ ମନ୍ତ୍ରୀ ତାଙ୍କ ବଜେଟ ଭାଷଣରେ ସୂଚନା ଦେଇ ସାରିଛନ୍ତି ।

ଭାରତ ସରକାରଙ୍କ ନିର୍ଦ୍ଦେଶାନୁଯାୟୀ ରାଜ୍ୟରେ ବିପର୍ଯ୍ୟସ୍ତ ହୋଇ ପଡ଼ିଥିବା ଆର୍ଥିକ ପରିସ୍ଥିତିକୁ ସୁଧାରିବା ଦିଗରେ ରାଜ୍ୟ ସରକାର

ନିରବଚ୍ଛିନ୍ନ ଭାବେ ଉଦ୍ୟମ କରି ସଫଳ ହୋଇଛନ୍ତି । ପୁଣି ଏକାଦଶ ପଞ୍ଚବାର୍ଷିକ ଯୋଜନାକୁ ଦୃଷ୍ଟିରେ ରଖି ରାଜ୍ୟ ସରକାର ଚଳିତ ବଜେଟରେ ଦାରିଦ୍ର୍ୟ ଦୂରୀକରଣ ଓ ବିଭିନ୍ନ ଉନ୍ନୟନମୂଳକ କାର୍ଯ୍ୟକ୍ରମଗୁଡ଼ିକ ସଂପନ୍ନ କରିବାକୁ ଆଶା ରଖିଛନ୍ତି ।

ରାଜ୍ୟର ସୀମିତ ସମ୍ବଳ ସତ୍ତ୍ୱେ, ରାଜ୍ୟ ସରକାର ନିଜସ୍ୱ ସମ୍ବଳରୁ 'ମୋ' କୁଡ଼ିଆ' ଯୋଜନାର ପ୍ରଚଳନ ପ୍ରଥମଥର ଲାଗି କରିଛନ୍ତି ଯାହାକୁ ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ନିକଟରେ ଘୋଷଣା କରିଥିଲେ । । ସେହିପରି ନିଜସ୍ୱ ସମ୍ବଳରୁ ରାଜ୍ୟ ସରକାର ମାନ୍ୟବର ମୁଖ୍ୟମନ୍ତ୍ରୀ ଘୋଷଣା କରିଥିବା ତିନି ଲକ୍ଷ ହିତାଧିକାରୀଙ୍କୁ 'ମଧୁବାବୁ ପେନ୍‌ସନ ଯୋଜନା'ରେ ସାମିଲ କରିବାର ବ୍ୟବସ୍ଥା ହୋଇଛି । ଆଦିବାସୀ ଅଧ୍ୟୁଷିତ ତଥା ଅନଗ୍ରସର ଅଞ୍ଚଳରେ ଭ୍ରାମ୍ୟମାଣ ସ୍ୱାସ୍ଥ୍ୟ ୟୁନିଟ୍‌ର ପ୍ରଚଳନ ସକାଶେ ଏହି ବଜେଟରେ ବ୍ୟୟବରାଦ ହୋଇଛି । ଚାଷୀମାନଙ୍କ ପାଇଁ ହୀରାକୁଦ ସେଚାଞ୍ଚଳର ଉନ୍ନତି ବ୍ୟବସ୍ଥା ସହିତ ଏକ ଲକ୍ଷ ସ୍ୱୟଂ ସହାୟିକା ଗୋଷ୍ଠୀକୁ ଆର୍ଥିକ ସହାୟତା ପ୍ରଦାନର ବ୍ୟବସ୍ଥା ସମେତ ସାଧାରଣ ବଣ୍ଟନ ପ୍ରକ୍ରିୟାରେ ଗରିବ ଶ୍ରେଣୀର ଲୋକଙ୍କ ପାଇଁ ରିହାତି ଦରରେ ଚାଉଳ ଯୋଗାଣର ବ୍ୟବସ୍ଥା ଏହି ବଜେଟରେ କରାଯାଇଛି । ଏସବୁ ସମେତ ଜଳନିଧି ଯୋଜନା, ଏଡ୍‌ସ ଚିହ୍ନଟ ପାଇଁ ଯନ୍ତ୍ରପାତି ଯୋଗାଣ, ପ୍ରାକ୍ ମାଟ୍ରିକ ବୃତ୍ତିକୁ ୨୦ ଟଙ୍କାରୁ ୧୦୦ ଟଙ୍କା ଯାଏଁ ବୃଦ୍ଧି କରିବା, ଉଚ୍ଚଶିକ୍ଷା ବିଭାଗରେ ବୃତ୍ତିଗତ ଶିକ୍ଷା ପାଇଁ ଇଞ୍ଜିନିଅରିଂ, ଡାକ୍ତରୀ, ଏମ୍.ବି.ଏ. ଓ ଏମ୍.ସି.ଏ.ର ଦଶହଜାର ଛାତ୍ରଛାତ୍ରୀଙ୍କୁ ପ୍ରତ୍ୟେକ ବର୍ଷକୁ ଦଶହଜାର ଟଙ୍କା ହିସାବରେ ବୃତ୍ତି ପ୍ରଦାନ କରାଯିବା ପ୍ରଭୃତିର ବ୍ୟୟବରାଦ ଏଥର ବଜେଟରେ କେତୋଗୋଟି ଉଲ୍ଲେଖନୀୟ ପଦକ୍ଷେପ । ଏଥର ବଜେଟରେ ମଧ୍ୟ ଭିତ୍ତିଭୂମି ଉନ୍ନୟନ, ପ୍ରାଚୀନ ଓ ଐତିହ୍ୟ ସଂପନ୍ନ କୀର୍ତ୍ତିରାଜିର ସୁରକ୍ଷା ତଥା ରାଜ୍ୟର ବିଭିନ୍ନ ପର୍ଯ୍ୟଟନସ୍ଥଳୀର ବିକାଶ ପାଇଁ ବିଶେଷ ଧ୍ୟାନ ଦିଆଯାଇଛି । ରାଜ୍ୟ ସରକାର ମଧ୍ୟ ଏଥର ବଜେଟରେ ଦେଶ ପାଇଁ ତ୍ୟାଗ କରିଥିବା ସ୍ୱାଧୀନତା ସଂଗ୍ରାମୀମାନଙ୍କର ଭତ୍ତାକୁ ଏକ ହଜାର ଟଙ୍କାରୁ ଏକ ହଜାର ପାଞ୍ଚ ଶହ ଟଙ୍କା ପର୍ଯ୍ୟନ୍ତ ବୃଦ୍ଧି କରିଥିବା ବେଳେ ଅଣବନ୍ଦୀ ସ୍ୱାଧୀନତା ସଂଗ୍ରାମୀଙ୍କର ଭତ୍ତାକୁ ୯୦୦ ଟଙ୍କାରୁ ୧୦୦୦ ଟଙ୍କା ପର୍ଯ୍ୟନ୍ତ ବୃଦ୍ଧି କରିଛନ୍ତି ।

ରାଜ୍ୟ ସରକାର ମଧ୍ୟ ଏଥର ବଜେଟରେ ଦେଶ ପାଇଁ ତ୍ୟାଗ କରିଥିବା ସ୍ୱାଧୀନତା ସଂଗ୍ରାମୀମାନଙ୍କର ଭତ୍ତାକୁ ଏକ ହଜାର ଟଙ୍କାରୁ ଏକ ହଜାର ପାଞ୍ଚ ଶହ ଟଙ୍କା ପର୍ଯ୍ୟନ୍ତ ବୃଦ୍ଧି କରିଥିବା ବେଳେ ଅଣବନ୍ଦୀ ସ୍ୱାଧୀନତା ସଂଗ୍ରାମୀଙ୍କର ଭତ୍ତାକୁ ୯୦୦ ଟଙ୍କାରୁ ୧୦୦୦ ଟଙ୍କା ପର୍ଯ୍ୟନ୍ତ ବୃଦ୍ଧି କରିଛନ୍ତି ।

ସୀମିତ ସମ୍ବଳ ମଧ୍ୟରେ ରାଜ୍ୟ ସରକାର ୨୦୦୮-୦୯ ବଜେଟରେ ଯେଉଁ କୋଡ଼ିଏଟି ବିଷୟ ଉପରେ ଗୁରୁତ୍ୱ ଦେଇଛନ୍ତି, ସେଗୁଡ଼ିକ ହେଲା- ୧) ଓଡ଼ିଶା ବିତ୍ତୀୟ ଉତ୍ତରଦାୟୀ ଓ ବଜେଟ ପରିଚାଳନା ଆଇନର ଧାରା-୫ରେ ସୂଚୀତ ଆର୍ଥିକ ଲକ୍ଷ୍ୟ ହାସଲ, ୨) ଦ୍ୱାଦଶ ଅର୍ଥ କମିଶନଙ୍କର ସୁପାରିଶ, ୩) ଅଗ୍ରାଧିକାର ଭିତ୍ତିରେ ସୀମିତ ସମ୍ବଳର ବିନିଯୋଗ, ୪) ଅଧିକ କେନ୍ଦ୍ରୀୟ ସହାୟତା ହାସଲ ପାଇଁ ରାଜ୍ୟ ସରକାରଙ୍କ ଅଂଶଧନ ବୃଦ୍ଧି, ୫) ଅଣଯୋଜନା ରାଜସ୍ୱ ଖର୍ଚ୍ଚକୁ ଯଥାସମ୍ଭବ ସୀମିତ ରଖିବା, ୬) ଭିତ୍ତିଭୂମି ଉନ୍ନୟନ ପାଇଁ ଅଧିକ ପୁଂଜି ବିନିଯୋଗ, ୭) ସ୍ୱାସ୍ଥ୍ୟସେବାର ଭିତ୍ତିଭୂମି ଓ ମାନର ଉନ୍ନତି ସାଧନ, ୮) ବିଦ୍ୟାଳୟ, ଉଚ୍ଚଶିକ୍ଷା ଓ ବୈଷୟିକ ଶିକ୍ଷାର ବିକାଶ, ୯) କୃଷି ଓ ଆନୁଷଙ୍ଗିକ କ୍ଷେତ୍ରର ବିକାଶ, ୧୦) ଶିଳ୍ପ, କୁଟୀର ଓ ହସ୍ତଶିଳ୍ପର ବିକାଶ, ୧୧) ଜଳସେଚନର ସଂପ୍ରସାରଣ ଓ ଉନ୍ନତି, ୧୨) ସହରାଞ୍ଚଳ ଓ ଗ୍ରାମାଞ୍ଚଳ ଜଳଯୋଗାଣ ଓ ପରିମଳ ବ୍ୟବସ୍ଥାର ଉନ୍ନତି, ୧୩) ଗ୍ରାମାଞ୍ଚଳର ବିକାଶ, ୧୪) ସୂଚନା ଓ ପ୍ରଯୁକ୍ତି କ୍ଷେତ୍ରର ବିକାଶ, ୧୫) ସମ୍ବଳର ସଦୁପଯୋଗ ଓ ଆତ୍ମନିଯୁକ୍ତି ସୁଯୋଗ, ୧୬) ରାଜ୍ୟରେ ଖଣିଜ ଶିଳ୍ପର ବିକାଶ, ୧୭) ଗ୍ରାମ୍ୟ ବିଦ୍ୟୁତିକରଣ, ୧୮) ଆବଶ୍ୟକତା ଅନୁଯାୟୀ ବ୍ୟୟବରାଦ କରି ଅସଂପୂର୍ଣ୍ଣ ପ୍ରକଳ୍ପଗୁଡ଼ିକୁ ଯଥାସମ୍ଭବ ଶୀଘ୍ର ସଂପୂର୍ଣ୍ଣ କରିବା, ୧୯) ବୃଦ୍ଧ ଓ ବୃଦ୍ଧା, ଭିନ୍ନକ୍ଷମ, ମହିଳା, ଅନୁସୂଚିତ ଜାତି ଓ ଜନଜାତି ତଥା ଅନ୍ୟାନ୍ୟ ଆର୍ଥିକ ଦୁର୍ବଳ ଶ୍ରେଣୀର ଲୋକମାନଙ୍କ ଉନ୍ନତି ଓ ସାମାଜିକ ସୁରକ୍ଷା ପାଇଁ ଅଧିକ ବ୍ୟୟବରାଦ, ୨୦) ସରକାରୀ କୋଠାବାଡ଼ି, ରାସ୍ତାଘାଟ, ଜଳଯୋଗାଣ ପ୍ରକଳ୍ପ ଇତ୍ୟାଦିର ରକ୍ଷଣାବେକ୍ଷଣ ପାଇଁ ଅଧିକ ବ୍ୟୟବରାଦ ।

ଏହା ଯେ ଲୋକାଭିମୁଖୀ ବଜେଟ୍, ଏଥିରେ ସନ୍ଦେହ ନାହିଁ ।

ଘର ନଂ: ଡି-୧୦/୫
ୟୁନିଟ୍-୮, ଭୁବନେଶ୍ୱର

# ବାଗ୍‌ଦେବୀ ସରସ୍ୱତୀ

ଦେବବ୍ରତ ଦାଶ

'ସରସ୍ୱତୀ ମହାଭାଗେ
ବିଦ୍ୟେ କମଳଲୋଚନେ,
ବିଶ୍ୱରୂପେ ବିଶାଳାକ୍ଷୀ
ବିଦ୍ୟାଂ ଦେହି ନମୋସ୍ତୁତେ ।'

**ନ**ବ ବସନ୍ତ ଆଗମନୀର ସ୍ୱାଗତ ଗୀତିକା ଗାନ କରେ ରସସ୍ରାବୀ ଚ୍ୟୁତମୁକୁଳ-ଭକ୍ଷିତ-କୋକିଳ । ଛବିଳ ପ୍ରକୃତି ହୋଇଉଠେ ଆତ୍ମହରା । ମଧୁଲୁବ୍ଧ ମଧୁପର ମଧୁଗୁଞ୍ଜନ, ମୃଦୁମଳୟ ଛୁଇଁ ଛୁଇଁ ଯାଉଥିବା ପୁଷ୍ପିତ ବୃକ୍ଷରାଜିଙ୍କ ବର୍ଣ୍ଣବିଭା, ଜାତି ଜାତି ମଲ୍ଲୀ, ମାଳତୀ, ଜୁଇ, ହେନା, ରକ୍ତମନ୍ଦାର, କନିଅର, କରବୀର ଆଦିଙ୍କ ଶୁଭ ବନ୍ଦାଣରେ ଧରାପୃଷ୍ଠକୁ ଅବତରଣ କରନ୍ତି ବସନ୍ତ ପଞ୍ଚମୀ, ଶୁକ୍ଳପକ୍ଷ ପଞ୍ଚମୀ, ଅଥବା ଶ୍ରୀପଞ୍ଚମୀ ତଥା ବସନ୍ତ ଋତୁର ଆଗମନ ପ୍ରଥମ ଦିବସରେ ଶୁକ୍ଳାବର୍ଣ୍ଣା ହଂସରୂପା, ଶ୍ୱେତ ପଦ୍ମାସନା, ବୀଣାପୁସ୍ତକ ଧାରିଣୀ ଓ ବିଦ୍ୟାର ଅଧିଷ୍ଠାତ୍ରୀ ଦେବୀ ସରସ୍ୱତୀ ।



ଦେବୀ ସରସ୍ୱତୀ ବିଦ୍ୟା ଓ ବୁଦ୍ଧି ପ୍ରଦାୟିନୀ । ତାହାଙ୍କ କୃପାରେ ମୂର୍ଖ ପଣ୍ଡିତ ହୁଏ । ପୁରାଣ ମତାନୁଯାୟୀ ଦେବୀ ସରସ୍ୱତୀ ଶ୍ରୀକୃଷ୍ଣ ଆଦେଶକ୍ରମେ ବୈକୁଣ୍ଠପୁରକୁ ଗମନ କରି ବିଷ୍ଣୁଙ୍କର ମନୋହାରିଣୀ ହେଲେ । ମାଘମାସ ଶୁକ୍ଳପକ୍ଷ ପଞ୍ଚମୀ ଦିନ ଏହି ପୂଜା ମର୍ତ୍ତ୍ୟଲୋକରେ ଭଗବାନ ଶ୍ରୀକୃଷ୍ଣଙ୍କଦ୍ୱାରା ଆରମ୍ଭ ହୋଇଥିଲା ।

'ଯୁଗକୁ ଯୁଗ ଏହିମତେ, ପରମାନନ୍ଦ ଏ ଜଗତେ ।' ସଂସାର ସୃଷ୍ଟି ପରେ ଯୁଗ ପରେ ଯୁଗ ବହିଯାଉଥିବା ସଂସାରର ଛବି ନାନାଦି ବିଚିତ୍ର ସମୟ ମଧ୍ୟଦେଇ ଗତି କରୁଛି । ତତ୍ ସଂଗେସଂଗେ ସଂସାରର ତଥାକଥିତ ବ୍ୟବସ୍ଥାନୁଯାୟୀ ବ୍ୟକ୍ତିବିଶେଷଙ୍କ ଚିତ୍ତକୁ ଧର୍ମ ଓ ପୁଣ୍ୟ ମାର୍ଗରେ ପରିଚାଳିତ କରିବା ପାଇଁ ଧର୍ମଚିନ୍ତକମାନେ ପୁରାଣ ଦର୍ଶନର ସାହାରା ନେଇଛନ୍ତି ଏବଂ ବିବିଧ ଧର୍ମରେ ଶାରଦାଙ୍କୁ ଜ୍ଞାନ ଓ ବିଦ୍ୟାର ପ୍ରବର୍ତ୍ତିକା ଭାବରେ ଗ୍ରହଣ କରାଯାଇଛି । 'ସରସ୍ୱତୀ ମାହାତ୍ମ୍ୟ'ରେ କୁହାଯାଇଛି, ସଂସାର ସୃଷ୍ଟି ପରବର୍ତ୍ତୀ ଅବସ୍ଥାରେ ପୃଥିବୀରେ ଚଳ ବର୍ତ୍ତମାନ ଅବସ୍ଥା ସୃଷ୍ଟି କରିବା ନିମନ୍ତେ ସୃଷ୍ଟିକର୍ତ୍ତା ବ୍ରହ୍ମା ଆପଣାର କମଣ୍ଡଳରୁ ଯେଉଁ ଜଳ ସିଞ୍ଚନ କରିଥିଲେ, ସେହି ହେତୁ ଏକ ବୃକ୍ଷରୁ ଯେଉଁ ଶକ୍ତି ଆବିର୍ଭୂତା ହୋଇଥିଲେ ତାହାଙ୍କ ବର୍ଣ୍ଣ ଶୁକ୍ଳବର୍ଣ୍ଣ, ଚତୁର୍ଭୁଜା, ବୀଣା ପୁସ୍ତକଧାରିଣୀ, ହଂସାରୁଢ଼ା, ସ୍ଫଟିକମାଳା ଧାରିଣୀ, ହସ ହସ ବଦନା, କରୁଣା ପ୍ରଦାୟିନୀ, ଶୁକ୍ଳାମ୍ବରା ।

'ଶୁକ୍ଳା ବ୍ରହ୍ମବିଚାର ସାର, ସାର ପରମା ମାତ୍ୟାଂ ଜଗତ୍ ବ୍ୟାପିନୀ,
ବୀଣା ପୁସ୍ତକ ଧାରିଣୀ, ମଭୟଦାଂ ଜାଡ୍ୟାନ୍ଧକାର ପହାମ୍ ।
ହସ୍ତେ ସ୍ଫଟିକ ମାଳିକାଂ ଚ ଦଧିତାଂ ପଦ୍ମାସନେ ସ୍ଥିତାଂ
ବନ୍ଦେ ତାଂ ପରମେଶ୍ୱରୀ, ଭଗବତୀ ବୁଦ୍ଧିପ୍ରଦାଂ ଶାରଦାମ୍ ।।'

ରୂପତତ୍ତ୍ୱ ଦୃଷ୍ଟିରୁ ଶୁକ୍ଳବର୍ଣ୍ଣ ଶୁଦ୍ଧ ସତ୍ତ୍ୱଗୁଣର ପ୍ରତୀକ । ଦେବୀ ସରସ୍ୱତୀଙ୍କର ଦକ୍ଷିଣ ହସ୍ତରେ ବୀଣା ଯନ୍ତ୍ରଟି ନାଦଶକ୍ତିର ପ୍ରତୀକ ଭାବରେ ସୁଶୋଭିତ ଜ୍ଞାନଶକ୍ତିର ପ୍ରତୀକ ଭାବରେ ପୁସ୍ତକ ଦେବୀଙ୍କର ବାମହସ୍ତରେ ବିରାଜିତ । ହଂସ ଯେପରି ଦୁଗ୍ଧରୁ ଜଳକୁ ଅଲଗା କରି ଦୁଗ୍ଧ ପାନ କରେ, ଠିକ୍ ସେହିଭଳି ସଂସାରର ଖରାପ ଜିନିଷକୁ ପରିତ୍ୟାଗ ପୂର୍ବକ ଉପଯୁକ୍ତକୁ ଗ୍ରହଣ କରିବାକୁ ମନୁଷ୍ୟ ମନ ମଧ୍ୟରେ ଏ ପ୍ରକାର ଜ୍ଞାନର ଚେତନା ସୃଷ୍ଟି କରିବା ଉଦ୍ଦେଶ୍ୟରେ ହଂସ ବାଗ୍‌ଦେବୀଙ୍କର ବାହନ ।

ବିଭିନ୍ନ ପୁରାଣାନୁଯାୟୀ ସେ ବ୍ରହ୍ମାଙ୍କ କନ୍ୟା, ମତାନ୍ତରେ ପତ୍ନୀ, କ୍ଷୀର ସାଗରଶାୟୀ ନାରାୟଣଙ୍କ ପତ୍ନୀ । ଶିବ ପୁରାଣ ମତେ ଶିବଶକ୍ତି ଦୁର୍ଗା ରୂପରେ ଆବିର୍ଭୂତା ।

କାଳେ କାଳେ ଭଗବତୀ ଭାରତୀ ସଂସାର ସାଗର ଜଳରୁ ମୂକ, ମୂର୍ଖ, ଜ୍ଞାନହୀନଙ୍କ ଦୁର୍ଦ୍ଦଶା ମୋଚନ କରି ମହାପଣ୍ଡିତରେ ଭୂଷିତ କରିଛନ୍ତି । ସୃଷ୍ଟିକର୍ତ୍ତା ବ୍ରହ୍ମାଙ୍କ ପୁତ୍ରୀ ସଦା କରୁଣା କଣା ବିଞ୍ଚି ଦେଇଛନ୍ତି ତାଙ୍କ ଭକ୍ତମାନଙ୍କ ମସ୍ତକରେ । ଏ ଦେଶ ଭାରତ ବିବିଧ ଧର୍ମ ଓ ସମ୍ପ୍ରଦାୟର ଲୋକଙ୍କୁ ନିଜ କୋଳରେ ସ୍ଥାନ ଦେଇଛି । ସେହିପରି ବିବିଧ ଧର୍ମର ସମାବେଗ ଘଟିଥିଲେ ହେଁ ସ୍ଥାନ, ସ୍ଥଳ ଭେଦରେ ପୂଜିତ ଦେବତାଙ୍କର ମତାନୁଯାୟୀ ପୂଜାବିଧାନ ସାଧିତ ହେଉଛି । ଯେପରି ଏକ ଦୃଷ୍ଟିରେ ଦେଖିଲେ ଈଶ୍ୱର ସର୍ବବ୍ୟାପୀ । ସେ ଅରୂପ, ଅଣାକାର । ଯେ ଯେଉଁ ମତରେ ନିଜ ମନ ଭିତରେ ତାହାଙ୍କର ମୂର୍ତ୍ତି ସ୍ଥାପନ କରି ପୂଜନ କରିପାରିଲା, ଠିକ୍ ସେହିଭଳି, ଇନ୍ଦା, ସୁରେଶ୍ୱରୀ, ଭାରତୀ ସରସ୍ୱତୀ ।

ସରସ୍ୱତୀଙ୍କ ନାମର ଅର୍ଥକୁ ଅନୁଧ୍ୟାନ କଲେ ସରସ ନଦୀ, ହ୍ରଦ ବା ସାଗର । ଯେପରି ନିର୍ଜଳ ମରୁକୁ ଶସ୍ୟ ଶ୍ୟାମଳା କରିବା ପାଇଁ ସୁନାବ୍ୟା ନଦୀର ସାହାରା ଏକାନ୍ତ ଅପରିହାର୍ଯ୍ୟ, ସେହିଭଳି ଜ୍ଞାନହୀନ ମରୁଭୂମି ସମ ଜୀବନ କ୍ଷେତକୁ ସ୍ୱୟଂ ସରସ୍ୱତୀ ସଦୃଶ ଜ୍ଞାନଦାୟିନୀ ନଦୀଙ୍କ ଆବଶ୍ୟକତା ଅନସ୍ୱୀକାର୍ଯ୍ୟ ।

ବହୁ ପୁରାତନ ଯୁଗରୁ ବୌଦ୍ଧ ଓ ଜୈନଧର୍ମରେ ଦେବୀ ସରସ୍ୱତୀଙ୍କୁ ଜ୍ଞାନର ଅଧିଷ୍ଠାତ୍ରୀ ଦେବୀ ବୋଲି ଗ୍ରହଣ କରାଯାଇଛି । ବୌଦ୍ଧ ଧର୍ମ ସାଧନମାଳାରେ ଜ୍ଞାନାବଦ୍ଧର ଦେବୀ ରୂପେ ମହାସରସ୍ୱତୀ, ବଜ୍ର ବୀଣା, ସରସ୍ୱତୀ, ବଜ୍ର ଶାରଦା, ବଜ୍ର ସରସ୍ୱତୀ ନାମରେ ବର୍ଣ୍ଣନା କରାଯାଇଛି ।

ଏତଦ୍‌ବ୍ୟତୀତ ମଥୁରା ନିକଟରୁ ପ୍ରାପ୍ତ କାଳୀତିକାଠାରୁ ଜୈନ ସ୍ତୁପରୁ ପ୍ରାପ୍ତ ମନୋଜ୍ଞ ସରସ୍ୱତୀ ମୂର୍ତ୍ତି ଜୈନଧର୍ମରେ ସରସ୍ୱତୀ ଆରାଧନାର ସୂଚନା ପ୍ରଦାନ କରେ ।

ଅବଶେଷରେ ଏତିକି କୁହାଯାଇପାରେ ଯେ, ଭାରତୀୟ ସଂସ୍କୃତିରେ ପୂଜା ଉପାସନା ଏକ ଅବିଚ୍ଛେଦ୍ୟ ଅଙ୍ଗ । ଯାହା ଯୁଗ ଯୁଗରୁ ଚଳି ଆସିଛି ତତ୍ ସଂଗେସଂଗେ ଜ୍ଞାନ, ଆଦର୍ଶ, ବିଦ୍ୟା, ବିନୟ, ବିଚକ୍ଷଣତା, ପ୍ରତିଷ୍ଠା ଆଦି ବହନ କରି ଚାଲିଛି ଚାଲିଥିବ ଆଗକୁ ଆଗକୁ । ଦେବୀ ସରସ୍ୱତୀଙ୍କ ଉପାସନା ଯେ କୌଣସି ବିଦ୍ୟାକୁ ଆୟତ୍ତ କରିବାର ପଥ ସୁଗମ କରାଇଥାଏ ।

କ୍ୱାଟର୍ସ ନଂ- ୨ ଆର୍.ବି. ୧୭/୪
ୟୁନିଟ୍-୮, ଭୁବନେଶ୍ୱର-୧୨

# ସ୍ୱଳ୍ପ ସଞ୍ଚୟ ଯୋଜନାରେ ସୁଧ ସହ ପୁରସ୍କାର ମିଳିବାର ବ୍ୟବସ୍ଥା ରହିଛି

ଗତ ଫେବୃଆରୀ ୧୮ ତାରିଖ ଦିନ ସ୍ୱଳ୍ପ ସଂଚୟ ପ୍ରୋତ୍ସାହନ ଯୋଜନାର ଏଡି ସିରିଜ୍ ଉଠାଣରେ ପୁରସ୍କାର ପାଇବା ପାଇଁ ଯୋଗ୍ୟ ବିବେଚିତ ହୋଇଥିବା ଜମାକାରୀମାନଙ୍କୁ ଅର୍ଥ ବିଭାଗର ପ୍ରମୁଖ ଶାସନ ସଚିବ ଶ୍ରୀ ରବି ନାରାୟଣ ସେନାପତି ପୁରସ୍କାର ପ୍ରଦାନ କରିଥିଲେ । ପୁରସ୍କାର ବିତରଣ ପରେ ସେ କହିଲେ ଯେ ସ୍ୱଳ୍ପ ସଂଚୟ ଯୋଜନାରେ ଟଙ୍କା ଜମା ରଖିଲେ, ଉପଯୁକ୍ତ ସୁଧ ସହିତ ପୁରସ୍କାର ପାଇବାର ବ୍ୟବସ୍ଥା ଥିବାରୁ ଅଧିକରୁ ଅଧିକ ଲୋକ ଏହି ଯୋଜନାରେ ଅର୍ଥ ଜମା ରଖିବା ଆବଶ୍ୟକ ।

ପ୍ରଥମ ପୁରସ୍କାର ୪ ଲକ୍ଷ ଟଙ୍କାରୁ ଆୟକର ବାଦ୍ ଯାଇ ୨ ଲକ୍ଷ ୮୦ ହଜାର ଟଙ୍କାର ଚେକ୍ ସୁନ୍ଦରଗଡ଼ ଜିଲ୍ଲାର ମିଳିତ ବିଜେତା ଶ୍ରୀମତୀ ମଂଜୁ ଦେବୀ, ରଥେଶ କୁମାର ସିଂ ଓ ରାଜେଶ କୁମାର ସିଂଙ୍କୁ ଅର୍ଥ ବିଭାଗର ପ୍ରମୁଖ ଶାସନ ସଚିବ ଶ୍ରୀ ସେନାପତି ପ୍ରଦାନ କରିଥିଲେ । ସେହିପରି ଦ୍ୱିତୀୟ ପୁରସ୍କାର ୩ ଲକ୍ଷ ଟଙ୍କାରୁ ଆୟକର ବାଦ୍ ଯାଇ ୨ ଲକ୍ଷ ୧୦ ହଜାର ଟଙ୍କାର ଚେକ୍ ଗଞ୍ଜାମ ଜିଲ୍ଲାର ଯୁଗ୍ମ ବିଜେତା ଶ୍ରୀ ଶରତ କୁମାର ପରିଛା ଓ ଶ୍ରୀମତୀ ଝୁନୁ କୁମାରୀ ପରିଛାଙ୍କୁ ପ୍ରଦାନ କରାଯାଇଛି । ତୃତୀୟ ପୁରସ୍କାର ୨ ଲକ୍ଷ ଟଙ୍କାରୁ ଆୟକର ବାଦ୍ ଯାଇ ଏକ ଲକ୍ଷ ୪୦ ହଜାର ଟଙ୍କାର ଚେକ୍ କଟକ ଜିଲ୍ଲାର ଶ୍ରୀ ଦେବରାଜ ବିଶ୍ୱାଳଙ୍କୁ ପ୍ରଦାନ କରାଯାଇଛି । ଚତୁର୍ଥ ପୁରସ୍କାର ୩ଟି ଦିଆଯିବାର ବ୍ୟବସ୍ଥା ଥିବାରୁ ପ୍ରତ୍ୟେକ ପୁରସ୍କାର ବାବଦ ଏକ ଲକ୍ଷ ଟଙ୍କାରୁ ଆୟକର ବାଦ୍ ଯାଇ ୭୦ ହଜାର ଟଙ୍କା ଲେଖାଏଁ ସୁନ୍ଦରଗଡ଼ ଜିଲ୍ଲାର ଶ୍ରୀଲେଖା ତ୍ରିପାଠୀ ଓ ଦୀପକ କୁମାର ଦ୍ୱିବେଦୀ (ଯୁଗ୍ମ ବିଜେତା), ଖୋର୍ଦ୍ଧା ଜିଲ୍ଲାର ଶ୍ରୀ ମାନଗୋବିନ୍ଦ ବ୍ରହ୍ମା ଓ ଶ୍ରୀମତୀ ଅହଲ୍ୟା ପଣ୍ଡା (ଯୁଗ୍ମ ବିଜେତା) ଏବଂ ମୟୂରଭଂଜ ଜିଲ୍ଲାର ଶ୍ରୀମତୀ ସୁକାନ୍ତି ରଣାଙ୍କୁ ପ୍ରଦାନ କରାଯାଇଛି ।

ଉକ୍ତ ପୁରସ୍କାର ବିତରଣ ଉତ୍ସବରେ ଅର୍ଥ ବିଭାଗର ସ୍ୱତନ୍ତ୍ର ଶାସନ ସଚିବ ତଥା ସ୍ୱଳ୍ପ ସଂଚୟ ନିର୍ଦ୍ଦେଶକ ଶ୍ରୀ ପ୍ରିୟବ୍ରତ ପଟ୍ଟନାୟକ, ସ୍ୱଳ୍ପ ସଂଚୟ ଉପନିର୍ଦ୍ଦେଶକ ଶ୍ରୀ ସୁଧାଂଶୁ ମୋହନ କର ଓ ବିଭିନ୍ନ ଜିଲ୍ଲାର ସ୍ୱଳ୍ପ ସଂଚୟ ଅଧିକାରୀମାନେ ଯୋଗ ଦେଇଥିଲେ ।



# ଅଗ୍ନିମୀଡ଼େ ପୁରୋହିତମ୍

ରମେଶ ନନ୍ଦ

ବ୍ରାହ୍ମଣମାନଙ୍କର ଗୁରୁ ଶ୍ରୀ ଅଗ୍ନିଦେବଙ୍କ ଉଦ୍ଦେଶ୍ୟରେ ବେଦର ପ୍ରଥମ ମନ୍ତ୍ର ବା ସୂକ୍ତ ରଚିତ ହୋଇଛି । ବେଦ ବା ଶ୍ରୁତିରେ ଯେତେ ସୂକ୍ତ ରହିଛି, ସର୍ବାଧିକ 'ଇନ୍ଦ୍ର'ଙ୍କ ଉଦ୍ଦେଶ୍ୟରେ ଓ ତା'ପରେ ଅଗ୍ନିଦେବଙ୍କ ଉପଲକ୍ଷରେ । ସେଇଥିପାଇଁ ଅଗ୍ନିଦେବଙ୍କର ଅନ୍ୟ ନାମ 'ଜାତବେଦ' ଏହା ବେଦରୁ ସ୍ପଷ୍ଟ । ଅଗ୍ନିଦେବ ସୂର୍ଯ୍ୟଙ୍କର ପ୍ରଖର ତେଜରେ ଅଛନ୍ତି - ଅଛନ୍ତି ଦେବ ଦେବ ମହାଦେବଙ୍କ ତ୍ରିନେତ୍ରରେ ଏବଂ ମହାମାୟାଙ୍କର ତ୍ରିନୟନରେ ଧ୍ୱଂସର ପ୍ରତୀକାତ୍ମକ ବ୍ୟବସ୍ଥା ଭାବରେ । ହରଶଙ୍କର ଭଗବାନଙ୍କ ତୃତୀୟ ନେତ୍ରରୁ ନିର୍ଗତ ଅଗ୍ନିରୁ କନ୍ଦର୍ପ ମହାଭାଗ ବିନଷ୍ଟ ହୋଇ ପାଉଁଶ ହୋଇଯାଇଥିଲେ ।

ପୁରାଣ ପୃଷ୍ଠାରେ ଅଗ୍ନିଦେବ ହେଲେ ମୁଖ୍ୟ । ଯଜ୍ଞରେ ଯେଉଁ ଦେବତାଙ୍କ ଉଦ୍ଦେଶ୍ୟରେ ଆହୂତି ହୁଏ, ହବିର୍ଭାଗକୁ ସେଇ ଦେବତାଙ୍କ ନିକଟରେ ପହଞ୍ଚାଇ ଦେବା ଅଗ୍ନିଦେବଙ୍କର କାମ । ସେଇଥିପାଇଁ ଯଜ୍ଞରେ ବିଭିନ୍ନ ଦେବତାଙ୍କ ଉଦ୍ଦେଶ୍ୟରେ ଆହୂତି ପ୍ରଦାନ କରାଯାଇଥାଏ । ବୈଶ୍ୱାନର ଅଗ୍ନି ପ୍ରଥମେ କେବଳ ଘୃତରେ ସନ୍ତୁଷ୍ଟ ଥିଲେ । ପରେ ପରେ ସେ ସର୍ବଭକ୍ଷ ହୁତାଶନରେ ପରିଣତ ହେଲେ । ଯେଉଁ ପାଞ୍ଚଟି ମହାଭୂତରେ ଏ ସଂସାର ଓ ପିଣ୍ଡ ଗଢ଼ା, ସେ ଭିତରେ ଅଗ୍ନି ଏକ ମହାଭୂତ । ଶରୀର ଭିତରେ ସେ ମଧ୍ୟ ଅଛନ୍ତି । ଗୀତାର ୧୫ ଅଧ୍ୟାୟ 'ପୁରୁଷୋତ୍ତମ ଯୋଗ'ରେ ଭଗବାନ କହିଲେ, 'ଅହଂ ବୈଶ୍ୱାନର ଭୂତ୍ୱା ପ୍ରାଣୀନାଂ ଦେହ ମାଶ୍ରିତଃ ।'

ଅଗ୍ନି ରୂପରେ ସେ ଶରୀର ଭିତରେ ବିଦ୍ୟମାନ ଓ ସମସ୍ତ ଖାଦ୍ୟ ଦ୍ରବ୍ୟକୁ 'ପଚାମ୍ୟନ୍ନ ଚତୁର୍ବିଧମ୍' ହଜମ କରିଥାଆନ୍ତି । ଗୀତାର ଦଶମ ଅଧ୍ୟାୟ 'ବିଭୂତି ଯୋଗ'ରେ ଭଗବାନ 'ଅଷ୍ଟବାସୁ'ମାନଙ୍କ ମଧ୍ୟରେ ମୁଁ ଶ୍ରେଷ୍ଠ ବା ରାଜା 'ଅଗ୍ନି' ବୋଲି କହିଛନ୍ତି । 'ସ୍ୱାହା' ଓ 'ସ୍ୱଧା' ତାଙ୍କର ଦୁଇ ଧର୍ମ ପତ୍ନୀ ।

**ଅଗ୍ନି ହେଉଛନ୍ତି 'ବାୟୁ ସଖଃ' - ସେ ବାୟୁଙ୍କର ବନ୍ଧୁ । ତା' ଅର୍ଥ ବାୟୁ ସଂଚାଳିତ ହେଲେ ଅଗ୍ନି ପ୍ରଜ୍ୱଳିତ ହୁଅନ୍ତି ଏବଂ ଅଗ୍ନି ପ୍ରଜ୍ୱଳିତ ହେଲେ ବାୟୁ ପ୍ରବାହ ହୁଏ ।**

ସବୁ କଥାରେ ଅଗ୍ନିସାକ୍ଷୀ । ଅଗ୍ନିଦେବଙ୍କୁ ସାକ୍ଷୀ ରୂପରେ ଗ୍ରହଣ କରାଯାଏ । ତ୍ରେତୟା ଯୁଗରେ ମର୍ଯ୍ୟାଦା ପୁରୁଷୋତ୍ତମ ଶ୍ରୀରାମଚନ୍ଦ୍ର ମହାପ୍ରଭୁ ଅଗ୍ନିଦେବଙ୍କୁ ପ୍ରଜ୍ୱଳିତ କରି ସାକ୍ଷୀ ଭାବରେ ରଖି ସୁଗ୍ରୀବଙ୍କ ସହିତ ମିତ୍ରତା ସ୍ଥାପନ କରିଥିଲେ । ଏଠାରେ ଗ୍ରହଣୀୟ ଯେ ଅଗ୍ନିଦେବ ସର୍ବତ୍ର ବିରାଜିତ ସୂକ୍ଷ୍ମ ଭାବରେ । ପୁରାଣମାନଙ୍କରେ ଅଗ୍ନିଦେବଙ୍କୁ 'ଦୁଇ ମସ୍ତକ' ଏବଂ 'ସପ୍ତଜିହ୍ୱା' ଭାବରେ କଳ୍ପନା କରାଯାଇଛି ଯେ ସେ ଯଜ୍ଞର ପୁରୁଷ । ଅଗ୍ନିଦେବ ରାକ୍ଷସରାଜ ହିରଣ୍ୟକଶ୍ୟପୁଙ୍କୁ ମଧ୍ୟ ବରଦାନ କରିଥିଲେ । ସେ ମେଷାରୂଢ଼ ।

'ମହାଭାରତ'ର କଥାବସ୍ତୁ ଭିତରେ ଅଗ୍ନିଦେବଙ୍କର ଆଖ୍ୟାନ ଏକ ପବିତ୍ର ଆଖ୍ୟାନ । ଶ୍ୱେତରାଜା ଅଗ୍ନିଦେବଙ୍କୁ ଯଜ୍ଞ ମାଧ୍ୟମରେ ସନ୍ତୁଷ୍ଟ କରିବା ନିମିତ୍ତ 'ଘୃତସାଗର'ରୁ ଘୃତ ଆଣି ଐରାବତ ସହାୟତାରେ ଅଗ୍ନିଙ୍କୁ ଯଥେଷ୍ଟ ଘୃତରେ ଆପ୍ୟାୟିତ କଲେ । ଫଳରେ ଅଗ୍ନିଙ୍କର ଅଗ୍ନିମାନ୍ଦ୍ୟ ହେଲା ଓ ସେ ଲୁଦ୍‌ବୁଦ୍ ବ୍ୟାଧିରେ ପୀଡ଼ିତ ହେଲେ । ସେ ବ୍ୟାଧିରୁ ମୁକ୍ତି ହେବା ନିମନ୍ତେ ସ୍ୱର୍ଗର ବୈଦ୍ୟଙ୍କ ଦ୍ୱାରସ୍ଥ ହୋଇ 'ଖାଣ୍ଡବ ବନ'ରେ ଥିବା ଔଷଧୀୟ ବୃକ୍ଷ ଭକ୍ଷଣରେ ମୁକ୍ତ ହେବା ନିମନ୍ତେ ପରାମର୍ଶ ଗ୍ରହଣ କରିଥିଲେ । ଅଗ୍ନିଦେବ ଏଥିନିମିତ୍ତ ଅର୍ଜୁନଙ୍କ ସହାୟତା ଲୋଡ଼ିଥିଲେ । ଇନ୍ଦ୍ରଙ୍କ ଉପବନ ଥିଲା ଖାଣ୍ଡବପ୍ରସ୍ଥ । ମହାଭାରତର ମହାନାୟକ ଶ୍ରୀକୃଷ୍ଣଙ୍କ ପରାମର୍ଶକ୍ରମେ ଅର୍ଜୁନ ଇନ୍ଦ୍ରଙ୍କ ବିରୋଧରେ ଯୁଦ୍ଧକରି ଖାଣ୍ଡବ ବନ ଅଗ୍ନିଙ୍କୁ ଭକ୍ଷଣ କରିବା ନିମନ୍ତେ ପ୍ରସ୍ତୁତ ହୋଇଥିଲେ । ସେଥିପାଇଁ ବରଦାନପୂର୍ବକ ଅଗ୍ନିଦେବ ଅର୍ଜୁନଙ୍କୁ ରଥଟିଏ ଉପହାର ସ୍ୱରୂପ ଓ ଅକ୍ଷୟତୂଣୀର ପ୍ରଦାନ କରିଥିବାର ବର୍ଣ୍ଣନା ରହିଛି । ଅଗ୍ନିଦେବ ଜଣେ ଦିଗପାଳ । ଅଗ୍ନିକୋଣର ସେ ରକ୍ଷକ । ମଣିଷର ଜନ୍ମ ଅଗ୍ନିରୁ ଓ ଶେଷ ମଧ୍ୟ ଅଗ୍ନି କୋଳରେ ।

ଅଗ୍ନି ବିନା ସଭ୍ୟତାର ବିକାଶ ଅସମ୍ଭବ । ଅଗ୍ନିଙ୍କ ସଂରକ୍ଷଣ ଓ ସଦୁପଯୋଗ ବଳରେ ମଣିଷ ସଭ୍ୟତାର ବିକାଶ ସମ୍ଭବ ହୋଇଛି । ମଣିଷ ଅଗ୍ନିଦେବଙ୍କ ନିକଟରେ ଚିର କୃତଜ୍ଞ । ପବିତ୍ର ଅଗ୍ନ୍ୟୁତ୍ସବରେ ଗୁରୁ ଅଗ୍ନିଦେବ ଏବଂ ତାଙ୍କର ଦୁଇ ଧର୍ମପତ୍ନୀ ସ୍ୱାହା ଏବଂ ସ୍ୱଧାଙ୍କପ୍ରତି ଭକ୍ତିପୂତ ପ୍ରଣାମ ।

ଭୀମଟାଙ୍ଗୀ
ଭୁବନେଶ୍ୱର-୨

ଅଗ୍ନି ହେଉଛନ୍ତି 'ବାୟୁ ସଖଃ' - ସେ ବାୟୁଙ୍କର ବନ୍ଧୁ । ତା' ଅର୍ଥ ବାୟୁ ସଂଚାଳିତ ହେଲେ ଅଗ୍ନି ପ୍ରଜ୍ୱଳିତ ହୁଅନ୍ତି ଏବଂ ଅଗ୍ନି ପ୍ରଜ୍ୱଳିତ ହେଲେ ବାୟୁ ପ୍ରବାହ ହୁଏ ।

# ତତ୍କାଳୀନ ପ୍ରଧାନମନ୍ତ୍ରୀ ଚନ୍ଦ୍ରଶେଖରଙ୍କୁ ବିଜୁବାବୁଙ୍କ ଚିଠି

# ଆମ ଘରକୁ ସଜାଡ଼ିବା ପାଇଁ ଆଉ କେତେ ସତର୍କ ଘଣ୍ଟି ଦରକାର ?

ବିଜୁ ପଟ୍ଟନାୟକ

ବିବଦମାନ ବକ୍ତବ୍ୟ ଯୋଗୁଁ ବିଜୁବାବୁ ଦେଶର ରାଜନୈତିକ ଦୃଶ୍ୟପଟ୍ଟରେ ଓ ବୁଦ୍ଧିଜୀବୀ ମହଲରେ ବେଶ୍ କିଛିଟା ହଲଚଲ ସୃଷ୍ଟି କରିପାରନ୍ତି । ରାଜ୍ୟମାନଙ୍କୁ ଅର୍ଥନୈତିକ ସ୍ୱାତନ୍ତ୍ର୍ୟ ମିଳୁ ବୋଲି ସେ ଦାବି କରନ୍ତି । ସମ୍ବାଦପତ୍ରମାନଙ୍କରେ ତାଙ୍କର ବକ୍ତବ୍ୟ ଅନେକ ସମୟରେ କଦର୍ଥ ହୋଇଯାଏ । ସେ ସମୟରେ ସମ୍ବାଦପତ୍ରଗୁଡ଼ିକ ତର୍ଜମା କରିଥିଲେ ଯେ ଓଡ଼ିଶାକୁ ଭାରତରୁ ଅଲଗା କରି ଏକ ସ୍ୱତନ୍ତ୍ର ପ୍ରଦେଶ ଗଠନ କରିବାକୁ ବୋଧେ ବିଜୁବାବୁ ଚାହାନ୍ତି । ଶ୍ରୀ ପଟ୍ଟନାୟକ ଏ ସଂପର୍କରେ ତତ୍କାଳୀନ ପ୍ରଧାନମନ୍ତ୍ରୀ ଶ୍ରୀ ଚନ୍ଦ୍ରଶେଖରଙ୍କୁ ଯେଉଁ ଚିଠି ଲେଖିଥିଲେ, ତାହା ବେଶ୍ ପ୍ରଣିଧାନଯୋଗ୍ୟ । ସେଥିରେ ସେ କହିଥିଲେ ଦେଶର ସ୍ୱାଧୀନତା ପାଇଁ ଯିଏ ସବୁ ତ୍ୟାଗ ସ୍ୱୀକାର କରିଛି, ସେ ଚାହେଁ ଦେଶ କିପରି ମଜବୁତ୍ ହେଉ । ରାଜ୍ୟରେ ମହଜୁଦ୍ ଥିବା ପ୍ରାକୃତିକ ସମ୍ପଦକୁ ବିନିଯୋଗ କରି ଯଦି ସମ୍ପଦ ସୃଷ୍ଟି କରାଯାଏ ଏବଂ ରାଜ୍ୟ ସମୃଦ୍ଧିଶାଳୀ ହୁଏ, ସେଥିରେ ଦେଶର ସମୃଦ୍ଧି ବଢ଼ିବ । ସେଥିପାଇଁ ରାଜ୍ୟକୁ ଆର୍ଥିକ ସ୍ୱାତନ୍ତ୍ର୍ୟ ମିଳୁ, ପୃଥିବୀର ଯେକୌଣସି ରାଷ୍ଟ୍ରରୁ ପୁଞ୍ଜି ଯୋଗାଡ଼ କରି ରାଜ୍ୟର ସମୃଦ୍ଧି ପାଇଁ ବିନିଯୋଗ କରିବାକୁ ରାଜ୍ୟର ସ୍ୱାଧୀନତା ରହୁ, ସବୁ କଥାରେ ଦିଲ୍ଲୀ ସରକାର ଉପରେ ନିର୍ଭର ନ କରି ରାଜ୍ୟଗୁଡ଼ିକୁ ନିଜର ସମସ୍ୟା ସମାଧାନ କରିବାର ସୁଯୋଗ ମିଳୁ । ପୂର୍ବତନ ପ୍ରଧାନମନ୍ତ୍ରୀଙ୍କୁ ଶ୍ରୀ ପଟ୍ଟନାୟକ ଲେଖିଥିବା ଇଂରାଜୀ ଚିଠିର ଅନୁବାଦ- ଏଠାରେ ଦିଆଗଲା

ପ୍ରିୟ ଚନ୍ଦ୍ରଶେଖର,

ମୁଁ ଭୁବନେଶ୍ୱରରୁ ଫେରିଲା ପରେ ଆପଣଙ୍କ ଚିଠି ଏଇ ମାତ୍ର ଗତକାଲି ପାଇଲି । ଖବରକାଗଜରେ ପ୍ରକାଶିତ ପୂର୍ବାପର ସମ୍ପର୍କବିହୀନ ରିପୋର୍ଟ ଭାରତର ପ୍ରଧାନମନ୍ତ୍ରୀ ହିସାବରେ ଆପଣଙ୍କୁ ବିବ୍ରତ କରିଥିବା ଜାଣିଲି । କିନ୍ତୁ ଯେଉଁ ବ୍ୟକ୍ତି ଦେଶକୁ ସ୍ୱାଧୀନ କରିବା ପାଇଁ ନିଜ ଜୀବନକୁ ବାଜି ଲଗାଇଥିଲା ଓ ପଣ୍ଡିତଜୀଙ୍କ ସହିତ ଘନିଷ୍ଠ ଭାବରେ ବହୁ ବର୍ଷ ଧରି କାର୍ଯ୍ୟ କରିଥିଲା ସେ ଯେ ଦେଶ ବିଭାଜନ ପାଇଁ ଯୁକ୍ତି କରିବ ଏହା ଚିନ୍ତା କରିବା ହାସ୍ୟାସ୍ପଦ ।

ଆପଣଙ୍କର ମନେ ଥିବ ଗତ କିଛି ବର୍ଷ ହେବ ଆମ୍ଭମାନଙ୍କର ଅନେକଗୁଡ଼ିଏ ଗୁରୁତ୍ୱପୂର୍ଣ୍ଣ ସମ୍ମିଳନୀ ହାଇଦ୍ରାବାଦର ଶ୍ରୀ ଏନ୍.ଟି. ରାମାରାଓଙ୍କ ଅଧ୍ୟକ୍ଷତାରେ, ଶ୍ରୀନଗରରେ ଫାରୁକ୍ ଅବଦୁଲ୍ଲାଙ୍କ ଅଧ୍ୟକ୍ଷତାରେ ଓ କଲିକତାରେ ଜ୍ୟୋତି ବସୁଙ୍କ ଅଧ୍ୟକ୍ଷତାରେ ଅନୁଷ୍ଠିତ ହୋଇଯାଇଛି (ଗୋଟିଏ ସମ୍ମିଳନୀରେ ଆପଣ ନିଜେ ଉପସ୍ଥିତ ଥିଲେ) । ଏହି ସମ୍ମିଳନୀରେ କେବଳ କେନ୍ଦ୍ର ଓ ରାଜ୍ୟ ସମ୍ପର୍କ ବିଷୟରେ ଆଲୋଚନା କରାଯାଇଥିଲା ଏବଂ ବିଚ୍ଛିନ୍ନତାବାଦୀ ଶକ୍ତିଙ୍କ ପ୍ରଭାବ ଓ ଷଡ଼ଯନ୍ତ୍ର ପଣ୍ଡ କରିବା ସପକ୍ଷରେ ମତାନୈକ୍ୟ ପ୍ରକାଶ ପାଇଥିଲା । ଭାରତର ଐକ୍ୟ ପାଇଁ ଦେଶର ସବୁ ରାଜ୍ୟଗୁଡ଼ିକ ଆର୍ଥିକ ସ୍ୱାଧୀନତା ସହିତ ସ୍ୱାୟତ୍ତତା ଦେବା ସମ୍ପର୍କରେ ଆମେ ସମସ୍ତେ ରାଜି ହୋଇଥିଲେ । ଏହି ପ୍ରସ୍ତାବ ଯଦି ଆନ୍ତରିକତା ସହକାରେ ସକ୍ରିୟ କାର୍ଯ୍ୟକାରୀ ହୋଇଥାନ୍ତା, ତାହାହେଲେ ପଞ୍ଜାବ, କାଶ୍ମୀର ଓ ଅନ୍ୟ ସ୍ଥାନମାନଙ୍କରେ ଦେଖା ଦେଇଥିବା ଆନ୍ଦୋଳନ ଅନେକାଂଶରେ କମ୍ ହୋଇଥାନ୍ତା । କିନ୍ତୁ କେନ୍ଦ୍ରରେ ସମସ୍ତ ପ୍ରକାର କ୍ଷମତା ଠୁଳ କରିବାର ଉଗ୍ର ମନୋଭାବ ଓ ଏଣେ ପରିସ୍ଥିତିକୁ ଆୟତ୍ତାଧୀନ କରିବାର ଅପାରଗତା ଦେଶର କୋଟି କୋଟି ଭୋକିଲା ଲୋକଙ୍କ ମନ ଓ ହୃଦୟର ଅସନ୍ତୋଷ ଓ କ୍ରୋଧକୁ ଜାଗ୍ରତ କରିଛି । ଯାହାହେଲେ ବି ଭାରତର ଲୋକେ ରାଜ୍ୟମାନଙ୍କରେ ରୁହନ୍ତି, ନୂଆଦିଲ୍ଲୀର ନର୍ଥ ବା ସାଉଥ୍ ବ୍ଲକ୍‌ରେ ବା ତତ୍‌ସଂଲଗ୍ନ କୋଠାବାଡ଼ିରେ ନୁହେଁ । ଲୋକମାନଙ୍କ ଭିତରେ କୁହୁକୁଥିବା ଅସନ୍ତୋଷ ଓ କ୍ରୋଧକୁ ଦୂର କରାଯିବା ଏକାନ୍ତ ଆବଶ୍ୟକ ।

ଭାରତର ସଂଘୀୟ ବ୍ୟବସ୍ଥାର ମୂଲ୍ୟ ହାସଲ ପାଇଁ ଏକାଠି ଚିନ୍ତା କରିବାର ବେଳ ଆସିଛି । ଦଶନ୍ଧି ଦଶନ୍ଧି ଧରି ମୁଁ ସଂଘୀୟ ବ୍ୟବସ୍ଥାର ଜଣେ ଦୃଢ଼ ସମର୍ଥକ । ଏଥିରେ କିଛି ବୈଚିତ୍ର୍ୟ ନାହିଁ । ସମ୍ବିଧାନର ପ୍ରଣୋତାମାନେ ମଧ୍ୟ ସଂଘୀୟ ବ୍ୟବସ୍ଥାର ଦୃଢ଼ ସମର୍ଥକ ଥିଲେ । ଭାରତୀୟ ସାଧାରଣତନ୍ତ୍ର ରାଷ୍ଟ୍ରସମୂହର ଏକ ୟୁନିୟନ ଭାବରେ ମଧ୍ୟ ପରିଚିତ । ଏହି ୟୁନିୟନରେ କେନ୍ଦ୍ର ହାତରେ ପ୍ରତିରକ୍ଷା, ବୈଦେଶିକ ବ୍ୟାପାର ଓ ମୁଦ୍ରା ଭଳି ବିଷୟଗୁଡ଼ିକ ଛାଡ଼ିଦେଇ ରାଜ୍ୟମାନେ ନିଜର ଯୋଜନା ଓ ବିକାଶ କଥା ନିଜେ ଚିନ୍ତା କରିବା ଓ ନିଜର ପ୍ରାକୃତିକ ସମ୍ପଦ ବିନିଯୋଗରେ ବିଶ୍ୱ ବଜାରରୁ ଅର୍ଥ ପାଇଁ କଥାବାର୍ତ୍ତା କରିବା ସକାଶେ ସ୍ୱାଧୀନତା ପାଇବା ଦରକାର । ୩୦ ବର୍ଷ ତଳେ ମୁଁ ଯେତେବେଳେ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଥିଲି, ସେତେବେଳେ ଭାରତର ସଂଘୀୟ ବ୍ୟବସ୍ଥା ପ୍ରବର୍ତ୍ତନ କରି ରାଜ୍ୟମାନଙ୍କୁ ଯଥାର୍ଥ କ୍ଷମତା ଦେବାକୁ ମୁଁ ପ୍ରଧାନମନ୍ତ୍ରୀ ପଣ୍ଡିତ ନେହେରୁଙ୍କୁ ପ୍ରସ୍ତାବ ଦେଇଥିଲି ଏବଂ ସେ ଏଥିରେ ସହମତ ହୋଇଥିଲେ । କିନ୍ତୁ କେନ୍ଦ୍ରୀୟ କ୍ଷମତାର ମୋହ ଓ ଅହମିକା ଯୋଗୁଁ ତାହା ସମ୍ଭବ ହୋଇପାରିନଥିଲା । ଫଳରେ ଆଜି ସାରା ଦେଶରେ ବଳିଷ୍ଠ ବିଚ୍ଛିନ୍ନତାବାଦୀ ଶକ୍ତି ପ୍ରଚଣ୍ଡ ଭାବରେ ମୁଣ୍ଡ ଟେକିଛି । ଆମ ଘରକୁ ସଜାଡ଼ିବା ପାଇଁ ଆମକୁ ଆଉ କେତେ ସତର୍କ ଘଣ୍ଟି ଦରକାର ? ପୃଥିବୀର ବିଭିନ୍ନ ବିପ୍ଳବର ଇତିହାସରୁ ଶିକ୍ଷା ଗ୍ରହଣ କରି ଆମ ଲୋକଙ୍କ ସ୍ୱାର୍ଥରକ୍ଷା ପାଇଁ ସମ୍ବିଧାନରେ ଆବଶ୍ୟକୀୟ ସଂଶୋଧନ ଆଣିବାକୁ ହେବ ।

ଏ ବିଷୟରେ ଆଉ କାଳବିଳମ୍ବ କରାଯାଇନପାରେ । ବ୍ୟକ୍ତିଗତ ଶ୍ରଦ୍ଧା ଓ ସମ୍ମାନର ସହ ।

ତା.୦୨.୦୪.୧୯୯୧ ଆପଣଙ୍କର ଅନ୍ତରଙ୍ଗ

ବିଜୁ ପଟ୍ଟନାୟକ

ସୌଜନ୍ୟ : 'ମୋ' ସ୍ୱପ୍ନର ଓଡ଼ିଶା' ସୂଚନା ଓ ଲୋକ ସଂପର୍କ ବିଭାଗ)

---

# ବିଜୁବାବୁଙ୍କ ଜନ୍ମଦିନରେ

ସୁପ୍ରଭା ମିଶ୍ର

ଏକମାତ୍ର ବାବୁ ଥିଲ
ଓଡ଼ିଶା ଭୂଇଁରେ ତୁମେ
ଭାବୁଥିଲ ରାତିଦିନ
ଗଢୁଥିଲ ଦେଇ ମନ
ସବୁଜ ଓଡ଼ିଶା ତୁମ ସ୍ୱପ୍ନ ଆଉ ସ୍ୱପ୍ନ ।
ଶତାବ୍ଦୀର ସୂର୍ଯ୍ୟଙ୍କର ଉତ୍ତରାଧିକାରୀ ରୂପେ
ଅହରହ ଦେଖୁଥିଲ
ଓଡ଼ିଶାର ମତିଗତି
ଭଲମନ୍ଦ ହାନିଲାଭ ଭୂତ ଭବିଷ୍ୟତ
ଅନୁଭବୁ ଥିଲ ପ୍ରାଣେ
ଓଡ଼ିଆର ଭୋକ ଦୁଃଖ
ଦୁର୍ବିପାକ ସାଥେ ସାଥେ ହସ ଓ ଉଲ୍ଲାସ ।
ମନ ମଧ୍ୟେ ସଞ୍ଚି ରଖି ସମୁଦ୍ରେ ସାହସ
ଚାଲୁଥିଲ ବୀରଯୋଦ୍ଧା ନୋହି ନିରଳସ
ସଙ୍କଳ୍ପ ସାଧନା ତୁମ ନାହିଁ ପଟାନ୍ତର
କେଣେ ଗଲ ହେ କଳିଙ୍ଗପୁତ୍ର-
ଦେଖ ଆଜି ଏଇ ମାଟି
ମଥାପିଟି ଖୋଜେ ତୁମ ପାଦଚିହ୍ନ
ଖୋଜେ ତୁମ ସୁକୁମାର ବଳ ବୀର୍ଯ୍ୟ ତେଜ
ପାରାଦ୍ୱୀପ ବନ୍ଦରରେ ଶୁଭେ ତୁମ ଚାଲି
ରାଉରକେଲା ବଜାଏ ସଗର୍ବେ
ତୁମରି ସେଇ ବିଜୟର ତୂରୀ
ହୀରାକୁଦ ହାତଯୋଡ଼ି ପ୍ରଣତି ଜଣାଏ
ଚିନିକଳ ସୂତାକଳ ଝୋଟ ଓ କାଗଜକଳ
ଝୁରି ଝୁରି ମର୍ମେ ମର୍ମେ ତୁମ ଗାଥା ଗାଏ ।
ମାଟି ମୁଠେଇ ଧରିଲେ ତୁମ ବାସ୍ନା ଆସେ
ସେ ମାଟି ଚିପୁଡ଼ି ଦେଲେ (ତୁମ) ଲୁହ ଲହୁ ଝରେ
ଏ ପାଣି ପବନେ ଖେଳେ ଦିନରାତି
ମଥାପିଟି ତୁମ ଇଚ୍ଛା ହେଉ
ହେ ବୀର ପୁରୁଷ ତୁମ ଆଶା ପୂର୍ଣ୍ଣ ହେଉ ।
ଖୋଜୁଛି ଓଡ଼ିଶା ତୁମ ହୃଦୟର ଦ୍ୱାର
ଖୋଜି ଲାଗିଛି ତୁମରି ଅନ୍ତରର ହାହାକାର
ଆଜି ତୁମ ଜନ୍ମଦିନେ-
ଦିଅହେ ଆଶୀଷ ଢାଳି ଓଡ଼ିଶାବାସୀଙ୍କୁ
ଦିଅ ଶୁଭାଶୀଷ ତୁମ ନାତି ନାତୁଣୀଙ୍କୁ
ତୁମ ବଂଶଧର ଆମେ
ରଖୁ ତୁମ ଗଉରବ ପରମ୍ପରାକ୍ରମେ
ଧନ୍ୟ ହେଉ ଏ ଓଡ଼ିଶା ଏଇ ଧରାଧାମେ
କରୁ ପ୍ରଣିପାତ ଆମେ ଆଶୀର୍ବାଦ କର
ତୁମରି ପ୍ରେରଣା ଲଭି
ଏ ଜାତି ହେଉ ଯେପରି ଅକ୍ଷୟ ଅମର ।

ଅଧ୍ୟାପିକା
ଶୈଳବାଳା ମହିଳା କଲେଜ, କଟକ

# ଦୁଃସାହସ ଯାହାଙ୍କର ପ୍ରବୃତ୍ତି

ବୈଜୟନ୍ତ ପଣ୍ଡା

**'କିଛି ହାସଲ କରିବାକୁ ହେଲେ ପ୍ରଥମେ ବିପଦକୁ ବରଣ କରିବା ଦରକାର'** ଏହି ଉକ୍ତିଟି ଅନେକ ପ୍ରତିଭାବାନ୍ ବ୍ୟକ୍ତିଙ୍କୁ ନିଜର ସ୍ୱପ୍ନ ସାକାର କରିବାରେ ବାଧକ ସାଜିଛି । କିନ୍ତୁ ବିଜୟାନନ୍ଦ ପଟ୍ଟନାୟକ (ବିଜୁ ପଟ୍ଟନାୟକ)ଙ୍କଠାରେ ଏହା ପ୍ରଯୁଜ୍ୟ ନୁହେଁ । ଦୁଃସାହସିକ କାର୍ଯ୍ୟ, ଶିଳ୍ପର ପ୍ରଗତି ଏବଂ ସର୍ବୋଚ୍ଚ ସ୍ତରର ରାଜନୀତିରେ ବିଜୁବାବୁ ଯେଉଁ ଦୁଃସାହସିକ ପଦକ୍ଷେପମାନ ନେଇଥିଲେ ତାହା ତାଙ୍କୁ ଅସାଧାରଣ ସାହସର ଏକ ଜ୍ୱଳନ୍ତ ଉଦାହରଣ ଭାବେ ଗଢ଼ି ତୋଳିଛି ।

କିଶୋର ଅବସ୍ଥାରୁ ହିଁ ବିଜୁବାବୁ ଦୁଃସାହସ ଏବଂ ଅଧ୍ୟବସାୟପ୍ରତି ଆକର୍ଷିତ ହୋଇଥିଲେ । ଏହାର ପ୍ରକୃଷ୍ଟ ଉଦାହରଣ ହେଉଛି କିଶୋର ଅବସ୍ଥାରେ କଟକରୁ ପେଶାବର ପର୍ଯ୍ୟନ୍ତ ସେ କରିଥିବା ଦୀର୍ଘ ପଥର ସାଇକେଲ୍ ଯାତ୍ରା । ମୂଳଦୁଆ କ୍ରମେ ଦୃଢ଼ତର ହେଲା ଏବଂ ତାଙ୍କର ଜୀବନ ରୂପାନ୍ତରିତ ହେଲା ଏକ ଦୁଃସାହସିକ ଯାତ୍ରାରେ । ଯୁଦ୍ଧ ବିମାନ ଚାଳକ ଭାବେ ସ୍ୱାଧୀନତା ସଂଗ୍ରାମୀ ଅବା ସାହରିର ଉଦ୍ଧାର କରିବାରେ ତାଙ୍କର ପରାକ୍ରମ ସର୍ବଜନବିଦିତ, ଯାହାକୁ ଦୋହରାଇବାର ଆବଶ୍ୟକତା ମୁଁ ମନେ କରୁନାହିଁ ।

ଏହା ବିଡ଼ମ୍ବନା ମାତ୍ର ଯେ, ସ୍ୱାଧୀନ ଭାରତର ଜଣେ ସଫଳ ଏବଂ ବିଶିଷ୍ଟ ଶିଳ୍ପପତି ଭାବେ ସେ ଯେଉଁ ଗୁରୁତ୍ୱ ପାଇବାକୁ ହକ୍‌ଦାର୍ ତାହା ତାଙ୍କୁ ଆଜି ପର୍ଯ୍ୟନ୍ତ ଦିଆଯାଇନାହିଁ । ପୂର୍ବ ଶତାବ୍ଦୀରେ ଯେତେବେଳେ ଓଡ଼ିଶାର କୌଣସି ରାଜନୈତିକ ଅସ୍ତିତ୍ୱ ନଥିଲା ସେ ସମୟରେ ମଧୁବାବୁଙ୍କ ଅବଦାନକୁ ବାଦ୍ ଦେଲେ ବିଜୁବାବୁ କେବଳ ଆଧୁନିକ ଓଡ଼ିଶାର ପ୍ରଥମ ଶିଳ୍ପପତି ନଥିଲେ ବରଂ ବିଂଶ ଶତାବ୍ଦୀର ମଧ୍ୟଭାଗରେ ବିଶିଷ୍ଟ ଶିଳ୍ପପତି ଭାବେ ଭାରତୀୟମାନଙ୍କର ସେ ଥିଲେ ଗର୍ବ ଓ ଗୌରବ । ଏହା ଅତ୍ୟନ୍ତ ଦୁଃଖର ବିଷୟ ଯେ, ଆଜିର ଓଡ଼ିଆ ଯୁବଗୋଷ୍ଠୀ ବିଜୁବାବୁଙ୍କ ଜୀବନର ସେହି ଗୁରୁତ୍ୱପୂର୍ଣ୍ଣ ଘଟଣା ବିଷୟରେ ଖୁବ୍ କମ୍ ଜାଣିଛନ୍ତି । ଏହା ସୂଚାଇବାରେ ମୁଁ ଖୁବ୍ ଗର୍ବ ଅନୁଭବ କରୁଅଛି ଯେ, ବିଜୁବାବୁଙ୍କ ଶିଳ୍ପ ସାମ୍ରାଜ୍ୟଭାବେ ପରିଚିତ କଳିଙ୍ଗ ଗ୍ରୁପ୍ ସେତେବେଳେ ବିର୍ଲା ଏବଂ ଟାଟା ଗ୍ରୁପ୍ ଭଳି ମାନ୍ୟତା ହାସଲ କରିପାରିଥିଲା ଯେତେବେଳେ ଡାଲମିଆ, ମଫତ୍‌ଲାଲ, ୱାଡ଼ିଆ, ନନ୍ଦା ଇତ୍ୟାଦି ମଧ୍ୟ ଖୁବ୍ ସଫଳତା ହାସଲ କରିଥିଲେ ।

କଳିଙ୍ଗ ଗ୍ରୁପ୍ ନିଜର ବ୍ୟବସାୟ ବହୁ ଦିଗରେ ବ୍ୟାପ୍ତ କରିପାରିଥିଲା, ଯଥା- ବିମାନ ସେବା, ଇସ୍ପାତ ଏବଂ ରେଫ୍ରିଜେରେସନ ଇତ୍ୟାଦି । ଏହିଭଳି ତାଲିକା ବହୁତ ଲମ୍ବା ହେବ । ସେ ଭାରତ ତଥା ପୃଥିବୀର ଯେକୌଣସି ସ୍ଥାନରେ ରହି ତାଙ୍କର ଶିଳ୍ପ ସାମ୍ରାଜ୍ୟ ନିୟନ୍ତ୍ରଣ କରିପାରିଥାନ୍ତେ କାରଣ କୋଲକାତା ଓ ଦିଲ୍ଲୀରେ ତାଙ୍କର ସମ୍ପତ୍ତି ଓ ପ୍ରାସାଦ ରହିଥିଲା ଏବଂ ଇଉରୋପ ତଥା ପୃଥିବୀର କୋଣ ଅନୁକୋଣରେ ଥିବା ଶ୍ରେଷ୍ଠ ଶିଳ୍ପ ଏବଂ ବ୍ୟବସାୟୀ ଗୋଷ୍ଠୀଙ୍କ ସହ ତାଙ୍କର ଉତ୍ତମ ସମ୍ପର୍କ ଥିଲା । କିନ୍ତୁ ସେ ତାଙ୍କର ଶିଳ୍ପ ସାମ୍ରାଜ୍ୟକୁ ନିଜର ପ୍ରିୟ ଓଡ଼ିଶାରେ ହିଁ ପ୍ରତିଷ୍ଠା କରିବାକୁ ପସନ୍ଦ କଲେ । ଶିଳ୍ପ ପ୍ରତିଷ୍ଠାଦ୍ୱାରା ହଜାର ହଜାର ରୋଜଗାର ସୃଷ୍ଟି କରିବା ଯେ କେବଳ ତାଙ୍କର ପ୍ରେରଣାର ଉତ୍ସଥିଲା ତାହା ନୁହେଁ, ଏହା ସହିତ ରାଜ୍ୟର ପୂର୍ବ ଗୌରବକୁ ପୁନର୍ଜୀବିତ କରିବାର ସ୍ୱପ୍ନ ମଧ୍ୟ ସେ ଏହାଦ୍ୱାରା ପୂରଣ କରିବାକୁ ଚାହିଁଥିଲେ ।

ତାଙ୍କର ଶିଳ୍ପ ସାମ୍ରାଜ୍ୟ, ବିଂଶ ଶତାବ୍ଦୀର ଭାରତ ଶିଳ୍ପ ବଳୟରେ ବହୁ ଉଚ୍ଚସ୍ଥାନ ଅଧିକାର କରିଥିଲା ସତ, କିନ୍ତୁ ବିଜୁବାବୁଙ୍କ ଦୂରଦୃଷ୍ଟି ଭବିଷ୍ୟତକୁ ମଧ୍ୟ ଭେଦ କରିପାରିଥିଲା । ଉଦାହରଣ ସ୍ୱରୂପ ସେ ହିଁ କିଛି ହାତ ଗଣତି ବ୍ୟକ୍ତିମାନଙ୍କ ମଧ୍ୟରେ ଥିଲେ, ଯେ କି ପ୍ରଥମେ କୋଇଲା ଗ୍ୟାସଫିକେସନ ଟେକ୍ନୋଲୋଜିର ବିକାଶର ଗବେଷଣା ସପକ୍ଷରେ ଯୁକ୍ତି ବାଢ଼ିଥିଲେ, ଯାହାକୁ ନିକଟରେ କେନ୍ଦ୍ର ସରକାର ଗମ୍ଭୀରତାର ସହ ବିଚାରକୁ ନେଇଛନ୍ତି ।

ସେ ବହୁ ପୂର୍ବରୁ ଜାଣିପାରିଥିଲେ ଯେ, ଓଡ଼ିଶାରେ ପ୍ରଚୁର ଭାବେ ଗଚ୍ଛିତ ଥିବା କୋଇଲାରେ ପାଉଁଶ ଏବଂ ସଲ୍‌ଫର୍‌ର ମାତ୍ରା ଅଧିକ ଥିବାରୁ ଶକ୍ତି ଉତ୍ପାଦନ କ୍ଷମତା ଏବଂ ପରିବେଶ ସୁରକ୍ଷାରେ ପ୍ରତିବନ୍ଧକ ସୃଷ୍ଟି ହୋଇଥାଏ ଏବଂ କୋଲ୍ ଗ୍ୟାସିଫିକେସନଦ୍ୱାରା ତାହା ଦୂର ହୋଇପାରିବ । ଏହି ଟେକ୍ନୋଲୋଜି ଓଡ଼ିଶା ପାଇଁ ଏକ ଆଶୀର୍ବାଦ ସ୍ୱରୂପ ହେବ, ଯେପରି ତୈଳର ଆବିଷ୍କାର ମଧ୍ୟ ପୂର୍ବ ଦେଶୀୟ ରାଷ୍ଟ୍ରମାନଙ୍କ ପାଇଁ ହୋଇପାରିଥିଲା ।

ଶିଳ୍ପପତି ଭାବେ ଅସାଧାରଣ ସଫଳତା ବିଜୁବାବୁଙ୍କ ପାଇଁ ସବୁକିଛି ନଥିଲା ଏହା କେବଳ ଥିଲା ଉଚ୍ଚତର ଲକ୍ଷ୍ୟ ହାସଲ କରିବାର ଏକ ମାଧ୍ୟମ ମାତ୍ର । ତାହା ମଧ୍ୟରେ ଅନ୍ୟତମ ହେଲା ୟୁନେସ୍କୋ ତରଫରୁ ପ୍ରଦତ୍ତ କଳିଙ୍ଗ ଆନ୍ତର୍ଜାତୀୟ ପୁରସ୍କାର, ଯାହାକୁ ବିଜୁବାବୁଙ୍କ କଳିଙ୍ଗ ଶିଳ୍ପ ଗୋଷ୍ଠୀର ଆର୍ଥିକ ସମର୍ଥନରେ ପ୍ରତିଷ୍ଠା କରାଯାଇଥିଲା । ବହୁ ଆନ୍ତର୍ଜାତୀୟ ଖ୍ୟାତିସମ୍ପନ୍ନ ବ୍ୟକ୍ତି ଏହି ପୁରସ୍କାର ଗ୍ରହଣ କରିସାରିଛନ୍ତି । ଏହାଛଡ଼ା ବହୁ ପ୍ରତିଭାବାନ୍ ଓଡ଼ିଆ ଯୁବକଯୁବତୀଙ୍କୁ ମଧ୍ୟ ଶିକ୍ଷାବୃତ୍ତି ଏବଂ ଆର୍ଥିକ ସହାୟତା ଦିଆଯାଇଛି ଫଳରେ ସେମାନେ ଦେଶ ବିଦେଶରେ ଉଚ୍ଚଶିକ୍ଷା ହାସଲ କରିପାରିଛନ୍ତି । ଏସବୁର କେନ୍ଦ୍ରରେ ରହିଛି ଆଧୁନିକ ଓଡ଼ିଆମାନଙ୍କ ମଧ୍ୟରେ ଦୃଢ଼ ବିଶ୍ୱାସ ଭରିଦେବା ପାଇଁ ବିଜୁବାବୁଙ୍କ ଅଦମ୍ୟ ଇଚ୍ଛା, ଯାହାଦ୍ୱାରା ଦୁଇ ଶତାବ୍ଦୀ ଧରି ଭରି ରହିଥିବା ଆତ୍ମସଂଶୟରୁ ସେମାନେ ନିଜକୁ ମୁକ୍ତ କରିପାରିବେ ।

'ନିର୍ଭୀକ' ଶବ୍ଦଟି ସତେ ଯେମିତି ତାଙ୍କଭଳି ବ୍ୟକ୍ତିଙ୍କ ନିମନ୍ତେ ଉଦ୍ଭାବିତ ହୋଇଥିଲା । ଯେତେବେଳେ ସମସ୍ତେ ବିଜୁବାବୁଙ୍କୁ କିମ୍ବଦନ୍ତୀ ଭାବେ ଗ୍ରହଣ କରି ତାଙ୍କର ଆବର୍ତ୍ତମାନରେ ଦୁଃଖ ପ୍ରକାଶ କରୁଛନ୍ତି ଆମେ କିନ୍ତୁ ଶିଳ୍ପୋଦ୍ୟୋଗୀ ବିଜୁବାବୁଙ୍କୁ କେବେବି ଭୁଲିଯିବା ଉଚିତ ହେବ ନାହିଁ ।

ମାନ୍ୟବର ସାଂସଦ, ରାଜ୍ୟସଭା
ଭୋଇ ନଗର, ପ୍ଲଟ ନଂ-୮
ପୋ: ନୟାପଲ୍ଲୀ, ଭୁବନେଶ୍ୱର

---

# ଶହୀଦ ପ୍ରମୋଦ ଶତପଥୀଙ୍କ ବିୟୋଗରେ ମନ୍ତ୍ରୀଙ୍କ ଶୋକ

ଚନ୍ଦକା ସ୍ପେଶାଲ ଅପରେସନ ଗ୍ରୁପ୍ ପ୍ରଶିକ୍ଷଣ କେନ୍ଦ୍ରର ଆସିଷ୍ଟାଣ୍ଟ କମାଣ୍ଡାଣ୍ଟ ତଥା ଯାଜପୁର ଜିଲ୍ଲାର ପ୍ରମୋଦ କୁମାର ଶତପଥୀଙ୍କ ଶହୀଦ ହେବା ଖବର ଶୁଣି ରାଜ୍ୟ ମହିଳା ଓ ଶିଶୁ ବିକାଶ ମନ୍ତ୍ରୀ ଶ୍ରୀମତୀ ପ୍ରମିଳା ମଲ୍ଲିକ ଗଭୀର ମର୍ମାହତ ହୋଇଛନ୍ତି । ସେ ତାଙ୍କ ମର ଶରୀରରେ ପୁଷ୍ପମାଲ୍ୟ ଦେଇ ଗଭୀର ଶ୍ରଦ୍ଧାଞ୍ଜଳି ଅର୍ପଣ କରିଛନ୍ତି ।

ଏକ ଶୋକବାର୍ତ୍ତାରେ ମନ୍ତ୍ରୀ ଶ୍ରୀମତୀ ମଲ୍ଲିକ ଶହୀଦ ଶତପଥୀଙ୍କୁ ଜଣେ ବୀର ଓଡ଼ିଆ ଭାବେ ବର୍ଣ୍ଣନା କରିବା ସହ ନକ୍ସଲ ଦମନ କ୍ଷେତ୍ରରେ ତାଙ୍କର ଅବଦାନ ଚିରସ୍ମରଣୀୟ ହୋଇ ରହିବ ବୋଲି ପ୍ରକାଶ କରିଛନ୍ତି ।

ତାଙ୍କ ଶୋକାକୁଳ ଆତ୍ମୀୟସ୍ୱଜନ ଓ ପରିବାର ସଦସ୍ୟମାନଙ୍କ ପ୍ରତି ଗଭୀର ସମବେଦନା ଜଣାଇବା ସହିତ ତାଙ୍କ ଅମର ଆତ୍ମାର ସଦ୍‌ଗତି କାମନା କରିଛନ୍ତି ।

# ବିଜୁଙ୍କ ଆହ୍ୱାନ - 'ଗାଁକୁ କାମ, ମାଆକୁ ସମ୍ମାନ'

ପବିତ୍ର ମୋହନ ବାରିକ

ଓଡ଼ିଆ ଜାତିର ଗର୍ବ, ଗୌରବ, ସ୍ୱାଭିମାନର ପ୍ରତୀକ ପ୍ରବାଦ ପୁରୁଷ ବିଜୁ ପଟ୍ଟନାୟକଙ୍କ ଅନେକ କାଳଜୟୀ କୃତିତ୍ୱ ମଧ୍ୟରୁ ନାରୀ ଜାଗରଣ ଓ ନାରୀ ଜାତିର ବିକାଶ ପ୍ରତି ଥିଲା ତାଙ୍କର ଅସୀମ ଶ୍ରଦ୍ଧା ଓ ସଭକ୍ତି ସମ୍ମାନ । ତାଙ୍କ ଜୀବଦ୍ଦଶାରେ ମହିଳାମାନଙ୍କ ମହତ୍ତ୍ୱକୁ ଶ୍ରେଷ୍ଠ ସ୍ଥାନ ଦେଇ ଆସିଥିଲେ । ଏକ ସ୍ୱାଭିମାନୀ, ବୀର ଓ ନିର୍ଭୀକ ଓଡ଼ିଆ ଜାତି ଗଠନ ଦିଗରେ ମା'ମାନଙ୍କର ଗୁରୁଦାୟିତ୍ୱ ରହିଛି - ଏହା ବିଜୁ ବାବୁ ଉପଲବ୍ଧି କରିଥିଲେ ।

ବିଜୁବାବୁଙ୍କ ମାତା ଆଶାଲତା ଦେବୀ ସ୍ୱାଧୀନତା ସଂଗ୍ରାମ ପରିପ୍ରେକ୍ଷୀରେ ମୁକ୍ତି ଯୋଦ୍ଧାମାନଙ୍କର ସଂଘର୍ଷପୂର୍ଣ୍ଣ କାହାଣୀ ବର୍ଣ୍ଣନା କରି ତାଙ୍କ ହୃଦୟରେ ଜାତିପ୍ରେମ ଓ ଦେଶଭକ୍ତିର ଭାବଧାରା ସୃଷ୍ଟି କରିପାରିଥିଲେ । ଆଶାଲତା ଦେବୀ ଥିଲେ ବିଜୁବାବୁଙ୍କ ପାଇଁ ପ୍ରେରଣା ଓ ଉତ୍ସାହର ଏକ ପ୍ରବାହମାନ ଧାରା । ଚିଟାଗଞ୍ଜ ଅସ୍ତ୍ରାଗାର ଲୁଣ୍ଠନ କାର୍ଯ୍ୟରେ ବିଜୁବାବଙ୍କ ମାତା ଆଶାଲତା ଦେବୀଙ୍କ ସାନ ଭାଇ ବିଜୟଶ୍ରୀ, ତାଙ୍କ ପୁତୁରା ଦେବ ପ୍ରସାଦ, ଆନନ୍ଦ ପ୍ରସାଦ ମୁଖ୍ୟ ନେତୃତ୍ୱ ନେଇଥିଲେ । ଦେବପ୍ରସାଦ ପୋଲିସ ଗୁଳିରେ କ୍ଷତବିକ୍ଷତ ହୋଇ ଛୁରି ଦ୍ୱାରା ଆତ୍ମହତ୍ୟା କଲେ । ଆନନ୍ଦ ପ୍ରସାଦ ବନ୍ଦୀ ହୋଇ ଜେଲଦଣ୍ଡରେ ଦଣ୍ଡିତ ହୋଇଥିଲେ । ଆଶାଲତା ଦେବୀ ଏମାନଙ୍କ ବୀରତ୍ୱପୂର୍ଣ୍ଣ କାହାଣୀ ବର୍ଣ୍ଣନା କରି ବିଜୁବାବୁଙ୍କ ମନରେ ସ୍ୱାଧୀନତା ସଂଗ୍ରାମ ପ୍ରତି ପ୍ରବଳ ଆଗ୍ରହ ସୃଷ୍ଟି କରିପାରିଥିଲେ । ମାତା ଆଶାଲତା ଦେବୀଙ୍କ ପ୍ରେରଣାରେ ଅନୁପ୍ରାଣିତ ହୋଇ ସେ ପରବର୍ତ୍ତୀ ସମୟରେ ସେ ସ୍ୱାଧୀନତା ସଂଗ୍ରାମରେ ଝାସ ଦେଇଥିଲେ । ପ୍ରଚଣ୍ଡ ବିପ୍ଳବିଣୀ ଶ୍ରୀମତୀ ଅରୁଣା ଆସଫ ଅଲ୍ଲୀଙ୍କୁ ବିଜୁବାବୁ ନିଜ ବିମାନରେ ଆଣି କଟକସ୍ଥିତ ତୁଳସୀପୁରର ବାସଭବନରେ ଗୋପନରେ ରଖିଥିଲେ ।



ଆଦିବାସୀ ମହିଳାଙ୍କ ଗହଣରେ ବିଜୁବାବୁ

ସାଧାରଣତଃ ଗ୍ରାମୀଣ ଓ ପଛୁଆବର୍ଗର ମହିଳାମାନଙ୍କର ଉନ୍ନତି ଆଣିବା ଦିଗରେ ଅନେକ ଯୋଜନା କାର୍ଯ୍ୟକାରୀ କରାଯାଇଅଛି । ମହିଳାମାନଙ୍କୁ ରାଜନୈତିକ ସଶକ୍ତିକରଣ, ଅର୍ଥନୈତିକ ସ୍ୱାବଲମ୍ବୀ ଓ ସାମାଜିକ ସମାନତା ପ୍ରଦାନ କରିବା ଦିଗରେ ଅନେକ ଦୂରଦୃଷ୍ଟିସଂପନ୍ନ ରାଷ୍ଟ୍ରନୀତିଜ୍ଞ, ଦାର୍ଶନିକ ଓ ବିଦ୍ୱାନମାନେ ନିରନ୍ତର ପ୍ରଚେଷ୍ଟା ଅବ୍ୟାହତ ରଖିଛନ୍ତି । ନାରୀଜାତିକୁ ତା'ର ନ୍ୟାଯ୍ୟ ଅଧିକାର ପ୍ରଦାନ ନିମନ୍ତେ ବିଜୁ ପଟ୍ଟନାୟକ ବହୁ ବୈପ୍ଳବିକ ପରିବର୍ତ୍ତନ ଆରମ୍ଭ କରିଥିଲେ । ତାଙ୍କ ମୁଖ୍ୟମନ୍ତ୍ରିତ୍ୱର ଦ୍ୱିତୀୟ ପର୍ଯ୍ୟାୟରେ ନାରୀ ସମାଜର ମଙ୍ଗଳ ନିମନ୍ତେ ଅନେକ ଯୁଗୋପଯୋଗୀ ପଦକ୍ଷେପମାନ ଗ୍ରହଣ କରିଥିଲେ । ବିଜୁବାବୁ ନାରୀ ନିର୍ଯ୍ୟାତନାକୁ ଦୃଢ଼ ହସ୍ତରେ ଦମନ କରିବା ନିମନ୍ତେ କଠୋର ପ୍ରଶାସନିକ ବ୍ୟବସ୍ଥା ପ୍ରଣୟନ କରିବା ସହିତ ନାରୀମାନଙ୍କୁ ପୁରୁଷମାନଙ୍କ ସହିତ ସମକ୍ଷମ କରିବା ପାଇଁ ଉଦ୍ୟମ କରିଥିଲେ ।

## ନାରୀଶିକ୍ଷା

ନାରୀମାନେ ଆତ୍ମନିର୍ଭରଶୀଳା ହୋଇପାରିଲେ ସେମାନଙ୍କର ଅଧିକାଂଶ ସମସ୍ୟାର ସମାଧାନ ହୋଇପାରିବ ବୋଲି ବିଜୁବାବୁ ଆଶାବାଦୀ ଥିଲେ । ଅନ୍ୟାନ୍ୟ ଖ୍ୟାତନାମା ବ୍ୟକ୍ତିତ୍ୱମାନଙ୍କ ପରି ବିଜୁବାବୁ ନାରୀଶିକ୍ଷା ସପକ୍ଷରେ ଥିଲେ । ସାମାଜିକ ଉନ୍ନତି ଓ ସଶକ୍ତିକରଣର ମୌଳିକ ବ୍ୟବସ୍ଥା ନାରୀଶିକ୍ଷା ଉପରେ ନିର୍ଭର କରେ, ଏହା ବିଜୁବାବୁ ଭଲ ଭାବରେ ହୃଦୟଙ୍ଗମ କରିଥିଲେ । ତାଙ୍କ ଶାସନ ସମୟରେ ଓଡ଼ିଶା ମଧ୍ୟରେ ଅନେକଗୁଡ଼ିଏ ବାଳିକା ବିଦ୍ୟାଳୟ, ମହିଳା ମହାବିଦ୍ୟାଳୟ, ମହିଳା ଶିକ୍ଷା ପ୍ରଶିକ୍ଷଣ ମହାବିଦ୍ୟାଳୟ ପ୍ରତିଷ୍ଠା କରିଥିଲେ । ଆଦିବାସୀ ଅଧ୍ୟୁଷିତ ଅଞ୍ଚଳରେ ମଧ୍ୟ ବିଜୁବାବୁ ଅନେକ ବାଳିକା ବିଦ୍ୟାଳୟ

ସ୍ଥାପନରେ ସହାୟତା ଯୋଗାଇ ଦେଇଥିଲେ । ବିଜୁବାବୁ ଅଧିକ ସଂଖ୍ୟାରେ ହରିଜନ ଓ ଆଦିବାସୀ ଛାତ୍ରୀମାନଙ୍କୁ ଛାତ୍ରବୃତ୍ତି ତାଙ୍କ ଶାସନ ସମୟରେ ପ୍ରଦାନ କରିଥିଲେ । ଘରୋଇ ଉଦ୍ୟମରେ ପ୍ରତିଷ୍ଠିତ ଏବଂ ସରକାରୀ ଅନୁଦାନ ପାଇଥିବା ବାଳିକା ଉଚ୍ଚବିଦ୍ୟାଳୟ ଓ ମହିଳା ମହାବିଦ୍ୟାଳୟମାନଙ୍କୁ ବିଭିନ୍ନ କ୍ଷେତ୍ରରେ ଅଧିକ ସହାୟତା ଯୋଗାଇ ଦେଇଥିଲେ । ଛାତ୍ରୀମାନଙ୍କୁ ବିଜ୍ଞାନ, ବୈଷୟିକ ଶିକ୍ଷା, ପ୍ରତିଭା ବିକାଶ ପ୍ରଭୃତି ବିଷୟରେ ଶିକ୍ଷା ଦେବାରେ ବିଜୁବାବୁ ଗୁରୁତ୍ୱ ଦେଉଥିଲେ ।

୧୯୯୪ ମସିହା ମାର୍ଚ୍ଚ ମାସ ୧ ତାରିଖରୁ ୮ ତାରିଖ ପର୍ଯ୍ୟନ୍ତ ଆନ୍ତର୍ଜାତିକ ମହିଳା ସପ୍ତାହ ପାଳନ ଅବସରରେ ରାଜ୍ୟ ସମାଜ ମଙ୍ଗଳ ପରିଷଦଦ୍ୱାରା ମହିଳାମାନଙ୍କୁ ସଶକ୍ତିକରଣ ଓ ସମାନତା ପ୍ରଦାନ ଦିଗରେ ଗଣ ସଚେତନତା କାର୍ଯ୍ୟକ୍ରମମାନ ଆରମ୍ଭ ହୋଇଥିଲା । ମହିଳାମାନଙ୍କ ନିମନ୍ତେ ଆୟୋଜିତ ରାଜ୍ୟସ୍ତରୀୟ ଆଲୋଚନାଚକ୍ରରେ ବିଜୁବାବୁ ନିଜେ ଅଂଶ ଗ୍ରହଣ କରି ମହିଳାମାନଙ୍କ ମଧ୍ୟରେ ବିଜ୍ଞାନ ଓ ବୈଷୟିକ ଜ୍ଞାନ ବୃଦ୍ଧି ନିମନ୍ତେ ଗୁରୁତ୍ୱାରୋପ କରିଥିଲେ । ଓଡ଼ିଶା ସରକାରଙ୍କର ବିଭିନ୍ନ ବିଭାଗରେ ଚାକିରି କରିବା ନିମନ୍ତେ ମହିଳା ପ୍ରାର୍ଥୀମାନଙ୍କର ବୟସସୀମା ପାଞ୍ଚବର୍ଷ ପର୍ଯ୍ୟନ୍ତ ବୃଦ୍ଧି କରିବା ପାଇଁ ବିଜୁବାବୁଙ୍କ ସରକାର ନିଷ୍ପତ୍ତି ଗ୍ରହଣ କରିଥିଲେ ।

୧୯୯୪ ମସିହାରେ ବିଜୁବାବୁ ସବାଇଘାସ ବିକାଶ ନିଗମ ନାମକ ଏକ ସଂସ୍ଥା ସ୍ଥାପନ କରିଥିଲେ । ସବାଇଘାସରୁ ସାଧାରଣତଃ ହରିଜନ ଓ ଆଦିବାସୀ ସଂପ୍ରଦାୟର ମହିଳାମାନେ ବିଭିନ୍ନ ଗୃହୋପକରଣ ପଦାର୍ଥମାନ ପ୍ରସ୍ତୁତ କରନ୍ତି । ସେମାନେ ଏଥିରୁ ମୁଖ୍ୟତଃ ଦଉଡ଼ି ପ୍ରସ୍ତୁତ କରନ୍ତି । ଗରିବ ମହିଳାମାନଙ୍କ ଦ୍ୱାରା ସବାଇଘାସରୁ ପ୍ରସ୍ତୁତ ପଦାର୍ଥମାନ ମଧ୍ୟସ୍ଥି ଓ ଅସାଧୁ ବ୍ୟବସାୟୀମାନେ ଶୋଷଣ କରୁଥିଲେ । ଏହାର ନିରାକରଣ ନିମନ୍ତେ ବିଜୁବାବୁ ସବାଇଘାସ ବିକାଶ ନିଗମ ପ୍ରତିଷ୍ଠା କରିଥିଲେ । ଏହି ନିଗମ ମାଧ୍ୟମରେ ଗରିବ ମହିଳାମାନଙ୍କୁ ଉନ୍ନତ କିସମର ସବାଇଘାସ ବିହନମାନ ଯୋଗାଇ ଦିଆଯାଉଥିଲା ଏବଂ ସେମାନଙ୍କୁ ସମସ୍ତ ବ୍ୟବସାୟୀଙ୍କର ସହଯୋଗ ମଧ୍ୟ ପ୍ରଦାନ କରାଯାଉଥିଲା । ଏହି ନିଗମ ମଧ୍ୟ ମହିଳାମାନଙ୍କର ଦକ୍ଷତା ବୃଦ୍ଧି ପାଇଁ ବୈଷୟିକ ତାଲିମର ବ୍ୟବସ୍ଥା କରିଥିଲେ । ସେମାନଙ୍କ ଦ୍ୱାରା ପ୍ରସ୍ତୁତ ପଦାର୍ଥର ବିକ୍ରୟ ଦାୟିତ୍ୱ ମଧ୍ୟ ଗ୍ରହଣ କରାଯାଇଥିଲା । ଗରିବ ଆଦିବାସୀ-ହରିଜନ ମହିଳାମାନଙ୍କ ସ୍ୱାର୍ଥପ୍ରତି ବିଜୁବାବୁଙ୍କର ଥିବା ଆନ୍ତରିକତାର ଏହା ପ୍ରକୃତ ଉଦାହରଣ । ମହିଳାମାନଙ୍କ ପାଇଁ ବିଭିନ୍ନ ସରକାରୀ ଓ ସରକାରଙ୍କ କର୍ତ୍ତୃତ୍ୱାଧୀନ ନିଗମମାନଙ୍କରେ ଶତକଡ଼ା ୩୦ ଭାଗ ଚାକିରି ସଂରକ୍ଷଣ କରିବାର ଏକ ଐତିହାସିକ ପଦକ୍ଷେପ ବିଜୁବାବୁ ଗ୍ରହଣ କରିଥିଲେ । ଏପର୍ଯ୍ୟନ୍ତ ଅନ୍ୟ କୌଣସି ରାଜ୍ୟ ଏହାକୁ କାର୍ଯ୍ୟକାରୀ କରି ନାହାନ୍ତି । ଅସହାୟ ବିଧବା ପେନ୍‌ସନଧାରୀମାନଙ୍କ ବୟସସୀମା ବିଜୁବାବୁ ଉଚ୍ଛେଦ କରିଥିଲେ ।

ମହିଳା ବିକାଶ ନିଗମ

ବିଜୁବାବୁଙ୍କ ମୁଖ୍ୟମନ୍ତ୍ରିତ୍ୱ ସମୟରେ ଓଡ଼ିଶା ସରକାର ମହିଳାମାନଙ୍କର ସର୍ବାଙ୍ଗୀନ ଉନ୍ନତିପାଇଁ ୧୯୯୧ ମସିହାରେ ମହିଳା ବିକାଶ ନିଗମ ସ୍ଥାପନ କରିଥିଲେ । ଏହା ଏକ ମିଳିତ ସଂଗଠନ । ଭାରତ ସରକାର, ଓଡ଼ିଶା ସରକାର ଓ ସ୍ୱେଚ୍ଛାସେବୀ ଅନୁଷ୍ଠାନମାନଙ୍କର ମିଳିତ ଉଦ୍ୟମରେ ଗଠିତ ମହିଳା ବିକାଶ ନିଗମ ଓଡ଼ିଆ ନାରୀମାନଙ୍କର ସର୍ବବିଧ ମଙ୍ଗଳ ସାଧନ ନିମନ୍ତେ ନିରନ୍ତର ଉଦ୍ୟମ ଅବ୍ୟାହତ ରଖିଅଛି । ମହିଳା ବିକାଶ ନିଗମର ଲକ୍ଷ୍ୟ ଓ ଉଦ୍ଦେଶ୍ୟ ବ୍ୟାପକ । ପ୍ରଥମତଃ ମହିଳାମାନଙ୍କ ପାଇଁ ଉଦ୍ଦିଷ୍ଟ ବିକାଶ ଯୋଜନାକୁ ଜିଲ୍ଲା, ବ୍ଲକ୍, ଗ୍ରାମପଞ୍ଚାୟତ, ଓ ଗ୍ରାମସ୍ତରରୁ ଆରମ୍ଭ କରିବା ଏହି ନିଗମର ଲକ୍ଷ୍ୟ ଅଟେ । ଦ୍ୱିତୀୟତଃ ମହିଳାମାନଙ୍କର ସାମାଜିକ ବିକାଶ ଓ ଅର୍ଥନୈତିକ ଅଭିବୃଦ୍ଧି ଦିଗରେ ମହିଳା ବିକାଶ ନିଗମ କାର୍ଯ୍ୟ କରିଥାଏ । ମହିଳା ଉଦ୍ୟୋଗୀମାନଙ୍କୁ ପ୍ରଶିକ୍ଷଣ ଦେବା ମହିଳା ବିକାଶ ନିଗମର ଅନ୍ୟତମ ଲକ୍ଷ୍ୟ । ମହିଳାମାନଙ୍କଦ୍ୱାରା ପରିଚାଳିତ ଉଦ୍ୟୋଗମାନଙ୍କ ପାଇଁ ମହିଳା ବିକାଶ ନିଗମ ବିଭିନ୍ନ ବ୍ୟାଙ୍କ ଓ ଅର୍ଥ ଲଗାଣକାରୀ ସଂସ୍ଥାଠାରୁ ଋଣ ଆଣି ମହିଳାମାନଙ୍କୁ ସହାୟତା ଯୋଗାଇ ଦେଇଥାଏ । ମହିଳା ବିକାଶ ନିଗମ ଦକ୍ଷତାର ସହିତ ତା'ର କାର୍ଯ୍ୟ ସମାପନ କରି ବିଜୁବାବୁଙ୍କ ସ୍ୱପ୍ନକୁ ସାକାର କରିବାରେ ଅଙ୍ଗୀକାରବଦ୍ଧ । ମହିଳାମାନଙ୍କର ଆର୍ଥିକ ଅଭିବୃଦ୍ଧି ନିମନ୍ତେ ମହିଳା ବିକାଶ ନିଗମ ଅନେକ ଆୟକାରୀ କାର୍ଯ୍ୟପନ୍ଥା ଗ୍ରହଣ କରିଛି । ସାମାଜିକ ସଶକ୍ତିକରଣ, ମହିଳାମାନଙ୍କ ଦ୍ୱାରା ପ୍ରସ୍ତୁତ ପଦାର୍ଥର ବିକ୍ରୟରେ ସହଯୋଗ, ମହିଳା ସ୍ୱୟଂ ସହାୟକ ଗୋଷ୍ଠୀ ଗଠନ ଏବଂ ମହିଳା ଉଦ୍ୟୋଗୀମାନଙ୍କର ସମ୍ମିଳନୀ ଇତ୍ୟାଦି ଆୟୋଜନ କରିବାରେ ମହିଳା ବିକାଶ ନିଗମ ମୁଖ୍ୟ ଭୂମିକା ଗ୍ରହଣ କରିଥାଏ । ମହିଳା ସ୍ୱୟଂ ସହାୟକ ଗୋଷ୍ଠୀକୁ ଆର୍ଥିକ ସହାୟତା ପ୍ରଦାନ କରିବା ଏବଂ ଅନ୍ୟାନ୍ୟ ଅର୍ଥ ଲଗାଣକାରୀ ସଂସ୍ଥାଠାରୁ ସେମାନଙ୍କୁ ସହଜରେ ଋଣ ମଂଜୁର କରାଇବାରେ ମହିଳା ବିକାଶ ନିଗମ ତା'ର ଗୁରୁଦାୟିତ୍ୱ ନିଷ୍ଠାର ସହିତ ସଂପାଦିତ କରିଥାଏ । ବିଭିନ୍ନ ପ୍ରତିଯୋଗିତାମୂଳକ ପରୀକ୍ଷାରେ ମହିଳା ପ୍ରାର୍ଥୀମାନଙ୍କର ଦକ୍ଷତା ବୃଦ୍ଧି ନିମନ୍ତେ ମହିଳା ଶିକ୍ଷା କେନ୍ଦ୍ରମାନ ଖୋଲାଯାଇ ସେମାନଙ୍କୁ ଉପଯୁକ୍ତ ପ୍ରଶିକ୍ଷଣ ଦେବାରେ ବ୍ୟବସ୍ଥା ମହିଳା ବିକାଶ ନିଗମ କାର୍ଯ୍ୟକାରୀ କରିଅଛି ।

**ଶାଶୁ ହାତକଡ଼ି ନଣନ୍ଦ ବେଡ଼ି**

ଯୌତୁକ ପ୍ରଥା ଏକ ସାମାଜିକ କଳଙ୍କ । ଯୌତୁକଜନିତ ବଧୂ ନିର୍ଯ୍ୟାତନା ଏକ ଅମାନବିକ ଓ ଅବିବେକିତା କାର୍ଯ୍ୟ । ଧନ କାଙ୍ଗାଳ, ଅର୍ଥଲୋଭୀମାନେ ଅନେକ ସମୟରେ ନବବଧୂର ପରିବାରଠାରୁ ନିଜ ଇଚ୍ଛା ମୁତାବକ ଯୌତୁକ ନପାଇଲେ ପରିଶେଷରେ ନବବଧୂକୁ ନିର୍ଯ୍ୟାତନା ଦେବାକୁ ଏପରିକି ହତ୍ୟା କରିବାକୁ ପଛଘୁଞ୍ଚା ଦିଅନ୍ତି ନାହିଁ ।

୧୯୯୦ ମସିହା ପୂର୍ବରୁ ଯୌତୁକ ଜନିତ ହତ୍ୟା ଓ ନିର୍ଯ୍ୟାତନା ଥିଲା ସର୍ବାଧିକ । ପ୍ରତିଦିନ ଏଭଳି ଜଘନ୍ୟ ଘଟଣା ସବୁ ସମ୍ବାଦପତ୍ରର ପୃଷ୍ଠାମଣ୍ଡନ କରୁଥିଲା । ଏପରି ଅମାନୁଷିକ ଓ ନିନ୍ଦନୀୟ ଘଟଣା ବିଜୁବାବୁଙ୍କୁ ଗଭୀର ଭାବରେ ମର୍ମାହତ ଓ ବ୍ୟଥିତ କରିଥିଲା । ଏହା ଅପ୍ରିୟସତ୍ୟ ଯୌତୁକଜନିତ ବଧୂହତ୍ୟା ଓ ନିର୍ଯ୍ୟାତନା ପଛରେ ଘରର ସ୍ତ୍ରୀଲୋକମାନଙ୍କର ମୁଖ୍ୟ ଭୂମିକା ଥାଏ । ସାଧାରଣତଃ ଶାଶୁ ଓ ନଣନ୍ଦ ଏହି ଘଟଣାମାନଙ୍କରେ ମୁଖ୍ୟ ଖଳ ନାୟିକା ସାଜିଥାନ୍ତି । ବିଜୁବାବୁ ହୃଦୟଙ୍ଗମ କରିଥିଲେ ଯେ ଘରର ମହିଳାମାନଙ୍କର ବିନା ପ୍ରରୋଚନା ଓ ସମର୍ଥନରେ ଏଭଳି ହୃଦୟହୀନ କାର୍ଯ୍ୟ କେବେ ସମ୍ଭବ ନୁହେଁ । ଶାଶୁ ଓ ନଣନ୍ଦର ମିଳିତ ଆକ୍ରମଣର ଶିକାର ହୋଇଥାଏ ନବବଧୂ । ବଧୂହତ୍ୟା ଓ ନିର୍ଯ୍ୟାତନାର ନିବାରଣ ନିମନ୍ତେ ବିଜୁବାବୁ ଏକ ପ୍ରଶଂସନୀୟ ଓ ଯୁଗାନ୍ତକାରୀ ପଦକ୍ଷେପ ଗ୍ରହଣ କରିଥିଲେ । ଯେଉଁ ପରିବାରରେ ଏଭଳି ଘଟଣାମାନ ଘଟିବ ସେହି ପରିବାରର ଶାଶୁ ଓ ନଣନ୍ଦଙ୍କୁ ପ୍ରଥମେ ଗିରଫ କରିବାକୁ ବିଜୁବାବୁ ପ୍ରଶାସନିକ ନିର୍ଦ୍ଦେଶ ଦେଇଥିଲେ । ଏପରି ଖଳ ପ୍ରକୃତିର ଶାଶୁ ଓ ନଣନ୍ଦଙ୍କୁ ଉପଯୁକ୍ତ ଶିକ୍ଷା ଦେବାପାଇଁ ବିଜୁବାବୁ ଗୋଟିଏ ସ୍ଲୋଗାନ ପ୍ରଣୟନ କରିଥିଲେ - 'ଶାଶୁ ହାତକଡ଼ି ନଣନ୍ଦ ବେଡ଼ି ।' ବିଜୁବାବୁଙ୍କର ଏହି ନିର୍ଦ୍ଦେଶକୁ କାର୍ଯ୍ୟକାରୀ କରି ପୋଲିସବାହିନୀ ବଧୂ ହତ୍ୟାକାରୀ ଶାଶୁ ଓ ନଣନ୍ଦମାନଙ୍କୁ ହାତକଡ଼ି ପକାଇ ରାଜରାସ୍ତାରେ ଚଲାଇ ଚଲାଇ ହାଜତକୁ ନେଉଥିଲେ । ବିଜୁବାବୁ ଥିଲେ ବାସ୍ତବବାଦୀ । ତାଙ୍କର ଏହି ଦୃଢ଼ ପଦକ୍ଷେପ ରାଜ୍ୟବ୍ୟାପି ବିପୁଳ ସମର୍ଥନ ଓ ପ୍ରଶଂସା ମିଳିଥିଲା । ବିଜୁବାବୁଙ୍କର ଏହି ପଦକ୍ଷେପର ଫଳାଫଳ ଥିଲା ସୁଦୂରପ୍ରସାରୀ ଏବଂ ଏହାଫଳରେ ଯୌତୁକଜନିତ ବଧୂହତ୍ୟା ଓ ନିର୍ଯ୍ୟାତନା ଅନେକାଂଶରେ କମି ଯାଇଥିଲା । ଯୌତୁକ ବିରୋଧରେ ସଂଗ୍ରାମ କରିବାକୁ ବିଜୁବାବୁ ରାଜ୍ୟବାସୀଙ୍କୁ ଆହ୍ୱାନ ଜଣାଇଥିଲେ । ସେ ମଧ୍ୟ ଏକ ସରକାରୀ ଆଦେଶନାମା ଜାରି କରିଥିଲେ ଯଦି କୌଣସି ସରକାରୀ କର୍ମଚାରୀ ଯୌତୁକଜନିତ ଅପରାଧରେ ଦୋଷୀ ସାବ୍ୟସ୍ତ ହୁଅନ୍ତି ତାଙ୍କୁ ଚାକିରିରୁ ନିଲମ୍ବିତ କରାଯିବ । ଯୌତୁକ ପ୍ରଥା ବିରୋଧରେ ଜନସଚେତନତା ସୃଷ୍ଟି କରିବା ପାଇଁ ବିଜୁବାବୁ ଅନେକ ପଦକ୍ଷେପ ଗ୍ରହଣ କରିଥିଲେ । ସ୍ୱେଚ୍ଛାସେବୀ ଅନୁଷ୍ଠାମାନଙ୍କ ମାଧ୍ୟମରେ ଯୌତୁକ ପ୍ରଥା ବିରୁଦ୍ଧରେ ପଥପ୍ରାନ୍ତ ନାଟକ ଓ ଜାତୀୟ ଆଲୋଚନାଚକ୍ରମାନ ଆୟୋଜନ କରିବା ପାଇଁ ଆର୍ଥିକ ସହାୟତାର ବ୍ୟବସ୍ଥା ମଧ୍ୟ କରିଥିଲେ । ଯୌତୁକ ପ୍ରଥାର ସମୂଳେ ବିନାଶ ନିମନ୍ତେ ବିଜୁବାବୁଙ୍କର ଆନ୍ତରିକ ଉଦ୍ୟମ ପାଇଁ ନାରୀ ସମାଜ ସର୍ବଦା ଶ୍ରଦ୍ଧାର ସହିତ ତାଙ୍କୁ ସ୍ମରଣ କରୁଥିବ । ବିବାହ ଖର୍ଚ୍ଚ ୨୫ ହଜାର ଟଙ୍କା ମଧ୍ୟରେ ସୀମିତ ରଖିବାକୁ ବିଜୁବାବୁ ପ୍ରଶାସନିକ ନିର୍ଦ୍ଦେଶ ଦେଇଥିଲେ ।

### ଗାଁକୁ କାମ ମାଆକୁ ସମ୍ମାନ

ଓଡ଼ିଶାର ପ୍ରତ୍ୟେକ ଗ୍ରାମର ସର୍ବାଙ୍ଗୀନ ଉନ୍ନତି ଥିଲା ବିଜୁବାବୁଙ୍କର ସ୍ୱପ୍ନ । ଗ୍ରାମାଞ୍ଚଳର ଜନସାଧାରଣଙ୍କ ଅର୍ଥନୈତିକ ବିକାଶ ଉପରେ ବିଜୁବାବୁ ବିଶେଷ ଗୁରୁତ୍ୱ ଆରୋପ କରୁଥିଲେ । ବିଜୁବାବୁଙ୍କ ମୁଖ୍ୟମନ୍ତ୍ରିତ୍ୱ ସମୟରେ ଗ୍ରାମର ଦରିଦ୍ର ଜନସାଧାରଣଙ୍କୁ କାମ ସୃଷ୍ଟି କରିବା ଉଦ୍ଦେଶ୍ୟରେ ଅନେକ ସରକାରୀ ଯୋଜନାମାନ ପ୍ରଣୟନ କରାଯାଇଥିଲା । ଗ୍ରାମାଞ୍ଚଳରେ କୃଷି, ମତ୍ସ୍ୟଚାଷ, ପଶୁପାଳନ ଓ ଅନ୍ୟାନ୍ୟ କୁଟୀରଶିଳ୍ପ ମାଧ୍ୟମରେ ଜନସାଧାରଣଙ୍କ ଅର୍ଥନୈତିକ ଅଭିବୃଦ୍ଧି ନିମନ୍ତେ ବିଜୁବାବୁଙ୍କର ଉଦ୍ୟମ ପ୍ରଶଂସନୀୟ । ଗାଁର ଉନ୍ନତି ସହିତ ମାଆମାନଙ୍କୁ ସମ୍ମାନ ଦେବା ଥିଲା ବିଜୁବାବୁଙ୍କର ଇଚ୍ଛା । ମହିଳାମାନଙ୍କ ହାତରେ ୫୦ ଭାଗ କ୍ଷମତା ଅର୍ପଣ କରିବା ନିମନ୍ତେ ବିଜୁବାବୁ ଦୃଢ଼ଯୁକ୍ତି ଉପସ୍ଥାପିତ କରିଥିଲେ । ସେ ପ୍ରତ୍ୟେକ ମହିଳାଙ୍କୁ ମା'ର ସମ୍ମାନ ଦେଇ ଆସିଥିଲେ । ସେ ଅନୁଭବ କରିଥିଲେ ମହିଳାମାନଙ୍କର ଉନ୍ନତି ନହେବା ପର୍ଯ୍ୟନ୍ତ ଜାତି ତଥା ଦେଶ କେବେ ସମୃଦ୍ଧ ପଥରେ ଅଗ୍ରସର ହୋଇପାରିବ ନାହିଁ । ତେଣୁ ବିଜୁବାବୁ ମହିଳାମାନଙ୍କର, ସାମାଜିକ, ଆର୍ଥିକ ଓ ରାଜନୈତିକ ବିକାଶ ପ୍ରତିବିଶେଷ ଦୃଷ୍ଟି ଦେବାକୁ ପରାମର୍ଶ ଦେଇଥିଲେ । ତେଣୁ ଏଥିପାଇଁ ତାଙ୍କର ଏକ ସ୍ଲୋଗାନ ଥିଲା - 'ଗାଁକୁ କାମ ମାଆକୁ ସମ୍ମାନ' । ବିଜୁବାବୁ ମାଆମାନଙ୍କ ମାଧ୍ୟମରେ ଏକ ସୁସ୍ଥ, ସୁନ୍ଦର, ସ୍ୱାଭିମାନୀ, ସାହସୀ ଓ ବୀରଜାତି ଗଢ଼ିବାରେ ସ୍ୱପ୍ନ ଦେଖିଥିଲେ । ସମ୍ପତ୍ତିରେ ମହିଳାମାନଙ୍କ ଅଧିକାର ରହୁନଥିବାରୁ ଏବଂ ଘରେ ସେମାନଙ୍କ ଅଧିକାରକୁ ସ୍ୱୀକୃତି ମିଳୁନଥିବାରୁ ବିଜୁବାବୁ ସରକାରୀ ଜମି ଲିଜ୍ ଦିଆଯିବା ସମୟରେ ଉଭୟ ସ୍ୱାମୀ ଓ ସ୍ତ୍ରୀଙ୍କ ନାମରେ ପଟ୍ଟା ଦେବା ପାଇଁ ନିର୍ଦ୍ଦେଶ ଦେଇଥିଲେ । ମହିଳାମାନଙ୍କ ସଶକ୍ତିକରଣ ନିମନ୍ତେ ବିଜୁବାବୁ ଅନେକ ବୈପ୍ଳବିକ ପଦକ୍ଷେପ ଗ୍ରହଣ କରିଥିଲେ । ବିଦ୍ୟାଳୟ ଓ ମହାବିଦ୍ୟାଳୟମାନଙ୍କରେ ଛାତ୍ର-ଛାତ୍ରୀଙ୍କର ନାମ ଲେଖା ସମୟରେ ରେଜିଷ୍ଟାରରେ ବାପାଙ୍କ ନାମ ସହିତ ମା'ଙ୍କ ନାମ ଲେଖାଯିବାକୁ ବିଜୁବାବୁ ବାଧ୍ୟତାମୂଳକ କରିଥିଲେ ।

ହାଇସ୍କୁଲ ବୋର୍ଡ଼ ସାର୍ଟିଫିକେଟରେ ମଧ୍ୟ ପିତା ଓ ମା'ଙ୍କ ନାମ ଲେଖାଯିବାକୁ ବିଜୁବାବୁ ନିର୍ଦ୍ଦେଶ ଦେଇଥିଲେ । କେତେକ ଉଚ୍ଚପଦସ୍ଥ ପୋଲିସ କର୍ମଚାରୀଙ୍କ ବିରୋଧ ସତ୍ତ୍ୱେ ବିଜୁବାବୁ ମହିଳାମାନଙ୍କୁ ପୋଲିସ ବିଭାଗରେ ନିଯୁକ୍ତି ଦେବାକୁ ନିର୍ଦ୍ଦେଶ ଦେଇଥିଲେ । ମହିଳାମାନେ ହୋମଗାର୍ଡ଼, ଏସ୍.ଆଇ., ଏ.ଏସ୍.ଆଇ. ପ୍ରଭୃତି ପଦ ପଦବୀରେ ନିଯୁକ୍ତି ପାଇ ନିଜ ଦକ୍ଷତା ଓ ପ୍ରତିଭାର ପରିଚୟ ଦେଇ ବିଜୁବାବୁଙ୍କ ସ୍ୱପ୍ନକୁ ସାକାର କଲେ । ମହିଳାମାନଙ୍କ ବିରୋଧରେ ହେଉଥିବା ବିଭିନ୍ନ ଅପରାଧକୁ ଦମନ କରିବା ନିମନ୍ତେ ବିଜୁବାବୁ ମହିଳା ଥାନା ପ୍ରତିଷ୍ଠା କରିଥିଲେ । ବିଜୁବାବୁଙ୍କ ଉଦ୍ୟମରେ ମହିଳାମାନଙ୍କ ଉଦ୍ଦେଶ୍ୟରେ ମହିଳା ବ୍ୟାଙ୍କ ପ୍ରତିଷ୍ଠା କରାଯାଇଥିଲା । ମହିଳାମାନଙ୍କ ପ୍ରତି ବିଜୁବାବୁଙ୍କର ଯେଉଁ ସମ୍ମାନବୋଧ ଥିଲା ତାହା ହିଁ ତା'ର ଉପଯୁକ୍ତ ପ୍ରମାଣ । ମହିଳାମାନେ ନିଜର ସୁରକ୍ଷା ପାଇଁ ଜୁଡ଼ୋ ଓ କରାଟେ ଶିକ୍ଷାଲାଭ ନିମନ୍ତେ ସେ ପରାମର୍ଶ ଦେଇଥିଲେ ।

ଆମ ରାଜ୍ୟର ପ୍ରାଚୀନ ନାମ କଳିଙ୍ଗ, ଏହି ଶବ୍ଦ ବିଜୁବାବୁଙ୍କର ଅତିପ୍ରିୟ । ପ୍ରାଚୀନ କଳିଙ୍ଗର ନୌବାଣିଜ୍ୟ ପରମ୍ପରାର ସ୍ମୃତିଚାରଣ ଉଦ୍ଦେଶ୍ୟରେ ପାରାଦୀପ ବନ୍ଦରରୁ ବାଲିଦ୍ୱୀପ ପର୍ଯ୍ୟନ୍ତ ଏକ ଐତିହାସିକ ଓ ରୋମାଞ୍ଚକର ନୌଯାତ୍ରାର ଆୟୋଜନ ବିଜୁବାବୁ କରିଥିଲେ । ଐତିହାସିକ ନୌଯାତ୍ରାରେ ଏକ ମାତ୍ର ଓଡ଼ିଆ ଝିଅ ନିବେଦିତା ଆଚାର୍ଯ୍ୟ ଅଂଶ ଗ୍ରହଣ କରିଥିଲେ । ବିଜୁବାବୁଙ୍କ ଉତ୍ସାହ ଓ ପ୍ରେରଣାରେ ଅନୁପ୍ରାଣିତ ହୋଇ ନିବେଦିତା ଆଚାର୍ଯ୍ୟ ଓଡ଼ିଆ ଜାତି ସ୍ୱାଭିମାନର ପ୍ରତୀକ ନୌଯାତ୍ରାରେ ଯୋଗଦାନ କରିଥିଲେ ।

## ଆଦିବାସୀ ମହିଳା ପରାମର୍ଶଦାତା

ବିଜୁବାବୁ ଭାରତର ପ୍ରଥମ ମୁଖ୍ୟମନ୍ତ୍ରୀ ଯିଏକି ପାଞ୍ଚଜଣ ଆଦିବାସୀ ମହିଳାଙ୍କୁ ନିଜର ଅଣ ସରକାରୀ ପରାମର୍ଶଦାତା ରୂପେ ନିଯୁକ୍ତି ଦେଇଥିଲେ । ଏମାନଙ୍କ ମଧ୍ୟରେ ସୁମନୀ ଝୋଡ଼ିଆଣୀ ଓ ଅନ୍ଧାରୀ ନାମକ ଦୁଇଜଣ ଆଦିବାସୀ ମହିଳାଥିଲେ ଅନ୍ୟତମ । ଏକ ସତର ଜଣିଆ ଆଦିବାସୀ ମହିଳା ପ୍ରତିନିଧି ସୁମନୀ ଝୋଡ଼ିଆଣୀଙ୍କ ନେତୃତ୍ୱରେ ଆସି ବିଜୁବାବୁଙ୍କୁ ସଚିବାଳୟସ୍ଥ ତାଙ୍କ କାର୍ଯ୍ୟାଳୟରେ ସାକ୍ଷାତ କରିଥିଲେ । ଆଦିବାସୀ ମହିଳାମାନଙ୍କର ବିଭିନ୍ନ ସମସ୍ୟା ଉପରେ ବିସ୍ତୃତ ଆଲୋଚନା କରାଯାଇଥିଲା । ପରିବାର ଓ ସମାଜର ବିକାଶ ପଥରେ ମୁଖ୍ୟ ପ୍ରତିବନ୍ଧକ ମଦ । ବିଜୁବାବୁ ସେମାନଙ୍କୁ ମଦ ଭାଟି ଭାଙ୍ଗି ଦେବାକୁ ପରାମର୍ଶ ଦେଇଥିଲେ ଓ ପୁରୁଷମାନଙ୍କୁ ମଦ ନ ପିଇବାକୁ ଉପଦେଶ ଦେଇଥିଲେ । ମଦ ଓ ମଦ୍ୟପମାନଙ୍କ ବିରୋଧରେ ଅଭିଯାନ ଆରମ୍ଭ କରିବା ନିମନ୍ତେ ସେହି ଆଦିବାସୀ ମହିଳାମାନେ ବିଜୁବାବୁଙ୍କ ଆହ୍ୱାନକୁ ସମ୍ମାନ ଜଣାଇଥିଲେ । ସେମାନଙ୍କର ସୁରକ୍ଷା ଓ କାର୍ଯ୍ୟ କରିବାର କ୍ଷମତା ପାଇଁ ବିଜୁବାବୁ ସେମାନଙ୍କୁ ପୋଲିସ କ୍ଷମତା ପ୍ରଦାନ କରିଥିଲେ । ପ୍ରତ୍ୟେକଙ୍କୁ ସରକାରଙ୍କ ପକ୍ଷରୁ ପରିଚୟ ପତ୍ର ପ୍ରଦାନ କରାଯାଇଥିଲା । ୨୦୦୧ ମସିହା ଭାରତର ମହିଳା ସଶକ୍ତିକରଣ ବର୍ଷରେ ଏହି ଆଦିବାସୀ ମହିଳାମାନଙ୍କ ମଧ୍ୟରୁ ସୁମନୀ ଝୋଡ଼ିଆଣୀଙ୍କୁ ଜାତୀୟ 'ଶ୍ରୀଶକ୍ତି' ସମ୍ମାନ ପ୍ରଦାନ ନିମନ୍ତେ ଓଡ଼ିଶା ସରକାରଙ୍କ ପକ୍ଷରୁ ତାଙ୍କ ନାମ ସୁପାରିଶ କରାଯାଇଥିଲା ।

## ମହିଳା ସମୃଦ୍ଧି ଯୋଜନା

ମହିଳାମାନଙ୍କର ଉଦ୍ଦେଶ୍ୟରେ ୧୯୯୩ ମସିହାରେ ମହିଳା ସମୃଦ୍ଧି ଯୋଜନା କାର୍ଯ୍ୟକାରୀ ହେଲା । ଗ୍ରାମାଞ୍ଚଳ ମହିଳାମାନଙ୍କୁ ଆତ୍ମନିର୍ଭରଶୀଳ ଓ ସେମାନଙ୍କର ଅର୍ଥନୈତିକ ଅଭିବୃଦ୍ଧି ପାଇଁ ମହିଳା ସମୃଦ୍ଧି ଯୋଜନା କାର୍ଯ୍ୟକାରୀ କରାଯାଇଥିଲା । ଏହି ଯୋଜନାରେ ଯଦି କୌଣସି ମହିଳା ବାର୍ଷିକ ୩୦୦ ଟଙ୍କା ଜମା ରଖିବେ, ତେବେ ସରକାର ଏଥିରେ ଶତକଡ଼ା ୨୧ ଭାଗ ପ୍ରଦାନ କରିବାର ବ୍ୟବସ୍ଥା ରହିଲା ।

## ରାଜନୈତିକ ସଶକ୍ତିକରଣ

ମହିଳାମାନଙ୍କୁ ରାଜନୈତିକ ସଶକ୍ତିକରଣ ଦିଗରେ ବିଜୁବାବୁଙ୍କର ଭୂମିକା ଗୁରୁତ୍ୱପୂର୍ଣ୍ଣ । ଏ ଦିଗରେ ତାଙ୍କର ବିହିତ ପଦକ୍ଷେପ ସମଗ୍ର ଭାରତବର୍ଷରେ ଚାଞ୍ଚଲ୍ୟ ସୃଷ୍ଟି କରିଥିଲା । ବିଜୁବାବୁ ଭାରତବର୍ଷର ମହିଳାମାନଙ୍କୁ ପ୍ରତ୍ୟକ୍ଷ ରାଜନୀତିରେ ଆସିବାକୁ ଉତ୍ସାହିତ ଓ ପ୍ରେରଣା ପ୍ରଦାନ କରିଥିଲେ । ତାଙ୍କର ଦ୍ୱିତୀୟ ଥର ମୁଖ୍ୟମନ୍ତ୍ରିତ୍ୱ ସମୟରେ ପଞ୍ଚାୟତିରାଜ ବ୍ୟବସ୍ଥାରେ ମହିଳାମାନଙ୍କ ପାଇଁ ସେ ୩୩ ଭାଗ ସ୍ଥାନ ସଂରକ୍ଷଣ କରିଥିଲେ । ବିଜୁବାବୁଙ୍କର ଏହି ଐତିହାସିକ ପଦକ୍ଷେପ ମହିଳାମାନଙ୍କ ମଧ୍ୟରେ ରାଜନୈତିକ ଜାଗରଣ ଓ ସଚେତନତା ସୃଷ୍ଟି କରିବାରେ ସାହାଯ୍ୟ କରିଥିଲା ।

> ବିଜୁବାବୁଙ୍କର ନିଷ୍ଠାପର ଉଦ୍ୟମ ପାଇଁ କିଛି ବର୍ଷ ପରେ ଭାରତ ସରକାର ପଞ୍ଚାୟତିରାଜ କ୍ଷେତ୍ରରେ ମହିଳାମାନଙ୍କ ପାଇଁ ଆସନ ସଂରକ୍ଷଣର ବ୍ୟବସ୍ଥା କରିଥିଲେ ।

ମହିଳାମାନଙ୍କ ପ୍ରତି ବିଜୁବାବୁଙ୍କର ଦୃଢ଼ ଆସ୍ଥା ଓ ବିଶ୍ୱାସ ଥିଲା । ବିଜୁବାବୁ ହୃଦୟଙ୍ଗମ କରିଥିଲେ ମା' ଓ ଭଉଣୀମାନେ ନିଜ ପରିବାରକୁ ଉପଯୁକ୍ତ ମାର୍ଗରେ ପରିଚାଳନା କରିପାରୁଥିବାରୁ ଜିଲ୍ଲା ପରିଷଦ, ପଞ୍ଚାୟତ ସମିତି ଓ ଗ୍ରାମପଞ୍ଚାୟତକୁ ନେତୃତ୍ୱ ଦେବାକୁ ସେମାନଙ୍କର କୌଣସି ଅସୁବିଧା ହେବ ନାହିଁ । ପଞ୍ଚାୟତ ବ୍ୟବସ୍ଥାରେ ମହିଳାମାନଙ୍କୁ ଶତକଡ଼ା ୩୩ ଭାଗ ଆସନ ସଂରକ୍ଷଣ କରି ଏକ କୀର୍ତ୍ତି ସ୍ତମ୍ଭ ସ୍ଥାପନ କଲେ, ଏହା ସ୍ୱାଧୀନ ଭାରତର ପ୍ରଥମ ଐତିହାସିକ ଘଟଣା । ପଞ୍ଚାୟତିରାଜ ବ୍ୟବସ୍ଥାରେ ମହିଳାମାନଙ୍କ ପାଇଁ ସଂରକ୍ଷିତ ଶତକଡ଼ା ୩୩ ଭାଗ ଆସନରେ ଆଦିବାସୀ ଓ ହରିଜନ ମହିଳା ପ୍ରାର୍ଥୀମାନେ ମଧ୍ୟ ଅନ୍ତର୍ଭୁକ୍ତ ଅଟନ୍ତି । ପଞ୍ଚାୟତର ଏକ ତୃତୀୟାଂଶ ପଦବୀ ମହିଳାମାନଙ୍କ ପାଇଁ ସଂରକ୍ଷିତ ରହିଲା । ବିଜୁବାବୁଙ୍କର ନିଷ୍ଠାପର ଉଦ୍ୟମ ପାଇଁ କିଛି ବର୍ଷ ପରେ ଭାରତ ସରକାର ପଞ୍ଚାୟତିରାଜ କ୍ଷେତ୍ରରେ ମହିଳାମାନଙ୍କ ପାଇଁ ଆସନ ସଂରକ୍ଷଣର ବ୍ୟବସ୍ଥା କରିଥିଲେ । ଏହା ଥିଲା ବିଜୁବାବୁଙ୍କର ବିଜୟ । ବିଜୁବାବୁଙ୍କ ଉଦ୍ୟମ ଦ୍ୱାରା ଗ୍ରାମାଞ୍ଚଳ ତଥା ସହରାଞ୍ଚଳ ସ୍ୱାୟତ୍ତ ଶାସନରେ ମହିଳା ଲୋକ ପ୍ରତିନିଧି ଆଜି ଗ୍ରାମାଞ୍ଚଳର ବିକାଶ ଦିଗରେ ନିଜକୁ ସମର୍ପିତ କରିଛନ୍ତି । ଏହି ମହିଳା ଲୋକ ପ୍ରତିନିଧିମାନଙ୍କ ଦକ୍ଷତା, କାର୍ଯ୍ୟଶୈଳୀ ବୃଦ୍ଧି ନିମନ୍ତେ ରାଜ୍ୟ ଗ୍ରାମାଞ୍ଚଳ ବିକାଶ ସଂସ୍ଥା, ମହିଳା ବିକାଶ ନିଗମ ଓ ଅନ୍ୟାନ୍ୟ ସ୍ୱେଚ୍ଛାସେବୀ ଅନୁଷ୍ଠାନମାନଙ୍କ ମାଧ୍ୟମରେ ପ୍ରଶିକ୍ଷଣ ଦେବାର ବ୍ୟବସ୍ଥା ବିଜୁବାବୁ କରିଥିଲେ । ନିର୍ବାଚିତ ମହିଳା ଲୋକ ପ୍ରତିନିଧିମାନଙ୍କର ରାଜନୈତିକ ଓ ପ୍ରଶାସନିକ ଜ୍ଞାନ ବୃଦ୍ଧି ଲକ୍ଷ୍ୟରେ ଏଭଳି ବ୍ୟବସ୍ଥା କରିବା ଲାଗି ବିଜୁବାବୁ ନିର୍ଦ୍ଦେଶ ଦେଇଥିଲେ ।

**ରାଜ୍ୟ ମହିଳା ଆୟୋଗ**

ନାରୀମାନଙ୍କର ସ୍ୱାର୍ଥ, ସ୍ୱାଭିମାନ ଓ ଅଧିକାରର ସୁରକ୍ଷା ନିମନ୍ତେ ବିଜୁବାବୁ ଓଡ଼ିଶାରେ ମହିଳା ଆୟୋଗ ପ୍ରତିଷ୍ଠା କଲେ । ନାରୀମାନଙ୍କ ପ୍ରତି ହେଉଥିବା ଯୌତୁକଜନିତ ନିର୍ଯ୍ୟାତନା ଓ ହତ୍ୟା ଏବଂ ପାରିବାରିକ ହିଂସା ପ୍ରଭୃତି ଘଟଣାର ଅଭିଯୋଗ ରଖିବା ମହିଳା ଆୟୋଗର ମୁଖ୍ୟ ଉଦ୍ଦେଶ୍ୟ । ମାନବିକ ଅଧିକାର ସୁରକ୍ଷା ମଞ୍ଚ ସହିତ ଏହି ଆୟୋଗ ସଂପର୍କ ରଖି ମହିଳାମାନଙ୍କ ବିରୋଧରେ ହେଉଥିବା ନିର୍ଯ୍ୟାତନାର ପ୍ରତିରୋଧ କରିବାରେ କାର୍ଯ୍ୟ କରିଥାଏ । ଏହି ଆୟୋଗର ଅନ୍ୟ ଏକ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟ ସ୍ୱେଚ୍ଛାସେବୀ ଅନୁଷ୍ଠାନମାନଙ୍କ ମାଧ୍ୟମରେ ଯୌତୁକ ସମସ୍ୟା ବିରୋଧରେ ସଂଗ୍ରାମ କରିଥିବା ଏବଂ ଅସହାୟ ବିଧବା ଓ ନିର୍ଯ୍ୟାତିତ ମହିଳାମାନଙ୍କୁ ସହାୟତା ଯୋଗାଇ ଦେବା । ଏହି ଆୟାଗ ସରକାରଙ୍କ ସହିତ ଆଲୋଚନା କରି ନାରୀ ଜାତିର ସମସ୍ୟା ସମାଧାନରେ କାର୍ଯ୍ୟ କରିଥାଏ । ବିବାହ ପଞ୍ଜିକରଣକୁ ବାଧ୍ୟତାମୂଳକ ଭାବରେ ଲାଗୁ କରିବାକୁ ମହିଳା ଆୟୋଗ ଗୁରୁତ୍ୱ ଦିଏ । ନାରୀମାନଙ୍କର ସ୍ୱାସ୍ଥ୍ୟର ଯତ୍ନ ଏବଂ ପ୍ରସବକାଳୀନ ସମସ୍ତ ସୁବିଧା ଯୋଗାଇ ଦେବାରେ ଏହି ଆୟୋଗ କାର୍ଯ୍ୟ କରିଥାଏ । ମହିଳାମାନଙ୍କ ଉନ୍ନତି ପାଇଁ ବିଜୁବାବୁ ଗ୍ରହଣ କରିଥିବା ବିଭିନ୍ନ ଯୋଜନାର ସୁଫଳ ବର୍ତ୍ତମାନ ସମାଜରେ ଉପଲବ୍ଧି ହୋଇପାରିଛି । ବର୍ତ୍ତମାନ ଗ୍ରାମାଞ୍ଚଳରେ ମହିଳାମାନେ ସଂଗଠିତ ଓ ସଂଘବଦ୍ଧ ହୋଇ ସ୍ୱୟଂ ସହାୟକ ଗୋଷ୍ଠୀ ମାଧ୍ୟମରେ ପରିବାର ଓ ସମାଜର ଅର୍ଥନୈତିକ ପ୍ରଗତିରେ ସହାୟକ ହୋଇପାରିଛନ୍ତି । ମାଆମାନେ ଏକ ସ୍ୱାଭିମାନୀ ଓଡ଼ିଆ ଜାତି ଗଢ଼ିବେ ଏହାଥିଲା ବିଜୁବାବୁଙ୍କର ସ୍ୱପ୍ନ । ନାରୀ ସମାଜପ୍ରତି ବିଜୁବାବୁଙ୍କର ଅତୁଳନୀୟ ଅବଦାନ ପାଇଁ ସେ ସେମାନଙ୍କ ନିକଟରେ ଚିରସ୍ମରଣୀୟ ଓ ବନ୍ଦନୀୟ ।

ଅଧ୍ୟାପକ, ଇତିହାସ ବିଭାଗ
ସନାତନ ହରିଚନ୍ଦନ ମହାବିଦ୍ୟାଳୟ
ମଦନପୁର, ଖୋର୍ଦ୍ଧା- ୭୫୨୦୫୪

# ସାମ୍ବାଦିକମାନଙ୍କ ସମସ୍ୟାର ସମାଧାନ ପାଇଁ ସୂଚନା ମନ୍ତ୍ରୀଙ୍କ ପ୍ରତିଶ୍ରୁତି

ସାମ୍ବାଦିକ ସଂଗଠନଗୁଡ଼ିକର ଦାବୀ ଓ ଉଚ୍ଚସ୍ତରୀୟ କମିଟିର ସୁପାରିଶକୁ ଆଧାର କରି ସାମ୍ବାଦିକମାନଙ୍କ ସମସ୍ୟାର ସମାଧାନ ପ୍ରକ୍ରିୟା ଆରମ୍ଭ ହୋଇଛି ବୋଲି ସୂଚନା ଓ ଲୋକ ସଂପର୍କ ତଥା କ୍ରୀଡ଼ା ଓ ଯୁବସେବା ମନ୍ତ୍ରୀ ଶ୍ରୀ ଦେବାଶିଷ ନାୟକ କହିଛନ୍ତି । ଖୁବ୍‌ଶୀଘ୍ର ଏ ବାବଦରେ ବିଧିବଦ୍ଧ ବିଜ୍ଞପ୍ତି ପ୍ରକାଶ ପାଇବ ବୋଲି ସେ ସୂଚନା ଦେଇଛନ୍ତି ।

ଗତ ଫେବୃଆରୀ ୧୫ ତାରିଖରେ ଓଡ଼ିଶା ସାମ୍ବାଦିକ ୟୁନିୟନ (ଓ.ୟୁ.ଜେ.) ପକ୍ଷରୁ ଏକ ପ୍ରତିନିଧି ଦଳ ମନ୍ତ୍ରୀ ଶ୍ରୀ ନାୟକଙ୍କୁ ତାଙ୍କ ବିଧାନସଭା ପ୍ରକୋଷ୍ଠରେ ସାକ୍ଷାତ କରି ସାମ୍ବାଦିକମାନଙ୍କର ଦାବୀ ସଂପର୍କିତ ସ୍ମାରକପତ୍ର ପ୍ରଦାନ କରି ଆଲୋଚନା କରିଥିଲେ । ଅଧିସ୍ୱୀକୃତି ନିୟମର ପରିବର୍ତ୍ତନ, ବିଭିନ୍ନ କମିଟିରେ ସାମ୍ବାଦିକ ସଂଗଠନଗୁଡ଼ିକୁ ଉପଯୁକ୍ତ ପ୍ରତିନିଧିତ୍ୱ ପ୍ରଦାନ, ସାମ୍ବାଦିକ ଚିହ୍ନଟ ପ୍ରକ୍ରିୟାକୁ ତ୍ୱରାନ୍ୱିତ କରିବା ଓ ପେନ୍‌ସନ୍ ଯୋଜନାର ବିଧିବଦ୍ଧ ରୂପରେଖ ଚୂଡ଼ାନ୍ତ କରିବା ଆଦି ସଂପର୍କରେ ପ୍ରତିନିଧି ଦଳ ବିସ୍ତୃତ ଆଲୋଚନା କରି ତୁରନ୍ତ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିବାକୁ ଦାବୀ ଜଣାଇଥିଲେ ।

ସାମ୍ବାଦିକମାନଙ୍କ ସମସ୍ୟା ପ୍ରତି ସରକାର ସଂପୂର୍ଣ୍ଣ ସଚେତନ ରହିଛନ୍ତି ଓ ଏ ଦିଗରେ ଆବଶ୍ୟକ କାର୍ଯ୍ୟାନୁଷ୍ଠାନକୁ ତ୍ୱରାନ୍ୱିତ କରାଯାଉଛି ବୋଲି ମନ୍ତ୍ରୀ ଶ୍ରୀ ନାୟକ ସୂଚନା ଦେଇ ସରକାର ଘୋଷଣା କରିବାକୁ ଯାଉଥିବା ନିଷ୍ପତ୍ତିରେ ସଂଘର ଦାବୀ ପ୍ରତି ଉପଯୁକ୍ତ ଗୁରୁତ୍ୱ ଓ ମାନ୍ୟତା ପ୍ରଦାନ କରାଯିବ ବୋଲି କହିଥିଲେ ।

ଜାତୀୟ ସାମ୍ବାଦିକ ୟୁନିଅନର ଉପସଭାପତି ଶ୍ରୀ ପ୍ରସନ୍ନ ମହାନ୍ତିଙ୍କ ନେତୃତ୍ୱରେ ଓ.ୟୁ.ଜେ.ର ଅନ୍ୟାନ୍ୟ କର୍ମକର୍ତ୍ତା ଯୋଗ ଦେଇଥିଲେ ।

# ବିଜୁବାବୁ ଓ ଏକବିଂଶ ଶତାବ୍ଦୀର ନାରୀ

ଦୀନକୃଷ୍ଣ ଯୋଷୀ

ଏକବିଂଶ ଶତାବ୍ଦୀକୁ 'ନାରୀ ଶତାବ୍ଦୀ' ବୋଲି ବିଭିନ୍ନ ଧାର୍ମିକ ସଂସ୍ଥା ତଥା ଭବିଷ୍ୟତ ଦ୍ରଷ୍ଟାମାନେ ଘୋଷଣା କରିଆସୁଛନ୍ତି । କିନ୍ତୁ ତାହାକୁ ସଫଳ ରୂପାୟନ କରିବାରେ ଯେଉଁମାନଙ୍କର ଅବଦାନ ରହିଛି, ସେମାନଙ୍କ ମଧ୍ୟରେ ବିଜୁବାବୁଙ୍କ ଅବଦାନ ଅବିସ୍ମରଣୀୟ । ପଞ୍ଚାୟତିରାଜ ବ୍ୟବସ୍ଥାରେ କ୍ଷମତାର ବିକେନ୍ଦ୍ରୀକରଣ ହେବା ସମସ୍ତେ ଜାଣନ୍ତି । କ୍ଷମତାକୁ ତଳସ୍ତରରେ ପହଞ୍ଚାଇବା ପାଇଁ ଏହି ବ୍ୟବସ୍ଥାର ଆରମ୍ଭ କରାଯାଇଥିଲା । ସମସ୍ତଙ୍କୁ ନ୍ୟାୟ ତଥା ବୃକ୍ଷରୋପଣ, କୁଟୀର ଶିଳ୍ପର ବିକାଶ ଇତ୍ୟାଦି ବିଭିନ୍ନ କାର୍ଯ୍ୟକ୍ରମ ମାଧ୍ୟମରେ ପଞ୍ଚାୟତିରାଜ ବ୍ୟବସ୍ଥାକୁ ସମାଜର ଏକ ଅଭିନ୍ନ ଅଙ୍ଗରୂପରେ ସ୍ଥାପନ କରିବା ବିଜୁବାବୁଙ୍କ ଉଦ୍ଦେଶ୍ୟ ଥିଲା । ମୁଖ୍ୟମନ୍ତ୍ରୀ ଥିବା ସମୟରେ ସେ କହିଥିଲେ ସରପଞ୍ଚ ହେଉଛି ଗ୍ରାମପଞ୍ଚାୟତର ମୁଖ୍ୟମନ୍ତ୍ରୀ । ଏହି ବ୍ୟବସ୍ଥାରେ ପ୍ରତିଯୋଗିତାମୂଳକ ମନୋଭାବ ସୃଷ୍ଟି କରିବା ପାଇଁ ଜିଲ୍ଲାସ୍ତରରେ ଆକର୍ଷଣୀୟ ପୁରସ୍କାର ବ୍ୟବସ୍ଥା କରାଯାଇଛି ।

ଦ୍ୱିତୀୟଥର ମୁଖ୍ୟମନ୍ତ୍ରୀ ଆସନରେ ରହିବାପରେ ବିଜୁବାବୁ ପଞ୍ଚାୟତିରାଜ ବ୍ୟବସ୍ଥା ଉପରେ ଯଥେଷ୍ଟ ଗୁରୁତ୍ୱ ପ୍ରଦାନ କରିଥିଲେ । ପଞ୍ଚାୟତିରାଜ ମାଧ୍ୟମରେ ଗ୍ରାମାଞ୍ଚଳର ବିକାଶ ନିମନ୍ତେ ବିଭିନ୍ନ ପ୍ରକାରର ଆଇନ ପ୍ରଣୟନ କରାଗଲା । ଶିକ୍ଷା, ସ୍ୱାସ୍ଥ୍ୟ, ଗମନାଗମନ, ବନୀକରଣ ଇତ୍ୟାଦି ଉପରେ ଯଥେଷ୍ଟ ଧ୍ୟାନ ଦିଆଯାଇଥିଲା । ମହିଳାମାନଙ୍କ ବିକାଶ ଉପରେ ଗୁରୁତର ସହିତ ବିଚାର କରି ନିର୍ବାଚନରେ ସ୍ଥାନ ସଂରକ୍ଷଣ କରାଯାଇଛି । ନିର୍ବାଚନରେ ଏହି ପ୍ରକ୍ରିୟାରେ ପ୍ରାୟ ୨୭ ହଜାର ମହିଳା ନିର୍ବାଚିତ ହୋଇ ପ୍ରତିନିଧିତ୍ୱ କରିବାର ସୌଭାଗ୍ୟ ଲାଭ କରିଥିଲେ । ପୁଣି ଅନ୍ୟ ଏକ ନିୟମ ଅନୁସାରେ ଯେଉଁ ପଞ୍ଚାୟତରେ ପୁରୁଷ ସରପଞ୍ଚ ନିର୍ବାଚିତ ହୋଇଥିବେ ସେଠାରେ ମହିଳା ନାୟବ ସରପଞ୍ଚ ଓ ଯେଉଁଠାରେ ପୁରୁଷ ଚେୟାରମ୍ୟାନ ହୋଇଥିବେ ସେଠାରେ ମହିଳା ଭାଇସ୍ ଚେୟାରମ୍ୟାନ ରହିବାର ବ୍ୟବସ୍ଥା କରାଗଲା ।

ମହିଳାମାନଙ୍କର କେତେକ ନାରୀ ସୁଲଭ ଗୁଣ ଯଥା- ସମ୍ବେଦନଶୀଳତା, ସହୃଦୟତା, ଅନ୍ୟକୁ ପ୍ରବର୍ତ୍ତାଇବା ଇତ୍ୟାଦି ଗୁଣଗୁଡ଼ିକର ଅନୁଶୀଳନ କରି ତାକୁ ପଞ୍ଚାୟତିରାଜ ବ୍ୟବସ୍ଥାରେ ଉପଯୋଗ କରିବା ନିମନ୍ତେ ଶିକ୍ଷା, ସ୍ୱାସ୍ଥ୍ୟ, ବନୀକରଣ ଓ ପୁଷ୍ଟିକର



ଖାଦ୍ୟଯୋଗାଣ କ୍ଷେତ୍ରରେ ମହିଳାମାନଙ୍କୁ ଅଗ୍ରାଧିକାର ଦେବା ଉପରେ ବିଜୁବାବୁ ନିର୍ଦ୍ଦେଶ ଦେଇଥିଲେ । ଗ୍ରାମପଞ୍ଚାୟତମାନଙ୍କରେ ବର୍ଷସାରା ଏହିସବୁ କାର୍ଯ୍ୟ ସଂପନ୍ନ କରାଯାଉଥିବାରୁ ମହିଳାମାନଙ୍କୁ ଏହି ଦାୟିତ୍ୱରେ ରଖିବାପାଇଁ ବିଜୁବାବୁଙ୍କର ନିର୍ଦ୍ଦେଶ ଥିଲା । ପୁରୁଷପ୍ରଧାନ ସମାଜରେ ନାରୀମାନଙ୍କର ସମସ୍ୟାପ୍ରତି ବିଶେଷ ଧ୍ୟାନ ଦିଆଯାଇ ନଥିବାରୁ ସେମାନଙ୍କର ବିଭିନ୍ନ କ୍ଷେତ୍ରରେ ଅବହେଳିତ ହୋଇଥିବାର ଅନୁମାନ କରି ନେତ୍ରୀ ଗଢ଼ିବାର ଉଦ୍ୟମ କରିଥିଲେ ବିଜୁବାବୁ । ମହିଳା କମିଶନ ମାଧ୍ୟମରେ ସେମାନଙ୍କର ସମସ୍ୟାକୁ ସମାଧାନ କରିବା ତଥା ଶୋଷଣ ଓ ଅତ୍ୟାଚାରରୁ ମୁକ୍ତିଦେବାର ପ୍ରଚେଷ୍ଟା ବାସ୍ତବରେ ଯୁଗାନ୍ତକାରୀ ପଦକ୍ଷେପ । ରାଜ୍ୟ ମହିଳା କମିଶନ ମାଧ୍ୟମରେ ଅନେକ ମହିଳା ଉପକୃତ ହୋଇଥିବାର ପ୍ରମାଣ ରହିଛି । ପୁଣି ପଞ୍ଚାୟତିରାଜ ବ୍ୟବସ୍ଥାରେ ଷ୍ଟାଣ୍ଡିଂ କମିଟିମାନଙ୍କରେ ମହିଳାମାନଙ୍କର ନେତୃତ୍ୱ ଉପରେ ଗୁରୁତ୍ୱାରୋପ କରାଯାଇଛି ।

ନାରୀଶିକ୍ଷା ଉପରେ ମଧ୍ୟ ବିଜୁବାବୁଙ୍କର ଅବଦାନ କମ୍ ନୁହେଁ । ବାଳିକା ବିଦ୍ୟାଳୟମାନଙ୍କୁ ସ୍ୱତନ୍ତ୍ର ଅନୁଦାନ ଦେବା, ଫି' ଛାଡ଼ କରିବା ଭଳି ବ୍ୟବସ୍ଥା ସହିତ ଅନ୍ୟାନ୍ୟ ସୁବିଧା ସୁଯୋଗ ମଧ୍ୟ ତାଙ୍କ ସମୟରେ କାର୍ଯ୍ୟକାରୀ ହୋଇଥିଲା । ମହିଳା ମହାବିଦ୍ୟାଳୟମାନଙ୍କୁ ସରକାରୀ ଘୋଷଣା ମଧ୍ୟ ତାଙ୍କର ନାରୀଶିକ୍ଷା ଦିଗରେ ଆଗ୍ରହ ଥିବାର ପ୍ରମାଣ ମିଳେ । ହରିଜନ ଆଦିବାସୀ ବାଳିକାମାନଙ୍କ ପାଇଁ ଆବାସିକ ବିଦ୍ୟାଳୟ ଓ କନ୍ୟାଶ୍ରମ ସ୍ଥାପନ ପାଇଁ ଅନେକ ପ୍ରୋତ୍ସାହନ ଦେଇଥିଲେ ।

ମହିଳା ବିକାଶ ନିଗମ, ମହିଳା ବ୍ୟାଙ୍କ ତଥା ବିଧବା ପେନ୍ସନରମାନଙ୍କ ବୟସସୀମା ଉଚ୍ଛେଦ ମଧ୍ଯ ତାଙ୍କ ପ୍ରଚେଷ୍ଟାରେ କାର୍ଯ୍ୟକାରୀ ହୋଇଥିଲା । ସରକାରୀ ଚାକିରି କ୍ଷେତ୍ରରେ ମହିଳାମାନଙ୍କୁ ଶତକଡ଼ା ୩୦ ସ୍ଥାନ ସଂରକ୍ଷଣ ବ୍ୟବସ୍ଥା କରାଯାଇଥିଲା ।

ନାରୀମାନଙ୍କୁ ପ୍ରତ୍ୟେକ କ୍ଷେତ୍ରରେ ପୁରୁଷ ସହିତ ସମକକ୍ଷ କରାଇବା ପାଇଁ ତାଙ୍କର ଆପ୍ରାଣ ଉଦ୍ୟମ ରହିଥିବାର ଉପରୋକ୍ତ ଉଦାହରଣମାନଙ୍କରୁ ସ୍ପଷ୍ଟ ଜଣାପଡ଼େ । ଅବଶ୍ୟ କେତେକ କ୍ଷେତ୍ରରେ ତାଙ୍କର ଅତିଶୟୋକ୍ତି ପାଇଁ କେତେକ ବିପକ୍ଷବାଦୀ ଅନେକ କଟୁ ମନ୍ତବ୍ୟ ପ୍ରଦାନ କରିଛନ୍ତି । ଏପରି ଏକ ଉଦାହରଣ ହେଉଛି - ନାରୀମାନଙ୍କୁ ଅତ୍ୟାଚାର କରୁଥିବା ତଥା ଧର୍ଷଣରେ ସାମିଲ ଥିବା ବ୍ୟକ୍ତିର ଲିଙ୍ଗ ଛେଦନ ଘୋଷଣା ତାଙ୍କଦ୍ୱାରା କରାଯାଇଥିଲା । କିନ୍ତୁ ତାଙ୍କର ଉଦ୍ଦେଶ୍ୟ ଥିଲା ଯେ ଏପରି ଅତ୍ୟାଚାରରେ ସାମିଲ ଥିବା ବ୍ୟକ୍ତିକୁ କଠିନ ଶାସ୍ତି ଦେବା ଦରକାର । ୧୯୯୧ ମସିହାର ଜିଲ୍ଲା ପରିଷଦ ଆଇନ ଓ ୧୯୯୨ ମସିହାର ପଞ୍ଚାୟତ ସମିତି ଆଇନ ନାରୀମାନଙ୍କର ଶାସନକ୍ଷେତ୍ରରେ ପ୍ରବେଶର ଅୟମାରମ୍ଭ ହୋଇ ବର୍ତ୍ତମାନ ବିଭିନ୍ନ କ୍ଷେତ୍ରରେ ସ୍ୱାଧୀନ ଭାବରେ ଜୀବିକା ଅର୍ଜନର ପଥ ପରିଷ୍କାର ହୋଇସାରିଛି । ଆଜିର ନାରୀ ଘରକୋଣରେ ନିଜର ଅର୍ଦ୍ଧାଧିକ ଜୀବନ ବିତାଇବାକୁ ଘୃଣ୍ୟ ମନେକରୁଛି । ସେ ପ୍ରତ୍ୟେକ କ୍ଷେତ୍ରରେ ପୁରୁଷ ସହିତ କାନ୍ଧକୁ କାନ୍ଧ ମିଳାଇ ଅଗ୍ରସର ହେବା ପଛରେ ଓଡ଼ିଶା ମାଟିର 'ଭୂମିପୁତ୍ର' ଆଖ୍ୟା ଅର୍ଜନ କରିଥିବା ମହାନ୍ ନାୟକ ବିଜୁବାବୁଙ୍କର ପ୍ରଚେଷ୍ଟା ଯେ ନିଶ୍ଚିତ ଭାବରେ ସହାୟକ ହୋଇଛି ତାହା ନିଃସନ୍ଦେହରେ କୁହାଯାଇପାରେ । ଏହି ମହାନ୍ ନାୟକଙ୍କର ଆତ୍ମା ଅମର ହୋଇ ଓଡ଼ିଶାର ନାରୀ ସମାଜକୁ ପଥ ପ୍ରଦର୍ଶନ କରୁଥାଉ । ଅପ୍ରେଲ ୧୭, ୧୯୯୭ ମସିହାରେ ସେ ଇହଧାମ ତ୍ୟାଗ କରିଥିଲେ ମଧ୍ଯ ପ୍ରତ୍ୟେକ ଓଡ଼ିଶାବାସୀଙ୍କ ହୃଦୟରେ ଅଦ୍ୟାବଧି ଜୀବିତ ।

ରିସର୍ଚ୍ଚ ସ୍କଲାର
ଇତିହାସ ପି.ଜି. ବିଭାଗ
ସମ୍ବଲପୁର ବିଶ୍ୱବିଦ୍ୟାଳୟ, ସମ୍ବଲପୁର



ବରଗଡ଼ ଜିଲ୍ଲାର ଭେଡେନ୍‌ଠାରେ ରାଜ୍ୟ ସରକାରଙ୍କଠାରୁ ଜମିପଟ୍ଟା ପାଇଥିବା ଜଣେ ଚାଷୀ

ସୌଜନ୍ୟ : ବରଗଡ଼ ଜିଲ୍ଲାପାଳଙ୍କ କାର୍ଯ୍ୟାଳୟ

# ପଞ୍ଚାୟତିରାଜ ବ୍ୟବସ୍ଥା - ଏକ ଦୃଷ୍ଟିପାତ

ନିର୍ମଳା କୁମାରୀ ମହାପାତ୍ର

**ସ୍ୱା**ଧୀନ ଭାରତ । ସ୍ୱାଧୀନ-ଗଣତନ୍ତ୍ର-ସାଧାରଣତନ୍ତ୍ର-ସମାଜବାଦୀ ରାଷ୍ଟ୍ର ଭାରତବର୍ଷ । ବିକାଶୋନ୍ମୁଖୀ ଭାରତ ପାଇଁ ଯେତେଗୁଡ଼ିଏ ଜନହିତକାରୀ ଓ ପ୍ରଗତିଶୀଳ ବ୍ୟବସ୍ଥା କରାଯାଇଛି / କରାଯାଉଛି, ତନ୍ମଧ୍ୟରୁ ପଞ୍ଚାୟତିରାଜ ବ୍ୟବସ୍ଥା ଲୋକମାନଙ୍କ ମଧ୍ୟରେ ଅଧିକ ଉଦ୍ଦୀପନା, ଉତ୍ସାହ ଓ ପ୍ରେରଣା ସୃଷ୍ଟି କରିପାରିଛି । ଏଇ ବ୍ୟବସ୍ଥା ହେଉଛି ଏକ ମାଧ୍ୟମ ଯାହାଦ୍ୱାରା ଦେଶର ଗରିବତମ ବ୍ୟକ୍ତି ପାଖରେ ବିକାଶର ଯୋଜନା ପହଞ୍ଚି ପାରିବାର ସୁଯୋଗ ରହିଅଛି । ୧୯୪୮-୪୯ ମସିହାରୁ ଏହି ବ୍ୟବସ୍ଥାର ଆରମ୍ଭ ହୋଇଅଛି । ୧୯୯୩ ମସିହାରେ ସମ୍ବିଧାନର ୭୩ତମ ସାମ୍ବିଧାନିକ ସଂଶୋଧନ ଆଇନ ଏପ୍ରିଲ ୨୪ ତାରିଖରୁ ଓ ୭୪ତମ ସଂଶୋଧନ ଆଇନ ଜୁନ୍ ୦୧ ତାରିଖରୁ କାର୍ଯ୍ୟକାରୀ ହେଲା । ଦେଶରେ ପ୍ରୋକ୍ତ ଯୁଗାନ୍ତକାରୀ ସଂଶୋଧନ ଆଇନ ପ୍ରଣୟନ ଯୋଗୁଁ ଉଲ୍ଲେଖନୀୟ ପରିବର୍ତ୍ତନ ସ୍ପଷ୍ଟ ହେଲା । ଅତଏବ ୧୯୯୩ ମଇ ମାସ ୩୦ ତାରିଖରୁ ୧୯୯୪ ଏପ୍ରିଲ ୨୩ ତାରିଖ ମଧ୍ୟରେ (ପାଖାପାଖି ଏକବର୍ଷ ମଧ୍ୟରେ) ଆମ ଦେଶର ସମସ୍ତ ରାଜ୍ୟ ସରକାର ଉପରୋକ୍ତ ସଂଶୋଧିତ ଆଇନକୁ ନିଜ ନିଜ ରାଜ୍ୟରେ କାର୍ଯ୍ୟକାରୀ କରାଇବାକୁ ପଦକ୍ଷେପ ନେଲେ ।

୧୯୯୬ ମସିହା ଡିସେମ୍ବର ୨୪ ତାରିଖ ଦିନ ସମ୍ବିଧାନର ୭୩ତମ ସଂଶୋଧନର ସଂପ୍ରସାରିତ ଆଇନ ଅନୁଯାୟୀ ଅନୁସୂଚିତ ଅଞ୍ଚଳ ପାଇଁ ଏଇ ଆଇନ କାର୍ଯ୍ୟକାରୀ ହେଲା । ୧୯୯୭ ମସିହାରେ ୭୩ତମ ସାମ୍ବିଧାନିକ ସଂଶୋଧନ ଆଇନ ଅନୁସାରେ ଓଡ଼ିଶାରେ ପଞ୍ଚାୟତ ନିର୍ବାଚନ କରାଗଲା । ୨୦୦୧ ମସିହାରେ ବିହାର ରାଜ୍ୟରେ ଦୀର୍ଘ ୨୩ ବର୍ଷ ପରେ ପଞ୍ଚାୟତ ନିର୍ବାଚନ କରାଗଲା । ୧୯୯୭ ମସିହାରୁ ୨୦୦୨, ପାଞ୍ଚବର୍ଷ ପଞ୍ଚାୟତିରାଜ ବ୍ୟବସ୍ଥା ସଫଳତାର ସହ କାର୍ଯ୍ୟକାରୀ ହୋଇସାରିବା ପରେ ୨୦୦୨ ଜାନୁଆରୀ ମାସରେ ଓଡ଼ିଶାରେ ନିର୍ବାଚନ ହୋଇଥିଲା । ଏହି ଆଇନର ଠିକ୍ ପରିଚାଳନାରେ ପୁଣି ୨୦୦୭ ମସିହା ଫେବୃଆରୀରେ ହେଲା ପଞ୍ଚାୟତ ନିର୍ବାଚନ ।

ସୁଖର କଥା ଯେ ୨୦୦୪ ମସିହାରେ କେନ୍ଦ୍ରରେ ସ୍ୱତନ୍ତ୍ର ଭାବେ ପଞ୍ଚାୟତିରାଜ ମନ୍ତ୍ରଣାଳୟ ସୃଷ୍ଟି ହୋଇଅଛି । ଓଡ଼ିଶାରେ ପଞ୍ଚାୟତିରାଜ ଆଇନରେ ସଂଶୋଧନ ଅଣାଯାଇ ଜିଲ୍ଲାପାଳଙ୍କ ହାତରୁ ସରପଞ୍ଚ ନିଲମ୍ବନ କରିବା କ୍ଷମତା ଅପସାରିତ କରାଯାଇଅଛି । ପ୍ରତି ପଞ୍ଚାୟତରେ କାର୍ଯ୍ୟ ନିର୍ବାହୀ ଅଧିକାରୀଙ୍କ ନିଯୁକ୍ତି ମଧ୍ୟ ଦିଆଯାଇଅଛି ।

> ୧୯୫୩ ମସିହା ଜାନୁଆରୀରେ ବଳବନ୍ତ ରାୟ କମିଟି ଗଠନ କରାଗଲା ଓ ସେଇବର୍ଷ ନଭେମ୍ବର ୨୪ ତାରିଖରେ ଏହି କମିଟି ରିପୋର୍ଟ ପ୍ରଦାନ କଲେ । କମିଟିର ସୁପାରିଶ ଅନୁଯାୟୀ ଦେଶରେ ତ୍ରିସ୍ତରୀୟ ପଞ୍ଚାୟତିରାଜ ବ୍ୟବସ୍ଥା ଲାଗୁ କରାଗଲା । ୧୯୫୯ ମସିହା ଅକ୍ଟୋବର ୦୨ ତାରିଖରେ ରାଜସ୍ଥାନର 'ନାଗାଉର'ଠାରେ ଦେଶର ପ୍ରଥମ ପଞ୍ଚାୟତକୁ ତତ୍କାଳୀନ ପ୍ରଧାନମନ୍ତ୍ରୀ ପଣ୍ଡିତ ଜବାହରଲାଲ ନେହେରୁ ଉଦ୍‌ଘାଟନ କଲେ ।

**ପଞ୍ଚାୟତିରାଜ ସଂପର୍କରେ କେତେଗୋଟି ଗୁରୁତ୍ୱପୂର୍ଣ୍ଣ ଘଟଣା**

୧୯୪୮-୪୯ ମସିହାରେ ପଞ୍ଚାୟତିରାଜ ବ୍ୟବସ୍ଥାର ଭୂମିକା ନେଇ ସମ୍ବିଧାନ ପ୍ରଣୟନ ସଭା (Constituent Assembly)ରେ ଆଲୋଚନା ହୋଇଥିଲା । ୧୯୫୩ ମସିହା ଜାନୁଆରୀରେ ବଳବନ୍ତ ରାୟ କମିଟି ଗଠନ କରାଗଲା ଓ ସେଇବର୍ଷ ନଭେମ୍ବର ୨୪ ତାରିଖରେ ଏହି କମିଟି ରିପୋର୍ଟ ପ୍ରଦାନ କଲେ । କମିଟିର ସୁପାରିଶ ଅନୁଯାୟୀ ଦେଶରେ ତ୍ରିସ୍ତରୀୟ ପଞ୍ଚାୟତିରାଜ ବ୍ୟବସ୍ଥା ଲାଗୁ କରାଗଲା । ୧୯୫୯ ମସିହା ଅକ୍ଟୋବର ୦୨ ତାରିଖରେ ରାଜସ୍ଥାନର 'ନାଗାଉର'ଠାରେ ଦେଶର ପ୍ରଥମ ପଞ୍ଚାୟତକୁ ତତ୍କାଳୀନ ପ୍ରଧାନମନ୍ତ୍ରୀ ପଣ୍ଡିତ ଜବାହରଲାଲ ନେହେରୁ ଉଦ୍‌ଘାଟନ କଲେ । ଏହା ପରେ କେରଳ ଜିଲ୍ଲା ପରିଷଦ ବିଲ୍ ସେ ରାଜ୍ୟର ବିଧାନସଭାରେ ଅଣାଗଲା । ମାତ୍ର ବିଧାନସଭା ଭଙ୍ଗ ହେବା କାରଣରୁ ସେଠାରେ ତାହା କାର୍ଯ୍ୟକାରୀ ହୋଇପାରିଲା ନାହିଁ । ୧୯୭୪-୭୭ ମସିହା ହେଲା ପଞ୍ଚାୟତିରାଜ ବ୍ୟବସ୍ଥାର ଅଧଃପତନ କାଳ । ୧୯୭୮ ମସିହା ଜୁନ୍ ୪ ତାରିଖରେ ପଶ୍ଚିମବଙ୍ଗରେ ପଞ୍ଚାୟତ ନିର୍ବାଚନ ଦଳ ଭିତ୍ତିରେ କରାଗଲା । ସେହି ବର୍ଷ ଅଗଷ୍ଟ ୨୧ ତାରିଖରେ ଅଶୋକ ମେହେଟ୍ଟା କମିଟି ପଞ୍ଚାୟତିରାଜର କାର୍ଯ୍ୟକାରିତା ଉପରେ ମନ୍ତବ୍ୟ

ତଥା ମତାମତ ଫର୍ଦ୍ଦ ପ୍ରଦାନ କଲେ । ୧୯୮୩ ମସିହାରେ କର୍ଣ୍ଣାଟକ ସରକାର ନୂଆ ପଞ୍ଚାୟତିରାଜ ନିୟମ କାର୍ଯ୍ୟକାରୀ କରାଇଲେ ।

ପ୍ରକାଶ ଥାଉ କି ୧୯୮୨ ମସିହା ସେପ୍ଟେମ୍ବର ମାସରେ ଯୋଜନା କମିଶନରଙ୍କ ଦ୍ୱାରା ହନୁମନ୍ତ ରାଓଙ୍କ ଅଧ୍ୟକ୍ଷତାରେ ଏକ କମିଟି ବସାଗଲା । ଏହି କମିଟି ଜିଲ୍ଲାସ୍ତରୀୟ ଯୋଜନା ସମ୍ବନ୍ଧରେ ଏକ ବିସ୍ତୃତ ରିପୋର୍ଟ ୧୯୮୪ ମଇ ମାସରେ ପ୍ରଦାନ କଲେ ।

୧୯୮୫ ମସିହାର କଥା । କର୍ଣ୍ଣାଟକ ରାଜ୍ୟର ପଞ୍ଚାୟତ ନିୟମ ରାଷ୍ଟ୍ରପତିଙ୍କର ଅନୁମୋଦନ ଲାଭ କଲା ଜୁଲାଇ ମାସରେ । ସେହି ୧୯୮୫ ମସିହା ଅଗଷ୍ଟ ୧୪ ତାରିଖରେ ତାହା କାର୍ଯ୍ୟକାରୀ ହେଲା । ସେହି ବର୍ଷ ଜି.ଭି..କେ. ରାଓ କମିଟି ମାର୍ଚ୍ଚ ୨୫ରୁ କାର୍ଯ୍ୟାରମ୍ଭ କରି ସେଇ ବର୍ଷ ଡିସେମ୍ବରରେ ରିପୋର୍ଟ ପ୍ରଦାନ କରିଥିଲେ । ଗ୍ରାମାଞ୍ଚଳ ବିକାଶରେ ପ୍ରଶାସନିକ ଦିଗ୍‌ବିଦିଗ ନିର୍ଣ୍ଣୟ ଉଦ୍ଦେଶ୍ୟରେ ଏହି କମିଟି ଯୋଜନା କମିଶନରଙ୍କ କର୍ତ୍ତୃକ ବସାଯାଇଥିଲା ।

ଆଗରୁ ଆଲୋଚିତ ହୋଇଛି ଯେ ପଶ୍ଚିମବଙ୍ଗ ଓ କର୍ଣ୍ଣାଟକ - ଏଇ ଦୁଇରାଜ୍ୟ ଏଇ ପଞ୍ଚାୟତିରାଜ ବ୍ୟବସ୍ଥାକୁ କାର୍ଯ୍ୟକାରୀ କରାଇବାରେ ଆଗୁଆ ଅଟନ୍ତି । ଉପରୋକ୍ତ ଦୁଇ ରାଜ୍ୟର ସଫଳତାକୁ ଦୃଷ୍ଟିରେ ରଖି ଆନ୍ଧ୍ରପ୍ରଦେଶ ସରକାର ଯୋଜନା ପ୍ରସ୍ତୁତ କଲେ ୧୯୮୬ ମସିହାରେ । ସେଇ ବର୍ଷ ଅର୍ଥାତ୍ ୧୯୮୬ ମସିହା ନଭେମ୍ବର ୨୭ ତାରିଖରେ ଏଲ୍.ଏମ୍. ସିଂହଭି କମିଟି ପଞ୍ଚାୟତର ସାମ୍ବିଧାନିକ ସ୍ଥିତି ଉପରେ ଏକ ରିପୋର୍ଟ ପ୍ରଦାନ କଲେ । ୧୯୮୮ ମସିହାରେ ସାମ୍ବିଧାନିକ ସଂଶୋଧନ ଉଦ୍ଦେଶ୍ୟରେ ପାର୍ଲିଆମେଣ୍ଟ ସବ୍‌କମିଟି ଶ୍ରୀ ପି.କେ. ଥୁଙ୍ଗନ୍‌ଙ୍କ ଅଧ୍ୟକ୍ଷତାରେ ବସିଥିଲା । ସେଇ କମିଟି ଯଥାବିଧି ରିପୋର୍ଟ ମଧ୍ୟ ଦେଇଥିଲେ ।

୧୯୮୯ ମସିହାରେ ସମ୍ବିଧାନର ୬୪ତମ ସଂଶୋଧନ ବିଲ୍ ମଇ ୧୫ ତାରିଖରେ ପାର୍ଲିଆମେଣ୍ଟରେ ଆଗତ କରାଗଲା । ମାତ୍ର ଅକ୍ଟୋବର ୧୫ ତାରିଖ ସୁଦ୍ଧା ଏହା ରାଜ୍ୟ ସଭାରେ ଗୃହୀତ ହୋଇପାରିଲା ନାହିଁ । ୧୯୯୧ ମସିହାରେ ସମ୍ବିଧାନର ୭୨ତମ ଓ ୭୩ତମ ସଂଶୋଧନ ବିଲ୍ ଲୋକସଭାରେ ଆଗତ କରାଗଲା । ୧୯୯୨ ମସିହାରେ ଉଭୟ ବିଲ୍ ଡିସେମ୍ବର ୨୨ ତାରିଖରେ ଲୋକସଭାରେ ଓ ତା' ପରଦିନ (୨୩.୧୨.୧୯୯୨) ରାଜ୍ୟସଭାରେ ଅନୁମୋଦନ ଲାଭ କଲା ଯାହାର ସୁଫଳ ୧୯୯୩ ମସିହାରୁ ମିଳୁଅଛି । ଯଥା- ସମ୍ବିଧାନର ୭୩ତମ ସଂଶୋଧନ ଆଇନ ୧୯୯୩ ଏପ୍ରିଲ ୨୪ରୁ କାର୍ଯ୍ୟକାରୀ ହେଉଅଛି । ସମ୍ବିଧାନର ୭୪ତମ ସଂଶୋଧନ ଆଇନ ୧୯୯୩ ଜୁନ୍ ୧ ତାରିଖରୁ କାର୍ଯ୍ୟକାରୀ ହେଉଅଛି ।

**ସମ୍ବିଧାନର ୭୩ତମ ସଂଶୋଧନରେ ନୂତନତ୍ୱ**

୧. ତ୍ରିସ୍ତରୀୟ ପଞ୍ଚାୟତିରାଜ ଅନୁଷ୍ଠାନମାନଙ୍କର କାର୍ଯ୍ୟକାଳ ପାଞ୍ଚବର୍ଷ ବଳବତ୍ତର ରହିବ ଏବଂ ସେଇ ସମୟସୀମା ପୂର୍ବରୁ ଭାଙ୍ଗିଗଲେ ସେଥିପାଇଁ ବାଧ୍ୟତାମୂଳକ ଭାବେ ଛଅମାସ ମଧ୍ୟରେ ନିର୍ବାଚନ ହେବ ।

୨. ପଞ୍ଚାୟତିରାଜ ବ୍ୟବସ୍ଥାରେ ଗ୍ରାମସ୍ତରରେ ଗ୍ରାମପଞ୍ଚାୟତ, ବ୍ଲକ୍ ସ୍ତରରେ ପଞ୍ଚାୟତ ସମିତି ଓ ଜିଲ୍ଲାସ୍ତରରେ ଜିଲ୍ଲା ପରିଷଦ ରହିବ ।

୩. ସମ୍ବିଧାନର ୧୧ତମ ଅନୁସୂଚୀ ଅନୁଯାୟୀ ପଞ୍ଚାୟତ ଅନୁଷ୍ଠାନଗୁଡ଼ିକୁ ୨୯ଟି ବିଷୟରେ କାର୍ଯ୍ୟ କରିବା ପାଇଁ କ୍ଷମତା ଦିଆଯାଇଅଛି ।

୪. ପ୍ରତି ଗ୍ରାମଶାସନ ସ୍ତରରେ ସମସ୍ତ ଭୋଟରଙ୍କୁ ନେଇ ଏକ ଗ୍ରାମସଭା ଗଢ଼ାଯିବ । ଗ୍ରାମସଭାର ନିଷ୍ପତ୍ତିକୁ ପରିବର୍ତ୍ତନ କରାଯାଇ ପାରିବ ନାହିଁ । ଏହା ଗ୍ରାମର ଆର୍ଥିକ ବିକାଶ, ସାମାଜିକ ନ୍ୟାୟ ଓ ଯୋଜନାଗୁଡ଼ିକ ସଂପର୍କରେ ବିଚାରବିମର୍ଷ କରି ନିଷ୍ପତ୍ତି ନେବେ ।

୫. ପଞ୍ଚାୟତିରାଜ ବ୍ୟବସ୍ଥାରେ ପ୍ରତିନିଧିମାନେ ସିଧାସଳଖ ଭାବେ ଭୋଟରମାନଙ୍କଦ୍ୱାରା ନିର୍ବାଚିତ ହେବେ । କିନ୍ତୁ ପଞ୍ଚାୟତ ସମିତିର ଅଧ୍ୟକ୍ଷ, ଉପାଧ୍ୟକ୍ଷ, ଜିଲ୍ଲା ପରିଷଦର ଅଧ୍ୟକ୍ଷ, ଉପାଧ୍ୟକ୍ଷ ଓ ଗ୍ରାମପଞ୍ଚାୟତର ନାଏବ ସରପଞ୍ଚ ସେମାନଙ୍କ ସ୍ତରରେ ନିର୍ବାଚିତ ହୋଇଥିବା ପ୍ରତିନିଧିମାନଙ୍କଦ୍ୱାରା ନିର୍ବାଚିତ ହେବାର ବ୍ୟବସ୍ଥା ରହିଅଛି । ଆମ ରାଜ୍ୟରେ ସରପଞ୍ଚମାନେ ସିଧାସଳଖ ଭୋଟରମାନଙ୍କ ଦ୍ୱାରା ନିର୍ବାଚିତ ହେଉଛନ୍ତି ।

୬. ତିନୋଟିଯାକ ସ୍ତରରେ ମହିଳା ପ୍ରତିନିଧିଙ୍କ ପାଇଁ ଅତିକମ୍‌ରେ ୩୩ ପ୍ରତିଶତ ସ୍ଥାନ ସଂରକ୍ଷଣ କରାଯାଇଅଛି ।

୭. ତଫସିଲଭୁକ୍ତ ଜାତି, ଅନୁସୂଚିତ ଜନଜାତି ପାଇଁ ଜନସଂଖ୍ୟା ଅନୁପାତରେ ଆସନ ସଂରକ୍ଷିତ ରହିବାର ବ୍ୟବସ୍ଥା ହୋଇଛି ।

୮. ପ୍ରତ୍ୟେକ ରାଜ୍ୟରେ ପଞ୍ଚାୟତିରାଜ ପାଇଁ ଏକ ସ୍ୱତନ୍ତ୍ର ଅର୍ଥ କମିଶନ ଗଠନ କରାଯିବ । ରାଜ୍ୟର ମୋଟ ଆୟରୁ କେତେ ଭାଗ ଅନୁଦାନ ପଞ୍ଚାୟତ ଅନୁଷ୍ଠାନମାନେ ପାଇବେ, ତାହାର ନିଷ୍ପତ୍ତି ଅର୍ଥ କମିଶନ ହାତରେ ନ୍ୟସ୍ତ ହୋଇଅଛି ।

୯. ତ୍ରିସ୍ତରୀୟ ପଞ୍ଚାୟତ ବ୍ୟବସ୍ଥାର ନିର୍ବାଚନ ନିମନ୍ତେ ରାଜ୍ୟ-ନିର୍ବାଚନ କମିଶନ ଗଠନ କରାଯିବ । ରାଜ୍ୟ ନିର୍ବାଚନ କମିଶନର ଏହି ତ୍ରିସ୍ତରୀୟ ଅନୁଷ୍ଠାନଗୁଡ଼ିକର ନିର୍ବାଚନ ପରିଚାଳନା, ତଦାରଖ ଏବଂ ନିୟନ୍ତ୍ରଣ ଦାୟିତ୍ୱରେ ରହିବେ ।

ଗ୍ରାମପଞ୍ଚାୟତ ନିମ୍ନରେ ପ୍ରଦତ୍ତ ୨୯ ଗୋଟି ବିଷୟ ପ୍ରତି ଅତି ସଚେତନ ରହିବେ । ଏଗୁଡ଼ିକ କେବଳ ସାଙ୍କେତିକ । ଏହାଛଡ଼ା ବିଭିନ୍ନ ସ୍ତରରେ ଅନ୍ୟାନ୍ୟ ବିଷୟଗୁଡ଼ିକ ମଧ୍ୟ ପଞ୍ଚାୟତ କ୍ଷମତା ପରିସର

କରିପାରିବେ । ଏଥିପାଇଁ ସଂପୃକ୍ତ ବିଭାଗଗୁଡ଼ିକ ଆବଶ୍ୟକ କ୍ଷମତା ବିକେନ୍ଦ୍ରୀକରଣ କରିବାକୁ ବାଧ ହେବେ । ତେବେ ପଞ୍ଚାୟତ ଅନୁଷ୍ଠାନର ବହୁମୁଖୀ କାର୍ଯ୍ୟର ତାଲିକା ନିମ୍ନରେ ପ୍ରଦତ୍ତ । ସେଗୁଡ଼ିକ ହେଲା-

୧. କୃଷିର ପ୍ରସାର

୨. ଭୂ-ଉନ୍ନୟନ, ଭୂ-ସଂସ୍କାର, ଚକବନ୍ଦୀ ଓ ମୃତ୍ତିକା ସଂରକ୍ଷଣକୁ କାର୍ଯ୍ୟକାରୀ କରିବା

୩. ପଶୁପାଳନ

୪. ମତ୍ସ୍ୟ ସଂପଦର ବିକାଶ

୫. କ୍ଷୁଦ୍ର ଜଳସେଚନ, ଜଳଯୋଗାଣ ଓ ଅବବାହିକାର ଉନ୍ନୟନ

୬. ସାମାଜିକ ବନୀକରଣ ଓ କୃଷିକ୍ଷେତ୍ର ନିକଟରେ ବନୀକରଣ

୭. ଜଙ୍ଗଲଜାତ ଦ୍ରବ୍ୟ ସଂଗ୍ରହ

୮. ଖାଦ୍ୟ ପ୍ରକ୍ରିୟାକରଣ ଶିଳ୍ପ ଓ କ୍ଷୁଦ୍ରଶିଳ୍ପ

୯. ଖଦି ଓ ଗ୍ରାମ୍ୟ କୁଟୀର ଶିଳ୍ପ

୧୦. ଗ୍ରାମ୍ୟ ବାସଗୃହ

୧୧. ପାନୀୟ ଜଳ

୧୨. ଜାଳେଣି, ଘାସ, ତୃଣାଦି ପଶୁଖାଦ୍ୟ

୧୩. ରାସ୍ତା, ନାଳ, ପୋଲ, ଘାଟ, ଜଳପଥ ଓ ଗମନାଗମନର ଅନ୍ୟାନ୍ୟ ଉପାୟ ।

୧୪. ବିଦ୍ୟୁତ୍ ବଣ୍ଟନ ସମେତ ଗ୍ରାମ୍ୟ ବିଦ୍ୟୁତିକରଣ

୧୫. ଅଣପାରମ୍ପରିକ ଶକ୍ତିଉତ୍ସ

୧୬. ଦାରିଦ୍ର୍ୟ ଦୂରୀକରଣ ଯୋଜନା

୧୭. ପ୍ରାଥମିକ ଓ ମାଧମିକ ବିଦ୍ୟାଳୟ ଶିକ୍ଷା

୧୮. ବୈଷୟିକ ପ୍ରଶିକ୍ଷଣ ଓ ବୃତ୍ତିଗତ ଶିକ୍ଷା

୧୯. ପ୍ରୌଢ଼ ଓ ଅଣଆନୁଷ୍ଠାନିକ ଶିକ୍ଷା

୨୦. ପାଠାଗାର

୨୧. ସାଂସ୍କୃତିକ କାର୍ଯ୍ୟକ୍ରମ

୨୨. ବଜାର ଓ ମେଳା

୨୩. ଡାକ୍ତରଖାନା, ପ୍ରାଥମିକ ସ୍ୱାସ୍ଥ୍ୟକେନ୍ଦ୍ର ସମେତ ସ୍ୱାସ୍ଥ୍ୟ ଓ ସ୍ୱାସ୍ଥ୍ୟରକ୍ଷା ବ୍ୟବସ୍ଥା

୨୪. ପରିବାରକଲ୍ୟାଣ

୨୫. ମହିଳା ଓ ଶିଶୁବିକାଶ

୨୬. ଶାରୀରିକ ଅକ୍ଷମ ଓ ମାନସିକ ଦୁର୍ବଳ ବ୍ୟକ୍ତିଙ୍କର କଲ୍ୟାଣ ସମେତ ସମାଜ ମଂଗଳ

୨୭. ଦୁର୍ବଳ ଶ୍ରେଣୀ - ବିଶେଷତଃ ତଫସିଲଭୁକ୍ତ ଜାତି ଓ ଜନଜାତିର କଲ୍ୟାଣ

୨୮. ସାର୍ବଜନୀନ ବଣ୍ଟନ ବ୍ୟବସ୍ଥା ବା ବଣ୍ଟନ ପଦ୍ଧତିର ପରିଚାଳନା

୨୯. ଗୋଷ୍ଠୀ ସଂପଦର ରକ୍ଷଣାବେକ୍ଷଣ

ଗ୍ରାମାଞ୍ଚଳରେ ସ୍ୱାୟତ୍ତ ଶାସନ ତିନିଗୋଟି ପାହାଚ ଦେଇ ଗଠିତ ହୋଇଥାଏ । ପ୍ରଥମ ପାବଚ୍ଛରେ ଦୁଇ ହଜାରରୁ ଦଶହଜାର ପର୍ଯ୍ୟନ୍ତ ଲୋକଙ୍କ ପାଇଁ ଗଠନ କରାଯାଏ ଗ୍ରାମପଞ୍ଚାୟତ ଯାହାର ମୁଖ୍ୟ ହେଲେ ସରପଞ୍ଚ । ସରପଞ୍ଚ ମହାଶୟ ଆମ ରାଜ୍ୟରେ ସିଧାସଳଖ ସାବାଳକ ଭୋଟରମାନଙ୍କ ଦ୍ୱାରା ନିର୍ବାଚିତ ହୁଅନ୍ତି । ପଞ୍ଚାୟତ ସମିତି ହେଲା ତ୍ରିସ୍ତରୀୟ ପଞ୍ଚାୟତିରାଜର ଦ୍ୱିତୀୟ ପାବଚ୍ଛ । କେତେଗୁଡ଼ିଏ ଗ୍ରାମପଞ୍ଚାୟତକୁ ନେଇ ପଞ୍ଚାୟତ ସମିତି ଗଠିତ ହୋଇଥାଏ । ଆମ ରାଜ୍ୟରେ ୩୧୪ଟି ପଞ୍ଚାୟତ ସମିତି ଅର୍ଥାତ୍ ସେତିକି ଗୋଟି ଗୋଷ୍ଠୀ ଉନ୍ନୟନ ମଣ୍ଡଳ (Community Development Blocks)/CD Blocks ଅଛି । ପଞ୍ଚାୟତ ସମିତି ବା CD Blocks ଅଧୀନରେ ଥିବା ଗ୍ରାମପଞ୍ଚାୟତଗୁଡ଼ିକ ପଞ୍ଚାୟତ ସମିତି ପାଇଁ ସଭାଧକ୍ଷ (Chairman) ନିର୍ବାଚନ କରନ୍ତି ।

ଜିଲ୍ଲା ପରିଷଦ ହେଲା ତ୍ରିସ୍ତରୀୟ ପଞ୍ଚାୟତିରାଜର ତୃତୀୟ ତଥା ଉଚ୍ଚତମ ପାହାଚ । ଜିଲ୍ଲା ପରିଷଦର ସଦସ୍ୟମାନଙ୍କୁ ଲୋକେ ସିଧାସଳଖ ଭୋଟ ଦେଇ ନିର୍ବାଚନ କରିଥାଆନ୍ତି । ଏତଦ୍‌ବ୍ୟତୀତ ଜିଲ୍ଲାର ବିଧାନସଭା ସଦସ୍ୟ (ଏମ୍.ଏଲ୍.ଏ), ଲୋକସଭା/ରାଜ୍ୟସଭା ସଦସ୍ୟ (ଏମ୍.ପି.), ପ୍ରତି ପଞ୍ଚାୟତର ସମିତିର ଅଧକ୍ଷମାନେ ନିଜ ନିଜର ପଦବୀ ବଳରେ ଜିଲ୍ଲା ପରିଷଦର ସଭ୍ୟ ଅଟନ୍ତି । ନିର୍ବାଚିତ ସଭ୍ୟମାନେ ନିଜ ଭିତରୁ ଜଣକୁ ସଭାଧକ୍ଷ ଓ ଅନ୍ୟ ଜଣକୁ ଉପସଭାଧକ୍ଷ ଭାବେ ବାଛନ୍ତି ବା ନିର୍ବାଚନ କରନ୍ତି । ପ୍ରତିସ୍ତରରେ ନିର୍ବାଚିତ ସଦସ୍ୟମାନଙ୍କର ଲକ୍ଷ୍ୟ ଗ୍ରାମାଞ୍ଚଳର ବିକାଶ ହୋଇ ପାରିଲେ ଗଣତନ୍ତ୍ର ଶାସନର ପୂର୍ଣ୍ଣତା ଅନୁଭବ ହେବ । ସ୍ୱାୟତ୍ତ ଶାସନ ଗାଁରୁ ସହରଯାଏଁ ସବୁଠିଁ ଚାଲିଛି ବୋଲି ଉପଲବ୍ଧି ହେବା ପ୍ରକୃତରେ ଆମ ହାତରେ ରହିଛି ।

ଟିଚର ଏଡୁକେଟର
ଜିଲ୍ଲା ଶିକ୍ଷା ଓ ପ୍ରଶିକ୍ଷଣ ପ୍ରତିଷ୍ଠାନ
ଟିକାବାଲି, କନ୍ଧମାଳ

- - -

# ଅନିର୍ବାଣ ଅଗ୍ନିଶିଖା, କୁନ୍ତଳା କୁମାରୀ

ଯଶୋଧାରା ଶତପଥୀ

**ଜା**ତୀୟ ଜୀବନ ସ୍ରୋତରେ ଆଜୀବନ ସାରସ୍ୱତ ସାଧିକା ଉତ୍କଳ ଭାରତୀ କୁନ୍ତଳା କୁମାରୀ ସାବତ ଏକ କ୍ରାନ୍ତିକାରୀ ବିରଳ ବ୍ୟକ୍ତିତ୍ୱ ତଥା ଓଡ଼ିଆ ସାହିତ୍ୟାକାଶରେ ଏକ ଉଜ୍ଜ୍ୱଳ ନକ୍ଷତ୍ର । ବହୁମୁଖୀ ପ୍ରତିଭାର ଅଧିକାରିଣୀ କୁନ୍ତଳା କୁମାରୀ ଏକାଧାରରେ ଥିଲେ ଜଣେ ପ୍ରଖ୍ୟାତଯଶା ଔପନ୍ୟାସିକା, ରହସ୍ୟବାଦୀ ନାରୀକବି, ପତ୍ରିକା ସଂପାଦିକା, ସୁସଂଗଠିକା, ସୁବକ୍ତା, ନାରୀନେତ୍ରୀ, ସମାଜ ସେବିକା ଏବଂ ସୁଚିକିତ୍ସିକା । ସଂଗ୍ରାମ, ସଂଘାତ, ନିର୍ଭୀକତା, ଆତ୍ମବିଶ୍ୱାସ ସହିତ ସତ୍ୟନିଷ୍ଠ ଭାବରେ ସର୍ବଦା ନିଜ ମାତୃଭୂମି ଓ ମାତୃଭାଷାକୁ ଗଭୀର ଭାବେ ପ୍ରେମ କରୁଥିବା ସେହି ମହିୟସୀ କ୍ଷୀଣଜୀବୀ ନାରୀ ପ୍ରତିଭାଙ୍କ ଜନ୍ମ ୧୯୦୦ ମସିହା ଫେବୃଆରୀ ୮ ତାରିଖ । ଓଡ଼ିଶାର ଅନ୍ୟତମ ବିଚ୍ଛିନ୍ନାଞ୍ଚଳ ବସ୍ତରଭୁକ୍ତ ସ୍ଥାନ ଜଗଦଲପୁରଠାରେ ସେ ଜନ୍ମଗ୍ରହଣ କରିଥିଲେ । ପିତା ଦାନିଆଲ ସାବତ ଓ ମାତା ମନିକା ଦେବୀଙ୍କର ସେ ଥିଲେ ଜ୍ୟେଷ୍ଠାକନ୍ୟା ।



ସ୍ୱାଧୀନତାର ପ୍ରାକ୍‌କାଳରେ ୧୯୩୨ରେ ବାଲେଶ୍ୱରଠାରେ ଅନୁଷ୍ଠିତ ନାରୀ ସମ୍ମିଳନୀରେ (ବାମରୁ) ଉପରେ ବସିଛନ୍ତି ରମା ଦେବୀ, ନାରୀକବି କୁନ୍ତଳା କୁମାରୀ ସାବତ, ଜାହ୍ନବୀ ଦେବୀ ଓ ପୁରୁବାଇ, ତଳେ ବସିଛନ୍ତି (ବାମରୁ) ସରଳା ଦେବୀ ଓ କୋକିଳା ଦେବୀ

ଓଡ଼ିଆ ସାରସ୍ୱତ କ୍ଷେତ୍ରରେ କୁନ୍ତଳାକୁମାରୀ ହେଉଛନ୍ତି ଅନନ୍ୟା ଓ ଅଦ୍ୱିତୀୟା । ଜଣେ ଭକ୍ତ, ସାଧିକା, ପ୍ରେମିକା, ପ୍ରଣୟିନୀ, ଶିଳ୍ପୀ ଓ ଦେଶପ୍ରେମୀ ଭାବରେ ନିଜ ବଳିଷ୍ଠ ବ୍ୟକ୍ତିତ୍ୱର ପରିଚୟ ସେ ଦେଇଯାଇଛନ୍ତି । ତାଙ୍କ ସ୍ୱପ୍ନମୟ ଚିନ୍ତା ଓ ଚେତନାରେ ବାସ୍ତବତାର ସ୍ଫୁଲିଙ୍ଗ ସର୍ବଦା ଦୃଶ୍ୟମାନ ହେଉଥିଲା । ପ୍ରଚଣ୍ଡ କର୍ମପ୍ରେରଣାର ସେ ସତେ ଯେପରି ଥିଲେ ଏକ ସ୍ଫୁଲିଙ୍ଗମୟୀ ଆଗ୍ନେୟ ଉତ୍ସ । ତାଙ୍କ ଜୀବନଦର୍ଶନ, ଆଧ୍ୟାତ୍ମିକ ଭାବାବେଗ ଏବଂ ମାନବିକତାରେ ଛଳ ଛଳ ପ୍ରାଣ ସତ୍ତାରେ ଫୁଟି ଉଠିଛି ଅମଳିନ ଆତ୍ମା-ଫୁଲ । 'ଶେଫାଳୀ ପ୍ରତି' କବିତାରେ ସେ ଲେଖିଛନ୍ତି -

'ତୋହପରି କ୍ଷୁଦ୍ର ମୁହିଁ, ତୋହ ପରି କ୍ଷଣିକ
ହସେ ବାସେ ରସେ ମାତ୍ର ଫୁଟି ଅଛି ଘଡ଼ିକ ।
ମାଟିରେ ମିଶିବୁ ତୁହି, ମାଟିରେ ମିଶିବି ମୁହିଁ
ତଥାପି ମୋ' ଆତ୍ମାଫୁଲ ନ ଯିବରେ ମଉଳି
ତେଣୁ ଆଶା ବହି ଦିନ କାଟେ ଗଙ୍ଗଶିଉଳି ।'

ନଶ୍ୱର ଜୀବନ ମଧ୍ୟରେ ଅବିନାଶୀ ଆତ୍ମାର ଅକ୍ଷୟତାକୁ ସେ ଗଭୀର ଭାବରେ ଉପଲବ୍‌ଧି କରିପାରିଛନ୍ତି ଏବଂ ସେହି ଆତ୍ମପ୍ରତ୍ୟୟ ଭିତରେ ସେ ବଞ୍ଚି ରହିଛନ୍ତି ।

କୁନ୍ତଳାଙ୍କ ଶୈଶବ ଓ କୈଶୋର ଉଭୟ ସମୟ ସ୍ନେହ ଓ ମମତାପୂର୍ଣ୍ଣ ପରିବେଶରେ ବିତିଥିଲା ବର୍ମାରେ । ତାଙ୍କ ପିତା ଡାକ୍ତରୀ ବ୍ୟବସାୟ କରୁଥିବା ଦୃଷ୍ଟିରୁ ସେ ସେଠାରେ ଚଉଦବର୍ଷ ବିତାଇଥିଲେ । ସଂପୂର୍ଣ୍ଣ ଅଣଓଡ଼ିଆ ଅଞ୍ଚଳ ଓ ଅଣଓଡ଼ିଆ ଭାଷା ସହିତ ଜୀବନ ତାଙ୍କର ଆରମ୍ଭ ହୋଇଥିଲା । ସେଠାରେ ଓଡ଼ିଆ ସ୍କୁଲ ଆଦୌ ନଥିଲା । ସମସ୍ତେ ସେଠାରେ ହିନ୍ଦୀରେ କଥାବାର୍ତ୍ତା କରନ୍ତି । କିନ୍ତୁ ଘରେ ତାଙ୍କ ମା' ତାଙ୍କୁ ଓଡ଼ିଆ ଭାଷା ଶିକ୍ଷା ଦିଅନ୍ତି । ବାପା ଇଂରାଜୀ ଶିକ୍ଷା ଦେଉଥିଲେ ମଧ୍ୟ ଓଡ଼ିଆ ଭାଷା ଶିକ୍ଷାର ପ୍ରଥମ ପୁସ୍ତକ ବର୍ଣ୍ଣବୋଧ, ଶିଶୁପାଠ ଇତ୍ୟାଦି ଯୋଗାଇ ଦିଅନ୍ତି । ପିଲାଦିନରୁ କୁନ୍ତଳାଙ୍କ ଓଡ଼ିଆ ଭାଷା ପ୍ରତି ଆଗ୍ରହ ସଂଚାର ହୋଇଥିଲା । କ୍ରମେ ତାଙ୍କ ପିତା ଓଡ଼ିଆ ବ୍ୟାକରଣ, ଇତିହାସ, ଭୂଗୋଳ ବହି ଆଣି ଦେଇଥିଲେ । ଛୋଟବେଳୁଁ ସେ ହିନ୍ଦୀ, ବଙ୍ଗଳା ଭାଷା ଶିକ୍ଷାପ୍ରତି ମଧ୍ୟ ଆଗ୍ରହୀ ହୋଇଥିଲେ । କୈଶୋରରୁ ସେ ସଂଗୀତ ପ୍ରିୟ ଥିଲେ । ଖ୍ରୀଷ୍ଟିଆନ ପରିବାର ହେତୁ ଯୀଶୁଙ୍କ ଜୀବନ ଓ ଆଦର୍ଶମୟ କର୍ମାବଳୀକୁ ନେଇ ଲିଖିତ ଭଜନକୁ

ସେ ସୁନ୍ଦର ଭାବରେ ଗାନ କରୁଥିଲେ ଏବଂ ତାହା ହିଁ ତାଙ୍କୁ କବିତା ଲେଖିବାକୁ ପ୍ରେରଣା ଦେଇଥିଲା ।

ଓଡ଼ିଆ ଭାଷାର ସ୍ୱଳ୍ପ ଜ୍ଞାନକୁ ସମ୍ବଳକରି ସେ ମାତ୍ର ଦଶବର୍ଷ ବୟସରେ କବିତା ରଚନା ପାଇଁ ଲେଖନୀ ଧରିଥିଲେ । ସେ ବୟସରୁ ଆରମ୍ଭ କରି ସେ ଆଜୀବନ ସାହିତ୍ୟ ଉପାସିକା ହୋଇ ରହିଗଲେ ।

ମାନବିକତାର ମହାନ୍ ଚିନ୍ତାଧାରାର ମୂଳମନ୍ତ୍ର ତାଙ୍କ ହୃଦୟ କନ୍ଦରରେ ସଦା ଝଙ୍କୁରିତ ହେଉଥିଲା । ଦେଶପ୍ରେମର ଛଳଛଳ ଧାରାଟିଏ ସଦା ତାଙ୍କ ମନକୁ ଆଚ୍ଛନ୍ନ କରି ରଖିଥାଏ । ସନ୍ଥକବି ଭୀମଭୋଇ, ଗୋପବନ୍ଧୁଙ୍କର ସେହି ମାନବ ପ୍ରୀତି, ମାଟି ମା' ପାଇଁ ଯେଉଁ ପ୍ରେମ ତାହା ତାଙ୍କୁ ଗଭୀର ଭାବେ ପ୍ରଭାବିତ କରିଥିଲା । ପ୍ରକୃତରେ ଯିଏ ଦୀନଦୁଃଖୀର ହୃଦୟକୁ ଚିହ୍ନିପାରେ, ସେ ହିଁ ପ୍ରକୃତ କବିଟିଏ ହୋଇପାରେ । ନିଜସ୍ୱ ଶୈଳୀରେ ରଚିତ ଅଞ୍ଜଳି, ଅର୍ଚ୍ଚନା, ସ୍ଫୁଲିଙ୍ଗ, ଆହ୍ୱାନ, ପ୍ରେମଚିନ୍ତାମଣି ଇତ୍ୟାଦି କାବ୍ୟ ରଚନା କରି ସେ ଓଡ଼ିଆ ସାହିତ୍ୟକୁ ଋଦ୍ଧିମନ୍ତ କରିବା ସହ ଗଦ୍ୟ ସାହିତ୍ୟରେ ଭ୍ରାନ୍ତି, କାଳିବୋହୂ, ନଅତୁଣ୍ଡି, ପରଶମଣି, ରଘୁଅରକ୍ଷିତ ଇତ୍ୟାଦି ଅନେକ ଉପନ୍ୟାସ ରଚନା କରିଛନ୍ତି । ସାହିତ୍ୟର ବିଭିନ୍ନ ବିଭାଗରେ ସେ ଲେଖନୀ ଚାଳନା କରି ଯଶସ୍ୱିନୀ ହୋଇଛନ୍ତି । କାବ୍ୟ-କବିତା, କଥାସାହିତ୍ୟ, ଗଦ୍ୟରଚନା ପ୍ରଭୃତିରେ ସେ ନିଜର ଭାବରାଜିକୁ ଉପସ୍ଥାପନ କରିଛନ୍ତି ।

ତାଙ୍କ ଜୀବନ ଓ ସାହିତ୍ୟ ସାଧନାରୁ ଗୋଟିଏ ବିଷୟ ସ୍ପଷ୍ଟ ଯେ ସେ ଓଡ଼ିଆ ଚଳଣି, ପରମ୍ପରା, ଭାଷା, ସାହିତ୍ୟ ଓ ସଂସ୍କୃତି ପ୍ରତି ବିଶେଷ ଅନୁରାଗ ପ୍ରଦର୍ଶନ କରିଥିଲେ । ପରମ୍ପରାଚ୍ୟୁତ ହେବାର ସେ ପକ୍ଷପାତୀ ନଥିଲେ କିମ୍ବା ପରମ୍ପରାର ଅନ୍ଧ ସ୍ତାବକତା ଲାଗି ଉତ୍ସାହ ମଧ୍ୟ ଦେଉନଥିଲେ । ମାତ୍ର ସଂସ୍କାରର କଷଟିରେ ତାଙ୍କ ଚିନ୍ତାଧାରା ନବୀନ ରୂପ ନେଇଥିଲା । ଜଣେ ମହିଳା ହୋଇ ତତ୍କାଳୀନ କୁସଂସ୍କାରଗ୍ରସ୍ତ ସମାଜରେ ନୂତନ ଚେତନା ଭରି ଦେଇ ବିଜୟ ବୈଜୟନ୍ତୀ ଉଡ଼ାଇବାର ପ୍ରୟାସ ବେଳେ ସେ ତୀବ୍ର ବିରୋଧର ସମ୍ମୁଖୀନ ହୋଇଥିଲେ, ମାତ୍ର ସେସବୁକୁ କୁନ୍ତଳା ଭ୍ରୂକ୍ଷେପ ନକରି ଏହି ଗରଳକୁ ପାନ କରି ସେ ନୀଳକଣ୍ଠୀ ହୋଇଥିଲେ ।

ଜୀବନରେ ସାହସୀ ଓ ନିର୍ଭୀକ ହେବାପାଇଁ ବର୍ମା (ଏବର ମିଆଁମାର) ହିଁ ତାଙ୍କୁ ପ୍ରେରଣା ଦେଇଥିଲା । ବର୍ମା ନାରୀର ବୈଶିଷ୍ଟ୍ୟ ହେଉଛି - ସ୍ୱାଧୀନତାବୋଧ ଓ ନିର୍ଭୀକତା । କିନ୍ତୁ ସ୍ୱେଚ୍ଛାଚାରିତା ସେମାନଙ୍କଠାରେ ଦେଖାଯାଏ ନାହିଁ । ସେମାନେ ସୁଗୃହିଣୀ ମଧ୍ୟ । ଏହିସବୁ ଆଦର୍ଶ କୁନ୍ତଳାଙ୍କୁ ପିଲାଦିନୁ ଅନୁପ୍ରାଣୀତ କରିଥିଲା ଏବଂ ତାଙ୍କୁ ସାମାଜିକ ଜୀବନରେ ସାଧାରଣ ନାରୀଠାରୁ ଭିନ୍ନ ରୂପେ ଗଢ଼ିଥିଲା । ସଂପ୍ରଦାୟ, ସମାଜ, ଗୋଷ୍ଠୀ ନିର୍ବିଶେଷରେ ସେ ସବୁଠି ମୁଣ୍ଡ ସଳଖି ଚାଲିପାରନ୍ତି ଏବଂ ସ୍ପଷ୍ଟ, ନିରପେକ୍ଷ ମତ ଦିଅନ୍ତି ।

ବର୍ମାରୁ ଆସିବା ପରେ ଅନେକ ଘାତପ୍ରତିଘାତ ଏବଂ ଅଭାବକୁ ସହି କୁନ୍ତଳା ଡାକ୍ତରୀ ପାଠ ପଢ଼ିଥିଲେ । ସେତେବେଳେ ତାଙ୍କୁ ଜଣେ ଉଦାରମନା ଶିକ୍ଷକ ଡ. କୈଳାଶ ଚନ୍ଦ୍ର ରାଓ ଅନେକ ସାହାଯ୍ୟ କରିଥିଲେ । ୧୯୨୧ ମସିହାରେ ସେ ମେଡ଼ିକାଲ ପରୀକ୍ଷାରେ କୃତିତ୍ୱର ସହ ପ୍ରଥମ ସ୍ଥାନ ଅଧିକାର କରି ସ୍ୱର୍ଣ୍ଣପଦକ ହାସଲ କରିଥିଲେ । ୧୯୨୧ରୁ ୧୯୨୮ ପର୍ଯ୍ୟନ୍ତ ସମୟ କୈଳାଶଙ୍କ ସହ କୁନ୍ତଳାଙ୍କ ଆନ୍ତରିକତା ପ୍ରଗାଢ଼ ହୋଇଥିଲା । କୁନ୍ତଳା ଡାକ୍ତରୀ ପାସ୍ କଲାପରେ ସ୍ୱାଧୀନ ଭାବରେ ରୋଗୀ ଚିକିତ୍ସା ଆରମ୍ଭ କଲେ ଏବଂ ତାଙ୍କ ବ୍ୟବହାର ଓ ରୋଗୀସେବା ଗୁଣ ଯୋଗୁଁ ଅଳ୍ପଦିନ ଭିତରେ ସେ ସମସ୍ତଙ୍କର ପ୍ରିୟ ହୋଇପାରିଥିଲେ । ସେ ସମୟରେ ମଧ୍ୟ କୈଳାଶବାବୁ ତାଙ୍କୁ ସାହାଯ୍ୟ କରିଥିଲେ ଏବଂ ଜଣେ ଲେଖିକା ଭାବରେ ତାଙ୍କୁ ଲୋକଲୋଚନକୁ ଆଣିବା ଦିଗରେ ମଧ୍ୟ ତାଙ୍କର ଯଥେଷ୍ଟ ଭୂମିକା ରହିଛି । ଜଣେ ନୀରବ ସାଧିକା ଭାବରେ କୁନ୍ତଳା ସାହିତ୍ୟ ସୃଷ୍ଟି କରି ଚାଲିଥାନ୍ତି । ସେତେବେଳେ ଉତ୍କଳ ସାହିତ୍ୟ ନାମକ ଏକ ଉଚ୍ଚକୋଟୀର ପତ୍ରିକା ଓଡ଼ିଶାରେ ପ୍ରକାଶିତ ହେଉଥାଏ । ତହିଁରେ କୁନ୍ତଳାଙ୍କ ରଚିତ 'ତାରାପ୍ରତି' ଓ ପରେ ପରେ 'ଶେଫାଳୀ ପ୍ରତି', 'କମଳପ୍ରତି', 'ପୂଜା' ଇତ୍ୟାଦି ପ୍ରକାଶିତ ହେଲା । ମାତ୍ର ବାଇଶି ବର୍ଷ ବୟସରେ ସେ ଓଡ଼ିଆ ସାହିତ୍ୟରେ ନିଜ ପ୍ରତିଭା ଓ ସାଧନାର ପରିଚୟ ଦେଇପାରିଥିଲେ ।

୧୯୨୫ ମସିହାରେ କଟକରେ ମାତୃମଙ୍ଗଳ କେନ୍ଦ୍ର ପ୍ରତିଷ୍ଠିତ ହେଲା ଓ ତହିଁରେ ସେ ନିଯୁକ୍ତି ପାଇଲେ । ଡ. କୈଳାଶଙ୍କ ପରାମର୍ଶରେ ସେ ବ୍ରାହ୍ମସମାଜ ସହ ସଂପର୍କ ସ୍ଥାପନ କଲେ । କିନ୍ତୁ କିଛି ଫଳ ମିଳିଲା ନାହିଁ । ନିରାଶା ଓ ହତାଶାରେ ଦିନ କାଟୁଥିବାବେଳେ ତାଙ୍କ ଜୀବନ ପରିଧି ମଧ୍ୟକୁ ଆସିଲେ ଦିଲ୍ଲୀର କୃଷ୍ଣ ପ୍ରସାଦ ବ୍ରହ୍ମଚାରୀ । ଅହଲ୍ୟାଙ୍କ ଜୀବନରେ ଯେପରି ତିନିଜଣ ପୁରୁଷଙ୍କ ଆବିର୍ଭାବ ଘଟିଥିଲା, ଜଣେ ପୁରୁଷ ସ୍ୱାମୀ ଗୌତମ ଋଷି ରୂପରେ, ଦ୍ୱିତୀୟ ପୁରୁଷ କପଟାଚାରୀ ଇନ୍ଦ୍ର ରୂପରେ ଏବଂ ତୃତୀୟରେ ଆସିଥିଲେ ମର୍ଯ୍ୟାଦା ପୁରୁଷୋତ୍ତମ ଶ୍ରୀରାମଚନ୍ଦ୍ର, ସ୍ୱୟଂ ପରଂବ୍ରହ୍ମ । ଯାହାଙ୍କ ପଦସ୍ପର୍ଶରେ ଶାପଗ୍ରସ୍ତା ଅହଲ୍ୟା ଶାପମୁକ୍ତା ହୋଇ, ନିଥର, ପଥର ଜୀବନରେ ଜୀବନ୍ୟାସ ପାଇ ଧନ୍ୟା ହୋଇଥିଲେ । କିନ୍ତୁ ସବୁନାରୀଙ୍କ ଭାଗ୍ୟରେ କ'ଣ ପରଂବ୍ରହ୍ମଙ୍କ ପଦସ୍ପର୍ଶ ସମ୍ଭବ ? ହୁଏତ ଅନେକ ଗୌତମ, ଅନେକ ଇନ୍ଦ୍ର ନାରୀର ଜୀବନ ଭିତରକୁ ଆସିପାରନ୍ତି କିନ୍ତୁ ମର୍ଯ୍ୟାଦା ପୁରୁଷୋତ୍ତମଙ୍କ ଆବିର୍ଭାବ କାହା ଭାଗ୍ୟରେ ସମ୍ଭବ ? ପରଂବ୍ରହ୍ମଙ୍କ ଆବିର୍ଭାବ ସମ୍ଭବ ନହେଲେ ମଧ୍ୟ ଏ ଯୁଗରେ ତାଙ୍କ କରୁଣା ଓ କୃପା ପ୍ରାପ୍ତି ସମ୍ଭବ । ତାହା ହିଁ ଘଟିଥିଲା କୁନ୍ତଳାଙ୍କ ଜୀବନରେ । ଅନେକ ଯଶ ଖ୍ୟାତି ତାଙ୍କର ବ୍ୟାପିବାରେ ଲାଗିଥିଲା ।

୧୯୨୮ ମସିହାରେ ସେ ଓଡ଼ିଶା ଛାଡ଼ି ଦିଲ୍ଲୀ ଚାଲିଗଲେ ଏବଂ ସେଠାରେ ସେ ବୈଦିକ ରୀତିରେ କୃଷ୍ଣପ୍ରସାଦ ବ୍ରହ୍ମଚାରୀଙ୍କୁ ବିବାହ କଲେ ଏବଂ ଡାକ୍ତରୀ ବ୍ୟବସାୟ ଖୁବ୍ ନିଷ୍ଠାର ସହିତ କରିଚାଲିଲେ । ଦିଲ୍ଲୀରେ ସେ ଉର୍ଦ୍ଦୁ ଭାଷା ଶିଖିଲେ । ସେତେବେଳେ ସେ ହିନ୍ଦୀରେ ଅନେକ ସାହିତ୍ୟ ରଚନା କରିବା ସହ ତାଙ୍କର ହିନ୍ଦୀ

କବିତାଗୁଡ଼ିକ 'ବରମାଳା' ନାମକ ଏକ କବିତା ସଂକଳନ ରୂପରେ ପ୍ରକାଶିତା ହେଲା । ଦିଲ୍ଲୀର ହିନ୍ଦୀ ସାହିତ୍ୟ ପରିଷଦ ଓ ହିନ୍ଦୀ ନାଟ୍ୟ ସଂସଦର ସେ ସଭାନେତ୍ରୀ ମଧ ହୋଇଥିଲେ । ଉତ୍ତର-ଭାରତର ବିଭିନ୍ନ ସ୍ଥାନରେ, ସଭାସମିତିରେ ସେ ହିନ୍ଦୀରେ ଭାଷଣ ପ୍ରଦାନ କରି ଉଚ୍ଚ ପ୍ରଶଂସିତ ହୋଇଥିଲେ ଏବଂ ବିଭିନ୍ନ ହିନ୍ଦୀ ପତ୍ରପତ୍ରିକାରେ ମଧ ତାଙ୍କ ଭାଷଣ ପ୍ରକାଶିତ ହୋଇଥିଲା । ସମଗ୍ର ଉତ୍ତର ଭାରତରେ ଏହି ମହିୟସୀ ମହିଳା ନିଜର ପ୍ରଚଣ୍ଡ ପ୍ରତିଭା ବଳରେ ଉଚ୍ଚ ଆସନରେ ଅଧିକାରୀ ହୋଇପାରିଥିଲେ । ଜଣେ ଓଡ଼ିଆ ମହିଳା ଭାବରେ ସେତେବେଳେ ଏଭଳି ଖ୍ୟାତି ଅର୍ଜନ କରିବା ସହଜ ନଥିଲା ।

ହିନ୍ଦୀ ସାହିତ୍ୟର ପ୍ରଖ୍ୟାତ ସ୍ରଷ୍ଟା ଶ୍ରୀ ଜୈନେନ୍ଦ୍ର କୁମାର କୁନ୍ତଳାଙ୍କ ଜୀବନକୁ ନେଇ 'କଲ୍ୟାଣୀ' ଉପନ୍ୟାସ ରଚନା କରିଥିଲେ । ଜଣେ ସାରସ୍ୱତ ସାଧକ ବା ସାଧିକାଙ୍କୁ ନେଇ ଏପରି ଉପନ୍ୟାସ ରଚନା ସାହିତ୍ୟ କ୍ଷେତ୍ରରେ ଏହା ପ୍ରଥମ ଏବଂ ଏକ ବିରଳ ଘଟଣା ଥିଲା ।

କୁନ୍ତଳାଙ୍କ ଆଧାତ୍ମିକ ଚେତନା ତଥା ଈଶ୍ୱର ଭକ୍ତି, ଦେଶପ୍ରେମ ଓ ମାନବିକତା ତାଙ୍କ ଜୀବନକୁ ମହିମାନ୍ୱିତା କରିଥିଲା । କୁନ୍ତଳାଙ୍କ ଏହିପରି ବଳିଷ୍ଠ ବ୍ୟକ୍ତିତ୍ୱ ଲାଗି ଅନ୍ୟ ଭାଷାଭାଷୀ ବୁଦ୍ଧିଜୀବୀ ମହଲରେ ସେ କିପରି ଭାବରେ ଆଦୃତା ହୋଇଥିଲେ, 'କଲ୍ୟାଣୀ' ଉପନ୍ୟାସ ତାହାର ଏକ ଜ୍ୱଳନ୍ତ ଉଦାହରଣ ।

ଆଧାତ୍ମିକ କୁସୁମର ସୁବାସରେ ମହକିତ ତାଙ୍କ କାବ୍ୟ ଉପବନ ଓ ଦେଶପ୍ରେମର ନିର୍ମଳ ଧାରାରେ ପ୍ଲାବିତ ତାଙ୍କ ହୃଦୟ ସଦାସର୍ବଦା ଓଡ଼ିଶାବାସୀଙ୍କ ପାଇଁ ବ୍ୟାକୁଳିତ ହେଉଥିଲା । କୁନ୍ତଳା ଦିଲ୍ଲୀରେ ଅବସ୍ଥାନ କରୁଥିଲେ ହେଁ ତାଙ୍କ ମନପ୍ରାଣ ଓ ଲକ୍ଷ୍ୟ ରହିଥାଏ ଓଡ଼ିଶାରେ । ଜଗନ୍ନାଥଙ୍କପ୍ରତି ତାଙ୍କର ଥାଏ ପ୍ରଗାଢ଼ ଭକ୍ତି । ପୁରୀର ବିଖ୍ୟାତ 'ମୁକ୍ତିମଣ୍ଡପ' ପଣ୍ଡିତ ପରିଷଦ ସେତେବେଳେ ତାଙ୍କ କାବ୍ୟ ପ୍ରତିଭାକୁ ଭୂରି ଭୂରି ପ୍ରଶଂସା କରିଥିଲେ । ଏଠାକାର 'ମହିଳାବନ୍ଧୁ ସମିତି' ପକ୍ଷରୁ ସେ ଉତ୍କଳ ଭାରତୀ ଉପାଧି ପାଇଥିଲେ ।

ସେତେବେଳେ ପରାଧୀନ ଭାରତବର୍ଷରେ ଓଡ଼ିଆ ନାରୀର ଉନ୍ନତି ବିଧାନ ଲାଗି ତାଙ୍କ ପରି ଅନ୍ୟ ଜଣେ ମହିୟସୀ ମହିଳା କେହି ନାହିଁ ଯେ କି ହୃଦୟ ଢାଳି ନାରୀ ସମାଜର ବିକାଶ ଦିଗରେ ଉଦ୍ୟମ କରିଛନ୍ତି । ମହାତ୍ମା ଗାନ୍ଧୀଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇ ତାଙ୍କର ପଟ୍ଟଶିଷ୍ୟା ଭାବରେ ନାରୀ ଜାଗରଣ ପାଇଁ ଉଗ୍ର ଜାତୀୟତାବୋଧରେ ମହିଳାମାନଙ୍କୁ ସଚେତନ କରି ସଭାସମିତି ଜରିଆରେ ଭାଷଣ ପ୍ରଦାନ କରି ସେମାନଙ୍କୁ ଦେଶପ୍ରେମରେ ଉଦ୍‌ବୁଦ୍ଧ କରୁଥିଲେ ।

ଦିଲ୍ଲୀ ଅବସ୍ଥାନ କାଳରେ ସେ ମହିଳା ସଂଗଠିକାର ପରିଚୟ ଦେଇଥିଲେ । ସେ ସମୟରେ 'ଦିଲ୍ଲୀ ଚିଠି' ତାଙ୍କ ଗଦ୍ୟ ରଚନା କ୍ଷେତ୍ରରେ ଉଲ୍ଲେଖନୀୟ କୃତି । ପ୍ରଥମେ ତାହା 'ସମାଜ'ରେ ଓ ପରେ 'ସହକାର'ରେ ପ୍ରକାଶିତ ହୋଇ ପ୍ରବଳ ଜନଆଦୃତ ହେଲା । ଆଠଟି ଦିଲ୍ଲୀ ଚିଠି ପ୍ରକାଶ ପାଇଥିଲା । ଏହା ସାଧାରଣ ରଚନା ନଥିଲା । ଏଥିରେ ସାହିତ୍ୟିକ ମୂଲ୍ୟବୋଧ ସହ ସାମାଜିକ ଜୀବନକୁ ଉନ୍ନତ ଓ ମାର୍ଜିତ କରିବା ପାଇଁ ପ୍ରେରଣା ଭରି ରହିଥିଲା । କେତେବେଳେ କୁସଂସ୍କାର ବିରୋଧରେ, ଅନ୍ଧବିଶ୍ୱାସ ବିରୋଧରେ ତ କେତେବେଳେ ନାରୀଜାତିକୁ ଜାଗ୍ରତ ହେବାପାଇଁ ଆହ୍ୱାନ ତ କେତେବେଳେ ଦେଶ ମିଶ୍ରଣ ଲାଗି ପରାମର୍ଶ ଶୁଣାଇଛନ୍ତି ।

କୁନ୍ତଳା କୁମାରୀ ତାଙ୍କ ନେତୃତ୍ୱ ଓ ବାଗ୍ମିତା ପାଇଁ ୧୯୩୦, ଡିସେମ୍ବର ୨୫ ତାରିଖରେ ଗୁରୁକୁଳ ବୃନ୍ଦାବନ ସଂଗଠନର ବାର୍ଷିକ ସମାରୋହରେ ନାରୀ ପରିଷଦର ସଭାପତି ଆସନ ଅଳଙ୍କୃତ କରିଥିଲେ । ୧୯୩୨ ମସିହାରେ ରାଜ୍ୟସ୍ତରୀୟ ମହିଳା ସମ୍ମିଳନୀରେ ସଭାପତିତ୍ୱ କରିବାକୁ ବାଲେଶ୍ୱର ଯାଇଥିବାବେଳେ ସେ ଓଡ଼ିଶା ମାଟିରେ ପଦାର୍ପଣ କଲାବେଳେ ଭାବବିହ୍ୱଳ ହୋଇପଡ଼ିଥିଲେ । ଏଇ ମୋ' ଓଡ଼ିଶା, ଏହାର ପାଣିପବନ ମୋତେ ପୁଷ୍ଟ କରିଛି ! ସେଠାରେ ସେ ନାରୀଜାତି ପ୍ରତି ଅତ୍ୟନ୍ତ ସାର ଗର୍ଭକ ଭାଷଣ ପ୍ରଦାନ କରି ଶ୍ରୋତାଙ୍କୁ ମୁଗ୍ଧ କରି ଦେଇଥିଲେ । ୧୯୩୦ ଓ ୧୯୩୧ ମସିହାରେ ବ୍ରହ୍ମପୁରର ଆଶା ଓ ନବୀନ ପତ୍ରିକା ସହିତ ସଂପୃକ୍ତ ଥାଇ ସେ ଦୁଇ ତିନିଥର ବ୍ରହ୍ମପୁର ଆସି ଉଦ୍‌ବୋଧନ ଦେଇଯାଇଛନ୍ତି । ୧୯୩୨ ମସିହାରେ ବରେଲି ଆର୍ଯ୍ୟ ମହିଳା ମହାସମ୍ମିଳନୀରେ ସେ ସଭାପତିତ୍ୱ କରି ହିନ୍ଦୀରେ ଦୀକ୍ଷାନ୍ତ ଭାଷଣ ପ୍ରଦାନ କରିଥିଲେ । କ୍ରମଶଃ ତାଙ୍କ ସାଂଗଠନିକ ଦକ୍ଷତା ଓ କର୍ମକୁଶଳତା ତାଙ୍କୁ କଂଗ୍ରେସ ସଂଗଠନକୁ ଟାଣି ନେଇଥିଲା । ସେ ୧୯୩୫ ମସିହାରେ ଷ୍ଟୁଡେଣ୍ଟସ୍ ଫେଡ଼େରେସନ୍‌ର ସଭାନେତ୍ରୀ ହୋଇଥିଲେ ।

କବୟିତ୍ରୀ କୁନ୍ତଳାଙ୍କ ସାଧନା ଥିଲା ବହୁମୁଖୀ । କେତେବେଳେ ଜଣେ ଭଗବତ ବିଶ୍ୱାସୀ ଭକ୍ତ ତ ଆଉ କେତେବେଳେ ଜଣେ ଦେଶପ୍ରେମୀ ଅବା ସୌନ୍ଦର୍ଯ୍ୟର ଉପାସିକା ତ ପୁଣି କେତେବେଳେ ଜଣେ ବାସ୍ତବବାଦୀ କବି ଏବଂ ପୁଣି କେତେବେଳେ ରହସ୍ୟବାଦୀ ଚେତନାରେ ଉଦ୍‌ବୁଦ୍ଧ । କିନ୍ତୁ ବିଶେଷ ଭାବରେ ଆଧାତ୍ମିକତାର ଭାବବିହ୍ୱଳତା କବିଙ୍କୁ ପରମାର୍ଥିକ ଆସନରେ ଆସୀନ କରିଛି । ପରମାର୍ଥିକ ଦର୍ଶନର ମାହାତ୍ମ୍ୟ, ଗାମ୍ଭିର୍ଯ୍ୟ ତାଙ୍କ ଜୀବନକୁ ଆବୋରି ବସିଛି । ସାଧିକା କୁନ୍ତଳା ଅନୁଭବରେ ଦେବତାର ସନ୍ଧାନ ପାଇଛନ୍ତି । ଏହି ସତ୍ୟତାର ଆଲୋକ ରେଖା ଯେପରି ବ୍ୟକ୍ତି-ବିଶ୍ୱକୁ ଏବଂ ବିଶ୍ୱ-ବ୍ୟକ୍ତିକୁ ପ୍ରସାରିତ ହୋଇଯାଇଛି । ଏହି ବହୁମୁଖୀ ପ୍ରତିଭାର ଅଧିକାରିଣୀ କୁନ୍ତଳା କୁମାରୀଙ୍କ ୧୯୩୮ ମସିହା ଅଗଷ୍ଟ ୨୩ ତାରିଖରେ ଦେହାନ୍ତ ହୋଇଥିଲା ।

ମାତ୍ର ୩୮ ବର୍ଷ ବୟସ ସୀମା ମଧ୍ୟରେ ସେ ଅନେକ ଅତୁଳନୀୟ କାର୍ଯ୍ୟ କରି ନାରୀ ଅବଳା ବା ଦୁର୍ବଳା ନୁହେଁ, ମହାଶକ୍ତିଶାଳିନୀ ବୋଲି ପ୍ରମାଣିତ କରିଯାଇଛନ୍ତି । ସେ ଥିଲେ ଏକ ଅନିର୍ବାଣ ଅଗ୍ନିଶିଖା । ଯାହା କେବେ ଲିଭି ନାହିଁ ବା ନିର୍ବାପିତ ହୋଇନାହିଁ ।

ଜରଡ଼ା ବଙ୍ଗଳୋ
ବ୍ରହ୍ମପୁର-୪

# ଚୈତ୍ର ମଙ୍ଗଳା ଓଷା

ଡକ୍ଟର କାଙ୍ଗାଳି ଚରଣ ନାୟକ



ଓଡ଼ିଶା ଏକ ପର୍ବପର୍ବାଣିର ରାଜ୍ୟ ହୋଇଥିବାରୁ ଏଠାରେ ବାର ମାସରେ ତେର ପର୍ବ ପାଳନ କରାଯାଏ । ସେହି ବ୍ରତ ଓ ଓଷା ମଧ୍ୟରେ ଚୈତ୍ର ମଙ୍ଗଳା ଓଷା ଅନ୍ୟତମ । ଏହି ଓଷା ବାଟରେ କରାଯାଉଥିବାରୁ କେହି କେହି ଏହାକୁ ବାଟ ମଙ୍ଗଳା ଓଷା ବୋଲି କହିଥାନ୍ତି । ଚୈତ୍ର ମାସରେ ଏହି ଓଷା କରାଯାଉଥିବାରୁ ଏହାକୁ ମଧ୍ୟ କେହି କେହି ଚଇତି ମଙ୍ଗଳା ଓଷା ବୋଲି କହିଥାନ୍ତି । ଏହି ଓଷା ଅତି ପ୍ରାଚୀନ । ପ୍ରାଚୀନ ଭଜନ ଜଣାଣରେ ଏହାର ଉଲ୍ଲେଖ ଅଛି-

'ଥକା ମନ ଚାଲ ଯିବା  ଚକା ନୟନ ଦେଖିବା  
ଶଙ୍ଖନାଭି ମଣ୍ଡଳରେ ବେନିନେତ୍ର ପଖାଳିବା  
ବାଟରେ ବାଟ ମଙ୍ଗଳା  ଦେଖିବା ଅଠର ନଳା ।'

ମା' ଦୁର୍ଗା ଚୈତ୍ର ମାସରେ ପୂଜା ପାଇବାର ବିଧି । ମାତ୍ର ରାମାୟଣରେ ରାମଚନ୍ଦ୍ର ଦେବୀ ଦୁର୍ଗାଙ୍କୁ ଅସମୟରେ ଅର୍ଥାତ୍ ଆଶ୍ୱିନ ମାସରେ ବା ଶରତ ଋତୁରେ ପୂଜା କରିଥିଲେ । ତେଣୁ ଆଶ୍ୱିନ ମାସରେ ଦେବୀଙ୍କୁ ଶାରଦୀୟ ଦେବୀ ଓ ଚୈତ୍ର ମାସର ଦେବୀଙ୍କୁ ଚଇତି ଦେବୀ ବୋଲି କୁହାଯାଏ । ପୁନଶ୍ଚ ବଙ୍ଗାଳୀମାନଙ୍କ ମତରେ ଦେବୀ ଦଶଭୁଜା କିନ୍ତୁ ଉତ୍କଳୀୟମାନଙ୍କ ମତରେ ଦେବୀ ଅଷ୍ଟଭୁଜା । ଆମେ ଶାରଦୀୟ ଦେବୀଙ୍କୁ ବଙ୍ଗାଳୀମାନଙ୍କ ପ୍ରଭାବରେ ଦଶଭୁଜା କରିବା ବେଳେ ଚଇତି ଦେବୀଙ୍କୁ ଅଷ୍ଟଭୁଜା କରିଥାଉଁ । ଦେବୀ ଦୁର୍ଗା ହେଉଛନ୍ତି - ମଙ୍ଗଳା, ଶାରଳା, ଓ କାଳୀ ମଧ୍ୟ । ସେ ପୁଣି ଶକ୍ତି ସ୍ୱରୂପିଣୀ ପାର୍ବତୀ । ତାଙ୍କର ମୃଣ୍ମୟ ମୂର୍ତ୍ତି ଗଢ଼ି ସର୍ବସାଧାରଣରେ ବା ଗାଁ ଗଣ୍ଡାରେ ପୂଜା କରିବା ଅତ୍ୟନ୍ତ କଷ୍ଟକର ବ୍ୟାପାର ହୋଇଥିବାରୁ ଶରତଋତୁରେ ତାଙ୍କୁ ମଙ୍ଗଳା ରୂପେ ଓ ଚୈତ୍ର ମାସରେ ବାଟ ମଙ୍ଗଳା ରୂପେ ପୂଜା କରାଯାଏ ।

ଏହି ଓଷା ସାଧାରଣତଃ ନାରୀମାନେ କରିଥାନ୍ତି । ଚୈତ୍ରମାସର ମଙ୍ଗଳବାର ଦିନ ଏହି ଓଷା କରାଯାଏ । ଅର୍ଥାତ୍ ଫାଲଗୁନ୍ ପୂର୍ଣ୍ଣିମାଠାରୁ ଚୈତ୍ର ପୂର୍ଣ୍ଣିମା ଯାଏ ପାଞ୍ଚପାଳି ଏହି ଓଷା କରାଯାଏ । ବାଟରେ ବା ଦାଣ୍ଡରେ ମଙ୍ଗଳାଙ୍କର କୋଠି କରି ଗୋମୟରେ ଲିପାପୋଛା କରି ଆମ୍ବ ଫୁଲଡାଳରେ ବିଚିତ୍ର ରୂପେ ମଣ୍ଡି ନାନା ପୁଷ୍ପରେ କୋଠି ମଣ୍ଡନ କରିବ । ସିନ୍ଦୂର ଓ କଜ୍ଜଳ ଆଦି ସଜାଡ଼ି ଥୋଇବ । ତଣ୍ଡୁଳ, ଦୁବ ଓ ବରକୋଳି ପତ୍ର ସଜାଡ଼ି ରଖିବ, ଗନ୍ଧ ଧୂପ, ଦୀପ ମଧ୍ୟ ଦେବ । ଅର୍ଘ୍ୟ ଥାଳିରେ ନାନାଜାତି ଫୁଲ ସହିତ ପାଞ୍ଚବର୍ଣ୍ଣର ବସ୍ତ୍ର ନେଇ ମଙ୍ଗଳାଙ୍କ ପାଦରେ ସମର୍ପଣ କରିବ ।

ଭୋଗ ସାମଗ୍ରୀ ଭାବରେ - ନଡ଼ିଆ, କଦଳୀ, ଆମ୍ବ, ଜମୀର, ନାରଙ୍ଗ, ମହୁଲରାଇ, କଣ୍ଟେଇ କୋଳି, କମଳା, ପିଜୁଳି, ଟଭା ଆଦି ନାନା ମିଠା ଫଳ, ଛେନା, ସର, ଦହି, ଦୁଗ୍ଧ, ନବାତ ସହିତ ରାଶିଲଡ୍ଡୁ, ଗଜାମୁଆଁ, ପିଠା ପଣା, ପଞ୍ଚାମୃତ ସବୁ ନେଇ କୋଠିରେ ମଙ୍ଗଳାଙ୍କୁ ପୂଜା କରିବ । ନାସି ନଡ଼ିଆ ଦ୍ୱାରା କଳସ ସ୍ଥାପନ କରିବାକୁ ହେବ ।

ଏ ଓଷାରେ ଧଳା ବା ପାଟ ସୂତାରେ ଏକ ବ୍ରତ ଡୋର କରିବାକୁ ହେବ । ସେଥିରେ ପୁଣି ୧୩ଟି ଗଣ୍ଠି ପଡ଼ିବ । ପ୍ରତ୍ୟେକ ଗଣ୍ଠିରେ ମା' ମଙ୍ଗଳାଙ୍କ ନାମ ସ୍ମରଣ କରି ତେରଟି ଗଣ୍ଠି ଦେବାକୁ ହେବ ଯଥା-

'ସିଦ୍ଧମୟୀ ସିଦ୍ଧକର ବୋଲି ଯେ ବୋଲିବ,  
ମଙ୍ଗଳା ନାମରେ ଏକ ଗଣ୍ଠି ପକାଇବ ।  
ଦ୍ୱିତୀୟରେ ମହାମାୟୀ ତୃତୀୟେ ଶାରଳା,  
ଚତୁର୍ଥେ ଦେବ ଗଣ୍ଠି ଧରିଣ ହିଙ୍ଗୁଳା ।  
ପଞ୍ଚମେ ଦେବ ବିରଜା ଷଷ୍ଠେ ଭଗବତୀ,  
ସପ୍ତମେ ରାଜନନ୍ଦିନୀ ସିଦ୍ଧ ଯେ ପାର୍ବତୀ ।

ଅଷ୍ଟମରେ ଅମ୍ବିକା ନବମେ କାଳିକା,
ଦଶମେ ବିମଳା ଦେବୀ ମଣ୍ଡି ଯେ ମାଳିକା ।
ଏକାଦଶ ଗଣ୍ଡି ଦେବ ନାମେ ନାରାୟଣୀ,
ଦ୍ୱାଦଶରେ ଗଣ୍ଡି ଦେବ ଶିବଙ୍କ ଘରଣୀ ।
ତ୍ରୟୋଦଶେ ଗଣ୍ଡି ଦେବ ନାମେ ବରୁଣାଇ
ସନ୍ତୋଷ ଚିତ୍ତରେ ଗଣ୍ଡି ପକାଇବ ତହିଁ ।'

ଏହି ଓଷା ସମ୍ବନ୍ଧରେ ଦୁଇଟି ଓଷା ବହି ମିଳେ, ପ୍ରଥମଟି 'ଚୈତ୍ର ମଙ୍ଗଳା ଓଷା କଥା ।' ଏହାକୁ ନରହରି ଦାସ ରଚନା କରିଛନ୍ତି ।

ଦ୍ୱିତୀୟଟି- 'ଚୈତ୍ର ମଙ୍ଗଳା ଓଷା କଥା' । ପୁସ୍ତକଟି ବଳରାମ ଦାସଙ୍କଦ୍ୱାରା ରଚନା କରାଯାଇଛି । ଦୁଇଟି ବହିର ବିଷୟବସ୍ତୁ ଭିନ୍ନ ହେଲେ ମାତ୍ର ବ୍ରତର ଗଣ୍ଡିପକା ଓ ପୂଜା ପଦ୍ଧତି ଏକାପରି ଅନୁମେୟ ହୁଏ । ତଥାପି ଏହି ଦୁଇଟି ବହି ବିଭିନ୍ନ ଓଷା ମଣ୍ଡପରେ ପଢ଼ାଯାଏ । ନିମ୍ନରେ ଓଷା ବହି ଦୁଇଟିର ବିଷୟବସ୍ତୁ ସଂକ୍ଷେପରେ ପ୍ରଦାନ କରାଗଲା -

ପ୍ରଥମ ପୁସ୍ତକ ଅନୁଯାୟୀ- ଦିନେ ନାରଦ ମୁନି ଦ୍ୱାରିକାରେ ପହଞ୍ଚି ଦେବୀ ରକ୍ମିଣୀଙ୍କୁ ଭେଟିବା ପରେ ରକ୍ମିଣୀ ନିଜର ଜନ୍ମିତ ପୁତ୍ରକୁ କିଏ ଅପହରଣ କରିବା ସହିତ ସେ ସ୍ୱାମୀ ଦ୍ୱାରିକାପତି କୃଷ୍ଣଙ୍କଦ୍ୱାରା ଅବହେଳିତ କଥା କହିଛନ୍ତି । ଏହା ଶୁଣି ନାରଦ ମୁନି ବ୍ରହ୍ମାଙ୍କ ମୁଖରୁ ଶୁଣିଥିବା ଚୈତ୍ର ମଙ୍ଗଳାଙ୍କ ଓଷା କରିବାକୁ କହିଛନ୍ତି ।

ନାରଦଙ୍କ ମୁହଁରୁ ଶୁଣି ରକ୍ମିଣୀ ଏ ବ୍ରତ କଲେ । ରକ୍ମିଣୀଙ୍କ ପୁତ୍ର ପ୍ରଦ୍ୟୁମ୍ନଙ୍କୁ ସମରାସୁର ମାରିବାକୁ ନେଇଥିଲା । ରକ୍ମିଣୀ ବ୍ରତ କରିବାରୁ ପ୍ରଦ୍ୟୁମ୍ନ ଏତେ ଓଜନ ହେଲେ ଯେ ସେ ସମୁଦ୍ରରେ ଫିଙ୍ଗି ଦେଇ ଚାଲିଗଲା । ତାଙ୍କୁ ଗୋଟିଏ ବଡ଼ମାଛ ଗିଳିଲା । ସେ ମାଛକୁ ଧୀବର ଧରି ସମରାସୁରକୁ ଦେଲା । ମାଛକୁ ରତି ଦେବୀ ପନିକି ଧରି କାଟନ୍ତେ ମାଛ ପେଟରୁ ପ୍ରଦ୍ୟୁମ୍ନକୁ ପାଇ ପୁତ୍ର ପରି ଲାଳନପାଳନ କଲେ । ଶିବଙ୍କଦ୍ୱାରା ଭସ୍ମ ହୋଇଥିବା କନ୍ଦର୍ପ ପୁଣି ପ୍ରଦ୍ୟୁମ୍ନ ରୂପରେ ଜନ୍ମ ହେଲେ । ତେଣୁ ରତି ଦେବୀ ପ୍ରଦ୍ୟୁମ୍ନକୁ ଲାଳନପାଳନ କରି ବଡ଼ କରି ତାଙ୍କୁ ପୂର୍ବର ସମସ୍ତ ବୃତ୍ତାନ୍ତ କହି ପ୍ରେମ କଲେ । ମାତା ସହିତ ପୁତ୍ରର ପ୍ରେମ ରାଜ୍ୟରେ ପ୍ରଚାର ହୁଅନ୍ତେ ସମରାସୁର କ୍ରୋଧାନ୍ୱିତ ହୋଇ ପ୍ରଦ୍ୟୁମ୍ନକୁ ମାରିବାକୁ ସୈନ୍ୟ ପ୍ରେରଣ କଲା । ରତି ଦେବୀ ପ୍ରଦ୍ୟୁମ୍ନକୁ ଫୁଲ ଧନୁ ଓ ଶର ଦେଲେ । ପ୍ରଦ୍ୟୁମ୍ନ ଯୁଦ୍ଧରେ ସୈନ୍ୟମାନଙ୍କୁ ବଧ କରିବା ସହିତ ସମରାସୁରକୁ ମାରି ଦ୍ୱାରିକାକୁ ରତିଦେବୀଙ୍କ ସହ ଫେରିଲେ । ରକ୍ମିଣୀ ଏହି ବ୍ରତ କରିବାରୁ ହଜିଲା ପୁତ୍ର ସହ ରତିଦେବୀଙ୍କୁ ପୁତ୍ରବଧୂ ରୂପେ ପାଇଲେ ।

ଏହି ପୁସ୍ତକରେ ଉଲ୍ଲେଖ ଅଛି ଯେ ଏହି ବ୍ରତ ଯେଉଁ ନାରୀ କରେ ସେ ପୁତ୍ରବତୀ ହେବା ସହିତ ରୁକ୍ମିଣୀଙ୍କପରି ସ୍ୱାମୀ ସୁହାଗିନୀ ମଧ୍ୟ ହୁଏ । ଏହି ପୁସ୍ତକ ସଂପର୍କରେ କବି ଲେଖିଛନ୍ତି-

'ଭକତ ବତ୍ସଳ ମାତା ପୂରାଅ ମାନସ,
ଆଜ୍ଞା ତୋର ମାଗେ ନରହରି ଦାସ
ପଉଷ ଶୁକ୍ଳ ତୃତୀୟା ରବିବାର ଦିନ,
ତାରିଖ ଦ୍ୱାବିଂଶ ସନ ଅଠଷଠି ଜାଣ ।
ବାଳକଟା ବନ୍ଧ ସାହି ଶ୍ରୀଗୁରୁ ମନ୍ଦିରରେ,
ଲେଖିଲି ଆନନ୍ଦ ମନେ ମାତାଙ୍କ କୃପାରେ ।'

ଦ୍ୱିତୀୟ ପୁସ୍ତକ- ତାହା ବଳରାମ ଦାସଙ୍କଦ୍ୱାରା ରଚିତ । ସେହି ଓଷା ବହିରେ ଦେବୀ ଶାରଳାଙ୍କୁ ସ୍ତୁତି କରାଯାଇଛି -

'ବନ୍ଦଇ ଶାରଳା ମାଗୋ ତୁମ୍ଭ ଶ୍ରୀଚରଣେ,
ଲେଖୁଅଛି ପଦମାନ କହିଦେବ ମତେ ।
ନମଇ ଶାରଳା ମାଗୋ ଶିବଙ୍କ ଘରଣୀ,
ଝଙ୍କଡ଼ପୁର ବାସିନୀ ମହିଷାମର୍ଦ୍ଦିନୀ ।
ଅମ୍ବିକା କାଳିକା ବେତାଳିକା ତୋ'ର ନାମ,
ଦୁର୍ଗା ମହାମାୟୀ ଗୋ ମଙ୍ଗଳା ତୋ'ର ନାମ ।
ଜୟଶ୍ରୀ ମଙ୍ଗଳା ମାଗୋ ତାରା କାତ୍ୟାୟିନୀ,
ସଙ୍ଗତରେ ରଖିଅଛୁ ଚଉଷଠୀ ଯୋଗିନୀ ।
ମୁହିଁ ମୂର୍ଖ ଅପାଣ୍ଡୁକ ନ ଜାଣଇ କିଛି,
କଣ୍ଠରେ ବସିଣ ପଦ କହି ଦେବୁ ବାଛି ।'

କୃଷ୍ଣ ଓ ଅର୍ଜୁନଙ୍କ କଥୋପକଥନରେ ଓଷାର ବିଷୟବସ୍ତୁ କୃଷ୍ଣଙ୍କ ମୁହଁରେ ଶ୍ରୀମଦ୍ ଭଗବଦ୍ ଗୀତା ପରି କୁହାଯାଇଛି । ଲକ୍ଷ୍ମୀପୂଜା ବହିରେ ଶ୍ରୀୟା ଚଣ୍ଡାଳୁଣୀ ଲକ୍ଷ୍ମୀଙ୍କୁ ପୂଜା କରି ସନ୍ତୁଷ୍ଟ କରିବା ପରି ଏଥିରେ ଚଣ୍ଡାଳୁଣୀ ମଙ୍ଗଳାଙ୍କୁ ସନ୍ତୁଷ୍ଟ କରିଛି ଓ ପୁତ୍ର କନ୍ୟା ଲାଭ କରିଛି । ନିଶା ମଙ୍ଗଳବାର ଓଷା ବହିରେ ଖୁଲଣା ସୁନ୍ଦରୀଙ୍କୁ ବହୁତ ଦଣ୍ଡ ଦିଆଯାଇଛି ମାତ୍ର ତା'ର ଭକ୍ତିରେ ସନ୍ତୁଷ୍ଟ ହୋଇ ମା' ମଙ୍ଗଳା ତାକୁ ରକ୍ଷା କରିବା ପରି ଏଠାରେ ମଙ୍ଗଳାଙ୍କ ଭକ୍ତ ଚଣ୍ଡାଳୁଣୀକୁ ରାଜା ଦଣ୍ଡ ଦେବାକୁ ଯାଇ ତା'ର ପୁତ୍ରମାନଙ୍କୁ ମାରନ୍ତେ ମା' ମଙ୍ଗଳା ବଞ୍ଚାଇ ଦେଇଛନ୍ତି । ଶେଷକୁ ରାଜା ଓ ରାଜ୍ୟବାସୀମାନେ ମଙ୍ଗଳାଙ୍କୁ ପୂଜା କରି ପୁତ୍ରବତୀ ହୋଇଛନ୍ତି । ତାହା ଏଠାରେ ସଂକ୍ଷେପରେ ପ୍ରଦାନ କରାଗଲା -

ଅର୍ଜୁନ ମଙ୍ଗଳାଙ୍କ ବିଷୟ ପଚାରନ୍ତେ ଭଗବାନ ଶ୍ରୀକୃଷ୍ଣ ମା' ମଙ୍ଗଳାଙ୍କ ବିଷୟ କହିଛନ୍ତି । ଦିନେ ମା' ମଙ୍ଗଳା ତାଙ୍କ ପୂଜାଦିନରେ ବୁଢ଼ୀ ରୂପ ଧରି କେନ୍ଦୁଚାର ବିକିବା ନିମନ୍ତେ ନଗରରେ ପ୍ରବେଶ କଲେ । ସେ କତରା ପିନ୍ଧିଛନ୍ତି ଓ ତାଙ୍କ ଆଖିରୁ ମେଞ୍ଚା ମେଞ୍ଚା ଲେଞ୍ଚରା ବୋହି ପଡୁଥିବାରୁ ତାଙ୍କର ଏହି ରୂପ ଦେଖି କେହି କେନ୍ଦୁଚାର କିଣିଲେ ନାହିଁ । କିନ୍ତୁ ଜଣେ ଚାଣ୍ଡାଳୁଣୀ ତାଙ୍କୁ କେଉଁଠାରୁ ଆସିଲେ ଓ କେଉଁଠାକୁ ଯିବେ ବୋଲି ପଚାରନ୍ତେ ମଙ୍ଗଳା ତାଙ୍କୁ ଦୟାକରି ନିଜର ପରିଚୟ ଦେଲେ ଓ କେନ୍ଦୁଚାର ଦେଇ ତାଙ୍କର ପୂଜା କରିବାକୁ କହିଲେ । ତାଙ୍କର ପୂଜା କଲେ ସେ ପୁତ୍ରବତୀ ଓ ଧନବତୀ ହେବେ । ନଗରବାସୀ ତାଙ୍କର ପୂଜା ନକରିଥିବାରୁ ସମସ୍ତେ ଆଣ୍ଠୁକୁଡ଼ା ହେବେ ବୋଲି କହିଲେ ।

ଚଣ୍ଡାଳୁଣୀ ନଗରରୁ ଖଇମୁଆଁ, ନବାତ, ସାକର, ଛେନା ପଣା, ଗୁଡ଼, ଦୁଧ, ମିଠେଇ ଇତ୍ୟାଦି ପୂଜା ସାମଗ୍ରୀ, କିଣିଆଣି ଚନ୍ଦନ, କର୍ପୂର ପାଣିଗୃହରେ ସିଞ୍ଚି, ଗୋବରରେ ଘରଦ୍ୱାର ଲିପି, ଝୋଟି ଲେଖି ଜୟଶ୍ରୀମଙ୍ଗଳା ବୋଲି ଘଟ ସ୍ଥାପନ କଲା । ହଳଦୀ ଗୁଣ୍ଡରେ ଏକ ମୂର୍ତ୍ତି ତିଆରି କରି ଗଙ୍ଗାଜଳ ସିଞ୍ଚି ମଙ୍ଗଳାକୁ ସ୍ତୁତିକରି କେନ୍ଦୁଚାର ଭୋଗ ଲଗାଇଲେ । ଛେଳି, ମେଣ୍ଢା, କୁକୁଡ଼ା ବଳି ପକାଇ ପୂଜା କଲା । କିଛି ଦିନ ପରେ ଚାଣ୍ଡାଳୁଣୀର ଗୋଟିଏ ଝିଅ ହେଲା । ଏହିପରି ତା'ର ସାତପୁଅ ଓ ଗୋଟିଏ ପୁଅ ହେଲା ।

ଦିନେ ଚାଣ୍ଡାଳୁଣୀ ପ୍ରଭାତରୁ ଉଠି ରାଜନଅରକୁ ଗଲା । ରାଜାଙ୍କର ପୁତ୍ର ନଥିବାରୁ ସେ ଆଣ୍ଠୁକୁଡ଼ା ରାଜାଙ୍କ ମୁହଁ ଦେଖିବାରୁ ଆଜି ଅନ୍ନ ଜଳ ମିଳିବ ନାହିଁ ବୋଲି କହିଛି । ରାଜା ଏକଥା ଶୁଣି ମନଦୁଃଖ କରି ଚାର ପଠାଇ ଚାଣ୍ଡାଳୁଣୀ ଉପବାସ ରହିବାର ଜାଣି ତାହାର ଗର୍ବକୁ ଭାଙ୍ଗିବା ପାଇଁ ଦୂତ ପଠାଇ ତା'ର ପୁତ୍ରମାନଙ୍କୁ ହାଣି ପକାଇଲେ । ଚାଣ୍ଡାଳୁଣୀ ଏହା ଶୁଣି ମନଦୁଃଖ କରି କାନ୍ଦି କାନ୍ଦି ଘରକୁ ଫେରିବା ବାଟରେ ମଙ୍ଗଳା ଚାଣ୍ଡାଳୁଣୀକୁ ଭେଟି ତା'ର ମନବାଞ୍ଛା ପୂରଣ କରିବା କଥା କହିଲେ । ଚାଣ୍ଡାଳୁଣୀ ନଗରରୁ ଜିନିଷ କିଣି ମଙ୍ଗଳାଙ୍କୁ ପୂଜା କଲା । ସେ ଗୋଟିଏ ବ୍ରତ କରି ମଙ୍ଗଳାଙ୍କର ବିଭିନ୍ନ ନାମରେ ତେରଟି ଗଣ୍ଠି ଦେଲା । ମା' ମଙ୍ଗଳାଙ୍କୁ ପୂଜା କରନ୍ତେ ମଙ୍ଗଳା ତା'ର ପୁତ୍ରମାନଙ୍କୁ ପ୍ରାଣଦାନ ଦେଲେ । ପୁତ୍ରମାନେ କାଠପତ୍ର, ମାଛ ଶାଗ ଘେନି ଘରକୁ ଫେରିଲେ ।

ରାଜା ଏହା ଶୁଣି ଆସନ୍ତା ମଙ୍ଗଳବାର ଦିନ ଗଜ ଦନ୍ତରେ ପ୍ରହାର କରି ମାରିବା ସହିତ ଶବଗୁଡ଼ିକୁ ଶ୍ୱାନ, ଶୃଗାଳଙ୍କୁ ଝୁଣି ଖାଇବା ଓ ବନିଶୀ ଥୋପ କରିବାକୁ ଆଦେଶ ଦେଲେ । ଏ କଥା ଶୁଣି ଚାଣ୍ଡାଳୁଣୀ କାନ୍ଦି କାନ୍ଦି ଘରକୁ ଫେରିବା ବାଟରେ ମା' ମଙ୍ଗଳା ତାଙ୍କୁ ଭେଟି ତାଙ୍କର ପୂଜା କରିବାକୁ କହିଲେ । ଚାଣ୍ଡାଳୁଣୀ ପୂଜା କରନ୍ତେ ମଙ୍ଗଳା ମାତା ପୁତ୍ରମାନଙ୍କୁ ଜୀବନ୍ୟାସ ଦେଲେ ।

ଏ କଥା ଶୁଣି ରାଜା କ୍ରୋଧ ହୋଇ ଆସନ୍ତା ମଙ୍ଗଳାବାର ଦିନ ପୁଣି ଚାଣ୍ଡାଳୁଣୀର ପୁତ୍ରମାନଙ୍କୁ ହାଣି ଢିଙ୍କିରେ କୁଟି ଶିଳରେ ମାଂସକୁ ବାଟି କୂଅରେ ପୋତିବାକୁ ଆଦେଶ ଦେଲେ । ଚାଣ୍ଡାଳୁଣୀ ନଗରରୁ ଘରକୁ ଫେରିବା ବାଟରେ ଏ କଥା ଶୁଣି ମନଦୁଃଖ କଲା । ବାଟରେ ପୁଣି ମା' ମଙ୍ଗଳା ତାକୁ ତାଙ୍କର ପୂଜା କରିବାକୁ କହିଲେ ଓ ସେ ପୂଜା କରନ୍ତେ ପୁଣି ତାଙ୍କୁ ଜୀବନ୍ୟାସ ଦେଲେ । ପୁତ୍ରମାନେ ଜୀବନ ପାଇ ମାଛ, ଶାଗ, କାଠପତ୍ର ଘେନି ଘରେ ପହଞ୍ଚିଲେ । ପୁତ୍ରଙ୍କୁ ପାଇ ଚାଣ୍ଡାଳୁଣୀ ଖୁସି ହେଲା ।

ରାଜା ଦୂତ ମୁଖରୁ ଏ ଖବର ପାଇ କ୍ରୋଧାନ୍ୱିତ ହୋଇ ଆସନ୍ତା ମଙ୍ଗଳବାର ଦିନ ପୁତ୍ରମାନଙ୍କୁ ମାରି ତାଙ୍କର ମାଂସକୁ ତୁଳା ପରି କାଟି ଧୂଳିରେ ଫିଙ୍ଗିବାକୁ ଆଦେଶ ଦେଲେ । ଚାଣ୍ଡାଳୁଣୀ ନଗରକୁ ଜିନିଷ କିଣିବାକୁ ଯାଇ ଫେରିବା ବାଟରେ ପୁତ୍ରମାନଙ୍କର ମୃତ୍ୟୁ କଥା ଶୁଣି ଗଭୀର ଭାବରେ ପୁଣି ଦୁଃଖ କଲା । ମା' ମଙ୍ଗଳା ତାକୁ ଭେଟି ତା'ର ଭକ୍ତିପଣ ଦେଖି ତା'ର ପୁତ୍ରମାନଙ୍କୁ ଜୀବନଦାନ କଲେ । ପୁତ୍ରମାନେ ଶାଗ, କାଠ ଘେନି ଘରକୁ ଫେରିଲେ । ଚାଣ୍ଡାଳୁଣୀ ଫୁଲ ପ୍ରସାଦ ତା'ର ପୁତ୍ରମାନଙ୍କ ମୁଣ୍ଡରେ ଦେଲା । ପୁତ୍ରମାନେ ମାଂସ, ମଦ ଭୁଞ୍ଜି ଆନନ୍ଦିତ ହୋଇଗଲେ ।

ପୁତ୍ରମାନେ ବଞ୍ଚିବାର କଥାଶୁଣି ଏଥର ରାଜା ଜଉଘରେ ପୋଡ଼ିବାକୁ ଆଦେଶ ଦେଲେ । କିନ୍ତୁ ମଙ୍ଗଳାଙ୍କ ଦୟାରୁ ସାତପୁତ୍ର ପୁଣି ଜୀବନ ଫେରି ପାଇଲେ । ଏଥର ପୁତ୍ରମାନେ ବଞ୍ଚିବାର ଶୁଣି ରାଜା ଆଶ୍ଚର୍ଯ୍ୟ ହେଲେ ଓ ଚାଣ୍ଡାଳୁଣୀ ସହିତ ମିତ୍ରବସି ନିଜର ଦୋଷ କ୍ଷମା ମାଗିବାକୁ ଗଲେ । ଚାଣ୍ଡାଳୁଣୀ ମା' ମଙ୍ଗଳାଙ୍କର ପୂଜା କରୁଥିବାର ଶୁଣି ରାଣୀ ଓ ନଗରର ନାରୀମାନେ ପୂଜା କରିବାକୁ ଆସିଲେ । ରାଜା ଚାଣ୍ଡାଳୁଣୀ ସହିତ ମଇତ୍ର ବସିଲେ ଓ ମଙ୍ଗଳାଙ୍କ ପୂଜା କରି ମଦ ଓ ମାଂସକୁ ଖାଇ ବସନ୍ତେ ମାଂସ ଅମୃତ ଓ ମଦ ଦୁଧ ହୋଇଗଲା । ମଙ୍ଗଳାଙ୍କ ପୂଜା କରି ରାଣୀ ଓ ନଗରର ନାରୀମାନେ ପୁତ୍ରବତୀ ହେଲେ ।

ଏହିପରି ମଙ୍ଗଳାଙ୍କ ପୂଜା କରି ରାଜ୍ୟର ସମସ୍ତେ ଧନବତୀ ଓ ପୁତ୍ରବତୀ ହେଲେ ବୋଲି ଶ୍ରୀକୃଷ୍ଣ ଅର୍ଜୁନକୁ ବୁଝାଇଲେ । କବି ଲେଖିଛନ୍ତି - 'ଅର୍ଜୁନକୁ ବୁଝାଇ କହନ୍ତି ପୀତବାସ, ଭାବରେ ଭଣିଲେ ଏହା ବଳରାମ ଦାସ ।'

ଏହି ପୁସ୍ତକଟି ବଳରାମ ଦାସଙ୍କଦ୍ୱାରା ରଚିତ । ସେ ଲକ୍ଷ୍ମୀ ପୁରାଣର ରଚୟିତା ବଳରାମ ଦାସ ବା ପଞ୍ଚସଖା ଯୁଗର ବଳରାମ ହୋଇପାରନ୍ତି କିମ୍ବା ଅନ୍ୟ କେହି ଲେଖି ବଳରାମ ଦାସଙ୍କ ନାମରେ ଭଣିତା କରି ଦେଇପାରିଥାନ୍ତି । ଏହା ଦୁତିବାହନ ଓଷା ପରି ପୁତ୍ରମାନେ ବାରମ୍ବାର ଜୀବିତ ହୋଇଛନ୍ତି ।

ଓଡ଼ିଶାର ପ୍ରାଚୀନ ନୌବାଣିଜ୍ୟ ସହିତ ମା' ମଙ୍ଗଳାଙ୍କ ଓଷା ସଂଶ୍ଳିଷ୍ଟ ଥିଲା । ନୌବାଣିଜ୍ୟ ଧୀରେ ଧୀରେ ଲୋପ ପାଇଯିବା ପରେ ମଙ୍ଗଳାଙ୍କ ଓଷା ବିଧିମାନ ଧୀରେ ଧୀରେ କମିଯିବାରେ ଲାଗିଛି । ଏବେ ଏହା କେବଳ ଗାଁଗଣ୍ଡାରେ ଦେଖାଯାଉଛି । କେତେବେଳେ ଏହା ସମୂଳେ ଲୋପ ପାଇଯିବ ତାହା କହିହେବ ନାହିଁ । ଓଡ଼ିଶାର ସଂସ୍କୃତି, ପର୍ବପର୍ବାଣି ଓଷା ବ୍ରତକୁ ରକ୍ଷା କରିବାକୁ ହେଲେ ଏହି ଓଷାକୁ ଜନସାଧାରଣ ଦୃଷ୍ଟି ହେବା ଉଚିତ ।

**ସହାୟକ ଗ୍ରନ୍ଥ**


୧. ଚୈତ୍ର ମଙ୍ଗଳା ଓଷା କଥା- ରଚୟିତା - ନରହରି ଦାସ ।

୨. ଚୈତ୍ର ମଙ୍ଗଳା ଓଷା କଥା- ରଚୟିତା - ବଳରାମ ଦାସ ।



ଓଡ଼ିଆ ଅଧ୍ୟାପକ
ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ମାର୍ଗ, କରାପଲ୍ଲୀ
ପୋ: ନାରାୟଣପୁର, ଗୋପାଳପୁର (ସାଗର ବେଳା)

# ଚଇତ ପରବ

ଡଃ ପ୍ରମୋଦିନୀ ହୋତା

'କୋରାପୁଟ' ଯେଉଁ ମାଟିର ପାଣି, ପବନ ସବୁଜ ବଳୟରେ କବି, ଭାବୁକଙ୍କ ସ୍ୱପ୍ନଭରା ମନ ପୂରି ଉଠେ, ଯାହାର ସ୍ପର୍ଶରେ ପଥିକଟି ଆଷାଢ଼ୀ କନ୍ୟାର ମେଘୁଆ ପଣତ ତଳେ କେତେବେଳେ ଘୁମେଇ ପଡ଼ିଥାଏ କ୍ଳାନ୍ତିର ଅପମୋଦନ ପାଇଁ ପୁଣି କେତେବେଳେ କୁରେଇ, କୁନ୍ଦ ଫୁଲର ମଳୟ ପବନ ତାକୁ କରିଥାଏ ଉତ୍ତାଳ । ଏହି ଅପରୂପା ଲାବଣ୍ୟବତୀ କୋରାପୁଟ ଯେଉଁଠି ଆଦିବାସୀର ସଂଗୀତ ହିଁ ଜୀବନ, ନୃତ୍ୟ ହିଁ ପ୍ରାଣକେନ୍ଦ୍ର । ଯେଉଁ ମାଟିକୁ ସ୍ପର୍ଶ କରିବା ମାତ୍ରେ ମନେ ପକାଇ ଦିଏ ତା'ର ଅତୀତର ଗାଥା । ରାମାୟଣର ଉତ୍ତରାକାଣ୍ଡରେ ବର୍ଣ୍ଣିତ ଦଣ୍ଡରାଜାଙ୍କ ରାଜଧାନୀ 'ଦଣ୍ଡକାରଣ୍ୟ'ର କଥା । ମହାରାଜା 'ଭୋଜ' ଯେତେବେଳେ ବତ୍ରିଶ ସିଂହାସନର ପ୍ରତିଟି ପାହାଚରେ ପାଦ ରଖନ୍ତି, ସେତେବେଳେ ପ୍ରତି ପାହାଚରେ ପୁତ୍ତଳିକା ଦଣ୍ଡାୟମାନ ହୋଇ ବିକ୍ରମାଦିତ୍ୟଙ୍କ ଗୁଣଗାନ କରି ଗଳ୍ପ କହି ଉଭାନ ହୋଇଯାଇଥାଏ । ବର୍ତ୍ତମାନ ସୁଦ୍ଧା ନନ୍ଦପୁରରେ ସେହି ଲୋକକଥା ରହିଛି । ଏଥିରୁ ସ୍ପଷ୍ଟ ଅନୁମାନ ହୁଏ ଯେ, କୋରାପୁଟ ଦିନେ ରାଜା ବିକ୍ରମାଦିତ୍ୟଙ୍କ ଆୟତ୍ତାଧୀନ ଥିଲା, ଏଠାରେ ନନ୍ଦରାଜାମାନେ ରାଜତ୍ୱ କରୁଥିଲେ । ପରବର୍ତ୍ତୀ ସମୟରେ କୋରାପୁଟ ମତ୍ସ୍ୟ ବଂଶୀୟ ରାଜାମାନଙ୍କ ଅଧୀନକୁ ଆସିଥିଲା । ସେମାନେ 'ଡୁଡୁମା' ନିକଟସ୍ଥ ନଦୀର ନାମ 'ମତ୍ସ୍ୟକୁଣ୍ଡ' ଦେଇଥିଲେ ଏବଂ ତାହା ପରବର୍ତ୍ତୀ କାଳରେ ମାଛକୁଣ୍ଡ ନାମରେ ନାମିତ କରାଯାଇଥିଲା । ଏହାବ୍ୟତୀତ କୋରାପୁଟର ପ୍ରତିଟି ଗ୍ରାମମାନଙ୍କରେ ଶାକ୍ତ, ବୌଦ୍ଧ, ଜୈନ, ଶିବ ଶକ୍ତି (ଶୈବ) ସଂସ୍କୃତି ବିଦ୍ୟମାନ । କାଳିଦାସଙ୍କ 'ମେଘଦୂତ' ଏହି ଜିଲ୍ଲାର ସୌନ୍ଦର୍ଯ୍ୟକୁ ନେଇ ଲିଖିତ ବୋଲି କୁହାଯାଇଥାଏ ।



ବିଭିନ୍ନ ପର୍ବପର୍ବାଣି ମଧ୍ୟରେ 'ଚଇତ ପରବ' କୋରାପୁଟ ଆଦିବାସୀମାନଙ୍କର ପ୍ରଧାନ ପର୍ବ । ଋତୁରାଜ ବସନ୍ତର ଆଗମନରେ ତନୁରେ କୁହୁକ ଲାଗେ, ମନ ଓ ଆତ୍ମାରେ ଖେଳିଯାଏ ଅପୂର୍ବ ପୁଲକ, ଶୁଖିଲା ଓଠରେ ଉକୁଟି ଯାଏ ହସର ଅମୃତ । ଚଇତି ପବନର ଉନ୍ମାଦନାରେ ଖେଳିଯାଏ ଡଙ୍ଗର, ପାହାଡ଼, ବଣ, ଜଙ୍ଗଲ, ଶିମୁଳି ପଳାଶର ରଂଗରେ ଲାଲ ଟହ ଟହ ହସି ଉଠେ । ମହୁଲ ସଲପ ଗଛରୁ ଟପ ଟପ ଖସିପଡ଼େ ଅସୁମାରୀ ମୋତି, ସରଗି ଗଛରେ ଚୁନା ଚୁନା ଫୁଲର ମହକ । ମତୁଆଲା ହୋଇ ନାଚିଉଠେ ପାହାଡ଼ି ଲଳନା । ଫୁଲ ଫଗୁଣର ନିମନ୍ତ୍ରଣ ନେଇ ଆସେ 'ଚଇତ ପରବ' । ବଉଳ ଫୁଲର ବାସ୍ନାରେ, ପୋଡ଼ା ବଣ ଭୂଇଁ ଗନ୍ଧରେ, ମହୁଲି ରସରେ ବିଭୋର ହୋଇ ସଂଗୀତ ଓ ନୃତ୍ୟର ତାଳେ ତାଳେ ନାଚି ନାଚି ବେଦମ୍ ହୁଅନ୍ତି କୋରାପୁଟର ଧାଙ୍ଗଡ଼ା ଧାଙ୍ଗିଡ଼ିମାନେ । ଏହି ପର୍ବ ମଧୁମାସ ଚୈତ୍ରରେ ପାଳିତ ହୁଏ । ଏହିପର୍ବ ବିଭିନ୍ନ ଆଦିବାସୀ ସମ୍ପ୍ରଦାୟର ଲୋକେ ବିଭିନ୍ନ ରୂପରେ ପାଳନ କରନ୍ତି । ପରଜାମାନେ ଏହାକୁ ଗୁଡ଼ି ଘରେ (ମନ୍ଦିରରେ), ବୃକ୍ଷମୂଳର ଝାଙ୍କରରେ ନିଷ୍ଠାର ସହିତ ପାଳନ କରିଥା'ନ୍ତି । ଚୈତ୍ର ମାସରେ ଆକାଶର ନକ୍ଷତ୍ରମାନଙ୍କର ଗତିବିଧି ଦେଖି, ଯୋଗପାଗ, ଶୁଭ ଦିନ ଠିକ୍ କରେ 'ଦିଶାରୀ' ଏବଂ ଗାଁର ଧାଙ୍ଗଡ଼ାଧାଙ୍ଗିଡ଼ିମାନଙ୍କୁ ଡାକି 'ବେଜୁଣୀ' ଜଣାଇ ଦିଏ ଚୈତ୍ରପର୍ବ କଥା । କେଉଁ ଦିନ ବେଣ୍ଟ (ଶିକାର)କୁ ଯିବେ । ସେହିଦିନଠାରୁ ପ୍ରତ୍ୟେକ ବ୍ୟକ୍ତି ଘରକୁ ଗୋବର ଏବଂ ରଙ୍ଗମାଟିରେ ଘର ଲିପାପୋଛା କରି କାନ୍ଥରେ ରଙ୍ଗବେରଙ୍ଗ ଝୋଟି ଦେଇ ଚିତ୍ରିତ କରିଥା'ନ୍ତି । ବେଜୁଣୀ କୁକୁଡ଼ାକୁ ଚାଉଳ ଖାଇବାକୁ ଦେଇ ପୂଜା ଆରମ୍ଭ କରିଦିଏ । ଏହି ପୂଜାରେ ଛେଳି, କୁକୁଡ଼ା ବଳି ଦିଆଯାଏ । ସେହି ମାଂସକୁ ବନ୍ଧୁବାନ୍ଧବମାନଙ୍କ ମଧ୍ୟରେ ବଣ୍ଟା ଯାଇଥାଏ । ଚଇତ ପରବର 'ଡେମ୍‌ସା' ଓ 'ସାଇଲଡ଼ି' ନାଚରେ ବନଭୂମି ମୁଖରିତ ହୁଏ ।

'ପାନିମାରିଗଲା ଝାଇଁ ପାନିମାରିଗଲା ଝାଇଁ
ପାନିମାରିଗଲା ଝାଇଁରେ ଦାଦା

ପାନି ମାରିଗଲା ଝାଇଁ ।
ବାଟର କୁଡ଼ିଆ ତୁମରି ପାଇଁ
ପିରି ଛାଇଁବାର ନାଇଁରେ ଦାଦା
ପାନି ମାରିଗଲା ଝାଇଁ ।'

ଗୀତ ଗାଇ ଗାଇ ଗାଁ ଗାଁ ବୁଲି ଟଙ୍କା ମାଗିଥାନ୍ତି କିମ୍ବା ସୀତା କନିଆଁ ବିଭା ହୋଇଲା ... ଗୀତ ଗାଇଥାନ୍ତି । ଏହି ସମୟରେ ଗ୍ରାମ ଦେବତାଙ୍କ ପୂଜା କରାଯାଏ ।

'ଜୟପୁର ନଏଁ ଜୟ ନଗର
ମଝିଦାଣ୍ଡେ ଅଛେ ଗୁଡ଼ିପଦର
ଦଇଖଣ ଦିଗେ ହୁଣ୍ଡି
ତା'ର ନାମ ଧରି ଗୀତ୍ ମୁଇଁ ଗାଏବି
ଲାଗ୍‌ଲାତ ଠାକୁରାନୀ ।'

ଏହି ସମୟରେ ବୈପାରୀଗୁଡ଼ାର ବୀରଖମ୍ଭ, ନବରଙ୍ଗପୁରର ଭଣ୍ଡାର ଘରଣୀ, ବୋରିଗୁମ୍ମାର ବୁଢ଼ା ଭୈରବ, ଗୁପ୍ତେଶ୍ୱର ଗୁମ୍ଫାର ମାଉଳି, ପୋଡ଼ାଗଡ଼ର ଭୈରବ, ଜୟପୁରର ହୁଣ୍ଡି, ରାମ ଓ ସୀତା, ଜଗନ୍ନାଥଙ୍କୁ ପୂଜା କରିଥା'ନ୍ତି ।

'ରାମଗିରିଠାନେ ଗୁପତସର
ତଇରେ ପାକନା ତାରକୁ ତାର
ଭିତରେ ଦେଖିଲେ ଭିଙ୍ଗ ଅନ୍ଧାର
ବସିଛେ ମା' ଦେବ ବର
ଦଶ ଆଙ୍ଗୁଠିକେ ବିନୀତ ଯୋଡ଼ିଲେ
କାଲି ଗାଇ ଦେବ କ୍ଷୀର ।'

ଏହି ଗୀତ କୁଡ଼ିଆ ଓ ଗୀତ କୁଡ଼ିଆଣୀଙ୍କ ଗୀତରେ ବିଭୋର ହୁଅନ୍ତି ଧାଙ୍ଗଡ଼ାଧାଙ୍ଗିଡ଼ିମାନେ । ଯାତ୍ରାମେଳାରୁ କିମ୍ବା ନାଟ ଦେଖା ସ୍ଥାନରୁ ସେମାନେ ପରସ୍ପର ଆକର୍ଷିତ ହୋଇ ଗାନ୍ଧର୍ବ ମତରେ ବିବାହ କରନ୍ତି । ଏହାକୁ 'ଉଦୁଲିଆ' କୁହାଯାଏ । ପିତାମାତା କନ୍ୟାର ସଦଳବଳେ ବର ଘରେ ପହଞ୍ଚି 'ଜୋରିମାନା' ଗାଈ, ଛେଳି, ଚାଉଳ ଆଦାୟ କରନ୍ତି ଭୋଜି ଭାତ କରି ବିବାହକୁ ସ୍ୱୀକୃତି ଦେଇଥାନ୍ତି । ଏହାକୁ 'ଝୋଲା' କୁହାଯାଏ । ଗାଁଦାଣ୍ଡରେ ବାଜାଦାରମାନେ ବାଦ୍ୟକୁ ଉଷୁମ କରିଥା'ନ୍ତି ମାଦଳର ତାଳେ ତାଳେ ଧାଙ୍ଗଡ଼ା ଧାଙ୍ଗିଡ଼ିମାନେ ନାଚିଥା'ନ୍ତି ହାତକୁ ହାତ ଛନ୍ଦି, ଦେହକୁ ଦେହ ମିଶାଇ, ଆଣ୍ଠୁଟେକା ଲୁଗାପିନ୍ଧି, ଗୋଡ଼ରେ ବଳାପିନ୍ଧି ଶାଳୀନତା ଭୁଲି ଲଜ୍ଜା ସଙ୍କୋଚ ଭୁଲି ନାଚି ଚାଲିଥା'ନ୍ତି । ସେତେବେଳେ ସେମାନେ କହିଥାନ୍ତି ଲାଜ କରି ଲାଭ ନାହିଁ ପେଟରେ କଥାରଖି ସବୁ କହିଦେବା ଭଲ । ଧାଙ୍ଗଡ଼ା ଧାଙ୍ଗିଡ଼ିକୁ ଏହି ପର୍ବ ନିର୍ଲ୍ଲଜ କରିଦିଏ, ମୁକ୍ତ କରେ ଥଟ୍ଟା ତାମ୍‌ସା ରାତି ସାରା ଲାଗି ରହେ । ଯାହାକୁ ଯିଏ ପସନ୍ଦ କରେ ସେ ତାକୁ 'ଉଦୁଲିଆ' ନେଇଯାଏ । ସେମାନେ ବିଶ୍ୱାସ କରନ୍ତି ରାମ ସୀତା ଏହି ମାସରେ ବିବାହ କରିଥିଲେ । ଏହି ମାସରେ ଡୁମା (ପିତୃପୁରୁଷ)ଙ୍କୁ ଅର୍ପଣ କରାଯାଏ, ଆମ୍ବ ନୂଆଁଖିଆ । ଶିରା ବା ଦେବୀ ସାଧକ ଓ ଦିଶାରୀଦ୍ୱାରା ଦିନ ଗଣନା କରି ନୂଆଁ କାନ୍ଦୁଲ (ହରଡ଼) ନୂଆଁ ହାଣ୍ଡିରେ ଭାଜି ଖାଆନ୍ତି । ଏହା ପୂର୍ବରୁ କାନ୍ଦୁଲ ଖାଇଲେ ବାଘ ଖାଇଯିବ ବୋଲି ସେମାନଙ୍କର ବିଶ୍ୱାସ ରହିଛି । ଘର ତୁଳିଆ ଚାଳ ଉପରେ ସେମାନେ ମାଟିର ବଳଦ ମୂର୍ତ୍ତି ସ୍ଥାପନ କରିଥାନ୍ତି । 'ଚଇତ ପରବ' ଗୀତର ପ୍ରତିଯୋଗିତାରେ ଯଦି ଅବିବାହିତ ପୁରୁଷ ହାରିଯାଏ, ତେବେ ଝିଅ ଘରେ ଘର ଜୋଇଁଆ ହୋଇ ରହେ । 'ଫୁଲମାଳିଆ'ମାନେ ଚଇତ ପରବ ଗୀତ ଗାଇ ଲୋକଙ୍କୁ ଅଧିକ କର୍ମପ୍ରବଣ କରିଥା'ନ୍ତି ।

> 'ଚଇତ ପରବ' ଗୀତର ପ୍ରତିଯୋଗିତାରେ ଯଦି ଅବିବାହିତ ପୁରୁଷ ହାରିଯାଏ, ତେବେ ଝିଅ ଘରେ ଘର ଜୋଇଁଆ ହୋଇ ରହେ । 'ଫୁଲମାଳିଆ'ମାନେ ଚଇତ ପରବ ଗୀତ ଗାଇ ଲୋକଙ୍କୁ ଅଧିକ କର୍ମପ୍ରବଣ କରିଥା'ନ୍ତି ।

ଏହି ସମୟରେ ଫଗୁ, ଅଳତା, କାଦୁଅରେ ଶରୀରକୁ ରଙ୍ଗବେରଙ୍ଗ କରି କନ୍ଦା, ସଲପ, ମହୁଲି, ଗୁଡ଼ମଦ ଓ ପେଣ୍ଡମ୍ ଆଦି ନିଶାଦ୍ରବ୍ୟ ପାନ କରିଥାନ୍ତି । ବେଣ୍ଟ ସମୟରେ ଆଣିଥିବା ଶିକାରକୁ ଗାଁର ମଧ୍ୟଭାଗରେ ରଖାଯାଏ, ବେଜୁଣୀ ମନ୍ତ୍ର ପଢ଼େ । ଗାଁର ସ୍ତ୍ରୀମାନେ ସେହି ପଶୁକୁ ଆନନ୍ଦରେ ପାଛୋଟି ନିଅନ୍ତି । ପରସ୍ପର ମଧ୍ୟରେ ପୂଜା ପରେ ମାଂସକୁ ବାଣ୍ଟିନେଇ ଭୋଜନ କରିଥା'ନ୍ତି । 'ଭୂମିଆଁ'ମାନଙ୍କ ଚଇତ ପରବ ସାତଦିନ ଧରି ପାଳିତ ହୁଏ । ପ୍ରଥମେ ଚଇତ ବଉଳାଣି ହୁଏ । ଏଥିରେ ବିଭିନ୍ନ ରଙ୍ଗର ପାଞ୍ଚଟି କୁକୁଡ଼ା, ଛେଳି, ନଡ଼ିଆ, ଅଣ୍ଡା, ଗୁଡ଼, ଧୂପଦୀପ, କ୍ଷୀର, ପଣା, ମଦ ଧରି 'ଦିଶାରୀ' ଗାଁ ବାହାରେ ଗୁଡ଼ିରେ 'ହୁଣ୍ଡି' ପୂଜା କରେ । ଏହାକୁ ଜଗରନା ବା ନିଉତା କୁହାଯାଏ । ପର୍ବଦିନ କେଉଁ ମାସରେ ଆମ୍ବ ତୋଳାଯିବ, ହୁଣ୍ଡି ପୂଜା ହେବ ତାହା ଦିଶାରୀ କହିଥାଏ । ସମସ୍ତ ଚାଷୀ ପୂଜା ହୋଇଥିବା ବିହନ ଆଞ୍ଜୁଳା ଆଣନ୍ତି, ଏହାକୁ 'ବିହନ ଛିନିବା' କୁହାଯାଏ । ଏହିଦିନ ରାତିରେ ହଳଦୀ ଭାତରେ ଗୋଟା କୁକୁଡ଼ା ଦୁଇଫାଳ କରି ଭାତ ସହିତ ମିଶାଇ ରନ୍ଧାଯାଏ । କୁକୁଡ଼ା ମାଂସ ଓ ଭାତକୁ ତିନିଭାଗ କରି କାଉମାନଙ୍କୁ ଖାଇବାକୁ ଦେଇଥାନ୍ତି । ଏହାସହିତ ସୁଆଁ ଚାଉଳର ଲନ୍ଦା (ହାଣ୍ଡିଆ) ଦେଇଥା'ନ୍ତି । ରାତି ତିନିଟାରେ ଜଗରନାଙ୍କୁ ଶିଆଳି ପତ୍ରରେ ଦିନରେ ପୂର୍ବ ଦିଗରେ ଦିଆଯାଏ । କୌଣସି କାମ ଯଦି କିଏ କରିଥାଏ, ତା'ଠାରୁ ପାଜର ମଗାଯାଏ, ଜୋରିମାନା କରାଯାଏ । ପ୍ରଥମ ଦିନ ଆମ୍ବ ନୂଆଖିଆ, ଦ୍ୱିତୀୟ ଦିନ ଟିଙ୍ଗିରିବେଣ୍ଟ, ଠାଡ଼୍‌ଚାଉଳ ମଗାଯାଏ । ଟିଙ୍ଗିରିବେଣ୍ଟ ଦିନ ବଣରେ ପୂଜାରୀ ଠାଡ଼୍‌ଚାଉଳରେ ଚରୁ ରାନ୍ଧି ସରଗୀ ପତ୍ରରେ ବାଢ଼ି ପୂଜା କରିଥାଏ । ପିଲାମାନେ ସରୀସୃପ ଓ ପକ୍ଷୀମାରି ଖଜୁରୀ ଡାଳରେ ବିମାନ ଭଳି କରି ଗାଁ ଗାଁ ବୁଲି ଗୀତଗାଇ ଚାଉଳ ଓ ଟଙ୍କା ମାଗିଥାନ୍ତି । ଅସ୍ତ୍ରଶସ୍ତ୍ରରେ ସଜ୍ଜିତ ହୋଇ ତୃତୀୟ ଦିନ ବଡ଼ବେଣ୍ଟରେ

ପିଲାମାନେ ମୁଖ୍ୟ ଲୋକଙ୍କ ଘରକୁ ଯାଇ ମାଗିଥାନ୍ତି । ପ୍ରତିଘରେ ସ୍ତ୍ରୀମାନେ ହଳଦୀ ପାଣିରେ ପିଲାମାନଙ୍କ ପାଦ ଧୋଇ ଚାଉଳର ଟୀକା ମୁଣ୍ଡରେ ଲଗେଇ ଟଙ୍କାଟିଏ ଦେଇଥାନ୍ତି । ରାତିରେ କୁକୁଡ଼ା, ଟେଣ୍ଡକା (ଏଣ୍ଡୁଅ), ଝିଣ୍ଟିକା, ହୋମ ପାଇଁ ଚଟିଆ ବସା, ଅଣ୍ଡା, କାଠ ଏକବିଡ଼ା, ପତର ଏକବିଡ଼ା, କଳା ମୁରୁଜ, ରଂଗ ମୁରୁଜ ହୁଣ୍ଡି ଘରେ ସବୁ ରଖାଯାଏ ଏବଂ ହୁଣ୍ଡି ଦେବତାଙ୍କ ମନ୍ତ୍ର ବୋଲି ଦିଶାରୀ ପୂଜା କରେ । ଚତୁର୍ଥ ଦିନ ଥାଏ ବେଣ୍ଟ (ଶୀକାର)କୁ ଯିବା ଦିନ । ଏହିଦିନ ଦିଶାରୀ ବଣରେ ଚିତ୍ରା କୁକୁଡ଼ା, ଅଣ୍ଡା ଆଦି ପୂଜା କରି କେଉଁ ଦିଗରୁ ଜନ୍ତୁ, ଜିଆଦ ପଶୁମାନେ ବାହାରିବେ ତାହା ନିରୂପଣ କରିଥାଏ । ଏହିଦିନ ଜଣେ ସ୍ତ୍ରୀକୁ ଜିଆଦ (ସମ୍ବର) ବେଶରେ ଓ ଆଉଜଣେ ସ୍ତ୍ରୀକୁ ଶୀକାରୀ ବେଶରେ ସଜ୍ଜା ଯାଇଥାଏ । ଶୀକାରୀ ସ୍ତ୍ରୀଟି ସମ୍ବର ସ୍ତ୍ରୀଟିକୁ ମିଛିମିଛିକା ମାରିଥାଏ । ସେହି ସମ୍ବର ସ୍ତ୍ରୀକୁ ଚାରିଜଣ ସ୍ତ୍ରୀ ବୋହି ଆଣନ୍ତି ଘର ଅଗଣାକୁ ସେଇଠି ବଜାର ବସିଥାଏ । ଏହାକୁ ଡାଳସମ୍ବର କହିଥାନ୍ତି । ଯଦି ଦୈବାତ୍ ପୁରୁଷମାନେ ସମ୍ବର ମାରି ଆଣିଥାନ୍ତି ତେବେ ସମ୍ବର ମାରିଥିବା ପୁରୁଷକୁ କାନ୍ଧରେ ବସାଇ ଗାଁ ସାରା ବୁଲାହୁଏ । ବାଜଣିଆ ମହୁରୀ, ମୃଦଙ୍ଗ ବଜାଇ ଢେମ୍‌ସାନାଚ କରି ସେହି ସ୍ତ୍ରୀମାନଙ୍କୁ ବନ୍ଦାପନା କରନ୍ତି ଓ ମାଂସକୁ ଗାଁ ସାରା ବଣ୍ଟାଯାଇଥାଏ । ବେଣ୍ଟକୁ ନଯାଇଥିବା ଲୋକଙ୍କୁ ସ୍ତ୍ରୀ ଲୋକମାନେ ଗୋବର ପାଣି ପକାଇଥାନ୍ତି । ଗାଁର ପୁରୁଷମାନେ ପର୍ବର ଚତୁର୍ଥ ଦିନ ତିନିଦିନ ବେଣ୍ଟକୁ ଯାଇଥା'ନ୍ତି । ଏହିପରି ସାତଦିନରେ 'ଚଇତ ପରବ' ସରିଥାଏ । ପରବ ସରିବା ଦିନ ବାଉଁଶକାଟି ନଳାକରି ପାଣି ଢଳାଯାଏ, ତାକୁ 'ହୁଣ୍ଡି' ଘରେ ପୂଜା କରାଯାଏ ଏବଂ ଧନୁକାଣ୍ଡରେ ସେହି ବାଉଁଶ ନଳାକୁ ବନ୍ଦାଯାଏ । ତାହାପରେ ଚଇତ ପରବ ସରିଥାଏ ।

କୋରାପୁଟ ଜିଲ୍ଲା ଆଦିବାସୀଙ୍କ ଜୀବନରେ ପୂଜା କୃଷିଭିତ୍ତିକ । ସେମାନଙ୍କ ଜୀବନ ସାମାଜିକ ଚଳଣି ଓ ଗୋଷ୍ଠୀ ଜୀବନ ଉପରେ ଆଧାରିତ ।

ଏହି ଚଇତ ପରବ କନ୍ଧ ଓ ସଉରାମାନେ ଅନ୍ୟପ୍ରକାରର ପାଳନ କରିଥା'ନ୍ତି । ଚୈତ୍ରମାସର ଅମାବାସ୍ୟା ପରେ ବୁଧବାରଠାରୁ ତିନିଦିନ କିମ୍ବା ରବିବାରଠାରୁ ତିନିଦିନ ପର୍ଯ୍ୟନ୍ତ ପାଳନ କରାଯାଏ । ଏହାକୁ 'ହିରେ ପରବ' ଓ 'ଚତୁରା ପାର୍ବୁ' ମଧ କହିଥାନ୍ତି । ଗାଁ ଲୋକମାନେ ଏକତ୍ର ହୋଇ ସଭା କରିଥାନ୍ତି । ଗାଁ ମୁଖିଆର ନିର୍ଦ୍ଦେଶ ଅନୁସାରେ ତିନୋଟି କିମ୍ବା ପାଞ୍ଚୋଟି ଲମ୍ବା ବାଉଁଶ ଅଣାଯାଏ । ସେହି ବାଉଁଶର ଅଗ୍ରଭାଗରେ ଧଳା କନା ଗୁଡ଼ାଯାଏ, ସେହି କନା କିଣିବା ପାଇଁ ଯିଏ ଟଙ୍କା ଦିଏ ତା'ର ନାମ ଗୁପ୍ତ ରଖାଯାଏ । ଏଥିପାଇଁ ଗାଁ ମଝିରେ ଗୋଟିଏ କୁଣ୍ଡ କରାଯାଇଥାଏ । କୁଣ୍ଡର କିଛି ଦୂରରେ ବାଲି ବିଛା ଯାଇଥାଏ । ଯିଏ କୁଣ୍ଡରେ ପଇସା ପକାଇବା ପାଇଁ ଇଚ୍ଛା କରେ ସେ ବାଲି ଉପରେ ଠିଆ ହୋଇ କୁଣ୍ଡରେ ପଇସା ପକାଇଥାଏ । ଯଦି ତିନି ଜଣଠାରୁ ଅଧିକ ବ୍ୟକ୍ତି କୁଣ୍ଡରେ ପଇସା ପକାଇ ଦିଅନ୍ତି, ତେବେ ସେହି ପଇସାରେ ଧଳାକନା କିଣା ହୁଏ ନାହିଁ ଏବଂ ସେହି ବର୍ଷକୁ ଅଶୁଭ ଭାବି ପୂଜା କରାଯାଇ ନଥାଏ । ସେହି ପଇସାରେ ମଦ କିଣା ହୁଏ ଏବଂ ଗାଁ ମୁଣ୍ଡରେ ପଶୁବଳି ଦିଆଯାଏ । ସେମାନେ ଭାବନ୍ତି ଯେ ଅଶୁଭ ବର୍ଷ ଯୋଗୁଁ ଯାହା ଅସୁବିଧା ହୁଏ, ତାହା ଗାଁର ପଶୁବଳିଦ୍ୱାରା ସମାଧାନ ହୋଇ ଗାଁରେ ଶାନ୍ତି ସ୍ଥାପନ ହୋଇପାରିବ । ଚଇତ ପରବରେ 'ଟାଙ୍ଗି ପେନୁ' (ଦୁର୍ଗା)ଙ୍କୁ ପୂଜା କରାଯାଏ । ପଳାଶ ଫୁଲକୁ 'ଟାଙ୍ଗି ପେନୁ' ଭଲ ପାଉଥିବା ଯୋଗୁଁ ଦେବୀଙ୍କୁ ପଳାଶ ଫୁଲରେ ମଣ୍ଡିତ କରାଯାଏ, ଏଥିରେ ବଳି ଦିଆଯାଏ ନାହିଁ ଏବଂ ଅଳସୀ ଗଛ ମୂଳରେ ଝୁଣା, ଦୀପ ଦେଇ କ୍ଷୀର ଢାଳି ପୂଜା କରାଯାଏ । ଏହାକୁ 'ଏରିପି ପର୍ବୁ' ବୋଲି କହିଥାନ୍ତି । ଏଥିରେ ମହୁଲ ଗଛକୁ ମଧ ପୂଜା କରାଯାଏ । 'ବେଜୁଣୀ' ନିଜକୁ ସୁନ୍ଦର ଭାବରେ ସଜାଇ ଥାଏ । ସେ ମୁଣ୍ଡରେ ମୟୂରଚୂଳ ସହିତ ଅନେକ ପ୍ରକାରର ରଂଗୀନ ସୂତାକୁ ମୁକୁଟ କରି ପିନ୍ଧିଥାଏ । ପାଦରେ ଘୁଙ୍ଗୁର ମଧ ବନ୍ଧା ଯାଇଥାଏ । ଯୁବକ ଓ ଯୁବତୀମାନେ ସୁନ୍ଦର ସୁନ୍ଦର ଶାଢ଼ୀ ପିନ୍ଧି 'ଡେମ୍‌ସା ନାଚ' ନାଚିଥାନ୍ତି, ଡାମ୍ପ, ଝାଞ୍ଜ ଓ ମହୁରୀରେ ଚାରିଆଡ଼ ଝଙ୍କୃତ ହୋଇଥାଏ । ଗୁରୁମାଇଁ କୁଲାର ଚାଉଳ ଛୁଇଁ ଗାଁର ଲୋକମାନଙ୍କର ଆଗତ ଭବିଷ୍ୟତ କଥା କହିଥାଏ । ଯେଉଁ ସ୍ତ୍ରୀମାନେ ଗୁଡ଼ପାଣି ସାଥୀରେ ଆଣିଥାନ୍ତି, ତାହାକୁ ସେହି ବେଜୁଣୀ (ଗୁରୁମାଇଁ) ପିଇଥାଏ । କନ୍ଧ ସଂପ୍ରଦାୟର ଆଦିବାସୀମାନେ ଗାଁ ଗାଁ ବୁଲି ନାଚ କରିଥାନ୍ତି । ସେମାନଙ୍କ ବିଶ୍ୱାସ ଏହା ଫଳରେ ଚାଷ କାମ ପରବର୍ଷ ଭଲ ହୋଇଥାଏ ।

କୋରାପୁଟ ଜିଲ୍ଲା ଆଦିବାସୀଙ୍କ ଜୀବନରେ ପୂଜା କୃଷିଭିତ୍ତିକ । ସେମାନଙ୍କ ଜୀବନ ସାମାଜିକ ଚଳଣି ଓ ଗୋଷ୍ଠୀ ଜୀବନ ଉପରେ ଆଧାରିତ । ଏମାନେ ଲୋଭ, ଅହଂକାରଠାରୁ ବହୁଦୂରରେ ରହି ସରଳ, ନିଷ୍କପଟ ଜୀବନ ବିତାଇଥାନ୍ତି । ଏମାନେ ବର୍ଷସାରା ପ୍ରକୃତିର ପୂଜା କରି ନିଜର ଜୀବନ ଜୀବିକା ଅତିବାହିତ କରିଥା'ନ୍ତି ।

ବିଭାଗୀୟ ମୁଖ୍ୟ
ଶିକ୍ଷା ବିଭାଗ, ଖଲ୍ଲିକୋଟ (ସ୍ୱୟଂ ଶାସିତ) ମହାବିଦ୍ୟାଳୟ
ବ୍ରହ୍ମପୁର



# ବାୟୁ ପ୍ରଦୂଷଣ ଓ ଯାନବାହାନ

ଶ୍ରୀକାନ୍ତ କୁମାର ପାଣିଗ୍ରାହୀ

**ବି**ଶ୍ୱରେ ଏବେ ମୋଟର ଯାନର ସଂଖ୍ୟା ଆଶାତୀତ ଭାବେ ବୃଦ୍ଧି ପାଇବାରେ ଲାଗିଛି । କ୍ରମାଗତ ବିପୁଳ ଜନସଂଖ୍ୟା ବୃଦ୍ଧି, ସହରାଞ୍ଚଳର ପ୍ରସାର ଏବଂ ଦ୍ରୁତ ଶିଳ୍ପାୟନ ଏହାର କାରଣ । ସାଧାରଣତଃ ଶିଳ୍ପୋନ୍ନତ ଦେଶମାନଙ୍କରେ ଏହାର ବ୍ୟବହାର ଅଧିକ । ଉଦାହରଣ ସ୍ୱରୂପ, ପାଶ୍ଚାତ୍ୟ ରାଷ୍ଟ୍ରସମୂହ, ୟୁରୋପ ଏବଂ ପ୍ରାଚ୍ୟ ଭୂଖଣ୍ଡରେ ଜାପାନ ମୋଟର ଯାନର ବ୍ୟବହାର ନିମିତ୍ତ ପ୍ରସିଦ୍ଧ । ଏଥିରୁ ଘଟୁଥିବା ବାଷ୍ପୀୟ ନିର୍ଗମନ ହେତୁ ପୃଥିବୀର ଅଧିକାଂଶ ମହାନଗରୀ ଏବଂ ବିଶେଷ କରି ବେଜିଙ୍ଗ୍, ବ୍ୟାଙ୍ଗକକ୍, ସାଣ୍ଟିଆଗୋ, ହଂକଙ୍ଗ୍, ସିଙ୍ଗାପୁର, ଦିଲ୍ଲୀ, ମେକ୍ସିକୋ, ସିଓଲ୍, ମାନିଲା ଇତ୍ୟାଦିର ବାୟୁ ଅତିମାତ୍ରାରେ ପ୍ରଦୂଷଣଯୁକ୍ତ । ଭାରତବର୍ଷରେ ଦିଲ୍ଲୀ ବ୍ୟତୀତ ମୁମ୍ବାଇ, କୋଲକାତା, ଚେନ୍ନାଇ, ବାଙ୍ଗାଲୋର, ହାଇଦ୍ରାବାଦ, ପୁନେ, ଅହମଦାବାଦ ଇତ୍ୟାଦି ନଗରଗୁଡ଼ିକ ମଧ୍ୟ ପ୍ରଦୂଷଣଦ୍ୱାରା ଆକ୍ରାନ୍ତ । ଏହି ପ୍ରଦୂଷଣର ବିଷ ପ୍ରକ୍ରିୟାରୁ ରକ୍ଷା ପାଇବା ନିମନ୍ତେ ବର୍ତ୍ତମାନ ବିଶ୍ୱରେ ଅନେକ ରାଷ୍ଟ୍ରରେ ନାନାପ୍ରକାର ଗବେଷଣା କରାଯାଇ ଏହାକୁ ନିୟନ୍ତ୍ରଣରେ ରଖିବା ପାଇଁ ଅହରହ ଉଦ୍ୟମ ଚାଲିଛି ।

ଭାରତ ଭଳି ତୃତୀୟ ବିଶ୍ୱର ଦେଶମାନଙ୍କରେ ଯାନବାହନ ସଂଖ୍ୟା ଅପେକ୍ଷାକୃତ କମ୍ । କିନ୍ତୁ ତନ୍ମଧ୍ୟରୁ ଅଧିକାଂଶ ଠିକ୍ ଅବସ୍ଥାରେ ନଥାଏ । ତେଣୁ ତହିଁରୁ ନିର୍ଗତ ଧୂମ ଅଧିକ ପ୍ରଦୂଷଣକାରୀ । ପରିଣାମରେ କୋଲକାତା ଭଳି ନଗରୀମାନଙ୍କରେ ଏହା ହିଁ ୫୦ ଶତାଂଶ ବାୟୁ ପ୍ରଦୂଷଣ ଲାଗି ଦାୟୀ ।

ବ୍ୟବହୃତ ଇଞ୍ଜିନ୍‌ର ପ୍ରକାରଭେଦ ବିଚାରକୁ ନେଇ ଯାନବାହନଗୁଡ଼ିକୁ ଦୁଇ ଶ୍ରେଣୀରେ ବିଭକ୍ତ କରାଯାଏ । ତହିଁରୁ ଗୋଟିଏ ହେଲା କାର, ବସ୍, ଆଦି ଚାରିଷ୍ଟ୍ରୋକ୍ ଇଞ୍ଜିନ୍ ବିଶିଷ୍ଟ ଯାନବାହନ ଏବଂ ଅନ୍ୟଟି ହେଉଛି ସ୍କୁଟର୍, ମୋଟରସାଇକେଲ ଭଳି ଦୁଇଷ୍ଟ୍ରୋକ୍ ଇଞ୍ଜିନ୍ ବିଶିଷ୍ଟ ଯାନବାହନ । ପ୍ରଥମ ଶ୍ରେଣୀର ଯାନର ମୁଖ୍ୟତଃ ତିନୋଟି ଉତ୍ସରୁ ପ୍ରଦୂଷଣକାରୀ ବାଷ୍ପ ନିର୍ଗତ ହୁଏ । ସେଗୁଡ଼ିକ ହେଲା, ଇନ୍ଧନ ପେଟିକା ଓ ଯୋଗାଣ ବ୍ୟବସ୍ଥା, କ୍ରାଂକ୍ ପେଟିକା ଏବଂ ପୁଚ୍ଛନଳୀ । ତେବେ ତନ୍ମଧ୍ୟରେ ପୁଚ୍ଛନଳୀ ହିଁ ଏହାର ପ୍ରଧାନ ଉତ୍ସ । ଅନ୍ୟପକ୍ଷରେ ଦୁଇଷ୍ଟ୍ରୋକ୍ ଇଞ୍ଜିନଯୁକ୍ତ ଯାନରୁ ପ୍ରାୟ ସମସ୍ତ ବାଷ୍ପ ନିର୍ଗତ ହୋଇଥାଏ



ପୁଚ୍ଛନଳୀ ଦେଇ । କାର୍ ବା ବସ୍‌ରୁ ନିର୍ଗତ ସମୁଦାୟ ହାଇଡ୍ରୋକାର୍ବନ୍‌ସର ପ୍ରାୟ ୧୮ ଶତାଂଶ ଇନ୍ଧନ୍ ପେଟିକା ଓ ଯୋଗାଣ ବ୍ୟବସ୍ଥା ଦେଇ ନିର୍ଗତ ହେଲାବେଳେ ୨୦ ଶତାଂଶ କ୍ରାଂକ୍ ପେଟିକା ଏବଂ ଅବଶିଷ୍ଟ ୫୨ ଶତାଂଶ ହାଇଡ୍ରୋକାର୍ବନ୍ ତଥା ସମସ୍ତ କାର୍ବୋନ୍ ମନୋକ୍ସାଇଡ୍ ଯବକ୍ଷାରଜାନର ଅକ୍ସାଇଡ୍ ସମୂହ ପୁଚ୍ଛନଳୀ ଦେଇ ନିର୍ଗତ ହୁଏ । ଅତଏବ, ଏହା ହାଇଡ୍ରୋକାର୍ବନ୍‌ଭିତ୍ତିକ ଇନ୍ଧନ ବ୍ୟବହାର କରୁଥିବା ସବୁପ୍ରକାର ଯାନବାହନର ସର୍ବାଧିକ ବାୟୁ ପ୍ରଦୂଷଣକାରୀ ଅଙ୍ଗ ।

ଉଭୟ ପେଟ୍ରୋଲ ଓ ଡିଜେଲ୍ ଇଞ୍ଜିନ୍‌ର ପୁଚ୍ଛଧୂମରେ ଏକ ପ୍ରକାର ବାଷ୍ପମାନ ଥାଏ । କିନ୍ତୁ ତହିଁରେ ଏହି ଉପାଦାନଗୁଡ଼ିକର ଅନୁପାତ ବିଭିନ୍ନ (ସାରଣୀ - ୧ ଦ୍ରଷ୍ଟବ୍ୟ) । ପୁନଶ୍ଚ, ଗାଡ଼ିର ତିଆରି, ତାହା ଚଳାଇବା ପଦ୍ଧତି ଓ ଇଞ୍ଜିନ୍‌ର ଅବସ୍ଥା ଉପରେ ନିର୍ଭର କରି ମଧ୍ୟ ଏଥିରେ କେତେକ ପରିବର୍ତ୍ତନ ଆସେ ।

ସାରଣୀ-୧ରୁ ଏହା ସୁସ୍ପଷ୍ଟ ଯେ ପେଟ୍ରୋଲ ଇଞ୍ଜିନ୍ ଅଧିକ ପ୍ରଦୂଷଣକାରୀ । ପୁନଶ୍ଚ ଗାଡ଼ି ସ୍ଥିର ଥିଲାବେଳେ ଏବଂ ବେଗ ହ୍ରାସ କଲା ସମୟରେ ତହିଁରେ ସୂଚିତ ୪ଟିଯାକ ବାୟୁ ପ୍ରଦୂଷଣକାରୀ ଉପାଦାନରୁ ତିନୋଟିର ମାତ୍ରା ବୃଦ୍ଧି ଘଟେ । ଅତଏବ ଇଞ୍ଜିନ୍ ଚାଲୁରଖି ଗାଡ଼ିକୁ ସ୍ଥିର ରଖିଲେ ତାହା ବାୟୁକୁ ଅଧିକ ଦୂଷିତ କରେ ।

ସାରଣୀ 1 - ଇଞ୍ଜିନ୍ ଚାଲୁଥିବାବେଳେ ବିଭିନ୍ନ ଅବସ୍ଥାରେ ଯାନବାହନର ପୁଚ୍ଛଧୂମରେ ଭିନ୍ନ ଭିନ୍ନ ବାଷ୍ପର ଅନୁପାତ (ନିୟୁତ ଭାଗ ପ୍ରତି)

| ବାଷ୍ପ ବା ଉପାଦାନ | ଯାନ ସ୍ଥିର ଥିଲାବେଳେ | ବେଗ ବୃଦ୍ଧି ସମୟରେ | ଦ୍ରୁତବେଗରେ ଚାଲୁଥିବାବେଳେ | ବେଗ ହ୍ରାସ କଲା ସମୟରେ |
|---|---|---|---|---|
| ପେଟ୍ରୋଲ ଇଞ୍ଜିନ୍ | | | | |
| କାର୍ବନ ମନୋକ୍ସାଇଡ଼୍ | ୬୯,୦୪୦ | ୨୯,୦୦୦ | ୨୭,୦୦୦ | ୩୯,୦୦୦ |
| ହାଇଡ୍ରୋକାର୍ବନ୍ସ | ୫,୩୦୦ | ୧,୬୦୦ | ୧,୦୦୦ | ୧୦,୦୦୦ |
| ଯବକ୍ଷାରଯାନର ଅକ୍ସାଇଡ଼ ସମୂହ | ୩୦ | ୧,୦୬୦ | ୬୫୦ | ୨୦ |
| ଆଲ୍‌ଡିହାଇଡ଼୍‌ସ | ୩୦ | ୨୦ | ୧୦ | ୨୯୦ |
| ଡିଜେଲ ଇଞ୍ଜିନ୍ | | | | |
| କାର୍ବନ ମନୋକ୍ସାଇଡ଼୍ | ସାମାନ୍ୟ | ୧,୦୦୦ | ସାମାନ୍ୟ | ସାମାନ୍ୟ |
| ହାଇଡ୍ରୋକାର୍ବନ୍ସ | ୪୦୦ | ୨୦୦ | ୧୦୦ | ୩୦୦ |
| ଯବକ୍ଷାରଯାନର ଅକ୍ସାଇଡ୍ ସମୂହ | ୬୦ | ୩୫୦ | ୨୪୦ | ୩୦ |
| ଆଲ୍‌ଡିହାଇଡ଼୍‌ସ | ୧୦ | ୨୦ | ୧୦ | ୩୦ |

ସେହିପରି ଇଞ୍ଜିନ୍ ଠିକ୍ ଅବସ୍ଥାରେ ନଥିଲେ ମଧ୍ଯ ତହିଁରୁ ଏହିସବୁ ବାଷ୍ପ ଅଧିକ ପରିମାଣରେ ନିର୍ଗତ ହୁଏ । ଆମ ଦେଶରେ ଅଧିକାଂଶ ସହରରେ ଚାଲୁଥିବା ବହୁ ଯାନବାହନର ଇଞ୍ଜିନ୍ ଠିକ୍ ଅବସ୍ଥାରେ ନଥାଏ । ଏଥିରୁ ଅଧିକ ଧୂମ ଓ ଶବ୍ଦ ବାହାରେ । ପୁନଶ୍ଚ ଓ ସର୍ବସାଧାରଣଙ୍କ ପାଇଁ ବ୍ୟବହୃତ ଏପରି ଯାନବାହନଗୁଡ଼ିକୁ ବସଷ୍ଟାଣ୍ଡ ବା ରାସ୍ତାକଡ଼ରେ ଇଞ୍ଜିନ୍ ଚାଲୁ କରି ଦୀର୍ଘ ସମୟ ଧରି ଠିଆକରି ରଖିବାର ଦେଖାଯାଏ । ଆମ ରାଜଧାନୀ ଭୁବନେଶ୍ୱରରେ ଚାଲୁଥିବା ଅଧିକାଂଶ ଟାଉନବସ ଅବସ୍ଥା ଏହିପରି । ପରିବେଶ ପ୍ରଦୂଷଣ ଦୃଷ୍ଟିରୁ ଏହା ଅତି ମାରାତ୍ମକ ।

ଆମ ଦେଶରେ ଅଧିକାଂଶ ସହରରେ ଚାଲୁଥିବା ବହୁ ଯାନବାହନର ଇଞ୍ଜିନ୍ ଠିକ୍ ଅବସ୍ଥାରେ ନଥାଏ । ଏଥିରୁ ଅଧିକ ଧୂମ ଓ ଶବ୍ଦ ବାହାରେ । ପୁନଶ୍ଚ ଓ ସର୍ବସାଧାରଣଙ୍କ ପାଇଁ ବ୍ୟବହୃତ ଏପରି ଯାନବାହନଗୁଡ଼ିକୁ ବସଷ୍ଟାଣ୍ଡ ବା ରାସ୍ତାକଡ଼ରେ ଇଞ୍ଜିନ୍ ଚାଲୁ କରି ଦୀର୍ଘ ସମୟ ଧରି ଠିଆକରି ରଖିବାର ଦେଖାଯାଏ । ଆମ ରାଜଧାନୀ ଭୁବନେଶ୍ୱରରେ ଚାଲୁଥିବା ଅଧିକାଂଶ ଟାଉନବସ ଅବସ୍ଥା ଏହିପରି । ପରିବେଶ ପ୍ରଦୂଷଣ ଦୃଷ୍ଟିରୁ ଏହା ଅତି ମାରାତ୍ମକ ।

ସ୍କୁଟର, ମୋଟର ସାଇକେଲ ଆଦି ଯାନରେ ଦୁଇଷ୍ଟ୍ରୋକ୍ ବିଶିଷ୍ଟ ପେଟ୍ରୋଲ ଇଞ୍ଜିନ୍ ବ୍ୟବହୃତ ହୁଏ । ଚାରିଷ୍ଟ୍ରୋକ୍ ଇଞ୍ଜିନ୍ ବିଶିଷ୍ଟ ଯାନଠାରୁ ଏହା ଅଧିକ ପ୍ରଦୂଷଣକାରୀ । କାରଣ ଏଥିରେ ଦହନ ହେଉଥିବା ବାୟୁ-ଇନ୍ଧନର ମିଶ୍ରଣରେ ଇନ୍ଧନର ଅନୁପାତ ତୁଳନାତ୍ମକ ଭାବେ ଅଧିକ । ଚାରିଷ୍ଟ୍ରୋକ୍ ଇଞ୍ଜିନ୍‌ଯୁକ୍ତ କାର, ବସ ଆଦି ଯାନରେ ଏହା ୧୪.୭:୧ ହେବା ସ୍ଥଳେ ଏଥିରେ ତାହା ୧୨:୧ ଅଟେ । ଅତଏବ ତାହାର ପୁଚ୍ଛଧୂମରେ ୧୦ରୁ ୩୦ ଗୁଣ ହାଇଡ୍ରୋକାର୍ବନ ଏବଂ ଯଥେଷ୍ଟ ଅଧିକ କାର୍ବନ ମନୋକ୍ସାଇଡ଼୍ ଥାଏ । ଅବଶ୍ୟ ଏଥିରେ ଯବକ୍ଷାରଜାନ୍ ଅକ୍ସାଇଡ଼ଗୁଡ଼ିକର ଅନୁପାତ କମ୍ ।

ମୋଟର ଯାନରୁ ନିର୍ଗତ ସମସ୍ତ ବାଷ୍ପୀୟ ବିଷାକ୍ତ ପଦାର୍ଥମାନଙ୍କର ମନୁଷ୍ୟର ସ୍ୱାସ୍ଥ୍ୟ ଉପରେ ଏଗୁଡ଼ିକ ମାରାତ୍ମକ କୁପ୍ରଭାବମାନ ରହିଛି । ଅରଣ୍ୟସଂପଦ, କୃଷିଠାରୁ ଆରମ୍ଭ କରି ନଦୀ, ହ୍ରଦ, ଝରଣା ଇତ୍ୟାଦିର ଜଳଜ ଜୀବନ ମଧ୍ଯ ଏହାଦ୍ୱାରା ପ୍ରଭାବିତ ହୋଇଥାଏ ।

ଏହି ଧୂଆଁର ଅନ୍ୟତମ ମୁଖ୍ୟ ପ୍ରଦୂଷଣକାରୀ ଉପାଦାନ କାର୍ବନ ମନୋକ୍ସାଇଡ଼୍, ଇନ୍ଧନର ଅସଂପୂର୍ଣ୍ଣ ଦହନ ହେତୁ ସୃଷ୍ଟି ହୋଇଥାଏ । ପେଟ୍ରୋଲ ଓ ଡିଜେଲ ଆଦି ହାଇଡ୍ରୋକାର୍ବନ ଭିତ୍ତିକ ଇନ୍ଧନ ଅଙ୍ଗାର ଏବଂ ଉଦ୍‌ଜାନ ପରମାଣୁ ନେଇ ଗଠିତ ରାସାୟନିକ ପଦାର୍ଥ । ଏହା ସଂପୂର୍ଣ୍ଣ ଦହନ ହେଲେ ବାୟୁର ଅମ୍ଳଜାନ ସହିତ ମିଳିତ ହୋଇ ତାହା ଯଥାକ୍ରମେ ଅଙ୍ଗାରକାମ୍ଳ ବାଷ୍ପ ଏବଂ ଜଳ ସୃଷ୍ଟି କରନ୍ତି । କିନ୍ତୁ ଦହନ ଅସଂପୂର୍ଣ୍ଣ ହେଲେ ଅଙ୍ଗାରକାମ୍ଳ ବାଷ୍ପ ପରିବର୍ତ୍ତେ କାର୍ବନ ମନୋକ୍ସାଇଡ଼୍ ଜାତ ହୁଏ । ଏହି କାରଣରୁ ଯାନ ସ୍ଥିର ଥିଲେ ଏହାର ଧୂଆଁରେ ଏ ବାଷ୍ପର ମାତ୍ରା ବୃଦ୍ଧି ଘଟେ । କାର୍ବନ ମନୋକ୍ସାଇଡ଼୍ ରକ୍ତର ହେମୋଗ୍ଲୋବିନ୍ ସହିତ ସହଜରେ ରାସାୟନିକ ବନ୍ଧନରେ ବାନ୍ଧି ହୋଇପଡ଼େ । ଫଳରେ ତାହାର ଅମ୍ଳଜାନ ବହନକାରୀ ଗୁଣ ନଷ୍ଟ ହୋଇଥାଏ । କାର୍ବନ ମନୋକ୍ସାଇଡ଼ର ରକ୍ତରେ ମିଶିବା ଗୁଣ ଅମ୍ଳଜାନଠାରୁ ଅନେକଗୁଣ ଅଧିକ ।

ସେହିପରି ନାଇଟ୍ରୋଜେନ ଅକ୍ସାଇଡ଼ ସେବନଦ୍ୱାରା ବିବିଧ ଶ୍ୱାସଜନିତ ବ୍ୟାଧିର ସମ୍ଭାବନା ବୃଦ୍ଧିପାଏ । ଏଥିଯୋଗୁଁ ସହରାଞ୍ଚଳରେ ବସବାସ କରୁଥିବା ଲୋକେ ଉପରୋକ୍ତ ରୋଗଦ୍ୱାରା ଅଧିକ ମାତ୍ରାରେ ଆକ୍ରାନ୍ତ ହୋଇଥାନ୍ତି । ବୈଜ୍ଞାନିକମାନେ ବିଶ୍ୱାସ କରନ୍ତି ଯେ ଏହି ବିଷାକ୍ତ ବାଷ୍ପ ଉଦ୍ଭିଦ ଜଗତକୁ ମଧ୍ୟ ପ୍ରଭାବିତ କରେ ।

ଇନ୍ଧନରେ ଥିବା ହାଇଡ୍ରୋକାର୍ବନ ପୁଚ୍ଛଧୂମରେ ବାଷ୍ପ ଆକାରରେ ତଥା କ୍ଷୁଦ୍ରାଦପି କ୍ଷୁଦ୍ର କଣିକା ଆକାରରେ ନିର୍ଗତ ହୋଇ ବାୟୁରେ ମିଶି ଆମ ଫୁସ୍‌ଫୁସ୍ ମଧ୍ୟକୁ ପ୍ରବେଶ କରିବା ସ୍ୱାସ୍ଥ୍ୟପକ୍ଷେ କ୍ଷତିକାରକ । ପୁନଶ୍ଚ, ବାଷ୍ପୀଭୂତ ହାଇଡ୍ରୋକାର୍ବନର କିଛି ଅଂଶ ସୂର୍ଯ୍ୟାଲୋକ ଉପସ୍ଥିତିରେ ବାୟୁର ଅମ୍ଳଜାନ ସହିତ ମିଶି ଆଲଡ଼ିହାଇଡ୍‌ରେ ପରିଣତ ହୋଇଯାଏ । ଏହା ଆଖି ଓ ଫୁସ୍‌ଫୁସ୍‌କୁ କ୍ଷତି ପହଞ୍ଚାଏ । ଇଞ୍ଜିନର ଉତ୍ତାପ ହେତୁ ବାୟୁରେ ଥିବା ଯବକ୍ଷାରଜାନ ଓ ଅମ୍ଳଜାନ ମିଳିତ ହୋଇ ବିବିଧ ଅକ୍ସାଇଡ଼୍‌ସ ମଧ୍ୟ ସୃଷ୍ଟି କରନ୍ତି । ଏହି ଅମ୍ଳଗୁଣଧାରୀ ବାଷ୍ପଗୁଡ଼ିକ ଉଭୟ ଉଦ୍ଭିଦ ଏବଂ ମନୁଷ୍ୟ ସମେତ ଅନ୍ୟ ଜୀବମାନଙ୍କର ସ୍ୱାସ୍ଥ୍ୟହାନି ଘଟାଏ । ଯବକ୍ଷାରଜାନର ଅକ୍ସାଇଡ଼ଗୁଡ଼ିକ ଯାନବାହନରୁ ନିର୍ଗତ ହାଇଡ୍ରୋକାର୍ବନର ଧୂମରେ ସୂର୍ଯ୍ୟ କିରଣର ଉପସ୍ଥିତିରେ ମିଶି ପେରେକ୍ସି ଏସିଟୋ ନାଇଟ୍ରାଇଲ ନାମକ ବିପଜ୍ଜନକ ପଦାର୍ଥ ଉତ୍ପନ୍ନ କରେ । ଏଥିରୁ ସ୍ମଗ ସୃଷ୍ଟି ହୁଏ, ଯାହାକି ଶ୍ୱାସକ୍ରିୟାଜନିତ ବିବିଧ ବ୍ୟାଧିର କାରଣ । ଏହାବ୍ୟତୀତ ଯବକ୍ଷାରଜାନର ଅକ୍ସାଇଡ଼୍‌ମାନେ ଅମ୍ଳବୃଷ୍ଟିକୁ ତ୍ୱରାନ୍ୱିତ କରିବା ସଂଗେସଂଗେ ରବର ଓ କାର୍ପାସ ନିର୍ମିତ ବସ୍ତୁକୁ ମଧ୍ୟ କ୍ଷତି ପହଞ୍ଚାଏ । ପୁନଶ୍ଚ ଏହି ବାଷ୍ପଗୁଡ଼ିକ ସୂର୍ଯ୍ୟାଲୋକର ଉପସ୍ଥିତିରେ ଫ୍ରିରାଡ଼ିକାଲସ ଶ୍ରେଣୀର ନାନାଦି ସକ୍ରିୟ ପଦାର୍ଥ ସୃଷ୍ଟି କରନ୍ତି ଯାହାକି ଉଭୟ ପ୍ରାଣୀ ଓ ଉଦ୍ଭିଦଜଗତ ଲାଗି ହାନିକାରକ ।

ଯାନବାହନରୁ ନିର୍ଗତ ଧୂଆଁର ଅନ୍ୟତମ ଉପାଦାନ ସଲଫର୍ ଡାଇଅକ୍ସାଇଡ଼୍ ($SO_2$) ଅମ୍ଳଗୁଣ ବିଶିଷ୍ଟ ଏବଂ ଏହା ଅମ୍ଳବୃଷ୍ଟିର ପ୍ରଧାନ କାରଣ । ଆମ ଶ୍ୱାସକ୍ରିୟା ବ୍ୟବସ୍ଥାକୁ ମଧ୍ୟ ଏହା କ୍ଷତିଗ୍ରସ୍ତ କରେ । ଅନ୍ୟ ପକ୍ଷରେ ଯାନବାହନର ପୁଚ୍ଛଧୂମରୁ ନିର୍ଗତ ଅଙ୍ଗାରକଣିକା ବିଷାକ୍ତ ନହେଲେ ବି ତାହା ଶ୍ୱାସକ୍ରିୟା ବ୍ୟବସ୍ଥାରେ ପ୍ରବେଶ କରି ତାହାକୁ ହାନି ପହଞ୍ଚାଇ ଥାଏ ।

ନିକଟରେ ମୁମ୍ବାଇଠାରେ ହୋଇଥିବା ଏକ ଅଧ୍ୟୟନରୁ ଜଣାପଡ଼ିଛି ଯେ, ସେଠାରେ ଯାନବାହନରୁ ପ୍ରତ୍ୟହ ୪୦,୦୦୦ ଟନ କାର୍ବନ ମନୋକ୍ସାଇଡ଼୍, ୫୮ ଟନ୍ ଯବକ୍ଷାରଜାନର ଅକ୍ସାଇଡ଼୍ ସମୂହ ୩୩୮ ଟନ ହାଇଡ୍ରୋକାର୍ବନ ଏବଂ ୮୨ ଟନ୍ ସଲ୍‌ଫର ଡାଇଅକ୍ସାଇଡ଼ ନିର୍ଗତ ହୁଏ । ଆମ ଦେଶର ଅନ୍ୟାନ୍ୟ ମହାନଗରୀର ଅବସ୍ଥା ପ୍ରାୟ ଏଭଳି ଏବଂ ଧୀରେ ଧୀରେ ଏଗୁଡ଼ିକର ମାତ୍ରା ବୃଦ୍ଧି ପାଇଲାଣି । ଅତଏବ ଏହି ଧାରା ଅବ୍ୟାହତ ରହିଲେ ସହର, ନଗରମାନଙ୍କରେ ବାୟୁ ପ୍ରଦୂଷଣ କ୍ରମାଗତ ଭାବେ ବଢ଼ି ଚାଲିବ ଏବଂ ଏହାର ଅଧିବାସୀମାନଙ୍କ ପାଇଁ ତାହା ଗଭୀର ଉଦ୍‌ବେଗର କାରଣ ହେବ ।

ପରିବେଶ ନିର୍ଦ୍ଦେଶକ
ଯୋଜନା ଆୟୋଗ, ନୂଆଦିଲ୍ଲୀ



ନୂଆପଡ଼ାର ଅପର ଜଙ୍କ ଜଳାଶୟ

# ଜଳ ସଂପଦ : ବିକାଶ ଓ ଯୋଜନା

ମୋହନ ଚରଣ ମାଝୀ

ରାଜ୍ୟର ଜଳସଂପଦ ସମ୍ବନ୍ଧୀୟ ଯୋଜନା ଓ ଉନ୍ନତିକରଣ ତଥା ଜଳସେଚନ, ଜଳଯୋଗାଣ, ଜଳ ନିଷ୍କାସନ ଓ ବନ୍ୟା ନିୟନ୍ତ୍ରଣ ଆଦି କାର୍ଯ୍ୟ ସହ ବୃହତ୍, ମଧ୍ୟମ, କ୍ଷୁଦ୍ର ଜଳସେଚନ ଓ ଉଠା ଜଳସେଚନ ଯୋଜନାଗୁଡ଼ିକ ପରିଚାଳନା, ରକ୍ଷଣାବେକ୍ଷଣ, ଭୂତଳ ଜଳର ଅନ୍ୱେଷଣ ଓ ନିୟନ୍ତ୍ରଣ, ମନୋନୀତ ସେଚାଞ୍ଚଳରେ କ୍ଷେତ୍ରନାଳୀ ନିର୍ମାଣ ଆଦି କାର୍ଯ୍ୟକ୍ରମର ସଫଳ ରୂପାୟନ ପାଇଁ ଜଳସଂପଦ ବିଭାଗ କାର୍ଯ୍ୟ କରିଥାଏ ।

ଜଳସେଚନ ସାମଗ୍ରିକ ଉନ୍ନତିକରଣର ଏକ ପ୍ରମୁଖ ଅଙ୍ଗ । ଜଳସେଚନର ଅଭିବୃଦ୍ଧି ଖାଦ୍ୟ ନିରାପତ୍ତା ଏବଂ ଅର୍ଥନୈତିକ ଅଭିବୃଦ୍ଧିରେ ସହାୟକ ହୋଇଥାଏ । ରାଜ୍ୟର ମୋଟ ୬୧.୬୫ ଲକ୍ଷ ହେକ୍ଟର ଚାଷୋପଯୋଗୀ ଜମି ମଧ୍ୟରୁ ୪୯.୯୦ ଲକ୍ଷ ହେକ୍ଟର ଜମି ସେଚ ଉପଯୋଗୀ ଅଟେ । ୨୦୦୬ ମସିହା ଜୁନ୍ ମାସ ସୁଦ୍ଧା ୨୧.୬୪ ଲକ୍ଷ ହେକ୍ଟର ଚାଷ ଜମିରେ ଜଳସଂପଦ ବିଭାଗ ଅନ୍ତର୍ଗତ ବୃହତ୍, ମଧ୍ୟମ, କ୍ଷୁଦ୍ର ଓ ଉଠାଜଳସେଚନ ପ୍ରକଳ୍ପଗୁଡ଼ିକ ମାଧ୍ୟମରେ ସେଚ ବ୍ୟବସ୍ଥା କରାଯାଇଛି ।

> ରାଜ୍ୟର ମୋଟ ୧୮ ଗୋଟି ପ୍ରକଳ୍ପ କେନ୍ଦ୍ର ସରକାରଙ୍କ ଅନୁମୋଦନ ଲାଭ କରିଛି । ଏହାର ଅଦ୍ୟାବଧି ଆକଳିତ ମୂଲ୍ୟ ୫୦୮୫.୫୫ କୋଟି ଟଙ୍କା ଏବଂ ଏହା ଶେଷ ହେଲେ ୩.୧୧ ଲକ୍ଷ ହେକ୍ଟର ଅଧିକ ଜମିକୁ ଜଳସେଚିତ କରାଯାଇପାରିବ ।

୨୦୦୬-୦୭ ଆର୍ଥିକ ବର୍ଷରେ ୫୦,୨୬୦ ହେକ୍ଟର ଜମିକୁ ଜଳସେଚିତ କରିବା ଲାଗି ୫୫୩.୫୦ କୋଟି ଟଙ୍କା ବ୍ୟୟବରାଦ ପ୍ରସ୍ତାବ କରାଯାଇଥିଲା । ବର୍ତ୍ତମାନ ଏହି କାର୍ଯ୍ୟ ପାଇଁ ଅଧିକ ୨୩୫.୩୪ କୋଟି ଟଙ୍କା ବ୍ୟୟବରାଦର ପ୍ରସ୍ତାବ ରଖାଯାଇଛି, ଯେଉଁଥିରେ ବୃହତ୍ ଓ ମଧ୍ୟମ ଜଳସେଚନ ପାଇଁ ୧୯୦.୫୩ କୋଟି ଟଙ୍କା, କ୍ଷୁଦ୍ର ଜଳସେଚନ ପାଇଁ ୨୮.୧୪୮ କୋଟି ଟଙ୍କା, ଉଠାଜଳସେଚନ ପାଇଁ ୩.୦୦ କୋଟି ଟଙ୍କା, ବନ୍ୟା ନିୟନ୍ତ୍ରଣ ପାଇଁ ୮.୬୦ କୋଟି ଟଙ୍କା ଅନ୍ତର୍ଭୁକ୍ତ ରହିଛି । ବୃହତ୍ ଓ ମଧ୍ୟମ ଜଳସେଚନ ଜରିଆରେ ସମଗ୍ର ରାଜ୍ୟର ୩୧.୩୦ ଲକ୍ଷ ହେକ୍ଟର ଚାଷପୋଯୋଗୀ ଜମିକୁ ଜଳସେଚିତ କରାଯିବାର ଲକ୍ଷ୍ୟଧାର୍ଯ୍ୟ କରାଯାଇଛି । ୨୦୦୬-୦୭ ଆର୍ଥିକ ବର୍ଷରେ ବୃହତ୍ ଓ ମଧ୍ୟମ ଜଳସେଚନ ବାବଦକୁ ମୋଟ ୪୭୧.୦୫ କୋଟି ଟଙ୍କାର ବ୍ୟୟବରାଦ ପ୍ରସ୍ତାବ ଥିଲା । ସେହିପରି ଅଧିକ ୧୮,୨୧୦ ହେକ୍ଟର ଜମିକୁ ଜଳସେଚନ ସୁବିଧା ଯୋଗାଇ ଦେବାକୁ ଯୋଜନା କରାଯାଇଛି ।

ଜଳସଂପଦ ବିଭାଗ ବିଭିନ୍ନ ସଂସ୍ଥା (ବୈଦେଶିକ ତଥା ଆନ୍ତର୍ଜାତିକ)ମାନଙ୍କ ଆର୍ଥିକ ସହାୟତାରେ ବିଭିନ୍ନ କାର୍ଯ୍ୟ ରୂପାୟନ କରିଥାଏ । ରାଜ୍ୟରେ ଚାଲିଥିବା ବିଭିନ୍ନ ପ୍ରକଳ୍ପ ଲାଗି ଜାପାନ ଆନ୍ତର୍ଜାତୀୟ ସେବା ବ୍ୟାଙ୍କ (ଜେ.ବି.ଆଇ.ସି.), ବିଶ୍ୱବ୍ୟାଙ୍କ, ନାବାର୍ଡ଼ ତଥା କେନ୍ଦ୍ର ସରକାରଙ୍କ ତ୍ୱରିତ ଜଳସେଚନ ସୁବିଧା କାର୍ଯ୍ୟକ୍ରମ (ଏ.ଆଇ.ବି.ପି.) ସହାୟତା ଯୋଗାଇ ଦେଇଆସୁଛନ୍ତି । ରେଙ୍ଗାଲି ବାମପାର୍ଶ୍ୱ କେନାଲର ନିର୍ମାଣ କାର୍ଯ୍ୟ ଜାପାନ ଆନ୍ତର୍ଜାତିକ ସେବା ବ୍ୟାଙ୍କ ଋଣ ସହାୟତାରେ ୧୯୯୭ରୁ ଚାଲିଛି । ଏହି ପ୍ରକଳ୍ପ ଲାଗି ବର୍ତ୍ତମାନ ସୁଦ୍ଧା ୪୨୬.୯୩ କୋଟି ଟଙ୍କା ବ୍ୟୟ କରାଯାଇଛି । ପ୍ରକଳ୍ପ ଶେଷ ହେଲେ ୨୯,୧୭୬ ହେକ୍ଟର ଚାଷ ଜମି ଜଳସେଚିତ ହୋଇପାରିବ । ସେହିପରି ଜଳ ବିଜ୍ଞାନ ପ୍ରକଳ୍ପ ବିଶ୍ୱବ୍ୟାଙ୍କ ସହାୟତାରେ ପରିଚାଳିତ ହେଉଛି । ଭୂପୃଷ୍ଠ ଓ ଭୂତଳ ଜଳର ସଦୁପଯୋଗ, ମରୁଡ଼ି ସମ୍ବନ୍ଧୀୟ ପର୍ଯ୍ୟବେକ୍ଷଣ ଓ ପରିଚାଳନା ଆଦି ଏହି ପ୍ରକଳ୍ପ ମଧ୍ୟରେ ରହିଛି । ଜଳସେଚନର ପ୍ରଗତିକୁ ଗତିଶୀଳ କରିବା ପାଇଁ କେନ୍ଦ୍ର ସରକାରଙ୍କ ପକ୍ଷରୁ ତ୍ୱରିତ ଜଳସେଚନ ସୁବିଧା କାର୍ଯ୍ୟକ୍ରମ ପ୍ରଚଳନ କରିଛନ୍ତି । ରାଜ୍ୟରେ ନିର୍ମାଣାଧୀନ ବୃହତ୍ ଜଳସେଚନ ପ୍ରକଳ୍ପଗୁଡ଼ିକର ନିର୍ମାଣକୁ ତ୍ୱରାନ୍ୱିତ କରିବା ଏବଂ ଶେଷ ପର୍ଯ୍ୟାୟରେ ଥିବା ନିର୍ମାଣାଧୀନ ପ୍ରକଳ୍ପଗୁଡ଼ିକୁ ଶୀଘ୍ର ଶେଷ କରିବା ଏହି କାର୍ଯ୍ୟକ୍ରମର ମୁଖ୍ୟ ଲକ୍ଷ୍ୟ ।

ରାଜ୍ୟର ମୋଟ ୧୮ ଗୋଟି ପ୍ରକଳ୍ପ କେନ୍ଦ୍ର ସରକାରଙ୍କ ଅନୁମୋଦନ ଲାଭ କରିଛି । ଏହାର ଅଦ୍ୟାବଧି ଆକଳିତ ମୂଲ୍ୟ ୫୦୮୫.୫୫ କୋଟି ଟଙ୍କା ଏବଂ ଏହା ଶେଷ ହେଲେ ୩.୧୧ ଲକ୍ଷ ହେକ୍ଟର ଅଧିକ ଜମିକୁ ଜଳସେଚିତ କରାଯାଇପାରିବ । ଜୁନ୍ ୨୦୦୬ ସୁଦ୍ଧା ଏହି ପ୍ରକଳ୍ପମାନଙ୍କ ଦ୍ୱାରା ୫୫,୨୭୪ ହେକ୍ଟର ଜମିକୁ ଜଳସେଚନ

ସୁବିଧା କରାଯାଇଛି । ଏହାସହ ଭିତ୍ତିଭୂମି ଉନ୍ନୟନ ପାଇଁ ୧୯୯୫ରୁ ଜାତୀୟ କୃଷି ଓ ଗ୍ରାମାଞ୍ଚଳ ଉନ୍ନୟନ ବ୍ୟାଙ୍କ ନାବାର୍ଡ଼-ଆର୍‌ଆଇଡିଏଫ୍ ଯୋଜନା ପ୍ରଚଳନ କରିଛି । ଏହାଦ୍ୱାରା ରାଜ୍ୟ ସରକାରଙ୍କୁ ବିଭିନ୍ନ ପ୍ରକଳ୍ପ ଲାଗି ଆର୍ଥିକ ସହାୟତା ମିଳିଥାଏ । ଏହି ପ୍ରକଳ୍ପ ଅଧୀନରେ ୨୦୦୬ ଜୁନ୍ ସୁଦ୍ଧା ୪୮,୦୯୭ ହେକ୍ଟର ଜମିକୁ ଜଳସେଚିତ କରାଯାଇପାରିଛି । ତେବେ ଏହି ସହାୟତା ରାଶିରେ ୫୮ଟି ପ୍ରକଳ୍ପର କାର୍ଯ୍ୟ ଚାଲିଛି । ଏହି ପ୍ରକଳ୍ପଗୁଡ଼ିକ ଶେଷ ହେଲେ ରାଜ୍ୟର ୪୮,୬୨୦ ହେକ୍ଟର ଜମି ଜଳସେଚିତ ହୋଇପାରିବ ।

୨୦୦୬-୦୭ ଆର୍ଥିକ ବର୍ଷରେ କ୍ଷୁଦ୍ର ଜଳସେଚନଦ୍ୱାରା ୧୨,୦୫୦ ହେକ୍ଟର ଅଧିକ ଜମିକୁ ସେଚକ୍ଷମ କରାଇବା ପାଇଁ ୪୫.୭୦ କୋଟି ଟଙ୍କାର ବ୍ୟୟବରାଦ ରଖାଯାଇଥିଲା । ବର୍ତ୍ତମାନ ଅତିରିକ୍ତ ବ୍ୟୟବରାଦ ୧୫.୨୧ କୋଟି ଟଙ୍କା ବ୍ୟୟବରାଦର ପ୍ରସ୍ତାବ ରହିଛି । ତେବେ ଚଳିତ ବର୍ଷ ଅକ୍ଟୋବର ଶେଷ ସୁଦ୍ଧା ୧୬.୫୯ କୋଟି ଟଙ୍କା ବ୍ୟୟ କରାଯାଇଛି । ତେବେ ଜୁନ୍ ୨୦୦୬ ସୁଦ୍ଧା ୨୩ ଗୋଟି ପ୍ରକଳ୍ପ ନାବାର୍ଡ଼ ସହାୟତାରେ ଓ ୩ ଗୋଟି ପ୍ରକଳ୍ପ ଏ.ଆଇ.ବି.ପି. ଯୋଜନାରେ ଶେଷ କରାଯାଇଛି ଓ ମୋଟ ୭,୮୨୪ ହେକ୍ଟର ଜମିକୁ ଜଳସେଚିତ କରାଯାଇ ପାରିଛି ।

ଓଡ଼ିଶା ସରକାରଙ୍କପକ୍ଷରୁ ଅଚଳ ହୋଇପଡ଼ିଥିବା କ୍ଷୁଦ୍ର ଜଳସେଚନ ପ୍ରକଳ୍ପର ପୁନରୁଦ୍ଧାର ପାଇଁ କେନ୍ଦ୍ର ସରକାରଙ୍କୁ ୨୦୦୫ରେ ଏକ ପ୍ରସ୍ତାବ ଦିଆଯାଇଥିଲା । ପରବର୍ତ୍ତୀ ପର୍ଯ୍ୟାୟରେ କେନ୍ଦ୍ର ସରକାରଙ୍କର ନିର୍ଦ୍ଦେଶକ୍ରମେ ବିଶ୍ୱବ୍ୟାଙ୍କ ସହାୟତାରେ ପ୍ରାୟ ୧୪୦୦ ଗୋଟି ଅଚଳ କ୍ଷୁଦ୍ର ଜଳସେଚନ ପ୍ରକଳ୍ପର ପୁନରୁଦ୍ଧାର ପାଇଁ ୫୦୦ କୋଟି ଟଙ୍କାର ପ୍ରସ୍ତାବ ରହିଛି । ଏହାଦ୍ୱାରା ୧,୩୨,୦୦୦ ହେକ୍ଟର ଜମି ଜଳସେଚିତ ହୋଇପାରିବ ବୋଲି ଲକ୍ଷ୍ୟଧାର୍ଯ୍ୟ କରାଯାଇଛି ।

ଏହିସବୁ ପ୍ରକଳ୍ପ ଲାଗି ଆର୍ଥିକ ଅନୁଦାନ ଠିକ୍ ଭାବେ ମିଳିପାରିଲେ, ରାଜ୍ୟରେ ଜଳସଂପଦର ଉପଯୋଗ ମଧ୍ୟ ଠିକ୍ ଭାବେ ହୋଇପାରିବ । ଏହାଦ୍ୱାରା କୃଷିଜନିତ ଉତ୍ପାଦନ ବୃଦ୍ଧି ଓ ଗ୍ରାମାଞ୍ଚଳରେ ଜୀବନଧାରଣର ମାନରେ ପରିବର୍ତ୍ତନ ଆସିବା ସମ୍ଭବପର ହେବ ।

ରାଜ୍ୟ ସରକାର ୨୦୦୧ରେ 'ବିଜୁ କୃଷକ ବିକାଶ ଯୋଜନା' ନାମକ ଏକ ନୂତନ ସ୍କିମ୍ ପ୍ରବର୍ତ୍ତନ କରିଛନ୍ତି । ସାଧାରଣ ଲୋକଙ୍କ ଭାଗିଦାରୀ ଏବଂ ସହଯୋଗରେ ଅଚଳ ହୋଇଯାଇଥିବା କ୍ଷୁଦ୍ର ଜଳସେଚନ ପ୍ରକଳ୍ପଗୁଡ଼ିକର ପୁନରୁଦ୍ଧାର ସହ ନୂଆ କ୍ଷୁଦ୍ର ଜଳସେଚନ ପ୍ରକଳ୍ପ ନିର୍ମାଣ ଏହି ଯୋଜନାର ମୁଖ୍ୟ ଲକ୍ଷ୍ୟ ।

ଏହି ଯୋଜନାରେ ହିତାଧିକାରୀମାନେ ପ୍ରକଳ୍ପ ମୂଲ୍ୟର ଶତକଡ଼ା ୨୦ ପ୍ରତିଶତ ଅଂଶ ଶ୍ରମ ବା ଆର୍ଥିକ ସହାୟତାଦ୍ୱାରା ବହନ କରିବେ ଏବଂ ଅବଶିଷ୍ଟ ୮୦ ପ୍ରତିଶତ ଖର୍ଚ୍ଚ ସରକାର ବହନ କରିବେ । ବର୍ତ୍ତମାନ ସୁଦ୍ଧା ୩,୬୩୭ଟି ଉଠା ଏବଂ ୨୨୬ଟି କ୍ଷୁଦ୍ର ସେଚପ୍ରକଳ୍ପକୁ ଏହି ଯୋଜନା ମାଧ୍ୟମରେ ଅନୁମୋଦନ କରାଯାଇଛି ଯାହାଦ୍ୱାରା ୯୫,୬୪୦ ହେକ୍ଟର ଜମିକୁ ଜଳସେଚିତ କରାଯାଇପାରିବ । ଚଳିତ ଆର୍ଥିକ ବର୍ଷରେ ଅତିରିକ୍ତ ବଜେଟ୍‌ରେ ଏହି ଯୋଜନାରେ ଉଠାଜଳସେଚନ ପ୍ରକଳ୍ପ ନିମନ୍ତେ ୧୨୯୩.୭୬ ଲକ୍ଷ ଟଙ୍କାର ବ୍ୟୟବରାଦର ପ୍ରସ୍ତାବ ରଖାଯାଇଛି ଓ କ୍ଷୁଦ୍ର ଜଳସେଚନ ପ୍ରକଳ୍ପ ନିମନ୍ତେ ୩୦୦.୦୨ ଲକ୍ଷ ଟଙ୍କାର ବ୍ୟୟବରାଦ ରଖାଯାଇଛି । ଉଠାଜଳସେଚନ ପ୍ରକଳ୍ପ ରାଜ୍ୟରେ ୧୭,୬୧୮ଟି ପ୍ରକଳ୍ପ ସ୍ଥାପନ କରି ୩,୪୧,୭୬୦ ହେକ୍ଟର ଉଠାଜଳସେଚନ ଜମି ସୃଷ୍ଟି କରିଅଛି । ଏଥିରୁ ୧୦,୪୬୬ଟି ପ୍ରକଳ୍ପ ପାଣିପଞ୍ଚାୟତକୁ ହସ୍ତାନ୍ତର କରାଯାଇଛି । ତେବେ ଗତ ବନ୍ୟାରେ ୪,୬୧୨ଟି ପ୍ରକଳ୍ପ ପ୍ରଭାବିତ ହୋଇ ଅଚଳ ହୋଇପଡ଼ିଛି । ସ୍ୱତନ୍ତ୍ର ରିଲିଫ୍ କମିଶନଙ୍କଠାରୁ ମିଳିଥିବା ଆର୍ଥିକ ସହାୟତାରେ ବର୍ତ୍ତମାନ ସୁଦ୍ଧା ୬୫୯ଟି ପ୍ରକଳ୍ପ ମରାମତି କରାଯାଇଛି ।

ଜଳସଂପଦର ବିକାଶକୁ ଦୃଷ୍ଟିରେ ରଖି, ନଦୀ ଅବବାହିକାଗୁଡ଼ିକର ସାମୂହିକ ଉନ୍ନତି ପାଇଁ ଯୋଜନା ରୂପରେଖ ପ୍ରସ୍ତୁତ କରାଯାଉଛି । ବନ୍ୟା ନିୟନ୍ତ୍ରଣ, ଜଳ ନିଷ୍କାସନ, ଜଳସେଚନ, କୃଷି ତଥା ଅନ୍ୟାନ୍ୟ କାର୍ଯ୍ୟକ୍ରମକୁ ଭିତ୍ତିକରି ରାଜ୍ୟ ସରକାରଙ୍କ ପକ୍ଷରୁ ବହୁବିଧ ପଦକ୍ଷେପ ଗ୍ରହଣ କରାଯାଉଛି । ରାଜ୍ୟର ବିକାଶରେ ଜଳସଂପଦର ପ୍ରମୁଖ ଭୂମିକା ରହିଛି । କୃଷି ଓ ଶିଳ୍ପ ଉଭୟ ଜଳସଂପଦ ଉପରେ ନିର୍ଭରଶୀଳ ।

ସରକାରୀ ଉପମୁଖ୍ୟ ସଚେତକ
ଓଡ଼ିଶା ବିଧାନସଭା

ଜଳସଂପଦର ବିକାଶକୁ ଦୃଷ୍ଟିରେ ରଖି, ନଦୀ ଅବବାହିକାଗୁଡ଼ିକର ସାମୂହିକ ଉନ୍ନତି ପାଇଁ ଯୋଜନା ରୂପରେଖ ପ୍ରସ୍ତୁତ କରାଯାଉଛି । ବନ୍ୟା ନିୟନ୍ତ୍ରଣ, ଜଳ ନିଷ୍କାସନ, ଜଳସେଚନ, କୃଷି ତଥା ଅନ୍ୟାନ୍ୟ କାର୍ଯ୍ୟକ୍ରମକୁ ଭିତ୍ତିକରି ରାଜ୍ୟ ସରକାରଙ୍କ ପକ୍ଷରୁ ବହୁବିଧ ପଦକ୍ଷେପ ଗ୍ରହଣ କରାଯାଉଛି ।

# ଚଳିତ ରେଳ ବଜେଟରେ ଓଡ଼ିଶା

**ଗ**ତ ଫେବୃଆରୀ ୨୬ ତାରିଖ ଦିନ ରେଳମନ୍ତ୍ରୀ ଶ୍ରୀ ଲାଲୁ ପ୍ରସାଦ ଯାଦବ ୨୦୦୮-୦୯ ପାଇଁ ରେଳ ବଜେଟ ଆଗତ କରିଛନ୍ତି । ଏଥିରେ ୧୦ଟି ନୂତନ ଗରିବୀ ରଥ ପ୍ରଚଳନ ପାଇଁ ଘୋଷଣା କରାଯାଇଥିବା ବେଳେ ୫୩ଟି ନୂଆ ଟ୍ରେନ୍ ପ୍ରଚଳନ ପାଇଁ ଘୋଷଣା କରାଯାଇଛି । ୧୬ଟି ଟ୍ରେନର ଗତିପଥକୁ ବୃଦ୍ଧି କରାଯାଇଥିବାବେଳେ ୧୧ଟି ଟ୍ରେନର ଯାତାୟାତ ବୃଦ୍ଧି କରାଯାଇଛି ।



ଏହି ବଜେଟରେ ଓଡ଼ିଶା ପାଇଁ ୪ଟି ନୂଆ ଟ୍ରେନର ପ୍ରଚଳନ ନିମନ୍ତେ ଘୋଷଣା କରାଯାଇଛି । ନୂତନ ଭାବେ ଭୁବନେଶ୍ୱର-ମୁମ୍ବାଇ ଏକ୍ସପ୍ରେସ (ଦ୍ୱିସାପ୍ତାହିକ) ଟ୍ରେନ ଭାୟା ସମ୍ବଲପୁରର ପ୍ରଚଳନ ନିମନ୍ତେ ଘୋଷଣା କରାଯାଇଥିବା ବେଳେ ପୁରୀ-ଦରଭଙ୍ଗା ଏକ୍ସପ୍ରେସ (ସାପ୍ତାହିକ), ପାରାଦ୍ୱୀପ-ଭୁବନେଶ୍ୱର ଏକ୍ସପ୍ରେସ (ଦୈନିକ) ଏବଂ କେନ୍ଦୁଝରଗଡ଼-ପୁରୀ ଏକ୍ସପ୍ରେସ (ସାପ୍ତାହିକ)ର ପ୍ରଚଳନ କରାଯାଇଛି । ଏହି ବଜେଟରେ ଓଡ଼ିଶାର ଗୋଟିଏ ଟ୍ରେନର ଗତିପଥ ବୃଦ୍ଧି କରାଯାଇଛି । ୮୬୧୧/୮୬୧୨ ବାରଣାସୀ-ରାଞ୍ଚିରୁ ଭାୟା ରାଉରକେଲା (ଦ୍ୱିସାପ୍ତାହିକ)କୁ ଦେଇ ସମ୍ବଲପୁର ଯାଏଁ ଗତିପଥ ବୃଦ୍ଧି କରାଯାଇଛି । ସେହିପରି ଦୁଇଟି ଟ୍ରେନର ଯାତାୟତ ବୃଦ୍ଧି କରାଯାଇଛି । ୨୮୯୧/୨୮୯୨ ବାରିପଦା-ଭୁବନେଶ୍ୱର ଏକ୍ସପ୍ରେସ ସପ୍ତାହରେ ତିନି ଦିନ ବଦଳରେ ୬ ଦିନ ଯାତାୟତ କରିବ । ୨୪୨୧/୨୪୨୨ ଭୁବନେଶ୍ୱର-ନୂଆଦିଲ୍ଲୀ ରାଜଧାନୀ ଏକ୍ସପ୍ରେସ ସପ୍ତାହରେ ଦୁଇ ଦିନ ବଦଳରେ ତିନି ଦିନ ଚାଲିବ ବୋଲି ଶ୍ରୀ ଯାଦବ ଘୋଷଣା କରିଛନ୍ତି ।

(ପି.ଆଇ.ବି.)

## ମୁଖ୍ୟମନ୍ତ୍ରୀଙ୍କ ପ୍ରତିକ୍ରିୟାକୁ କେନ୍ଦ୍ରର ଗୁରୁତ୍ୱ

ରେଳବାଇ ବଜେଟ ଉପରେ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ତାଙ୍କର ପ୍ରତିକ୍ରିୟା ପ୍ରକାଶ କରି କହିଥିଲେ ଯେ- ଦେଶ ସ୍ୱାଧୀନ ହେଲା ପୂର୍ବରୁ ଏବଂ ପରବର୍ତ୍ତୀ ସମୟରେ ରେଳବାଇ କ୍ଷେତ୍ରରେ ଓଡ଼ିଶାକୁ କ୍ରମାଗତ ଭାବେ ଅବହେଳା ପ୍ରଦର୍ଶନ କରାଯାଉଛି । ଚଳିତ ରେଳ ବଜେଟରେ ମଧ୍ୟ ଓଡ଼ିଶାକୁ ଉପେକ୍ଷା କରାଯାଇଛି ଏବଂ ରାଜ୍ୟ ପାଇଁ ଏହା ଅତ୍ୟନ୍ତ ନୈରାଶ୍ୟଜନକ ବୋଲି ମୁଖ୍ୟମନ୍ତ୍ରୀ ତାଙ୍କ ପ୍ରତିକ୍ରିୟାରେ କହିଛନ୍ତି । ଗତ ଫେବୃଆରୀ ୨୬ରେ ଲୋକସଭାରେ ରେଳବାଇ ବଜେଟ ପରିପ୍ରେକ୍ଷୀରେ ସେ କହିଥିଲେ 'ଲାଲୁଙ୍କ ଓଡ଼ିଶା ପାଇଁ ଗରିବ ରଥ କୁଆଡ଼େ ଗଲା ?' ରେଳମନ୍ତ୍ରୀ ଯେତିକି ପ୍ରତିଶ୍ରୁତି ଦେଇଥିଲେ ତାହା ମଧ୍ୟ ରଖିଲେ ନାହିଁ । ବଜେଟରେ ତାହା ଉଲ୍ଲେଖ ନାହିଁ । ଏହାବ୍ୟତୀତ ନକ୍ସଲ ପ୍ରବଣ ମାଲକାନଗିରି, ଜୟପୁର, ନୂଆପଡ଼ା ଓ ଗୁଣୁପୁର ଆଦି ରେଳପଥରେ ଅଞ୍ଚଳକୁ ସଂଯୋଗ କରିବା ପାଇଁ କୌଣସି ବ୍ୟବସ୍ଥା ହେଲା ନାହିଁ । ସେହିପରି କେବିକେ ଜିଲ୍ଲା ପାଇଁ କେନ୍ଦ୍ର ରେଳ ବିଭାଗ ଦୃଷ୍ଟି ଦେଇ ନାହିଁ । ମୁଖ୍ୟମନ୍ତ୍ରୀ କହିଲେ, ଚଳିତବର୍ଷ ଜାନୁଆରୀ ୧୦ ତାରିଖରେ ସେ ନିଜେ ରେଳମନ୍ତ୍ରୀଙ୍କୁ ଭେଟି ଓଡ଼ିଶା ପାଇଁ ୧୩୩୦ କୋଟି ଟଙ୍କାର ବ୍ୟୟବରାଦ କରିବାକୁ ଅନୁରୋଧ କରିଥିଲେ । ମାତ୍ର ଏଥର ୯୭୨ କୋଟି ଟଙ୍କାର ରେଳ ବଜେଟ ବ୍ୟବସ୍ଥା ହୋଇଛି । ଏହାଦ୍ୱାରା କୌଣସି ଗୋଟିଏ ହେଲେ ପ୍ରକଳ୍ପ ସଂପୂର୍ଣ୍ଣ ହେବ ନାହିଁ ବୋଲି ମୁଖ୍ୟମନ୍ତ୍ରୀ ଶ୍ରୀ ପଟ୍ଟନାୟକ କହିଛନ୍ତି ।

ଅବଶ୍ୟ ମୁଖ୍ୟମନ୍ତ୍ରୀଙ୍କ ପ୍ରତିକ୍ରିୟାକୁ ଗୁରୁତ୍ୱ ଦେଇ କେନ୍ଦ୍ର ସରକାର ତା.୦୭.୦୩.୦୮ରିଖରୁ ଭୁବନେଶ୍ୱରରୁ ରାଞ୍ଚି ପର୍ଯ୍ୟନ୍ତ ଓ ରାଞ୍ଚିରୁ ଭୁବନେଶ୍ୱର ପର୍ଯ୍ୟନ୍ତ ସପ୍ତାହରେ ତିନି ଦିନ 'ଗରିବ ରଥ'ର ପ୍ରଚଳନ କରିଛନ୍ତି ।



## ସମ୍ବାଦ ପରିକ୍ରମା

# ଓଡ଼ିଶାର ବାର୍ଷିକ ଯୋଜନା ଅଟକଳ ୭୫୦୦ କୋଟି ଟଙ୍କା

ଓଡ଼ିଶାର ଯୋଜନା ଅଟକଳ ୨୦୦୮-୦୯ ବର୍ଷ ପାଇଁ ୭୫୦୦ କୋଟି ଟଙ୍କା ସ୍ଥିର କରାଯାଇଛି । ପୁନର୍ବାର ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ଓଡ଼ିଶା ପାଇଁ ସ୍ୱତନ୍ତ୍ର ରାଜ୍ୟ ପାହ୍ୟାର ମାନ୍ୟତା ଦାବି କରିଛନ୍ତି । ଓଡ଼ିଶା ଯୋଜନା ଅଟକଳ ୭୧୦୦ କୋଟି ଟଙ୍କାର ଅଟକଳ କରିଥିବାବେଳେ ଯୋଜନା କମିଶନ ୭୫୦୦ କୋଟି ଟଙ୍କା ମଞ୍ଜୁର କରିଛନ୍ତି । ଦଶମ ପଞ୍ଚବାର୍ଷିକ ଯୋଜନା କାଳରେ ରାଜ୍ୟର ଅଭିବୃଦ୍ଧି ହାର ୬.୨% ଥିବାବେଳେ ରାଜ୍ୟ ୮.୫୯% ହାସଲ କରିବା ପରେ ଯୋଜନା କମିଶନ ଏତେ ଅଧିକ ଅର୍ଥ ମଞ୍ଜୁର କରିଥିବା ଜଣାପଡ଼ିଛି । ଏଥିରେ ବିଜୟୱାଡ଼ା-ରାଞ୍ଚି ଜାତୀୟ ରାଜପଥ ପ୍ରତିଷ୍ଠା ପାଇଁ ୩୦୦ କୋଟି ଟଙ୍କା ରହିଛି ।

ଗତ ତା.୩.୦୩.୦୮ରିଖ ଦିନ ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ଓ ଅର୍ଥମନ୍ତ୍ରୀ ଶ୍ରୀ ପ୍ରଫୁଲ୍ଲ ଚନ୍ଦ୍ର ଘଡାଇ ଯୋଜନା କମିଶନ ଉପାଧକ୍ଷ ମଣ୍ଟେକ ସିଂହ ଆଲୁୱାଲିଆଙ୍କୁ ନୂଆଦିଲ୍ଲୀରେ ଭେଟି ଯୋଜନା ଅଟକଳ ଉପରେ ଆଲୋଚନା କରିଥିଲେ । ଗତ ତିନି ବର୍ଷ ମଧରେ ରାଜ୍ୟ ସରକାର ଯୋଜନା ଅଟକଳ ଦ୍ୱିଗୁଣିତ କରିଥିବା ଦୃଷ୍ଟିରୁ ଏକାଦଶ ପଞ୍ଚବାର୍ଷିକ ଯୋଜନା କାଳରେ ଅଭିବୃଦ୍ଧି ହାର ୯% କରିବାକୁ ଲକ୍ଷ୍ୟ ରଖିଛନ୍ତି । ଏହାକୁ ଯୋଜନା କମିଶନ ସମର୍ଥନ କରିଛନ୍ତି । ୨୦୦୮ ବର୍ଷକୁ ରାଜ୍ୟ ସରକାର ଜଳସେଚନର ବର୍ଷ ଭାବେ ଘୋଷଣା କରିଥିବାରୁ ଯୋଜନା ଅଟକଳର ୨୦% ଅର୍ଥ ଜଳସେଚନ ପାଇଁ ଉଦ୍ଦିଷ୍ଟ ବୋଲି କହିଛନ୍ତି । ସେହିପରି ଯୋଜନା ଅଟକଳରେ ଭିତ୍ତିଭୂମି ବିକାଶ, ଆଦିବାସୀ ବାଳିକାଙ୍କ ଶିକ୍ଷା, ସ୍ୱାସ୍ଥ୍ୟ ଉପରେ ମଧ ଗୁରୁତ୍ୱ ଦିଆଯାଇଛି । ମହିଳାଙ୍କୁ ସଶକ୍ତିକରଣ କରିବା ଦିଗରେ ମିଶନ ଶକ୍ତି ଜରିଆରେ ୯୦୦ କୋଟି ଟଙ୍କା ଋଣ ପ୍ରଦାନ କରାଯାଇଛି ବୋଲି ପ୍ରକାଶିତ ବିଜ୍ଞପ୍ତିରେ କୁହାଯାଇଛି । ୨୦୦୮-୦୯ ଆର୍ଥିକ ବର୍ଷରେ ବିଜୟୱାଡ଼ା-ରାଞ୍ଚି ଜାତୀୟ ରାଜପଥ ପ୍ରତିଷ୍ଠା ପାଇଁ ୩୦୦ କୋଟି ଟଙ୍କା ବ୍ୟବସ୍ଥା କରାଯାଇଛି । ରାଜ୍ୟ ସଡ଼କ ପରିବହନ ମନ୍ତ୍ରଣାଳୟକୁ ଏହି ଅର୍ଥ ପ୍ରଦାନ କରାଯିବ । ଆସନ୍ତା ତିନି ବର୍ଷ ମଧରେ ଏହି ରାସ୍ତା ସମ୍ପୂର୍ଣ୍ଣ କରାଯିବାକୁ ଲକ୍ଷ୍ୟ ରହିଥିବା ଜଣାପଡ଼ିଛି ।

ଯୋଜନା କମିଶନ ଉପାଧକ୍ଷଙ୍କ ସହ ଆଲୋଚନାବେଳେ ମୁଖ୍ୟମନ୍ତ୍ରୀ ଶ୍ରୀ ପଟ୍ଟନାୟକ ରାଜ୍ୟ ପାଇଁ ବିଭିନ୍ନ ଯୋଜନାରେ ଅଧିକ ଟଙ୍କା ପ୍ରଦାନ କରିବାକୁ ଦାବି କରିଥିଲେ । ରାଜୀବ ଗାନ୍ଧୀ ଗ୍ରାମୀଣ ବିଦ୍ୟୁତକରଣ ଯୋଜନା, ଜାତୀୟ ଗ୍ରାମୀଣ ନିଶ୍ଚିତ କର୍ମନିଯୁକ୍ତି ଯୋଜନା, ଜବାହରଲାଲ ନେହେରୁ ସହର ନବୀକରଣ ମିଶନ ଆଦି ଯୋଜନାରେ ଅଧିକ ଅର୍ଥ ପ୍ରଦାନ ପାଇଁ ମୁଖ୍ୟମନ୍ତ୍ରୀ ଦାବି କରିଛନ୍ତି । ସେହିପରି ରାଜ୍ୟରେ କେନ୍ଦ୍ରୀୟ ବିଶ୍ୱବିଦ୍ୟାଳୟ, ଆଇ.ଆଇ.ଟି. ଆଇ.ଆଇ.ଆଇ.ଟି. ଓ ଆଇ.ଆଇ.ଏମ୍. ପରି ଶିକ୍ଷାନୁଷ୍ଠାନ ପ୍ରତିଷ୍ଠା ଦାବିକୁ ମୁଖ୍ୟମନ୍ତ୍ରୀ ଦୋହରାଇ ଥିଲେ । ରାଜ୍ୟରେ ଦ୍ରୁତ ଶିଳ୍ପାୟନ ହେଉଥିବାବେଳେ ସେଥିପାଇଁ ଆବଶ୍ୟକ କୁଶଳୀ ମାନବସମ୍ବଳର ଆବଶ୍ୟକତା ପୂର୍ଣ୍ଣ କରିବାକୁ ଏପରି ଶିକ୍ଷାନୁଷ୍ଠାନର ଆବଶ୍ୟକ ବୋଲି ମୁଖ୍ୟମନ୍ତ୍ରୀ ଯୁକ୍ତି ଦର୍ଶାଇଛନ୍ତି । ରାଜ୍ୟର ପଛୁଆ ଅଞ୍ଚଳ କେବିକେରେ ପୁଞ୍ଜିନିବେଶକୁ ଆକର୍ଷିତ କରିବା ପାଇଁ ସେଠାରୁ ୧୦ ବର୍ଷ ପାଇଁ ଆୟକର ଓ କେନ୍ଦ୍ରୀୟ ଏକ୍ସାଇଜ୍ ଟେକ୍ସ ଛାଡ଼ କରିବାକୁ ସେ ପ୍ରସ୍ତାବ ଦେଇଛନ୍ତି । କୋଇଲା ଓ ଅନ୍ୟ ଖଣିଜ ଦ୍ରବ୍ୟର ରୟାଲଟି ଆଡ଼ଭେଲୋରମ୍ ପଦ୍ଧତିରେ ନିର୍ଣ୍ଣୟ କରିବାରେ ଆଉ ବିଳମ୍ବ କରାନଯିବା ଉଚିତ ବୋଲି ସେ ଉପାଧକ୍ଷଙ୍କୁ ପ୍ରସ୍ତାବ ଦେଇଥିଲେ । ସେହିପରି ଲୁହାପଥର ରପ୍ତାନିରୁ କେନ୍ଦ୍ର ସରକାର ପାଉଥିବା ଟିକସ ରାଜ୍ୟକୁ ପ୍ରଦାନ କରିବା ନିମନ୍ତେ ଓଡ଼ିଶା ସମେତ ଅନ୍ୟ ଖଣିଜଦ୍ରବ୍ୟ ଉତ୍ତୋଳନକାରୀ ରାଜ୍ୟଗୁଡ଼ିକ ଦେଇଥିବା ପ୍ରସ୍ତାବ ଉପରେ ମଧ ତୁରନ୍ତ କାର୍ଯ୍ୟାନୁଷ୍ଠାନ ପାଇଁ ମୁଖ୍ୟମନ୍ତ୍ରୀ ଦାବି କରିଥିଲେ । ଓଡ଼ିଶା ମୁଖ୍ୟମନ୍ତ୍ରୀଙ୍କ ନେତୃତ୍ୱରେ ରାଜସ୍ଥାନ, ମଧ୍ୟପ୍ରଦେଶ, ଛତିଶଗଡ଼ ଓ ଝାଡ଼ଖଣ୍ଡର ମୁଖ୍ୟମନ୍ତ୍ରୀମାନେ ପ୍ରଧାନମନ୍ତ୍ରୀଙ୍କୁ ଏହି ପ୍ରସ୍ତାବ ଦେଇଥିଲେ । ସେହି ପ୍ରସ୍ତାବ ଏବେ କେନ୍ଦ୍ର ସରକାରଙ୍କ ବିଚାରାଧୀନ ରହିଛି ବୋଲି ଯୋଜନା କମିଶନ ସଦସ୍ୟ ଅନୱରୁଲ ହୋଦା ମୁଖ୍ୟମନ୍ତ୍ରୀଙ୍କୁ ଜଣାଇଥିଲେ । ରାଜ୍ୟରେ ବିପୁଳ ପରିମାଣର କୋଇଲା ମହଜୁଦ ଥିବାରୁ ଶକ୍ତି ପ୍ରକଳ୍ପ ପ୍ରତିଷ୍ଠାର ବ୍ୟାପକ ସୁଯୋଗ ରହିଛି । ଶକ୍ତି ପ୍ରକଳ୍ପ ପ୍ରତିଷ୍ଠା ହେବା ପରେ ଓଡ଼ିଶା ଦେଶର ଶକ୍ତି କେନ୍ଦ୍ର ହୋଇପାରିବ । କିନ୍ତୁ ସେଥିପାଇଁ ରାଜ୍ୟକୁ ଆବଶ୍ୟକ କ୍ଷତିପୂରଣ ଦିଆଯିବା ଉଚିତ ବୋଲି ମୁଖ୍ୟମନ୍ତ୍ରୀ ଦାବି କରିଥିଲେ । ଫଳରେ ପ୍ରକଳ୍ପ ପାଇଁ ପରିବେଶ ପ୍ରଦୂଷଣ ଓ ବାସଚ୍ୟୁତ ସମସ୍ୟାର କ୍ଷତିଭରଣା କରାଯାଇପାରିବ ବୋଲି ଆମ ମୁଖ୍ୟମନ୍ତ୍ରୀ ଶ୍ରୀ ପଟ୍ଟନାୟକ ପ୍ରସ୍ତାବ ଦେଇଥିଲେ ।




# ଆମ ସମ୍ବିଧାନ ଓ ସାଧାରଣତନ୍ତ୍ର

**ଦୀ**ର୍ଘ ଅର୍ଦ୍ଧଶତାବ୍ଦୀରୁ ଊର୍ଦ୍ଧ୍ୱକାଳ ଅତିବାହିତ ହେବାପରେ ଆମ ସାଧାରଣତନ୍ତ୍ରର ସଫଳତା ଓ ବିଫଳତା ବିଷୟରେ ନିଜେ ନିଜେ ସମୀକ୍ଷା କରିବା ପାଇଁ ଏହା ହିଁ ଉପଯୁକ୍ତ ସମୟ । ଯେଉଁ ସମ୍ବିଧାନକୁ ଆଧାର କରି ଆମେ ଅଗ୍ରସର ହେବା ଲାଗି ପ୍ରୟାସ ଜାରି ରଖିଛୁଁ, ଅର୍ଦ୍ଧଶତାବ୍ଦୀ ବା ତଦୂର୍ଦ୍ଧ୍ୱ ସମୟ ମଧ୍ୟରେ ତାହା ପ୍ରାୟ ଶତ ବାର ସଂଶୋଧିତ ହେଲାଣି । ଭାରତୀୟ ନାଗରିକଙ୍କ ଆଶା ଓ ଆକାଂକ୍ଷା ପୂରଣ କରିବା ସହିତ ଭାରତବର୍ଷକୁ ଏକ ସମୃଦ୍ଧ ରାଷ୍ଟ୍ରରେ ଏହି ସମ୍ବିଧାନ ପରିଣତ କରିପାରିବ ବୋଲି ସମ୍ବିଧାନ ପ୍ରଣେତାମାନେ ମନେ କରିଥିଲେ । ଭାରତକୁ ଦିଗଦର୍ଶନ ଦେବାବେଳେ ନାନାଦି ପ୍ରତିବନ୍ଧକର ସମ୍ମୁଖୀନ ହେଉଥିବାରୁ ଏହି ସମ୍ବିଧାନର ସଂଶୋଧନ ଓ ପରିବର୍ତ୍ତନ ଖୁବ୍ ଜରୁରୀ ବୋଲି କେହି କେହି ମଧ୍ୟ ଅନୁଭବ କରିଛନ୍ତି । ଏଥିପାଇଁ ଏଇ କେତେବର୍ଷ ତଳେ ସମ୍ବିଧାନର କାର୍ଯ୍ୟକାରିତାକୁ ନେଇ ଏକ ଉଚ୍ଚସ୍ତରୀୟ ସମୀକ୍ଷା କମିଟି ମଧ୍ୟ ଗଠିତ ହୋଇଥିଲା । ମାତ୍ର ସେ କମିଟି ଦେଇଥିବା ପରାମର୍ଶକୁ କେନ୍ଦ୍ର ସରକାର କେତେ ଦୂର ଗ୍ରହଣ କରିଛନ୍ତି ତାହା ଏ ପର୍ଯ୍ୟନ୍ତ ଜଣା ପଡ଼ିନାହିଁ ।

ଆମ ସମ୍ବିଧାନର ଦିଗଦର୍ଶନ ତାହାର ମୁଖବନ୍ଧରେ ପରିସ୍ଫୁଟ । ଆମ ସମ୍ବିଧାନ ପ୍ରସ୍ତୁତ କରିବାବେଳେ ଭାରତୀୟ ଜନସାଧାରଣଙ୍କ ଉପଯୁକ୍ତ ପ୍ରତିନିଧିତ୍ୱ ଅବଶ୍ୟ ରହିଥିଲା - ଯାହାକି ଅନ୍ୟାନ୍ୟ ଗଣତାନ୍ତ୍ରିକ ରାଷ୍ଟ୍ରରେ ସମ୍ଭବ ହୋଇନାହିଁ । ଏହା ସତ୍ତ୍ୱେ, ଅର୍ଦ୍ଧଶତାବ୍ଦୀ ଅତିବାହିତ ହୋଇଥିଲେ ମଧ୍ୟ ଭାରତର ଜନସାଧାରଣଙ୍କ ଅବସ୍ଥାର ପରିବର୍ତ୍ତନ ହୋଇପାରି ନଥିଲା । ସ୍ୱାଧୀନତା ପ୍ରାପ୍ତି ପରେ ଭାରତ ସାଧାରଣତନ୍ତ୍ର ନୀତିରେ ହୁଏତ ଆଗକୁ ଯାଇଛି, ପୁଣି ସେହି ନୀତିରେ ଅଗ୍ରସର ହେବା ଅତ୍ୟନ୍ତ କଷ୍ଟସାଧ୍ୟ ବୋଲି ମଧ୍ୟ ମନେ ହୋଇଛି । ପ୍ରାୟ ଏକ ସମୟରେ ସ୍ୱାଧୀନତା ଲାଭ କରିଥିଲେ ମଧ୍ୟ ଭାରତ ପରି ପାକିସ୍ତାନରେ ସାଧାରଣତନ୍ତ୍ର ଆଜି ଭୁଷୁଡ଼ି ପଡ଼ିଛି । ଅବଶ୍ୟ ଭାରତରେ ପାକିସ୍ତାନ ପରି ଅବସ୍ଥା ସୃଷ୍ଟି ହୋଇନାହିଁ । ମାତ୍ର ସ୍ୱାବଲମ୍ବନଶୀଳତା ବିନା ଭାରତରେ ଏହି ସ୍ୱାଧୀନତା ବା ସାଧାରଣତନ୍ତ୍ରର ଅର୍ଥ କ'ଣ ବୋଲି ମଧ୍ୟ ପ୍ରଶ୍ନ ହୋଇଛି ।

ସାବାଳକ ଭୋଟ ପ୍ରଥାଦ୍ୱାରା ଆମେ ନିଜକୁ ନିଜେ ଶାସନ କରିବାର ଅଧିକାର ଲାଭ କରିଛୁଁ । ଆମର ରାଷ୍ଟ୍ର ଧର୍ମନିରପେକ୍ଷ ରାଷ୍ଟ୍ର । ମାତ୍ର ଧର୍ମ ପାଇଁ ଆମ ନିଜ ନିଜ ମଧ୍ୟରେ ଯେପରି କନ୍ଦଳ ସୃଷ୍ଟି ହୋଇ ବେଳେବେଳେ ତାହା ଉଗ୍ର ହିଂସାକାଣ୍ଡରେ ପରିଣତ ହୋଇଛି, ତାହା ଭାବିଲେ ଅବାକ୍ ହେବାକୁ ପଡ଼େ । ସମସ୍ତ ନାଗରିକଙ୍କୁ ସମାନ ଅଧିକାର ଦେଇ ଏକ ଶୋଷଣମୁକ୍ତ ଓ ଶ୍ରେଣୀହୀନ ସମାଜ ଗଠନ କରିବା ହେଉଛି ଆମ ସମ୍ବିଧାନର ଲକ୍ଷ୍ୟ ।

ମାତ୍ର ବଢ଼ି ଚାଲିଛି ଆମ ଭିତରେ ଶ୍ରେଣୀ, ବଢ଼ି ଚାଲିଛି ବି ଶୋଷଣର ମନୋବୃତ୍ତି । ଧନୀ ଓ ଦରିଦ୍ରଙ୍କ ମଧ୍ୟରେ ଶ୍ରେଣୀ ସୃଷ୍ଟି ଯୋଗୁଁ ଅସନ୍ତୋଷ ସଦାସର୍ବଦା ଲାଗି ରହିଛି । ଆମେ ଆମର ମୌଳିକ ଅଧିକାର ପାଇଁ ବାରମ୍ବାର ଦାବି କରି ଆସୁଥିଲେ ମଧ୍ୟ ନିଜର ମୌଳିକ କର୍ତ୍ତବ୍ୟ ଓ ସାମାଜିକ ଦାୟିତ୍ୱବୋଧ ପାଇଁ ଆମେ ସତେ ଯେପରି ସଚେତନ ହୋଇ ପାରିନାହୁଁ ।

ଭାରତରେ ଗଣତାନ୍ତ୍ରିକ ଶାସନ ବ୍ୟବସ୍ଥା ପଡ଼ୋଶୀ ପାକିସ୍ତାନଠାରୁ ଉନ୍ନତ ବୋଲି କୁହାଯାଉଥିଲେ ମଧ୍ୟ ଏହା ଏକକୈନ୍ଦ୍ରିକ ବା କେନ୍ଦ୍ର ଶାସନକୁ ସୁହାଇଲା ପରି ହୋଇଥିବା ଅଭିଯୋଗ ହୋଇଛି । ଆଇନ ପ୍ରଣୟନ ବା ରାଜସ୍ୱ ଆଦାୟ କ୍ଷେତ୍ରରେ କେତେକ କ୍ଷମତା କେନ୍ଦ୍ର ସରକାର ରାଜ୍ୟ ସରକାରମାନଙ୍କୁ ଦେଇଥିଲେ ମଧ୍ୟ କେନ୍ଦ୍ର ସରକାରଙ୍କ ଉପରେ ଅର୍ଥ ପାଇଁ ନିର୍ଭର କରିବାକୁ ରାଜ୍ୟମାନେ ବାଧ୍ୟ ହୋଇଥାନ୍ତି । ଦ୍ୱିତୀୟ ଥର ମୁଖ୍ୟମନ୍ତ୍ରୀ ହେବାପରେ ବିଜୁବାବୁ ରାଜ୍ୟଗୁଡ଼ିକୁ ଆର୍ଥିକ ସ୍ୱାଧୀନତା ଦେବା ଲାଗି ପ୍ରଥମେ ସ୍ୱର ଉତ୍ତୋଳନ କରିଥିଲେ । ଆମର ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ମଧ୍ୟ ରାଜ୍ୟର ସ୍ୱାର୍ଥରକ୍ଷା ପାଇଁ କେନ୍ଦ୍ର ନିକଟରେ ବାରମ୍ବାର ନିବେଦନ କରିବା ସଂଗେସଂଗେ ଓଡ଼ିଶା ପରି ଏକ ଅନଗ୍ରସର ରାଜ୍ୟକୁ ସ୍ୱତନ୍ତ୍ର ରାଜ୍ୟପାହ୍ୟା ଦେବାକୁ ଦାବି କରି ଚାଲିଛନ୍ତି । କେନ୍ଦ୍ର ଓ ରାଜ୍ୟ ସରକାରଙ୍କ ମଧ୍ୟରେ କୌଣସି ବିବାଦ ଘଟିଲେ ସର୍ବୋଚ୍ଚ ଅଦାଲତ ବା ସୁପ୍ରିମ କୋର୍ଟ ସେ ବିଷୟରେ ନିଷ୍ପତ୍ତି ନେବେ ବୋଲି ସମ୍ବିଧାନରେ ନିର୍ଦ୍ଦେଶ ରହିଛି । ମାତ୍ର ସଂସଦ ଓ ନ୍ୟାୟପାଳିକା ମଧ୍ୟରେ ଯେପରି ସୁସଂପର୍କ ରହିବା କଥା ଅର୍ଦ୍ଧଶତାବ୍ଦୀ ଅତିକ୍ରାନ୍ତ ହୋଇଥିଲେ ହେଁ ତାହା ଆଉ ରହୁ ନଥିବା ପରିଲକ୍ଷିତ ହୋଇଛି । ସାଧାରଣତନ୍ତ୍ର ଦିବସରେ ଆମେ ସମସ୍ତେ ଏ ବିଷୟରେ ଚିନ୍ତା କରିବା ଆବଶ୍ୟକ ।

ଶ୍ରୀକୃଷ୍ଣଚନ୍ଦ୍ର ମହାପାତ୍ର

᪀ଉତ୍କଳ ପ୍ରସଙ୍ଗ

The Utkal Prasanga

୬୪ ଭାଗ ୭ମ-୮ମ ସଂଖ୍ୟା ମାଘ-ଚୈତ୍ର ଫେବୃଆରୀ-ମାର୍ଚ୍ଚ - ୨୦୦୮

ସୁରେଶଚନ୍ଦ୍ର ପଟ୍ଟନାୟକ
କମିଶନର ତଥା ଶାସନ ସଚିବ

ବୈଷ୍ଣବ ପ୍ରସାଦ ମହାନ୍ତି
ନିର୍ଦ୍ଦେଶକ

ଗୁରୁକଲ୍ୟାଣ ମହାପାତ୍ର
ମୁଖ୍ୟ ସମ୍ପାଦକ

ସମ୍ପାଦନା ସହଯୋଗୀ
ଗୋବିନ୍ଦଚନ୍ଦ୍ର ମଲ୍ଲିକ
ସଚ୍ଚିଦାନନ୍ଦ ବାରିକ

ପ୍ରଚ୍ଛଦପଟ ଓ ଲେ-ଆଉଟ ଡ଼ିଜାଇନିଂ
ମାନସ ନାୟକ
ଫଟୋ :
ରାଜୁ ସିଂ ଓ ମନୋରଂଜନ ମହାନ୍ତି

କମ୍ପ୍ୟୁଟର ସେଟିଂ ଓ
ଡ଼ିଜାଇନିଂ
ମନୋଜ କୁମାର ପାତ୍ର
ହେମନ୍ତ କୁମାର ସାହୁ

ପ୍ରତିଖଣ୍ଡ : ଟ.୫.୦୦

ପ୍ରଚ୍ଛଦପଟ

୧. ଭୁବନେଶ୍ୱରରେ ଓଡ଼ିଶାରେ ପାଇକ ବିଦ୍ରୋହର ୧୯୦ ବର୍ଷ ପୂର୍ତ୍ତି ତଥା ଭାରତ ପ୍ରଥମ ସ୍ୱାଧୀନତା ସଂଗ୍ରାମର ୧୫୦ ବର୍ଷ ପୂର୍ତ୍ତି ଉତ୍ସବରେ ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ସ୍ୱାଧୀନତା ସଂଗ୍ରାମୀଙ୍କୁ ସମ୍ବର୍ଦ୍ଧିତ କରୁଛନ୍ତି ।

୨. ସ୍କୁଲଛାତ୍ରୀମାନଙ୍କୁ ମୁଖ୍ୟମନ୍ତ୍ରୀ ପୋଷାକ ବଣ୍ଟନ କରୁଛନ୍ତି ।

୩. ମଧ୍ୟପ୍ରଦେଶରୁ ଆସିଥିବା ତୀର୍ଥଯାତ୍ରୀମାନଙ୍କର ବସ୍ ଦୁର୍ଘଟଣାଗ୍ରସ୍ତ ହେବା ପରେ ଚିକିତ୍ସାଧୀନ ଆହତ ଯାତ୍ରୀଙ୍କ ନିକଟରେ ମୁଖ୍ୟମନ୍ତ୍ରୀ ।

୪. କେବିକେ ଅଞ୍ଚଳରେ 'ଖାଦ୍ୟ ପାଇଁ କାମ' ପ୍ରକଳ୍ପରେ ଆମ ଲୋକେ ।

୫. କୋରାପୁଟରେ କୋବି ଚାଷର ଏକ ଦୃଶ୍ୟ ।



ଓଡ଼ିଶା ସରକାରଙ୍କର ସୂଚନା ଓ ଲୋକ ସମ୍ପର୍କ ବିଭାଗଦ୍ୱାରା ପ୍ରକାଶିତ ଏବଂ ଓଡ଼ିଶା ସରକାରୀ ମୁଦ୍ରଣାଳୟ, କଟକ - ୧୦ରେ ମୁଦ୍ରିତ ।

ଠିକଣା : 'ଉତ୍କଳ ପ୍ରସଙ୍ଗ', ରାଜ୍ୟ ସୂଚନା ଓ ଲୋକ ସଂପର୍କ ବିଭାଗ, ଲୋକ ସଂପର୍କ ଭବନ, ଭୁବନେଶ୍ୱର - ୭୫୧୦୦୧
ଇ-ମେଲ୍ : iprsec@rediffmail.com, ୱେବ୍‌ସାଇଟ୍ : www.orissagov.nic.in
ଫୋନ : ୨୫୩୦୨୧୧

# ସୂଚୀ



# ଓଡ଼ିଶା ବିଧାନସଭାରେ ରାଜ୍ୟପାଳ ଶ୍ରୀ ମୁରଲୀଧର ଚନ୍ଦ୍ରକାନ୍ତ ଭଣ୍ଡାରେଙ୍କ ଅଭିଭାଷଣ

ଓଡ଼ିଶା ବିଧାନସଭାରେ

ରାଜ୍ୟପାଳ

ଶ୍ରୀ ମୁରଲୀଧର ଚନ୍ଦ୍ରକାନ୍ତ ଭଣ୍ଡାରେଙ୍କ

ଅଭିଭାଷଣ

ଫେବୃଆରୀ ୧୩, ୨୦୦୮

ବାଚସ୍ପତି ମହୋଦୟ ଓ ମାନ୍ୟବର ସଦସ୍ୟବୃନ୍ଦ,

ତ୍ରୟୋଦଶ ବିଧାନସଭାର ତ୍ରୟୋଦଶ ଅଧିବେଶନ ଅବସରରେ ଆପଣମାନଙ୍କୁ ସ୍ୱାଗତ ଜଣାଇ ମୁଁ ବିଶେଷ ଆନନ୍ଦିତ । ଆପଣମାନଙ୍କ ଜରିଆରେ ମୁଁ ରାଜ୍ୟବାସୀଙ୍କୁ ନବବର୍ଷ-୨୦୦୮ର ହାର୍ଦ୍ଦିକ ଅଭିନନ୍ଦନ ଓ ଶୁଭେଚ୍ଛା ଜଣାଇବା ସଂଗେସଂଗେ ସେମାନଙ୍କର ସୁଖ ଓ ସମୃଦ୍ଧି କାମନା କରୁଛି ।

ଭାରତର ପୂର୍ବତନ ପ୍ରଧାନମନ୍ତ୍ରୀ ସ୍ୱର୍ଗତଃ ଚନ୍ଦ୍ରଶେଖର, ପୂର୍ବତନ ମନ୍ତ୍ରୀ ପ୍ରଦୀପ୍ତ କିଶୋର ଦାସ, ମୁରାରୀ ପ୍ରସାଦ ମିଶ୍ର, ବିଧାନସଭା ସଦସ୍ୟ ଅନନ୍ତରାମ ମାଝୀ, ପୂର୍ବତନ ବିଧାୟକ ରାମଚନ୍ଦ୍ର ସେଠୀ, ବିଦ୍ୟାଧର ନାୟକ, କିଶୋରୀମଣି ସିଂହ, ବରଦା ପ୍ରସନ୍ନ କଅଁର, ରାଜାସାହେବ ତ୍ରିଲୋଚନ ସିଂହଦେଓ, ଭୀମସେନ ମଣ୍ଡଳ, ରାମେଶ୍ୱର ସିଂହ ନାଏକ, ଜଗନ୍ନାଥ ତ୍ରିପାଠୀ, ଭଗବାନ ଭୋଇ, ଶଶିଭୂଷଣ ପ୍ରଧାନ, ସୀମା ସୁରକ୍ଷା ବାହିନୀର ପୂର୍ବତନ କନେଷ୍ଟବଳ ଦୀନବନ୍ଧୁ ପାଳ ଓ ଭାରତୀୟ ସେନାବାହିନୀର ଭୂତପୂର୍ବ ସିପାହୀ କୁନାଲ ପ୍ରଧାନଙ୍କ ବିୟୋଗରେ ଗୃହ ଗଭୀର ଶୋକ ପ୍ରକାଶ କରିସାରିଛି । ଗୃହର ପୂର୍ବତନ ସଦସ୍ୟ ଉଚ୍ଛବ ଚରଣ ଜେନା, ଗୌରୀଶ୍ୟାମ ନାୟକ ଓ ତ୍ରିବିକ୍ରମ ମଲ୍ଲିକ ଯେଉଁମାନେକି ଆଜି ଆମ ଗହଣରେ ନାହାନ୍ତି, ସେମାନଙ୍କ ପ୍ରତି ମୋ' ସହିତ ଗଭୀର ଶ୍ରଦ୍ଧାଞ୍ଜଳି ଜ୍ଞାପନ କରିବାକୁ ମୁଁ ଆପଣମାନଙ୍କୁ ନିବେଦନ କରୁଛି । ସେମାନଙ୍କ ଶୋକାକୁଳ ପରିବାରବର୍ଗଙ୍କୁ ଗୃହ ଗଭୀର ସମବେଦନା ଜଣାଉଛି । ରାଜ୍ୟ ତଥା ଦେଶ ପାଇଁ ସେମାନଙ୍କର ନିଃସ୍ୱାର୍ଥପର ସେବା ଓ ତ୍ୟାଗ ନିମନ୍ତେ ଆମ୍ଭେମାନେ ସର୍ବଦା ସେମାନଙ୍କୁ ମନେ ରଖିବୁ ।

ଦଶମ ପଞ୍ଚବାର୍ଷିକ ଯୋଜନା କାଳରେ ଓଡ଼ିଶାର ହାରାହାରି ବାର୍ଷିକ ଅର୍ଥନୈତିକ ଅଭିବୃଦ୍ଧିର ଧାର୍ଯ୍ୟଲକ୍ଷ୍ୟ ୬.୨ ଶତାଂଶ ଥିଲାବେଳେ ଏହି ହାର ୭.୨ ଶତାଂଶକୁ ବୃଦ୍ଧି ଘଟିଛି । ଅଷ୍ଟମ ପଞ୍ଚବାର୍ଷିକ ଯୋଜନା କାଳର ବାର୍ଷିକ ହାରାହାରି ଅଭିବୃଦ୍ଧି ହାର ୨.୩୦ ଶତାଂଶ ଓ ନବମ ପଞ୍ଚବାର୍ଷିକ ଯୋଜନା କାଳର ହାରାହାରି ଅଭିବୃଦ୍ଧି ହାର ୫.୨ ଶତାଂଶଠାରୁ ଏହା ଅନେକ ପରିମାଣରେ ଅଧିକ ।

ଏକାଦଶ ଯୋଜନା ପ୍ରସ୍ତୁତି ଚିଠା ଅନୁଯାୟୀ ଓଡ଼ିଶାର ଉନ୍ନୟନ ଆବଶ୍ୟକତାକୁ ଦୃଷ୍ଟିରେ ରଖି ମୋ' ସରକାର (୧) କୃଷି ଓ ଆନୁଷଙ୍ଗିକ କ୍ଷେତ୍ରରେ ବାର୍ଷିକ ୪ ଶତାଂଶରୁ ଊର୍ଦ୍ଧ୍ୱ ବାର୍ଷିକ ଅଭିବୃଦ୍ଧି ସହିତ ଦ୍ରୁତ ଓ ସାର୍ବଜନୀନ ବାର୍ଷିକ ହାରାହାରି ଅଭିବୃଦ୍ଧି ହାର ୯ ଶତାଂଶ ଏବଂ (୨) ଏକାଦଶ ପଞ୍ଚବାର୍ଷିକ ଯୋଜନା କାଳରେ ଅଧିକ ମାତ୍ରାରେ ଦାରିଦ୍ର୍ୟ ଦୂରୀକରଣର ଲକ୍ଷ୍ୟ ରଖିଛି । ଏହାକୁ ଦୃଷ୍ଟିରେ ରଖି ଦଶମ ଯୋଜନାକାଳ ମଧ୍ୟରେ ଥିବା ବ୍ୟୟଅଟକଳ ୧୯,୦୦୦ କୋଟି ଟଙ୍କାରୁ ଏକାଦଶ ଯୋଜନା ଅବଧି ପାଇଁ ୩୨,୨୨୫ କୋଟି ଟଙ୍କାକୁ ବୃଦ୍ଧି କରାଯାଇଛି ।

ଉନ୍ନତ କୃଷି ଉତ୍ପାଦନ ନିମନ୍ତେ ଜଳସେଚନ ଅତ୍ୟନ୍ତ ଅପରିହାର୍ଯ୍ୟ । ୨୦୦୮ ବର୍ଷକୁ 'ଜଳସେଚନର ବର୍ଷ' ରୂପେ ଘୋଷଣା କରାଯାଇଛି । ଚାଲୁ ରହିଥିବା ଜଳସେଚନ ପ୍ରକଳ୍ପଗୁଡ଼ିକର କାର୍ଯ୍ୟ ସଂପୂର୍ଣ୍ଣ କରିବା ସହିତ ନୂତନ ଜଳସେଚନ ପ୍ରକଳ୍ପଗୁଡ଼ିକ ହାତକୁ ନେଇ ଜଳସେଚନର ସାମର୍ଥ୍ୟ ବୃଦ୍ଧି କରିବା ପାଇଁ ମୋ' ସରକାର ପ୍ରୟାସ କରୁଛନ୍ତି । ୨୦୦୭-୦୮ ବର୍ଷର ଡିସେମ୍ବର ମାସ ସୁଦ୍ଧା ୨୩,୨୧୪ ହେକ୍ଟର ପାଇଁ ଅତିରିକ୍ତ

ଜଳସେଚନର ସାମର୍ଥ୍ୟ ସୃଷ୍ଟି କରାଯାଇଛି । କାର୍ଯ୍ୟକ୍ରମ ଆରମ୍ଭରୁ ୨୦୦୭ ମସିହାର ଡିସେମ୍ବର ମାସ ସୁଦ୍ଧା ବୃହତ୍, ମଧ୍ୟମ ଓ କ୍ଷୁଦ୍ର ଜଳସେଚନ ପ୍ରକଳ୍ପଗୁଡ଼ିକ ଜରିଆରେ ୨୧.୯୮ ଲକ୍ଷ ହେକ୍ଟର ଅଧିକ ଜଳସେଚନ ସାମର୍ଥ୍ୟ ସୃଷ୍ଟି ହୋଇପାରିଛି । ସମସ୍ତ ଅଞ୍ଚଳକୁ ଦ୍ରୁତ ଗତିରେ ଜଳସେଚନର ସୁବିଧା ଯୋଗାଇ ଦେବାପାଇଁ କ୍ଷୁଦ୍ର ଜଳସେଚନ ପ୍ରକଳ୍ପଗୁଡ଼ିକ ଉପରେ ଗୁରୁତ୍ୱ ଦିଆଯାଉଛି । ଶତକଡ଼ା ୩୫ ପ୍ରତିଶତରୁ କମ୍ ଜଳସେଚନ ସୁବିଧା ଥିବା ପ୍ରତ୍ୟେକ ଗ୍ରାମରେ ୫ ଲକ୍ଷ ଟଙ୍କା ବ୍ୟୟରେ ଜଳସେଚନ ପ୍ରକଳ୍ପ ନିର୍ମାଣ କରିବା ପାଇଁ ମୋ' ସରକାର ଏକ ସାହସିକ ପଦକ୍ଷେପ ଗ୍ରହଣ କରିଛନ୍ତି ।

ବୃହତ୍ ଓ ମଧ୍ୟମ ଜଳସେଚନ ପ୍ରକଳ୍ପଗୁଡ଼ିକରେ ଉପଯୁକ୍ତ ଜଳସେଚନ ଲକ୍ଷ୍ୟରେ କମାଣ୍ଡ ଏରିଆର ଉନ୍ନୟନ କାର୍ଯ୍ୟ ହାତକୁ ନିଆଯାଇଛି । ହୀରାକୁଦ କମାଣ୍ଡ ଏରିଆର ଶେଷ ଭାଗରେ ଜଳସେଚନ ସୁବିଧା ନିଶ୍ଚିତ କରିବା ଉଦ୍ଦେଶ୍ୟରେ ପଦକ୍ଷେପ ଗ୍ରହଣ କରାଯାଇଛି । କମାଣ୍ଡ ଏରିଆର ଉନ୍ନୟନ ଓ ଅଂଶିଦାରୀ ଜଳସେଚନ ବ୍ୟବସ୍ଥା ମଧ୍ୟରେ ସମନ୍ୱୟ ରକ୍ଷା କରିବା ନିମନ୍ତେ ସି.ଏ.ଡି. ଓ ପି.ଆଇ.ଏମ୍. ନାମକ ଏକ ନିର୍ଦ୍ଦେଶାଳୟ ଜଳ ସମ୍ପଦ ବିଭାଗରେ ଖୋଲାଯାଇଛି । ୨୦୦୭ ମସିହା ଡିସେମ୍ବର ସୁଦ୍ଧା କ୍ଷୁଦ୍ର କେନାଲଗୁଡ଼ିକର ତଳଭାଗରେ ଜଳସେଚନ ବ୍ୟବସ୍ଥାର କାର୍ଯ୍ୟକାରିତା ଓ ପରିଚାଳନା ନିମନ୍ତେ ୧୪,୫୫୪ଟି ପାଣିପଞ୍ଚାୟତକୁ ୯.୮୩ ଲକ୍ଷ ହେକ୍ଟର ଜଳସେଚିତ କମାଣ୍ଡ ଏରିଆ ହସ୍ତାନ୍ତର କରାଯାଇଛି । ୨୦୦୦ ମସିହାରେ ଅଂଶିଦାରୀ ଜଳସେଚନ ବ୍ୟବସ୍ଥା ନିମନ୍ତେ ଓଡ଼ିଶା ସରକାର ପାଣିପଞ୍ଚାୟତ ଆନ୍ଦୋଳନ ସୃଷ୍ଟି କରିଥିଲେ । ଏହାଫଳରେ ଆମର ସମସ୍ତ ଜଳସେଚନ ପ୍ରକଳ୍ପଗୁଡ଼ିକର ଜଳକୁ ସଠିକ୍ ବ୍ୟବହାର ସମ୍ଭବ ହୋଇପାରିଛି । ଏହି ସମୟ ମଧ୍ୟରେ ୪.୩୦ ଲକ୍ଷ ହେକ୍ଟର ଜମିରେ ଚ୍ୟାନେଲ ଓ ୧.୨୩ ଲକ୍ଷ ହେକ୍ଟର ଜମିରେ ନାଳ ନିର୍ମାଣ କାର୍ଯ୍ୟ ଶେଷ ହୋଇଛି ।

ବିଶ୍ୱବ୍ୟାଙ୍କ ସାହାଯ୍ୟପ୍ରାପ୍ତ ଓଡ଼ିଶା ଗୋଷ୍ଠୀ ପୁଷ୍କରିଣୀ ପରିଚାଳନା ପ୍ରକଳ୍ପ ମାଧ୍ୟମରେ ୯୦୦ ଗୋଟି କ୍ଷୁଦ୍ର ଜଳସେଚନ ପ୍ରକଳ୍ପର ଉଦ୍ଧାର କାର୍ଯ୍ୟର ପ୍ରସ୍ତାବ ରହିଛି । ଏହାଫଳରେ ୧.୨୦ ଲକ୍ଷ ହେକ୍ଟର ଜମିରେ ଜଳସେଚନ ବ୍ୟବସ୍ଥାକୁ ସୁଦୃଢ଼ କରାଯାଇପାରିବ ।

ଏସିଆନ ଡେଭେଲପ୍‌ମେଣ୍ଟ ବ୍ୟାଙ୍କ ସାହାଯ୍ୟପ୍ରାପ୍ତ ଓଡ଼ିଶା ସମନ୍ୱିତ ଜଳସେଚିତ କୃଷି ଓ ଜଳ ସୁପରିଚାଳନା ପ୍ରକଳ୍ପ ଶୀଘ୍ର ଆରମ୍ଭ ହେବାକୁ ଯାଉଛି । ଏହି କାର୍ଯ୍ୟକ୍ରମ ଅନୁଯାୟୀ ବ୍ରାହ୍ମଣୀ-ବୈତରଣୀ-ବୁଢ଼ାବଳଙ୍ଗ-ସୁବର୍ଣ୍ଣରେଖା ନଦୀ ଉପତ୍ୟକା ଓ ମହାନଦୀ ତ୍ରିକୋଣଭୂମି ପ୍ରଥମ ଭାଗର ଅଞ୍ଚଳଗୁଡ଼ିକରେ ୬ ଗୋଟି ବୃହତ୍ ଜଳସେଚନ ପ୍ରକଳ୍ପ, ୯ ଗୋଟି ମଧ୍ୟମ ଜଳସେଚନ ପ୍ରକଳ୍ପ ଓ ୧୪୦୦ଟି କ୍ଷୁଦ୍ର ଉଠାଜଳସେଚନ ଯୋଜନାଗୁଡ଼ିକର ଆଧୁନିକୀକରଣ କାର୍ଯ୍ୟ ହାତକୁ ନିଆଯିବ ।

ବିଶ୍ୱବ୍ୟାଙ୍କ ସାହାଯ୍ୟପ୍ରାପ୍ତ ପ୍ରସ୍ତାବିତ ଓଡ଼ିଶା ଜଳସେଚିତ ଅଞ୍ଚଳ ଉନ୍ନୟନ ପ୍ରକଳ୍ପ ଜରିଆରେ ୧.୫୨ ଲକ୍ଷ ହେକ୍ଟର ଜମିର ଜଳସେଚନ ବ୍ୟବସ୍ଥାକୁ ସୁଦୃଢ଼ କରାଯିବ ।

ଓଡ଼ିଶାରେ କୃଷି ହେଉଛି ଗ୍ରାମ୍ୟ ଅର୍ଥନୀତିର ମେରୁଦଣ୍ଡ । ଏହି କ୍ଷେତ୍ରର ଉନ୍ନତି ଉପରେ ମୋ' ସରକାର ଅଧିକ ଗୁରୁତ୍ୱ ଦେଉଛନ୍ତି ।

ରାଜ୍ୟରେ କୃଷକମାନଙ୍କ ସର୍ବାଙ୍ଗୀନ ଉନ୍ନତି ପାଇଁ ମୋ' ସରକାର ଏକ ଆକର୍ଷଣୀୟ ପ୍ୟାକେଜ୍ ଘୋଷଣା କରିଛନ୍ତି । ଏକାଦଶ ପଞ୍ଚବାର୍ଷିକ ଯୋଜନା ସୁଦ୍ଧା ଜାତୀୟ ଲକ୍ଷ୍ୟ ଅନୁଯାୟୀ ମୋ' ସରକାର କୃଷି କ୍ଷେତ୍ରରେ ୪ ପ୍ରତିଶତ ଅଭିବୃଦ୍ଧି ପାଇଁ ଆଶାପୋଷଣ କରିଛନ୍ତି ।

କୃଷି ଉତ୍ପାଦନ ଓ ଉତ୍ପାଦିକା ଶକ୍ତି ବୃଦ୍ଧି ପାଇଁ ବିହନ ହେଉଛି ମୌଳିକ ଆବଶ୍ୟକତା । ବିଭିନ୍ନ ଶସ୍ୟଗୁଡ଼ିକର ଉନ୍ନତମାନର ବିହନ ଯୋଗାଣ ଦ୍ୱାରା ବିହନ ପରିବର୍ତ୍ତନ ହାରକୁ ବୃଦ୍ଧି କରାଯାଉଛି । ଏହାଫଳରେ ଧାନ ଓ ଅଣଧାନ ଚାଷପାଇଁ ଉନ୍ନତମାନର ବିହନ ଯୋଗାଣ ଦ୍ୱାରା ବିହନ ପରିବର୍ତ୍ତନ ହାର ବୃଦ୍ଧି କରିବା କ୍ଷେତ୍ରରେ ସଫଳତା ହାସଲ କରାଯାଇପାରିଛି । ଏହାବ୍ୟତୀତ ଉନ୍ନତମାନର ବିହନ ଉତ୍ପାଦନ କ୍ଷେତ୍ରରେ ଆତ୍ମନିର୍ଭରଶୀଳତା ହାସଲ କରାଯିବା ପାଇଁ ପ୍ରୟାସ ଜାରି ରହିଛି । ବର୍ତ୍ତମାନ ୨୭ ଗୋଟି ଜିଲ୍ଲାରେ ବିହନ ପ୍ରକ୍ରିୟାକରଣ ପ୍ଲାଣ୍ଟ ରହିଛି । ଏହା ସହିତ ଆଉ ତିନିଗୋଟି ଜିଲ୍ଲାରେ ଏହି ପ୍ଲାଣ୍ଟ ପ୍ରତିଷ୍ଠା କରାଯିବାର କାର୍ଯ୍ୟକ୍ରମ ରହିଛି, ଯଦ୍ଦ୍ୱାରାକି ରାଜ୍ୟର ସମସ୍ତ ଜିଲ୍ଲାରେ ଏହି ସୁବିଧା ଉପଲବ୍ଧ ହେବ ।

ଜୈବିକ ଚାଷ ହେଉଛି ସାଂପ୍ରତିକ ସ୍ଲୋଗାନ । ବିଶ୍ୱ ବଜାରରେ ଜୈବିକ ଉତ୍ପାଦନର ଚାହିଦା ଥିବା ଦୃଷ୍ଟିରୁ ସରକାର ରାଜ୍ୟରେ ଜୈବିକ ଚାଷ ଉପରେ ଗୁରୁତ୍ୱ ଦେଉଛନ୍ତି । କନ୍ଧମାଳ ପରି କେତେକ ଜିଲ୍ଲାରେ ଜୈବିକ ଚାଷ ପାଇଁ ପ୍ରକୃଷ୍ଟ ସୁଯୋଗ ରହିଛି । ମୋ' ସରକାର କନ୍ଧମାଳରେ ଜୈବିକ ଚାଷ ପାଇଁ ସ୍ୱତନ୍ତ୍ର ପଦକ୍ଷେପ ନେଉଛନ୍ତି । ରାଜ୍ୟରେ ୫୭ ଗୋଟି ଜିଆଖତ ଉତ୍ପାଦନ କେନ୍ଦ୍ର ପ୍ରତିଷ୍ଠା କରାଯାଇଛି ଓ ୨୦୦୭-୦୮ ବର୍ଷ ମଧ୍ୟରେ ଆହୁରି ୧୦୦ ଗୋଟି ଜିଆଖତ ଉତ୍ପାଦନ କେନ୍ଦ୍ର ଖୋଲାଯିବା ନିମନ୍ତେ ଦ୍ରୁତ ପ୍ରସ୍ତୁତି ଚାଲିଛି । ଆସନ୍ତା ବର୍ଷ ସୁଦ୍ଧା ପ୍ରତ୍ୟେକ ୩୧୪ଟି ବ୍ଲକ୍‌ରେ ଗୋଟିଏ ଲେଖାଏଁ ଜିଆଖତ ଉତ୍ପାଦନ କେନ୍ଦ୍ର ହୋଇପାରିବ ।

ରାଜ୍ୟସାରା ସଘନ ଚାଷ କରାଯାଉଥିବା ହେତୁ ମୃତ୍ତିକାର ଅବସ୍ଥା ଏକ ଗୁରୁତ୍ୱପୂର୍ଣ୍ଣ ବିଷୟ । ମୃତ୍ତିକାର ଅବସ୍ଥାକୁ ସୁରକ୍ଷା କରିବା ଉଦ୍ଦେଶ୍ୟରେ ବହୁବିଧ କାର୍ଯ୍ୟକ୍ରମ ହାତକୁ ନିଆଯାଉଛି । ମୃତ୍ତିକାର ଅବସ୍ଥାକୁ ପରୀକ୍ଷାନିରୀକ୍ଷା କରିବା ଲକ୍ଷ୍ୟରେ ମୃତ୍ତିକା ପରୀକ୍ଷଣ ଓ ଉନ୍ନତିକରଣ କାର୍ଯ୍ୟ ବ୍ୟାପକ ଭାବେ ହାତକୁ ନିଆଯାଇଛି । ସମାନୁପାତିକ ସାର ବ୍ୟବହାରର ପ୍ରସ୍ତାବ ସହିତ କୃଷକମାନଙ୍କୁ ୭୭,୧୪୦ଟି ମୃତ୍ତିକା ଅବସ୍ଥା ସଂପର୍କରେ କାର୍ଡ଼ ଯୋଗାଇ ଦିଆଯାଇଛି । ଏହା ଏକ ଉଲ୍ଲେଖନୀୟ ବିଷୟ ଯେ ରାଜ୍ୟରେ ଗତ ଖରିଫ ଋତୁରେ ସାର ବ୍ୟବହାର ହେକ୍ଟର ପିଛା ୪୭ କେ.ଜି.ରୁ ୫୩ କେ.ଜି.କୁ ବୃଦ୍ଧିପାଇଛି ।

କୃଷି କ୍ଷେତ୍ରରେ ଅଧିକ ଉତ୍ପାଦନ ନିମନ୍ତେ ନୂତନ ଜ୍ଞାନକୌଶଳ ହାସଲ ପାଇଁ କୃଷକମାନଙ୍କ ପ୍ରଶିକ୍ଷଣ ହେଉଛି ଏକ ମାଧ୍ୟମ । କୃଷି ଜ୍ଞାନକୌଶଳର ବିକାଶ ସଂପର୍କରେ କୃଷକ ତଥା କ୍ଷେତ୍ର କର୍ମଚାରୀମାନଙ୍କ ଜ୍ଞାନ ବୃଦ୍ଧି ନିମନ୍ତେ ବିଭିନ୍ନ ଯୋଜନା ଅନ୍ତର୍ଗତ ଅନେକ ପ୍ରଶିକ୍ଷଣ କାର୍ଯ୍ୟକ୍ରମ ଆୟୋଜନ କରାଯାଉଛି । ଏହା ସହିତ ଧାନ ଉତ୍ପାଦନ ବୃଦ୍ଧି ନିମନ୍ତେ ସଘନ ଧାନ ଚାଷର ପ୍ରଣାଳୀ ଉପରେ ଚାଷୀମାନଙ୍କୁ ଶିକ୍ଷା ଦେବାପାଇଁ ରାଜ୍ୟରେ ୪୨୦୦ଟି କ୍ଷେତ୍ର ପ୍ରଦର୍ଶନୀ କାର୍ଯ୍ୟକ୍ରମ ଆୟୋଜନ କରାଯାଇଛି ।

ଭୂତଳ ଓ ଉପରିସ୍ଥ ଜଳର ସଦୁପଯୋଗ ଦ୍ୱାରା ଜଳସେଚନ ବ୍ୟବସ୍ଥା ବୃଦ୍ଧି କରିବା ସକାଶେ ୨୦୦୦-୨୦୦୧ ବର୍ଷଠାରୁ ୫୪,୪୭୮ଟି ଅଗଭୀର, ୬,୪୩୬ଟି ଗଭୀର କୂପ ଓ ୫୯୨ଟି ଉପରିସ୍ଥ ଜଳ ଉଠାଣ ବ୍ୟବସ୍ଥା ସଂପୂର୍ଣ୍ଣ କରାଯାଇଛି । ପ୍ରତ୍ୟେକ ବ୍ଲକର ଶତକଡ଼ା ୩୫ ଭାଗ ଜମିକୁ ଜଳସେଚନ ଲକ୍ଷ୍ୟରେ ଯୁଦ୍ଧକାଳୀନ ଭିତ୍ତିରେ କାର୍ଯ୍ୟକ୍ରମ ସବୁ ହାତକୁ ନିଆଯାଉଛି । 'ଜଳନିଧି' ନାମରେ ଏକ ନୂଆ କାର୍ଯ୍ୟକ୍ରମ ହାତକୁ ନିଆଯାଇଛି ଯଦ୍ୱାରାକି ରିହାତି ଦରରେ ଚାଷୀମାନଙ୍କ ଜମିଗୁଡ଼ିକରେ ଗଭୀର କୂପ ଓ ନଳକୂପ ଖୋଳାଯାଇପାରିବ ।

କୃଷି କ୍ଷେତ୍ରରେ ସର୍ବବିଧ ଉନ୍ନତି ଲକ୍ଷ୍ୟରେ ମୋ' ସରକାର ଯଥାଶୀଘ୍ର 'ନୂତନ କୃଷି ନୀତି' ଘୋଷଣା କରିବାକୁ ମନସ୍ଥ କରୁଛନ୍ତି ।

୨୦୦୭-୦୮ ବର୍ଷରେ ଜାତୀୟ ଉଦ୍ୟାନ କୃଷି ମିଶନରେ ଆଉ ପାଞ୍ଚଗୋଟି ଜିଲ୍ଲା ଯଥା- ଅନୁଗୋଳ, ବରଗଡ଼, ଦେବଗଡ଼, ସମ୍ବଲପୁର ଓ ସୁନ୍ଦରଗଡ଼କୁ ସାମିଲ କରାଯାଇଛି । ବର୍ତ୍ତମାନ ଏହି ମିଶନରେ ସମୁଦାୟ ୨୪ ଗୋଟି ଜିଲ୍ଲାକୁ ସାମିଲ କରାଯାଇଛି । ଏହା ଫଳରେ ୨୦୦୭-୦୮ ବର୍ଷରେ ୧୫,୨୦୦ ହେକ୍ଟର ଆମ୍ବ, ୬,୧୦୦ ହେକ୍ଟରରେ କାଜୁ, ୬୬୯ ହେକ୍ଟରରେ ଅଁଳା, ୪୮୩ ହେକ୍ଟରରେ ଲେମ୍ବୁ ଜାତୀୟ ଫଳ ଓ ୩୦୨ ହେକ୍ଟରରେ କଦଳୀଚାଷ କରାଯାଇଛି । ୨୦୦୮-୦୯ ବର୍ଷରେ ଅତିରିକ୍ତ ୨୫,୦୦୦ ହେକ୍ଟରରେ ବିଭିନ୍ନ ଫଳଚାଷ କରାଯିବ । ଏହି ସମୟ ମଧ୍ୟରେ ୯୪୬ ହେକ୍ଟରରେ ଫୁଲଚାଷ କରାଯାଇଛି । ୨୦୦୮-୦୯ ବର୍ଷରେ ୨,୨୦୦ ହେକ୍ଟରରେ ଫୁଲଚାଷ କରାଯିବାର ବ୍ୟବସ୍ଥା ରହିଛି ।

୨୦୦୭-୦୮ ବର୍ଷ ଶେଷସୁଦ୍ଧା ୩୦ ଲକ୍ଷ କିଷାନ କ୍ରେଡ଼ିଟ୍ କାର୍ଡ଼ ପ୍ରଦାନ ନିମନ୍ତେ ଲକ୍ଷ୍ୟଧାର୍ଯ୍ୟ ହୋଇଥିବା ସ୍ଥଳେ ୧୯୯୮-୯୯ରେ ଏହି ଯୋଜନା ଆରମ୍ଭ ହେବାଠାରୁ ସମବାୟ ବ୍ୟାଙ୍କ ଜରିଆରେ ୨୦୦୭ ମସିହା ନଭେମ୍ବର ୩୦ ତାରିଖ ସୁଦ୍ଧା ପ୍ରାଥମିକ କୃଷି ସମବାୟ ସମିତି କୃଷକମାନଙ୍କୁ ୨୮.୧୭ ଲକ୍ଷ  କିଷାନ କ୍ରେଡ଼ିଟ୍ କାର୍ଡ଼ ପ୍ରଦାନ କରାଯାଇଛି । ଏଥିମଧ୍ୟରୁ ୨୦୦୭-୦୮ ବର୍ଷରେ ତା.୩୦.୧୧.୦୭ରିଖ ସୁଦ୍ଧା ୧.୨୯ ଲକ୍ଷ କିଷାନ କ୍ରେଡ଼ିଟ କାର୍ଡ଼ ବିତରଣ କରାଯାଇଛି ।

ସମବାୟ ବ୍ୟାଙ୍କକୁ ବାର୍ଷିକ ଶତକଡ଼ା ୭ ଭାଗ ସୁଧରେ କୃଷିଋଣ ପ୍ରଦାନ କରିବାପାଇଁ ସମର୍ଥ କରିବା ନିମନ୍ତେ ମୋ' ସରକାର ୨୦୦୬-୦୭ ଏବଂ ୨୦୦୭-୦୮ ଆର୍ଥିକ ବର୍ଷରେ ଏସ୍.ଟି.ସି.ସି.ଏସ୍.କୁ ୩୩.୦୦ କୋଟି ଟଙ୍କା ସୁଧ ସବ୍‌ସିଡି ଭାବେ ପ୍ରଦାନ କରିଛନ୍ତି । ଆଉମଧ୍ୟ ୨୦୦୮-୦୯ ମସିହାରେ ସମବାୟ ବ୍ୟାଙ୍କକୁ ଶତକଡ଼ା ୭ ଭାଗ ସୁଧ ହିସାବରେ କୃଷିଋଣ ପ୍ରଦାନ ପାଇଁ ସମର୍ଥ କରିବା ଲକ୍ଷ୍ୟରେ ମୋ' ସରକାର ସୁଧ ବାବଦ ଅର୍ଥ ଭରଣା କରିବା ପ୍ରୟାସ ଜାରି ରଖିଛନ୍ତି ।

କୃଷିଋଣ ପ୍ରଦାନ ପ୍ରକ୍ରିୟାକୁ ଅବ୍ୟାହତ ରଖିବା ଲକ୍ଷ୍ୟରେ ରାଜ୍ୟରେ ଥିବା ସମବାୟ ଋଣ ପ୍ରଦାନ ସମିତିଗୁଡ଼ିକର କ୍ରମାଗତ କ୍ଷତିକୁ ଭରଣା କରାଯିବା ପାଇଁ ଆର୍ଥିକ ସହାୟତା ଯୋଗାଇ ଦିଆଯିବ । ବୈଦ୍ୟନାଥନ କମିଟିର ସୁପାରିଶ ଅନୁସାରେ ଚଳିତ ବର୍ଷ ସଂଶୋଧିତ ପ୍ୟାକେଜ୍ କାର୍ଯ୍ୟକାରୀ କରାଯିବ । ସମସ୍ତ ପ୍ରାଥମିକ ସମିତିଗୁଡ଼ିକର ସ୍ୱତନ୍ତ୍ର ପରୀକ୍ଷା କରାଯାଇ ମୋଟ ୭୭୨.୨୦ କୋଟି ଟଙ୍କା ଆର୍ଥିକ ସହାୟତା ଆକାରରେ ପି.ଏ.ସି.ଏସ୍. କାର୍ଯ୍ୟକୁ ପ୍ରଦାନ କରିବାକୁ ନିର୍ଦ୍ଧାରିତ କରାଯାଇଛି । ସେଥିମଧ୍ୟରୁ କେନ୍ଦ୍ର ସରକାର, ରାଜ୍ୟ ସରକାର ଏବଂ ସମବାୟ ସମିତିଗୁଡ଼ିକ ଯଥାକ୍ରମେ ୬୪୪.୭୯ କୋଟି, ୭୧.୫୬ କୋଟି ଏବଂ ୫୫.୮୫ କୋଟି ଟଙ୍କା ପ୍ରଦାନ କରିବେ ।

ରାଜ୍ୟର ଗ୍ରାମାଞ୍ଚଳର ଅଧିବାସୀ ବିଶେଷତଃ ଦାରିଦ୍ର୍ୟ ସୀମାରେଖା ତଳେ ଥିବା ଲୋକମାନଙ୍କ ନିଶ୍ଚିତ ଉପାର୍ଜନ ଏବଂ ନିଯୁକ୍ତି ନିମନ୍ତେ ଗ୍ରାମ୍ୟ ଅର୍ଥନୀତିରେ ପଶୁ ସଂପଦର ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଛି । ରାଜ୍ୟରେ ମାଛ ଚାଷର ଯଥେଷ୍ଟ ଚାହିଦା ଥିବାରୁ ଏହି କ୍ଷେତ୍ରରେ ନିଯୁକ୍ତି ଏବଂ

ଉପାର୍ଜନ ବୃଦ୍ଧି ପାଇଁ ମୋ' ସରକାର ବିଶେଷ ଗୁରୁତ୍ୱ ଦେଉଛନ୍ତି । ୨୦୦୩-୦୪ ମସିହାରେ ରାଜ୍ୟରେ ଜଳାଶୟ ମତ୍ସ୍ୟଚାଷ ନୀତି ପ୍ରଣୟନ ହୋଇଛି । ଗରିବ ମତ୍ସ୍ୟଜୀବୀମାନଙ୍କୁ ଜୀବିକା ଉପାର୍ଜନ ଯୋଗାଇ ଦେବା ନିମନ୍ତେ ମତ୍ସ୍ୟ ଉତ୍ପାଦନ ବୃଦ୍ଧି କରିବା ଏହି ନୀତିର ଲକ୍ଷ୍ୟ । ରାଜ୍ୟ ସରକାର ଏବଂ କେନ୍ଦ୍ର ସରକାରଙ୍କ ଦ୍ୱାରା ପରିଚାଳିତ କାର୍ଯ୍ୟକ୍ରମର ବୈଜ୍ଞାନିକ ପରିଚାଳନା ଏବଂ ମତ୍ସ୍ୟ ଉତ୍ପାଦନ ବୃଦ୍ଧି ସକାଶେ ମାଷ୍ଟର ପ୍ଲାନ ଅନୁସାରେ ସମସ୍ତ ସୁବିଧା ସୁଯୋଗ ଯୋଗାଇ ଦିଆଯାଉଛି । ଆହୁରିମଧ୍ୟ ସଂଶୋଧିତ ଦୀର୍ଘମିଆଦୀ କ୍ରିୟାଭିମୁଖୀ ଯୋଜନା (ଆର୍.ଏଲ୍.ଟି.ଏ.ପି.) କାର୍ଯ୍ୟକ୍ରମ ବନ୍ଦ ହେବା ପରେ କେ.ବି.କେ. ଜିଲ୍ଲାମାନଙ୍କରେ ବାକି ଥିବା ପୁଷ୍କରିଣୀରେ ମତ୍ସ୍ୟ ଚାଷର ବିକାଶ ପାଇଁ ବିଜୁ କେ.ବି.କେ. ଯୋଜନା ଅନୁସାରେ ଯୋଜନା ପ୍ରସ୍ତୁତ ହୋଇଛି । ମତ୍ସ୍ୟଜୀବୀମାନଙ୍କୁ ଆବଶ୍ୟକୀୟ ସହାୟତା ଯୋଗାଇଦେବା ସହିତ ମୋ' ସରକାର ମତ୍ସ୍ୟଜୀବୀମାନଙ୍କ ପାଇଁ ଗୋଷ୍ଠୀ ଦୁର୍ଘଟଣା ବୀମା, ସଞ୍ଚୟ ତଥା ସହାୟତା ଏବଂ ସ୍ୱଳ୍ପ ମୂଲ୍ୟର ଗୃହ ଯୋଗାଇ ଦେବା ପ୍ରଭୃତି ବିଭିନ୍ନ କଲ୍ୟାଣମୂଳକ କାର୍ଯ୍ୟକ୍ରମ ମଧ୍ୟ ଆରମ୍ଭ କରିଛନ୍ତି ।

ମୋ' ସରକାର ଆତ୍ମନିଯୁକ୍ତି ସୁଯୋଗ ସୃଷ୍ଟି କରିବା ଉପରେ ଅଧିକ ଗୁରୁତ୍ୱ ଦେଉଛନ୍ତି । ଏକ ମିଶନ ଢାଞ୍ଚାରେ ଅନେକ ଆତ୍ମନିଯୁକ୍ତି କାର୍ଯ୍ୟକ୍ରମ କାର୍ଯ୍ୟକାରୀ ହେଉଛି । ୨୦୦୬ ମସିହାରୁ ରାଜ୍ୟରେ ପ୍ରତିଷ୍ଠିତ ହୋଇଥିବା ରାଜ୍ୟ ନିଯୁକ୍ତି ମିଶନ ଉପରୋକ୍ତ ଲକ୍ଷ୍ୟଧାର୍ଯ୍ୟ ଅନୁସାରେ ବିଭିନ୍ନ ବିଭାଗ ମାଧ୍ୟମରେ କାର୍ଯ୍ୟକାରୀ ହେଉଥିବା କାର୍ଯ୍ୟକ୍ରମଗୁଡ଼ିକୁ ତଦାରଖ କରୁଛି ।

ମୋ' ସରକାର ରାଜ୍ୟର ସମସ୍ତ ୩୧୪ଟି ବ୍ଲକରେ ସମନ୍ୱିତ ଶିଶୁ ବିକାଶ ଯୋଜନା (ଆଇ.ସି.ଡି.ଏସ୍.) କାର୍ଯ୍ୟକ୍ରମକୁ କାର୍ଯ୍ୟକାରୀ କରିଛନ୍ତି । ରାଜ୍ୟରେ ଗଠିତ ହୋଇଥିବା ମୋଟ ୪୧,୬୯୭ଟି ଅଙ୍ଗନବାଡ଼ି କେନ୍ଦ୍ର କେତେକ ନିର୍ଦ୍ଦିଷ୍ଟ ସେବା ଯଥା- ୬ ବର୍ଷ ବୟସରୁ କମ୍ ୪୨.୦୨ ଲକ୍ଷ ପିଲା ଏବଂ ୭.୮୪ ଲକ୍ଷ ଗର୍ଭବତୀ ମହିଳା ଓ ସ୍ତନ୍ୟପାନ କରାଉଥିବା ମା'ମାନଙ୍କୁ ସହାୟକ ସୁଷମଖାଦ୍ୟ ଯୋଗାଉଛନ୍ତି ।

ନିଶ୍ଚିତ ଶିକ୍ଷା ଯୋଜନା (ଇ.ଜି.ଏସ୍.)/ବିକଳ୍ପ ଏବଂ ଅଭିନବ ଶିକ୍ଷା (ଏ.ଆଇ.ଇ.) କେନ୍ଦ୍ର ସମେତ ସରକାରୀ ସାହାଯ୍ୟପ୍ରାପ୍ତ ପ୍ରାଥମିକ ବିଦ୍ୟାଳୟଗୁଡ଼ିକରେ ପ୍ରଥମରୁ ପଞ୍ଚମ ଶ୍ରେଣୀ ମଧ୍ୟରେ ଅଧ୍ୟୟନ କରୁଥିବା ୪୨.୩୧ ଲକ୍ଷ ଛାତ୍ରଛାତ୍ରୀଙ୍କୁ ମଧ୍ୟାହ୍ନ ଭୋଜନ ଯୋଗାଇ ଦିଆଯାଉଛି । ରାଜ୍ୟର ୨୨ଟି ଜିଲ୍ଲାରେ ଚିହ୍ନଟ କରାଯାଇଥିବା ୧୭୨ ଶିକ୍ଷା କ୍ଷେତ୍ରରେ ଅନୁନ୍ନତ ବ୍ଲକରେ ୬ଷ୍ଠରୁ ୮ମ ଶ୍ରେଣୀ ମଧ୍ୟରେ ୫.୨୬ ଲକ୍ଷ ଛାତ୍ରଛାତ୍ରୀଙ୍କୁ ମଧ୍ୟାହ୍ନ ଭୋଜନ ପ୍ରଦାନ କରାଯାଉଛି ।

ବି.ପି.ଏଲ୍. ତାଲିକାରେ ଅନ୍ତର୍ଭୁକ୍ତ ଥିବା ଦୁଇ ଲକ୍ଷ ଅସହାୟ ବୃଦ୍ଧ ଓ ଦୁଃସ୍ଥ ବ୍ୟକ୍ତିମାନଙ୍କୁ ବର୍ଷସାରା ପ୍ରତିଦିନ ରନ୍ଧନଖାଦ୍ୟ ଯୋଗାଇ ଦିଆଯାଉଛି । ଜରୁରୀ ଖାଦ୍ୟ ପ୍ରଦାନ କାର୍ଯ୍ୟକ୍ରମ ଅନୁସାରେ ସମସ୍ତ ଆଠଟି କେ.ବି.କେ. ଜିଲ୍ଲାର ଅଙ୍ଗନବାଡ଼ି କେନ୍ଦ୍ର ଜରିଆରେ କାର୍ଯ୍ୟକାରୀ କରାଯାଉଛି ।

୨୦୦୭ ମସିହା ନଭେମ୍ବର ମାସ ସୁଦ୍ଧା ମିଶନ ଶକ୍ତି କାର୍ଯ୍ୟକ୍ରମ ଜରିଆରେ ୩ ଲକ୍ଷ ମହିଳା ସ୍ୱୟଂ ସହାୟକ ଗୋଷ୍ଠୀ ଗଠନ କରାଯାଇ ସେମାନଙ୍କୁ ୭୧୦.୭୩ କୋଟି ଟଙ୍କାରୁ ଅଧିକ ଋଣ ଯୋଗାଇ ଦିଆଯାଇଛି । ମିଶନ ଶକ୍ତି ଜରିଆରେ ଗୋଷ୍ଠୀ ଗଠନ, ସାମର୍ଥ୍ୟ ବୃଦ୍ଧି, ବଜାର ସୁବିଧା ଓ ବୀମା ବ୍ୟବସ୍ଥାର ସୁଦୃଢ଼ୀକରଣ ଉପରେ ଗୁରୁତ୍ୱ ଦିଆଯାଉଛି ।

ରାଜ୍ୟ ବାର୍ଦ୍ଧକ୍ୟଭତ୍ତା ଯୋଜନା ଓ ରାଜ୍ୟ ଅକ୍ଷମଭତ୍ତା ଯୋଜନାକୁ ସାମିଲ କରାଯାଇ ମଧୁବାବୁ ପେନ୍‌ସନ ଯୋଜନାର ଶୁଭାରମ୍ଭ କରାଯାଇଛି । ଏହି ପେନ୍‌ସନ୍ ସୁବିଧାରେ ଏଡ୍‌ସ ଆକ୍ରାନ୍ତ ବ୍ୟକ୍ତିମାନଙ୍କୁ ମଧ୍ୟ ଅନ୍ତର୍ଭୁକ୍ତ କରାଯାଇଛି । ସଂପ୍ରତି ଏହି ଯୋଜନାରେ ୯ ଲକ୍ଷ ବ୍ୟକ୍ତି ଉପକୃତ ହେଉଛନ୍ତି । ୨୦୦୮ ମସିହା ଜାନୁଆରୀ ସୁଦ୍ଧା ଏହି ମଧୁବାବୁ ପେନ୍‌ସନ୍ ଯୋଜନାରେ ଆହୁରି ଅଧିକ ୩ ଲକ୍ଷ ଅତିରିକ୍ତ ହିତାଧିକାରୀ ସାମିଲ ହେବେ ।

ରାଜ୍ୟରେ ଭିନ୍ନକ୍ଷମ ବ୍ୟକ୍ତିମାନଙ୍କ ପାଇଁ ଉଦ୍ଦିଷ୍ଟ ସମସ୍ତ ଯୋଜନାକୁ ଏକାସାଙ୍ଗରେ କାର୍ଯ୍ୟକାରୀ କରିବା ଉଦ୍ଦେଶ୍ୟରେ ପ୍ରତି ବ୍ଲକ୍‌ରେ ଆତ୍ମନିଯୁକ୍ତି ପରାମର୍ଶ ମେଳା ଆୟୋଜନ କରାଯାଉଛି ।

ମୋ' ସରକାର ରାଜ୍ୟର ଉଚ୍ଚ ସାଂସ୍କୃତିକ ପରମ୍ପରା, ବେଳାଭୂମି, ହ୍ରଦ, ଜଙ୍ଗଲ ଏବଂ ବନ୍ୟଜନ୍ତୁ ପ୍ରଭୃତି ପ୍ରାକୃତିକ ସମ୍ପଦ ସକାଶେ ପର୍ଯ୍ୟଟକମାନଙ୍କୁ ରାଜ୍ୟକୁ ଆକର୍ଷଣ କରିବା ଉପରେ ଗୁରୁତ୍ୱ ପ୍ରଦାନ କରୁଛନ୍ତି । ପର୍ଯ୍ୟଟକମାନଙ୍କୁ ଆକର୍ଷିତ କରିବା ପାଇଁ ମୋ' ସରକାର ପ୍ରଚାରମୂଳକ ପଦକ୍ଷେପକୁ ଗୁରୁତ୍ୱ ଦେଇ ବୈଦେଶିକ ଭାଷାରେ ବିଭିନ୍ନ ପ୍ରକାଶନ, ଦୃଶ୍ୟଶ୍ରାବ୍ୟ ପ୍ରସ୍ତୁତ, ମୁଦ୍ରଣ ଓ ସମ୍ବାଦ ସରବରାହ ମାଧ୍ୟମରେ ବିଜ୍ଞାପନ ପ୍ରଦାନ ପ୍ରଭୃତି କାର୍ଯ୍ୟ ହାତକୁ ନେଇଛନ୍ତି ।

ମୋ' ସରକାର ରାଜ୍ୟରେ ଇସ୍ପାତ କାରଖାନା ପ୍ରତିଷ୍ଠା କରିବା ଦିଗରେ ପ୍ରାୟ ୧,୯୭,୦୨୫.୦୦ କୋଟି ଟଙ୍କା ବିନିଯୋଗରେ ପ୍ରାୟ ୭୪.୬୬ ମିଲିଅନ ଟନ୍ ଇସ୍ପାତ ଉତ୍ପାଦନ ପାଇଁ ସମୁଦାୟ ୪୯ଟି ବୁଝାମଣାପତ୍ର ସ୍ୱାକ୍ଷର କରିଛନ୍ତି । ଏଥିରେ ୪.୦୦ ମିଲିୟନ ଟନ୍ କ୍ଷମତା ସମ୍ପନ୍ନ ଏକ ପେଲେଟିସେସନ କାରଖାନା ଅନ୍ତର୍ଭୁକ୍ତ । ସ୍ୱାକ୍ଷରିତ ହୋଇଥିବା ୪୯ଟି ବୁଝାମଣାପତ୍ର ମଧ୍ୟରୁ ଅଦ୍ୟାବଧି ୨୬ଟି କମ୍ପାନୀ ଆଂଶିକ ଭାବେ ଉତ୍ପାଦନ ଆରମ୍ଭ କରି ବାର୍ଷିକ ୩.୩୨ ମେଟ୍ରିକ ଟନ୍ ଇସ୍ପାତ, ୩.୯୬ ମେଟ୍ରିକ ଟନ୍ ସ୍ପଞ୍ଜ ଆଇରନ, ୦.୪୫ ମେଟ୍ରିକ ଟନ୍ ପିଗ୍ ଆଇରନ୍ ଏବଂ ୦.୧୫ ମେଟ୍ରିକ୍ ଟନ୍ ଫେରୋକ୍ରୋମ ଉତ୍ପାଦନ କରୁଛନ୍ତି । ଏହିସବୁ ଶିଳ୍ପାନୁଷ୍ଠାନ ମାଧ୍ୟମରେ ୧୨,୩୪୫ ଜଣ ପ୍ରତ୍ୟକ୍ଷ ଭାବେ ଏବଂ ୨୫,୩୫୯ ଜଣ ପରୋକ୍ଷ ଭାବେ ନିଯୁକ୍ତି ସୁଯୋଗ ପାଇଛନ୍ତି । ଏହି ଶିଳ୍ପାନୁଷ୍ଠାନଗୁଡ଼ିକ ପ୍ରତିଷ୍ଠା ପାଇଁ ଅଦ୍ୟାବଧି ବିଭିନ୍ନ ପୁଞ୍ଜି ନିବେଶକାରୀମାନଙ୍କ ଦ୍ୱାରା ମୋଟ ୧୬,୫୬୦.୦୦ କୋଟି ଟଙ୍କା ବିନିଯୋଗ ହୋଇଛି ।

ରାଜ୍ୟର ଅଣ ଟିକସ ରାଜସ୍ୱ ବୃଦ୍ଧି କ୍ଷେତ୍ରରେ ଖଣିଜ ରୟାଲଟି ପ୍ରମୁଖ ଭୂମିକା ଗ୍ରହଣ କରିଥାଏ । ଭାରତ ସରକାର ତା.୦୧.୦୮.୦୭ରିଖର ବିଜ୍ଞପ୍ତି ଅନୁଯାୟୀ କୋଇଲା ରୟାଲଟିର ମୂଲ୍ୟକୁ ଟନେଜ୍ ବ୍ୟବସ୍ଥାରୁ ସଂଶୋଧିତ କରି ହାଇବ୍ରିଡ଼ ପ୍ରକ୍ରିୟାରେ ସ୍ଥିରୀକୃତ କରିଛନ୍ତି । ସେ ଯାହାହେଉ, ଏହି ପ୍ରକ୍ରିୟା ପାଇଁ ଦୁଇ ବର୍ଷ ଅତିକ୍ରାନ୍ତ ହୋଇଯାଇଛି । ଏହି ସଂଶୋଧିତ ବ୍ୟବସ୍ଥା ପ୍ରଚଳନ ପାଇଁ ବିଳମ୍ବ ହେଉଥିବାରୁ ମୋ' ସରକାର କେନ୍ଦ୍ର ସରକାରଙ୍କୁ ଉପଯୁକ୍ତ କ୍ଷତିପୂରଣ ପାଇଁ ଦାବୀ କରିଛନ୍ତି । ରୟାଲଟି ବାବଦ ଦେୟ ଅନ୍ୟାନ୍ୟ ଶୁଳ୍କ କର ଇତ୍ୟାଦିରେ ବୁଝାମଣା ବ୍ୟବସ୍ଥାକୁ ଲୋପକରି ସଂପୂର୍ଣ୍ଣ ରୟାଲଟି ପ୍ରାପ୍ତ ଦେୟ ପ୍ରଦାନ ଉପରେ ରାଜ୍ୟ ସରକାର ମଧ ଦାବୀ କରିଛନ୍ତି ।

ନୂତନ ଶିଳ୍ପ ନୀତି-୨୦୦୭ରେ ସନ୍ତୁଳିତ ଶିଳ୍ପ ଅଭିବୃଦ୍ଧି ପାଇଁ ସମସ୍ତ ପ୍ରକାର ବ୍ୟବସ୍ଥା ରହିଛି । ଏଥିରେ ଗୁଣାତ୍ମକ ଆନୁଷ୍ଠାନିକ ସହାୟତା, ଭିତ୍ତିଭୂମି ଉନ୍ନୟନ, ଅଧିକ ପ୍ରୋତ୍ସାହନ ପ୍ୟାକେଜ୍, ମାନବ ସମ୍ବଳ ବୃଦ୍ଧି ଏବଂ ସମୟାନୁଯାୟୀ ଏବଂ ଦାୟିତ୍ୱବାନ ଭାବରେ ଅଭିଯୋଗର ପ୍ରତିକାର ପାଇଁ ଅଧିକ ଗୁରୁତ୍ୱାରୋପ କରାଯାଇଛି । ୨୦୦୭ ବର୍ଷରେ ରାଜ୍ୟ ସରକାର ମଟରଯାନ ଯନ୍ତ୍ରପାତି ଉତ୍ପାଦନକାରୀ ସଂସ୍ଥା, ଜାହାଜ ନିର୍ମାଣ ସଂସ୍ଥା ଏବଂ ବିରଳ ମୃତ୍ତିକା ଆଧାରିତ ଧାତୁ ସଂସ୍ଥା ପରି ପର୍ଯ୍ୟାପ୍ତ ନିଯୁକ୍ତି ସୁଯୋଗ ସୃଷ୍ଟିକାରୀ ଏବଂ ମୂଲ୍ୟଯୁକ୍ତ କ୍ଷେତ୍ରଗୁଡ଼ିକର ଅଭିବୃଦ୍ଧି ପାଇଁ ସମର୍ଥ ହୋଇପାରିଛନ୍ତି । ଚୌଦ୍ୱାରଠାରେ ଆର.ଏସ୍.ବି. ଗ୍ରୁପ୍ ଦ୍ୱାରା ଏକ ମଟରଯାନ ଯନ୍ତ୍ରପାତି କାରଖାନା ପ୍ରତିଷ୍ଠା ପାଇଁ ପ୍ରସ୍ତୁତି ଚାଲିଛି । ଆପିଜେ ସୁରେନ୍ଦ୍ର ଗ୍ରୁପ୍ ଦ୍ୱାରା ଭଦ୍ରକ ଜିଲ୍ଲାରେ ଏକ ବୃହତ୍ ଜାହାଜ ନିର୍ମାଣ ୟାର୍ଡ଼ର ବିକାଶ କାର୍ଯ୍ୟ ଆରମ୍ଭ କରାଯାଇଛି । ଗଞ୍ଜାମ ଜିଲ୍ଲାରେ ସରାଫ୍ ଗ୍ରୁପ୍ ଦ୍ୱାରା ଟିଟାନିୟମ ଆଧାରିତ ମେଟାଲ କାରଖାନାର ବିକାଶ କରାଯାଉଛି । ରାଜ୍ୟର ୩୧୪ ଗୋଟି ବ୍ଲକରେ ଅନ୍ୟୁନପକ୍ଷେ ଗୋଟିଏ ଲେଖାଏଁ ଆଇ.ଟି.ଆଇ. ସ୍ଥାପନ ଲକ୍ଷ୍ୟରେ ମୋ' ସରକାର ଆଇ.ଟି.ଆଇ.ଏସ୍, ପଲିଟେକ୍ନିକ୍ ଏବଂ ଅନ୍ୟାନ୍ୟ ଧନ୍ଦାମୂଳକ ଶିକ୍ଷା କ୍ଷେତ୍ରରେ ଏକ ମହତ୍ୱପୂର୍ଣ୍ଣ ସଂସ୍କାର କାର୍ଯ୍ୟକ୍ରମ ଆରମ୍ଭ କରିଛନ୍ତି । ଭିତ୍ତିଭୂମିକ ଅଭିବୃଦ୍ଧି, ପ୍ରଶିକ୍ଷଣ ସୁବିଧା ପରୀକ୍ଷାଗାର, ପାଠ୍ୟକ୍ରମରେ ଉନ୍ନତି ଆଣିବା ସହିତ ସ୍ଥାନୀୟ ଯୁବଗୋଷ୍ଠୀମାନଙ୍କର ସାମର୍ଥ୍ୟ ଏବଂ ବୈଷୟିକ କୌଶଳ ବୃଦ୍ଧି ଘଟାଇବା ସହ ସେମାନଙ୍କୁ ପୂର୍ଣ୍ଣମାତ୍ରାରେ ବ୍ୟବହାରଯୋଗୀ କରିବା ଉଦ୍ଦେଶ୍ୟରେ ଗଢ଼ି ଉଠୁଥିବା ଶିଳ୍ପ ପ୍ରକଳ୍ପଗୁଡ଼ିକ ସ୍ଥାନୀୟ ଆଇ.ଟି.ଆଇ.ଗୁଡ଼ିକୁ ସହାୟତା ପ୍ରଦାନ ପାଇଁ ଆଗ୍ରହାନ୍ୱିତ ।

ହସ୍ତତନ୍ତ ଓ ବୟନଶିଳ୍ପ, ହସ୍ତକଳା ଓ କୁଟୀର ଶିଳ୍ପ ଏବଂ ଆନୁଷଙ୍ଗିକ ଶିଳ୍ପକ୍ଷେତ୍ରରେ ଥିବା କ୍ଷୁଦ୍ର ଓ ମଧ୍ୟମ ଧରଣର ଉଦ୍ୟୋଗର ବିକାଶ ପାଇଁ ସାମୂହିକ ପଦକ୍ଷେପ ସମୟକ୍ରମେ ଗ୍ରହଣ କରାଯାଉଛି । ଅତି କ୍ଷୁଦ୍ର, କ୍ଷୁଦ୍ର ଓ ମଧ୍ୟମ ଉଦ୍ୟୋଗଗୁଡ଼ିକର ପରିସରକୁ ବ୍ୟାପକ କରିବା ନିମନ୍ତେ ମୋ' ସରକାର ଏକ ପ୍ରସ୍ତାବିତ ନୀତି ଆଧାରରେ କାର୍ଯ୍ୟ କରୁଛନ୍ତି । ଏହା ମାଧ୍ୟମରେ କ୍ଷୁଦ୍ର ଶିଳ୍ପଗୁଡ଼ିକୁ ସହାୟତା କରିବା ଦିଗରେ ଉତ୍ସର୍ଗୀକୃତ ତଥା ଫଳପ୍ରଦ ପଦକ୍ଷେପ ନିଆଯିବ ।

ଆଠ ଗୋଟି ଗୁରୁତ୍ୱପୂର୍ଣ୍ଣ ଉଦ୍ୟୋଗ କ୍ଷେତ୍ରରେ ଉତ୍ତମ ଉଦ୍ୟୋଗ ପରିଚାଳନା ପଦ୍ଧତି ଅନୁସରଣ କରିବା ପାଇଁ ପଦକ୍ଷେପ ଗ୍ରହଣ କରାଯାଇଛି । ଓଡ଼ିଶା ଉଠାଜଳସେଚନ ନିଗମ, ଓଡ଼ିଶା ରାଜ୍ୟ ଅର୍ଥ ନିଗମ, ଓଡ଼ିଶା ରାଜ୍ୟ ସଡ଼କ ପରିବହନ ନିଗମ ଓ ଓଡ଼ିଶା ବନ ଉନ୍ନୟନ ନିଗମର ପୁନର୍ଗଠନ ଯୋଜନା ମୋ' ସରକାର କାର୍ଯ୍ୟକାରୀ କରୁଛନ୍ତି । ଏହାବ୍ୟତୀତ ୨୦୦୭-୦୮ ଆର୍ଥିକ ବର୍ଷରେ ଓଡ଼ିଶା ରାଜ୍ୟ ବିହନ ନିଗମ, ଓଡ଼ିଶା ରାଜ୍ୟ ଯୋଗାଣ ନିଗମ, ଓଡ଼ିଶା ସେତୁ ନିର୍ମାଣ ନିଗମ ଏବଂ ଓଡ଼ିଶା ନିର୍ମାଣ ନିଗମକୁ ପୁନର୍ଗଠନ ନିମନ୍ତେ ଚିହ୍ନଟ କରାଯାଇଛି ।

ଓଡ଼ିଶାରେ ଉନ୍ନତମାନର ହସ୍ତତନ୍ତ ଓ ହସ୍ତଶିଳ୍ପର ଏକ ସମୃଦ୍ଧ ପରମ୍ପରା ରହିଛି । ହସ୍ତତନ୍ତ ଉତ୍ପାଦନ କ୍ଷେତ୍ରରେ ଦେଶର ପ୍ରମୁଖ ରାଜ୍ୟମାନଙ୍କ ଭିତରୁ ଓଡ଼ିଶା ଅନ୍ୟତମ । ଏହି କ୍ଷେତ୍ରରେ ୪ ଲକ୍ଷରୁ ଅଧିକ ବୁଣାକାର ଓ ଦେଢ଼ଲକ୍ଷରୁ ଅଧିକ କାରିଗର ନିଯୁକ୍ତିର ସୁବିଧା ପାଇଛନ୍ତି । ବର୍ତ୍ତମାନ ରାଜ୍ୟର ବୁଣାକାରମାନଙ୍କ ସୁବିଧା ପାଇଁ ଏକ ସ୍ୱତନ୍ତ୍ର ପ୍ୟାକେଜ୍ କାର୍ଯ୍ୟକାରୀ ହେଉଛି । ମୋ' ସରକାର ରାଜ୍ୟର ବୁଣାକାରମାନଙ୍କ ଉନ୍ନତି ପାଇଁ ଏକ ପ୍ୟାକେଜ୍ ପ୍ରସ୍ତୁତ କରିଛନ୍ତି । କର୍ମକୁଶଳୀର ବୃଦ୍ଧି, ସୂତା ବ୍ୟାଙ୍କ ପ୍ରତିଷ୍ଠା ଓ ଭିତ୍ତିଭୂମିର ବିକାଶ ପାଇଁ ହସ୍ତତନ୍ତ କ୍ଷେତ୍ରରେ ଅଧିକ ପାଣ୍ଠି ଯୋଗାଣ ସହିତ ଆପାରେଲ ଟ୍ରେନିଙ୍ଗ ଆଣ୍ଡ ଡିଜାଇନିଂ ସେଣ୍ଟର ସହିତ ସଂଯୋଗ ସ୍ଥାପନ କରିବା ପାଇଁ ଯତ୍ନ ନିଆଯାଇଛି । ରେଶମ, ଟସର ଓ

ଏଣ୍ଡିସୂତା ଉତ୍ପାଦନ ପାଇଁ ହସ୍ତତନ୍ତ ସହିତ ରେଶମ ଉତ୍ପାଦନର ସଂଯୋଗ ସ୍ଥାପନ ନିମନ୍ତେ ବଳିଷ୍ଠ ପଦକ୍ଷେପ ଗ୍ରହଣ କରାଯାଇଛି । ସେହିପରି ହସ୍ତଶିଳ୍ପ ପାଇଁ ଏକ ସ୍ୱତନ୍ତ୍ର ପ୍ୟାକେଜ୍ ମଧ୍ୟ ଘୋଷଣା କରାଯାଇଛି । ଏଥିରେ କର୍ମକୁଶଳୀର ଅଭିବୃଦ୍ଧି, ନମୂନା ପ୍ରସ୍ତୁତିରେ ସାହାଯ୍ୟ, କାରିଗରମାନଙ୍କ ଶିକ୍ଷଣୀୟ ପରିଭ୍ରମଣର ସୁବିଧା ଓ ହସ୍ତଶିଳ୍ପୀମାନଙ୍କ ପାଇଁ କଲ୍ୟାଣପାଣ୍ଠିର ବ୍ୟବସ୍ଥା ପ୍ରଭୃତି ରଖାଯାଇଛି ।

ମୋ' ସରକାର ବର୍ତ୍ତମାନ ସରକାରୀ ପ୍ରକ୍ରିୟାରେ ନାଗରିକ କୈନ୍ଦ୍ରିକ ଇ-ଗଭର୍ଣ୍ଣାନ୍ସ ସେବା, ବିନିଯୋଗ ସୁବିଧା ସୁଯୋଗ ଓ ସୂଚନା ପ୍ରଯୁକ୍ତି ବିଦ୍ୟା ପ୍ରୟୋଗ ପାଇଁ ଅନୁକୂଳ ବାତାବରଣ ସୃଷ୍ଟି ପରି ୩ ଗୋଟି ଗୁରୁତ୍ୱପୂର୍ଣ୍ଣ କ୍ଷେତ୍ରକୁ ପ୍ରାଥମିକତା ଦେଇ ସରକାରୀ କର୍ମଚାରୀମାନଙ୍କୁ ପ୍ରଶିକ୍ଷଣ ତଥା ପରିବର୍ତ୍ତିତ ପରିଚାଳନା ପଦ୍ଧତି ଶିକ୍ଷା ଦେଉଛନ୍ତି ।

ଜାତୀୟ ଇ-ଗଭର୍ଣ୍ଣାନ୍ସ ଯୋଜନା ଅନୁଯାୟୀ ୩୦ ଗୋଟି ଜିଲ୍ଲାରେ ୫୮ଟି ଉପଖଣ୍ଡ, ୧୭୧ଟି ତହସିଲ ଓ ୩୧୪ଟି ବ୍ଲକକୁ ରାଜ୍ୟ ସଦରମହକୁମା ସହିତ ସଂଯୋଗ କରାଯିବା ଲକ୍ଷ୍ୟରେ ରାଜ୍ୟରେ ଏକ ବ୍ୟାପକ କାର୍ଯ୍ୟକ୍ରମ ଚାଲୁ ରହିଛି । ଗ୍ରାମାଞ୍ଚଳ ଲୋକମାନଙ୍କୁ ଗ୍ରାମପଞ୍ଚାୟତ ସ୍ତରରେ ନାଗରିକ କୈନ୍ଦ୍ରିକ ସରକାରୀ ସେବା ଉପଲବ୍ଧ ହେବା ଉଦ୍ଦେଶ୍ୟରେ ରାଜ୍ୟରେ ସୂଚନା କିଓସ୍କ ସହିତ ୮୫୫୮ଟି ସାଧାରଣ ସେବା କେନ୍ଦ୍ର ପ୍ରତିଷ୍ଠା କରାଯାଉଛି । ଜିଲ୍ଲାସ୍ତରରେ ଇ-ଗଭର୍ଣ୍ଣାନ୍ସ କାର୍ଯ୍ୟକ୍ରମକୁ ପରିଚାଳନା କରିବା ନିମନ୍ତେ ଜିଲ୍ଲା ସୂଚନା ସେବା ପରିଷଦଗୁଡ଼ିକ ଗଠନ କରାଯାଇଛି । ୱେବ୍‌ସାଇଟ୍ ମାଧ୍ୟମରେ ଟେଣ୍ଡର ଓ କ୍ରୟ ପ୍ରକ୍ରିୟାକୁ ଆଗୁଆ ପ୍ରକଳ୍ପ ଭାବେ ଆରମ୍ଭ କରାଯାଇଛି ।

ମୋ' ସରକାର ବିଭିନ୍ନ ସରକାରୀ ବିଭାଗଗୁଡ଼ିକରେ ବହୁବିଧ ସୂଚନା ପ୍ରଯୁକ୍ତି ପଦକ୍ଷେପ ସଫଳତାର ସହିତ ଆରମ୍ଭ କରିଛନ୍ତି । ଏହା ମାଧ୍ୟମରେ ବିଦ୍ୟାଳୟ ଓ ଗଣଶିକ୍ଷା ବିଭାଗର ଇ-ଶିଶୁ ପ୍ରକଳ୍ପ ଅନ୍ୟତମ । ଏହି ପ୍ରକଳ୍ପ 'ପଞ୍ଚମ ଭାରତୀୟ ପ୍ରଯୁକ୍ତି ଉତ୍କର୍ଷତା ପୁରସ୍କାର' ହାସଲ କରିବା ସଂଗେସଂଗେ ୨୦୦୭ ମସିହାରେ ଅନୁଷ୍ଠିତ 'ଦଶମ ଜାତୀୟ ଇ-ଗଭର୍ଣ୍ଣାନ୍ସ ସମ୍ମିଳନୀ'ରେ ସର୍ବଶ୍ରେଷ୍ଠ ସରକାରୀ ୱେବ୍‌ସାଇଟ୍ ଭାବେ ବିବେଚିତ ହୋଇଥିଲା । ଓଡ଼ିଶାର ୩୧୪ ଗୋଟି ବ୍ଲକ୍ ଓ ସମସ୍ତ ସରକାରୀ ବିଭାଗଗୁଡ଼ିକରେ ବେତନ ନାମକ ଏକ ଦରମା ସୂଚନା ପଦ୍ଧତି କାର୍ଯ୍ୟକାରୀ କରାଯାଇଛି । ରାଜ୍ୟରେ ଶିଶୁ, ମହିଳା, ବୃଦ୍ଧ, ଅସହାୟ ଓ ପରିତ୍ୟକ୍ତଙ୍କ କଲ୍ୟାଣ ସକାଶେ ମହିଳା ଓ ଶିଶୁ ବିକାଶ ବିଭାଗ ଦ୍ୱାରା ଇ-ପ୍ରଗତି ପ୍ରକଳ୍ପ କାର୍ଯ୍ୟକାରୀ କରାଯାଉଛି । ରାଜ୍ୟର ୧୦୩ ଗୋଟି ପୌରାଞ୍ଚଳରେ ବ୍ୟାପକ ଇ-ଗଭର୍ଣ୍ଣାନ୍ସ ପଦକ୍ଷେପ ଗ୍ରହଣ କରାଯାଉଛି । ରାଜ୍ୟରେ ସମସ୍ତ ରାଜସ୍ୱ ମାନଚିତ୍ରଗୁଡ଼ିକର ଡିଜିଟାଇଜେସନ୍ ନିମନ୍ତେ ଏକ ବ୍ୟାପକ କାର୍ଯ୍ୟକ୍ରମ ଗ୍ରହଣ କରାଯାଇଛି ।

ସମାଜ ପ୍ରତି ଜୈବ ପ୍ରଯୁକ୍ତିର ବହୁବିଧ ଉପକାରିତାକୁ ବିଚାରକୁ ନେଇ ମୋ' ସରକାର ରାଜ୍ୟରେ ଏକ ଜୈବ ପ୍ରଯୁକ୍ତି ପାର୍କ ପ୍ରତିଷ୍ଠା ନିମନ୍ତେ ପଦକ୍ଷେପ ଗ୍ରହଣ କରିଛନ୍ତି । ସରକାରୀ ଘରୋଇ ଅଂଶୀଦାରୀ ସହଯୋଗରେ ଭୁବନେଶ୍ୱର ତହସିଲ ଅନ୍ତର୍ଗତ ଅନ୍ଧାରୁଆ ମୌଜାର ୬୫ ଏକର ଜମିରେ ଏକ ଜୈବପ୍ରଯୁକ୍ତି ଭେଷଜ ଆଇ.ଟି. ପାର୍କର ବିକାଶ କାର୍ଯ୍ୟ ଚାଲୁ ରହିଛି । ପ୍ରଥମ ପର୍ଯ୍ୟାୟରେ ଏହି ପାର୍କ ପରିସରରେ ୧୦ ଏକର ଜମି ଉପରେ ଏକ ଜୈବପ୍ରଯୁକ୍ତି କୃତ୍ରିମ ତାପ ସଂଚାର କେନ୍ଦ୍ର ଖୋଲାଯିବ । ଦ୍ୱିତୀୟ ପର୍ଯ୍ୟାୟରେ ବିଜ୍ଞାନ ଓ କାରିଗରୀ କୌଶଳ ବିଭାଗକୁ ଡେରାସ ଫାର୍ମ ଅଞ୍ଚଳରେ ଦିଆଯାଇଥିବା ୨୦୦ ଏକର ଜମିରେ ଏକ ଜୈବପ୍ରଯୁକ୍ତି ଶିଳ୍ପ ପ୍ରତିଷ୍ଠା କରାଯିବ । ମୋ' ସରକାର ରାଜ୍ୟରେ ଜୈବପ୍ରଯୁକ୍ତି ଶିଳ୍ପ ସ୍ଥାପନ ପାଇଁ ପୁଞ୍ଜି ନିବେଶକାରୀ/ଉଦ୍ୟୋଗୀମାନଙ୍କୁ ଆକୃଷ୍ଟ କରିବା ନିମନ୍ତେ ଖୁବ୍‌ଶୀଘ୍ର ଏକ ଜୈବପ୍ରଯୁକ୍ତି ଶିଳ୍ପ ନୀତି ପ୍ରଣୟନ କରିବାକୁ ଯାଉଛନ୍ତି ।

ଓଡ଼ିଶାର ଗ୍ରାମବାସୀମାନଙ୍କୁ ପାନୀୟ ଜଳ ଓ ପରିମଳ ସୁବିଧା ଯୋଗାଇ ଦେବା ଉପରେ ମୋ' ସରକାର ଗୁରୁତ୍ୱ ଦେଉଛନ୍ତି । ଏଥିପାଇଁ ସମୁଦାୟ ୨,୫୫,୭୬୬ଟି ହସ୍ତଚାଳିତ ନଳକୂପ, ୮୨୯୪ଟି ପରିମଳ କୂପ ଓ ୧୨୮୬ଟି ପାଇପ୍ ଯୋଗେ ଜଳଯୋଗାଣ ପ୍ରକଳ୍ପ କାର୍ଯ୍ୟକାରୀ କରାଯାଇଛି । ୨୦୦୭-୦୮ ମସିହା ଡିସେମ୍ବର ମାସ ସୁଦ୍ଧା ୬୦୪୨ଟି ହସ୍ତଚାଳିତ ନଳକୂପ, ୩୪୦ଟି ପରିମଳ କୂପ ଓ ୧୬୦ଟି ପାଇପ୍ ଯୋଗେ ଜଳ ଯୋଗାଣ ପ୍ରକଳ୍ପ କାର୍ଯ୍ୟ ସଂପୂର୍ଣ୍ଣ ହୋଇଛି । ୨୦୦୭-୦୮ ମସିହାରେ ଜଳଉତ୍ସରୁ ୧୫୪୪ଟି ପ୍ରାଥମିକ ବିଦ୍ୟାଳୟ ଓ ଉଚ୍ଚବିଦ୍ୟାଳୟକୁ ପରିଷ୍କାର ପାନୀୟ ଜଳ ଯୋଗାଇ ଦିଆଯିବାର ଲକ୍ଷ୍ୟଧାର୍ଯ୍ୟ ହୋଇଥିବାବେଳେ ୨୦୦୭ ଡିସେମ୍ବର ଶେଷସୁଦ୍ଧା ୬୦୦ଟିର କାର୍ଯ୍ୟ ସଂପୂର୍ଣ୍ଣ ହୋଇଛି । ସ୍ୱଜଳଧାରା ଯୋଜନାରେ ଗୋଷ୍ଠୀମାନଙ୍କ ସହାୟତାରେ ୧୧୨୫ଟି ପ୍ରକଳ୍ପ କାର୍ଯ୍ୟ ସଂପୂର୍ଣ୍ଣ କରାଯାଇଛି ।

ରାଜ୍ୟର ୩୦ଟି ଜିଲ୍ଲାର ସମସ୍ତ ଗାଁ ଘର, ବିଦ୍ୟାଳୟ ଓ ଅଙ୍ଗନବାଡ଼ିଗୁଡ଼ିକରେ ପରିମଳର ସୁବିଧା ଯୋଗାଇ ଦିଆଯିବା ପାଇଁ ମୋ' ସରକାର ସଂପୂର୍ଣ୍ଣ ପରିମଳ ଅଭିଯାନ ହାତକୁ ନେଇଛନ୍ତି ।

ରାଜ୍ୟର ଗ୍ରାମାଞ୍ଚଳଗୁଡ଼ିକର ଉନ୍ନତି ଆଣିବା ନିମନ୍ତେ ଯୋଗାଯୋଗ ବ୍ୟବସ୍ଥା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ପ୍ରତିଗ୍ରାମକୁ ରାସ୍ତା ସଂଯୋଗ କରିବା ଉପରେ ମୋ' ସରକାର ପ୍ରାଥମିକତା ଦେଉଛନ୍ତି । ପ୍ରଧାନମନ୍ତ୍ରୀ ଗ୍ରାମ୍ୟ ସଡ଼କ ଯୋଜନାରେ ୨୦୦୭ ମସିହା ମାର୍ଚ୍ଚ ମାସ ସୁଦ୍ଧା ୬୬୩୬.୨୪

କିଲୋମିଟର ସବୁଦିନିଆ ରାସ୍ତା ନିର୍ମାଣ କରାଯାଇଛି ଯଦ୍ଦ୍ୱାରାକି ୨୬୦୪ ଗୋଟି ରାସ୍ତା ନଥିବା ଗ୍ରାମକୁ ରାସ୍ତା ଦ୍ୱାରା ସଂଯୋଗ କରାଯାଇପାରିଛି । ୨୦୦୮ ମସିହା ମାର୍ଚ୍ଚ ମାସ ସୁଦ୍ଧା ୩,୧୨୪ କିଲୋମିଟର ରାସ୍ତା ନିର୍ମାଣର ଲକ୍ଷ୍ୟ ଥିଲା । ଏହା ମଧ୍ୟରୁ ୧୧୪୨.୮୮୭ କି.ମି. ରାସ୍ତା ନିର୍ମାଣ କରାଯାଇଛି ଯାହାଫଳରେ କି ୩୬୦୩ଟି ବସତିକୁ ରାସ୍ତା ଦ୍ୱାରା ସଂଯୋଗ କରାଯାଇଛି । ୨୦୦୮-୦୯ ବର୍ଷରେ ପ୍ରଧାନମନ୍ତ୍ରୀ ଗ୍ରାମସଡ଼କ ଯୋଜନାରେ ୩୫୦୦ କି.ମି. ଅତିରିକ୍ତ ରାସ୍ତା ନିର୍ମାଣର ପ୍ରସ୍ତାବ ରହିଛି ।

ଶିଳ୍ପ ତଥା ସାମାଜିକ ଓ ଅର୍ଥନୈତିକ ବିକାଶ ନିମନ୍ତେ ଭିତ୍ତିଭୂମି ସୁଦୃଢ଼ୀକରଣର ଆବଶ୍ୟକତା ରହିଛି । ଏହି ଲକ୍ଷ୍ୟ ହାସଲ ପାଇଁ ମୋ' ସରକାର ନାବାର୍ଡ଼, ଆର୍.ଆଇ.ଡି.ଏଫ୍. ଯୋଜନା, ଭାରତ ସରକାରଙ୍କ ଅର୍ଥନୈତିକ ଗୁରୁତ୍ୱ ଯୋଜନା, କେନ୍ଦ୍ରୀୟ ସଡ଼କ ପାଣ୍ଠି, ଅତିରିକ୍ତ କେନ୍ଦ୍ରୀୟ ସହାୟତା ଓ ସ୍ୱତନ୍ତ୍ର କେନ୍ଦ୍ରୀୟ ସହାୟତା ପ୍ରଭୃତି ତଥା ରାଜ୍ୟର ନିଜସ୍ୱ ସମ୍ବଳରୁ ପାଣ୍ଠି ସଂଗ୍ରହ କରିଚାଲିଛି । ଚରମପନ୍ଥୀ ଉପଦ୍ରବ ଅଞ୍ଚଳରେ ଉତ୍ତମ ଯୋଗାଯୋଗ ବ୍ୟବସ୍ଥାର ଗୁରୁତ୍ୱକୁ ଉପଲବ୍ଧି କରି ମୋ' ସରକାର ମୋଟୁ-ମାଲକାନଗିରିଠାରୁ ଯଶିପୁର-ରାଇରଙ୍ଗପୁର (ବିଜୟୱାଡ଼ା-ରାଞ୍ଚି) ରାସ୍ତା ଯାହାକି ଆଦିବାସୀ ଓ ଚରମପନ୍ଥୀ ଉପଦ୍ରବ ଅଞ୍ଚଳ ମଧ୍ୟଦେଇ ଯାଇଛି, ସେହି ୧୨୧୯ କି.ମି. ଲମ୍ବ ରାସ୍ତାକୁ ୧୨୧୯ କୋଟି ଟଙ୍କା ବ୍ୟୟରେ ନିର୍ମାଣ କରିବାକୁ ଏକ ବୃହତ୍ ପ୍ରକଳ୍ପ ହାତକୁ ନେଇଛନ୍ତି । ଏଥିପାଇଁ ଭାରତ ସରକାରଙ୍କ ବିଭିନ୍ନ ଯୋଜନା ଓ ରାଜ୍ୟ ସରକାରଙ୍କ ନିଜସ୍ୱ ସମ୍ବଳରୁ ଅର୍ଥ ଖର୍ଚ୍ଚ ହେବ । ପ୍ରଥମ ପର୍ଯ୍ୟାୟରେ ୧୨୦ କୋଟି ଟଙ୍କା ବ୍ୟୟରେ ମାଲକାନଗିରିଠାରୁ ଜୟପୁର ପର୍ଯ୍ୟନ୍ତ ୧୦୭ କି.ମି. ରାସ୍ତାର ନିର୍ମାଣ କାର୍ଯ୍ୟ ହାତକୁ ନିଆଯାଇଛି । ବିଶ୍ୱବ୍ୟାଙ୍କର ୯୫୩ କୋଟି ଟଙ୍କା ସହାୟତାରେ ରାଜ୍ୟ ସରକାର ଓଡ଼ିଶା ରାଜ୍ୟ ସଡ଼କ ପ୍ରକଳ୍ପ ଜରିଆରେ ୧୪୩୧ କୋଟି ଟଙ୍କା ବ୍ୟୟରେ ଏକ ବହୁମୁଖୀ ରାସ୍ତା ଭିତ୍ତିଭୂମି ଉନ୍ନୟନ କାର୍ଯ୍ୟ ଯୋଜନା ମଧ୍ୟ ପ୍ରସ୍ତୁତ କରିଛନ୍ତି ।

ଧାମରାଠାରେ ଆନ୍ତର୍ଜାତୀୟ ମାନର ଏକ ବୃହତ୍ ବନ୍ଦର ନିର୍ମାଣ କାର୍ଯ୍ୟ ଆରମ୍ଭ ହୋଇଅଛି । ଗୋପାଳପୁରକୁ ସବୁଦିନିଆ ବନ୍ଦରରେ ପରିଣତ କରିବା ନିମନ୍ତେ ନିର୍ମାଣ କାର୍ଯ୍ୟ ଆଗେଇ ଚାଲିଛି । ବାଲେଶ୍ୱରର ସୁବର୍ଣ୍ଣରେଖା ମୁହାଣ ଓ ଅସ୍ତରଙ୍ଗର ଦେବୀ ମୁହାଣଠାରେ ସବୁଦିନିଆ ବନ୍ଦର ପ୍ରତିଷ୍ଠା ପାଇଁ ଅନେକ ବନ୍ଦର ଉନ୍ନୟନକାରୀ ଆଗ୍ରହ ପ୍ରକାଶ କରିଛନ୍ତି । ଏହିସବୁ ବନ୍ଦରଗୁଡ଼ିକର ଉନ୍ନତି ହେବା ଦ୍ୱାରା ଓଡ଼ିଶା ଉପକୂଳ ଆନ୍ତର୍ଜାତୀୟ ବାଣିଜ୍ୟର ଏକ ପ୍ରମୁଖ କେନ୍ଦ୍ର ହେବ ।

ଶକ୍ତି କ୍ଷେତ୍ରରେ ସଂସ୍କାର ଆଣିବାରେ ଓଡ଼ିଶା ହେଉଛି ପ୍ରଥମ ରାଜ୍ୟ । ପ୍ରାରମ୍ଭିକ ସମସ୍ୟା ସତ୍ତ୍ୱେ, ଶକ୍ତି କ୍ଷେତ୍ରରେ ହୋଇଥିବା ସଂସ୍କାର, ବର୍ତ୍ତମାନ ସକାରାତ୍ମକ ଫଳାଫଳ ପ୍ରଦାନ କରିବା ଆରମ୍ଭ କରିଛି । ଶକ୍ତି କ୍ଷେତ୍ରରେ ରାଜ୍ୟ ସରକାରଙ୍କ ଉପଯୋଗିତା ସରକାରଙ୍କ ବଜେଟ୍ ସହାୟତା ଉପରେ ଆଉ ଅଧିକ ନିର୍ଭରଶୀଳ ନୁହେଁ । ସମଗ୍ର ଦେଶରେ ସର୍ବନିମ୍ନ ବିଦ୍ୟୁତ୍ ଦେୟଧାର୍ଯ୍ୟ ଥିବା ରାଜ୍ୟମାନଙ୍କ ମଧ୍ୟରୁ ଓଡ଼ିଶା ଅନ୍ୟତମ । ୨୦୦୧ ମସିହାଠାରୁ ବିଦ୍ୟୁତ୍ ଉପଭୋକ୍ତାଙ୍କ ଦେୟରେ କୌଣସି ବୃଦ୍ଧି ଘଟିନାହିଁ । ବିଦ୍ୟୁତ୍ କ୍ଷେତ୍ରରେ କ୍ରମାଗତ ଭାବେ ବଳକା ରାଜ୍ୟ ହେବା ସଂଗେସଂଗେ ରାଜ୍ୟରେ ବିଦ୍ୟୁତ୍‌କାଟ ହେଉନାହିଁ । ୨୦୦୬-୦୭ ବର୍ଷରେ ବଳକା ବିଦ୍ୟୁତ୍ ବିକ୍ରୀ କରି ଗ୍ରୀଡ଼୍‌କୋ ୧୩୪୨ କୋଟି ଟଙ୍କା ଉପାର୍ଜନ କରିବାରେ ସମର୍ଥ ହୋଇଛି । ଚଳିତ ଆର୍ଥିକ ବର୍ଷର ଡିସେମ୍ବର ମାସ ୨୦୦୭ ସୁଦ୍ଧା ଏହା ୧୦୧୦ କୋଟି ଟଙ୍କା ଉପାର୍ଜନ କରିପାରିଛି ।

ବ୍ୟାପକ ଶିଳ୍ପାୟନ ଓ ଗ୍ରାମ୍ୟ ବିଦ୍ୟୁତ୍‌କରଣ ଦୃଷ୍ଟିରୁ ରାଜ୍ୟରେ ବିଦ୍ୟୁତ୍‌ର ଚାହିଦା ଦ୍ରୁତଗତିରେ ବୃଦ୍ଧି ପାଉଛି । ବର୍ଦ୍ଧିତ ଚାହିଦା ପୂରଣ ଓ ବିଦ୍ୟୁତ୍ କ୍ଷେତ୍ରରେ ଏକ ବଳକା ରାଜ୍ୟ ଭାବେ ସ୍ଥିତି ବଜାୟ ରଖିବା ପାଇଁ ମୋ' ସରକାର ରାଜ୍ୟରେ ବିଦ୍ୟୁତ୍ ଉତ୍ପାଦନ ସାମର୍ଥ୍ୟ ବୃଦ୍ଧି ଉପରେ ଗୁରୁତ୍ୱ ପ୍ରଦାନ କରୁଛନ୍ତି । ୧୬,୦୦୦ ମେଗାୱାଟରୁ ଊର୍ଦ୍ଧ୍ୱ ବିଦ୍ୟୁତ୍ ଉତ୍ପାଦନ କରିବା ପାଇଁ ରାଜ୍ୟ ସରକାରଙ୍କ ସହିତ ୧୩ ଗୋଟି ସ୍ୱାଧୀନ ବିଦ୍ୟୁତ୍ ଉତ୍ପାଦନ କମ୍ପାନୀ ବୁଝାମଣାପତ୍ର ସ୍ୱାକ୍ଷର କରିଛନ୍ତି । ରାଜ୍ୟରେ ୪୦୦୦ ମେଗାୱାଟ୍ ସାମର୍ଥ୍ୟ ବିଶିଷ୍ଟ ଏକ ଅତ୍ୟାଧୁନିକ ବୃହତ୍ ବିଦ୍ୟୁତ୍ ପ୍ଲାଣ୍ଟ ସ୍ଥାପନ ନିମନ୍ତେ ପ୍ରସ୍ତାବ ରହିଛି । ରାଜ୍ୟର ଦୁଇଟି ସାଧାରଣ ଉଦ୍ୟୋଗ ଯଥା- ଓଡ଼ିଶା ଖଣି ନିଗମ ଓ ଓଡ଼ିଶା ଜଳ ବିଦ୍ୟୁତ୍ ନିଗମ ଦୁଇଟି ପର୍ଯ୍ୟାୟରେ ୨୦୦୦ ମେଗାୱାଟ ବିଶିଷ୍ଟ ଏକ ଜଳ ବିଦ୍ୟୁତ୍ ପ୍ଲାଣ୍ଟ ପ୍ରତିଷ୍ଠା କରିବାକୁ ମିଳିତ ଉଦ୍ୟମ ଆରମ୍ଭ କରିଛନ୍ତି ।

'ରାଜୀବ ଗାନ୍ଧୀ ଗ୍ରାମୀଣ ବିଦ୍ୟୁତ୍‌କରଣ ଯୋଜନା' ଓ 'ବିଜୁ ଗ୍ରାମଜ୍ୟୋତି ଯୋଜନା' କାର୍ଯ୍ୟକାରୀ ହେବା ଦ୍ୱାରା ଗ୍ରାମ ବିଦ୍ୟୁତ୍‌କରଣ ଏକ ନୂତନ ଅଧ୍ୟାୟ ସୃଷ୍ଟି କରିଛି । ବର୍ତ୍ତମାନ ରାଜ୍ୟର ୪ ଗୋଟି ଜିଲ୍ଲା ଯଥା- ଅନୁଗୋଳ, ନୟାଗଡ଼, ଗଞ୍ଜାମ ଏବଂ ଗଜପତିରେ ରାଜୀବ ଗାନ୍ଧୀ ଗ୍ରାମୀଣ ବିଦ୍ୟୁତ୍‌କରଣ ଯୋଜନା କାର୍ଯ୍ୟକାରୀ ହେଉଅଛି । ଭାରତ ସରକାରଙ୍କଠାରୁ ପାଣ୍ଠି ଉପଲବ୍ଧ ହେବା ପରେ ଅବଶିଷ୍ଟ ୨୬ ଗୋଟି ଜିଲ୍ଲାରେ ରାଜୀବ ଗାନ୍ଧୀ ଗ୍ରାମ ବିଦ୍ୟୁତ୍‌କରଣ ଯୋଜନା କାର୍ଯ୍ୟକାରୀ କରାଯିବ । ''ସମସ୍ତଙ୍କୁ ବିଦ୍ୟୁତ୍ ଯୋଗାଣ''କୁ ନିଶ୍ଚିତ କରିବା ପାଇଁ ମୋ' ସରକାର ରାଜୀବ ଗାନ୍ଧୀ ଗ୍ରାମୀଣ ବିଦ୍ୟୁତ୍‌କରଣ ଯୋଜନାରେ ଅନ୍ତର୍ଭୁକ୍ତ ହୋଇନଥିବା ତଥା ୧୦୦ରୁ କମ୍ ଜନସଂଖ୍ୟା ବିଶିଷ୍ଟ ବସତିଗୁଡ଼ିକୁ ବିଦ୍ୟୁତ୍ ଯୋଗାଇ ଦେବା ନିମନ୍ତେ ନିଜସ୍ୱ 'ବିଜୁ ଗ୍ରାମଜ୍ୟୋତି ଯୋଜନା' ଆରମ୍ଭ କରିଛନ୍ତି । ବିଜୁ ଗ୍ରାମଜ୍ୟୋତି ଯୋଜନାର କାର୍ଯ୍ୟକାରିତା ନିମନ୍ତେ ପ୍ରତି ବ୍ଲକ୍ ପାଇଁ ୫୦ ଲକ୍ଷ ଟଙ୍କାର ପାଣ୍ଠି ଜିଲ୍ଲାପାଳମାନଙ୍କୁ ଯୋଗାଇ ଦିଆଯାଇଛି ।

ପ୍ରାଥମିକ ଶିକ୍ଷାର ସାର୍ବଜନୀନକରଣ ପାଇଁ ମୋ' ସରକାର ଗୁରୁତ୍ୱ ଆରୋପ କରୁଛନ୍ତି । 'ଓଡ଼ିଶା ଶିଶୁ ଗଣନା କାର୍ଯ୍ୟକ୍ରମ' ଜରିଆରେ ରାଜ୍ୟର ୬ରୁ ୧୪ ବର୍ଷ ବୟସର ସମସ୍ତ ପିଲାମାନଙ୍କୁ ବ୍ୟକ୍ତିଗତ ଭାବେ ଚିହ୍ନଟ କରାଯାଇଛି । ବିଦ୍ୟାଳୟରେ ସେମାନଙ୍କର ନାମ ଲେଖାଇବା ନିମନ୍ତେ ସ୍ୱତନ୍ତ୍ର ପଦକ୍ଷେପ ଗ୍ରହଣ କରାଯାଇଛି । ଫଳରେ ଅଧାରୁ ପାଠପଢ଼ା ଛାଡ଼ିବା ହାର ୧୮.୪୯ ପ୍ରତିଶତରୁ ୧୦.୫୩ ପ୍ରତିଶତକୁ ହ୍ରାସ ପାଇଛି । ଚଳିତ ଶିକ୍ଷାବର୍ଷରେ ଗ୍ରାମ୍ୟ ଶିକ୍ଷା କମିଟି ମାଧ୍ୟମରେ ପ୍ରାଥମିକ ବିଦ୍ୟାଳୟ ସ୍ତରର ୮ମ ଶ୍ରେଣୀ ପର୍ଯ୍ୟନ୍ତ ୫୯,୭୦,୬୧୪ ଜଣ ଛାତ୍ରଛାତ୍ରୀଙ୍କୁ ମାଗଣାରେ ପାଠ୍ୟପୁସ୍ତକ ବଣ୍ଟନ କରାଯାଇଛି ଓ ପ୍ରାଥମିକ ସ୍ତରରେ ସପ୍ତମ ଶ୍ରେଣୀ ପର୍ଯ୍ୟନ୍ତ ୨୨,୯୦,୭୨୩ ଜଣ ଛାତ୍ରୀଙ୍କୁ ମାଗଣା ସ୍କୁଲ ପୋଷାକ ବଣ୍ଟନ କରାଯାଇଛି । ଶିକ୍ଷା ସହାୟକମାନଙ୍କ ପାଇଁ କ୍ୟାରିଅର ଆଡ଼ଭାନ୍ସମେଣ୍ଟ ନିୟମ ସଂଶୋଧନ କରାଯାଇଛି । ବର୍ତ୍ତମାନ ୯ ବର୍ଷ ପରିବର୍ତ୍ତେ ୬ ବର୍ଷର ସନ୍ତୋଷଜନକ ନିଯୁକ୍ତି ଦ୍ୱାରା ଶିକ୍ଷା ସହାୟକମାନେ ସ୍ଥାୟୀ ପ୍ରାଥମିକ ବିଦ୍ୟାଳୟ ଶିକ୍ଷକ ନିମନ୍ତେ ଯୋଗ୍ୟ ବିବେଚିତ ହେବେ । ସେମାନଙ୍କର ପାରିଶ୍ରମିକ ମଧ୍ୟ ମାସିକ ୨୦୦୦ ଟଙ୍କାରୁ ୩୦୦୦ ଟଙ୍କାକୁ ବୃଦ୍ଧି କରାଯାଇଛି । ଶିକ୍ଷା କ୍ଷେତ୍ରରେ ପଛୁଆ ପଡ଼ିଥିବା ୧୧୪ ଗୋଟି ବ୍ଲକ୍‌ର ଛାତ୍ରୀମାନଙ୍କର ଶିକ୍ଷାର ଉନ୍ନତି ନିମନ୍ତେ ୧୧୪ ଗୋଟି କସ୍ତୁରବା ଗାନ୍ଧୀ ବାଳିକା ବିଦ୍ୟାଳୟ (କେ.ଜି.ଭି.ପି.) ଏବଂ ୩୦୫୨ ଗୋଟି ଆଦର୍ଶ ଗୋଷ୍ଠୀ ବିଦ୍ୟାଳୟ ପ୍ରତିଷ୍ଠା କରାଯାଇଛି । ଅନୁସୂଚିତ ଜନଜାତି ଛାତ୍ରଛାତ୍ରୀମାନଙ୍କର ଶିକ୍ଷାର ବିକାଶ ନିମନ୍ତେ ମୋ' ସରକାର ବିଭିନ୍ନ ପଦକ୍ଷେପ ଗ୍ରହଣ କରିଛନ୍ତି । ଆମର ଜନଜାତି ପିଲାମାନଙ୍କର ସୁବିଧା ପାଇଁ ୭ ଗୋଟି ଜନଜାତି ଭାଷାରେ ଦ୍ୱିଭାଷୀ ପ୍ରଥମ ପାଠ୍ୟପୁସ୍ତକର ବିକାଶ କରାଯାଇଛି । ସ୍ୱତନ୍ତ୍ର ସହାୟତା ଆବଶ୍ୟକ କରୁଥିବା ୧,୦୨,୫୫୦ ଜଣ ପିଲାଙ୍କୁ ଚିହ୍ନଟ କରାଯାଇଛି । ତନ୍ମଧ୍ୟରୁ ୯୦,୮୯୮ ଜଣ ପିଲାଙ୍କର ସ୍କୁଲରେ ନାମ ଲେଖା ଯାଇଛି ଏବଂ ସେମାନଙ୍କୁ ଆବଶ୍ୟକ ସହାୟତା ଓ ଉପକରଣ ଯୋଗାଇ ଦିଆଯାଇଛି । ରାଜ୍ୟର ୨୪ ଗୋଟି ଜିଲ୍ଲାର ୬୦୦ ପ୍ରାଥମିକ ଏବଂ ଉଚ୍ଚ ପ୍ରାଥମିକ ବିଦ୍ୟାଳୟରେ ବିଜୁ ପଟ୍ଟନାୟକ କମ୍ପ୍ୟୁଟର ସହାୟତା ଶିକ୍ଷା କାର୍ଯ୍ୟକ୍ରମ ପ୍ରବର୍ତ୍ତନ କରାଯାଇଛି । ପୁନଶ୍ଚ ୨୦୦୭-୦୮ ମସିହାରେ ଏହି ସଂଖ୍ୟା ବୃଦ୍ଧି ପାଇବ ।

ଚଳିତ ବର୍ଷ ସରକାର ୧୦୦ ଗୋଟି ବାଳିକା ଉଚ୍ଚ ବିଦ୍ୟାଳୟକୁ ଶତ ପ୍ରତିଶତ ଅନୁଦାନ ଏବଂ ୧୬୯ ଗୋଟି ଉଚ୍ଚ ବିଦ୍ୟାଳୟକୁ ବ୍ଲକ୍ ଗ୍ରାଣ୍ଟ ପ୍ରଦାନ କରିଛନ୍ତି । ଏହା ମଧ୍ୟ ସ୍ଥିର ହୋଇଛି ଯେ ଆସନ୍ତା ଶିକ୍ଷାବର୍ଷରୁ ସର୍ବଶିକ୍ଷା ଅଭିଯାନ କାର୍ଯ୍ୟକ୍ରମରେ ୧୦୪୭ଟି ହାଇସ୍କୁଲର ଅନ୍ତତଃ ଗୋଟିଏ ଉଚ୍ଚପ୍ରାଥମିକ ବିଦ୍ୟାଳୟକୁ ଅଷ୍ଟମ ଶ୍ରେଣୀ ମାନ୍ୟତା ଦେଇ ଉନ୍ନୀତ କରାଯିବ ।

ସବୁସ୍ତରରେ ଗୁଣାତ୍ମକ ଶିକ୍ଷାର ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଛି ଏବଂ ମୋ' ସରକାର ରାଜ୍ୟରେ ଉଚ୍ଚଶିକ୍ଷାର ଗୁଣାତ୍ମକ ବିକାଶ ନିମନ୍ତେ ବହୁବିଧ ସକରାତ୍ମକ ପଦକ୍ଷେପ ଗ୍ରହଣ କରୁଛନ୍ତି । ରାଜ୍ୟରେ ଆଇନ ବିଶ୍ୱବିଦ୍ୟାଳୟ, ବେଦାନ୍ତ ବିଶ୍ୱବିଦ୍ୟାଳୟ ଏବଂ ଶ୍ରୀ ଶ୍ରୀ ରବିଶଙ୍କର ବିଶ୍ୱବିଦ୍ୟାଳୟଗୁଡ଼ିକର ସ୍ଥାପନ ନିମନ୍ତେ ପଦକ୍ଷେପ ଗ୍ରହଣ କରାଯାଉଛି । ରାଜ୍ୟ ସରକାରଙ୍କର ନିଷ୍ଠାପର ଉଦ୍ୟମକ୍ରମେ ଭାରତ ସରକାରଙ୍କ ଦ୍ୱାରା ରାଜ୍ୟରେ ଜାତୀୟ ବିଜ୍ଞାନ ଶିକ୍ଷା ଓ ଗବେଷଣା ପ୍ରତିଷ୍ଠାନ ପ୍ରତିଷ୍ଠା କରାଯାଇଛି ଏବଂ ଏହା ୨୦୦୭-୦୮ ଶିକ୍ଷା ବର୍ଷଠାରୁ କାର୍ଯ୍ୟ ଆରମ୍ଭ କରିଛି ।

ଅନୁସୂଚିତ ଜାତି ଓ ଜନଜାତି ଲୋକଙ୍କର ସାମାଜିକ ଏବଂ ଅର୍ଥନୈତିକ ବିକାଶ ନିମନ୍ତେ ଶିକ୍ଷା ହେଉଛି ଏକ ଗୁରୁତ୍ୱପୂର୍ଣ୍ଣ ମାଧ୍ୟମ । ତେଣୁ ଏହି ଗୋଷ୍ଠୀର ଶିକ୍ଷାଗତ ଅବସ୍ଥାରେ ଉନ୍ନତି ଆଣିବା ପାଇଁ ମୋ' ସରକାର ଅନୁସୂଚିତ ଜାତି ଏବଂ ଜନଜାତି ଉନ୍ନୟନ ବିଭାଗ ଜରିଆରେ ଯଥେଷ୍ଟ ଗୁରୁତ୍ୱ ପ୍ରଦାନ କରୁଛନ୍ତି । ଅନୁସୂଚିତ ଜନଜାତି ଛାତ୍ରୀମାନଙ୍କର ଶିକ୍ଷାର ବିକାଶ ଏବଂ ଅଧାରୁ ପାଠ ଛାଡୁଥିବା ଛାତ୍ରୀମାନଙ୍କ ସଂଖ୍ୟାକୁ ହ୍ରାସ କରିବା ପାଇଁ ମୋ' ସରକାର ୧ ଲକ୍ଷ ଅନ୍ତେବାସିନୀଙ୍କ ନିମନ୍ତେ ୧୦୦୦ ଗୋଟି ନୂତନ ଛାତ୍ରୀ ନିବାସ ସ୍ଥାପନ କରିଛନ୍ତି । ଏତଦ୍‌ବ୍ୟତୀତ ଆଗାମୀ ୨୦୦୮-୦୯ ଶିକ୍ଷାବର୍ଷରେ ୫୨ ଗୋଟି ନୂତନ ଆବାସିକ ଛାତ୍ରୀ ନିବାସ ସ୍ଥାପନ କରାଯିବା ପାଇଁ ପ୍ରସ୍ତାବ ରହିଛି । ଅନୁସୂଚିତ ଜାତି ଓ ଜନଜାତିର ଛାତ୍ର ଏବଂ ଆବାସିକ ଛାତ୍ରୀ ନିବାସର ଅନ୍ତେବାସିନୀଙ୍କ ପାଇଁ ଉଦ୍ଦିଷ୍ଟ ପ୍ରିମାଟ୍ରିକ୍ ବୃତ୍ତିର ପରିମାଣ ଯଥାକ୍ରମେ ୩୦୦ରୁ ୪୦୦ ଟଙ୍କା ଏବଂ ୩୨୫ରୁ ୪୨୫ ଟଙ୍କାକୁ ତା.୦୧.୦୪.୦୭ରିଖରୁ ବୃଦ୍ଧି କରାଯାଇଛି । ପରୀକ୍ଷାରେ ଭଲ ଫଳାଫଳର ଲକ୍ଷ୍ୟ ରଖି ଅନୁସୂଚିତ ଜାତି ଓ ଜନଜାତି ଉନ୍ନୟନ ବିଭାଗ ଅନ୍ତର୍ଗତ ସମସ୍ତ ଉଚ୍ଚ ବିଦ୍ୟାଳୟର ୯ମ ଓ ୧୦ମ ଶ୍ରେଣୀର ଛାତ୍ରଛାତ୍ରୀମାନଙ୍କୁ ସ୍ୱତନ୍ତ୍ର ଭାବେ କୋଚିଂ ଦିଆଯାଉଛି । ଟି.ଏସ୍.ପି. ଅଞ୍ଚଳରେ ନବମ ଶ୍ରେଣୀରୁ ଦ୍ୱାଦଶ ଶ୍ରେଣୀରେ ପାଠ ପଢ଼ିଥିବା ଆଦିବାସୀ ବାଳିକାମାନଙ୍କୁ ଏବଂ ଅଣ ଟି.ଏସ୍.ପି. ଅଞ୍ଚଳରେ ଏକାଦଶ ଏବଂ ଦ୍ୱାଦଶ ଶ୍ରେଣୀରେ ଅଧ୍ୟୟନ କରୁଥିବା ଛାତ୍ରୀମାନଙ୍କୁ ସାଇକେଲ ପ୍ରଦାନ କରାଯାଉଛି ।

ଏହା ଜଣାଶୁଣା ବିଷୟ ଯେ, ଯଦିଓ ଦାରିଦ୍ର୍ୟ ନିରକ୍ଷରତା ପାଇଁ ଦାୟୀ ତଥାପି ସାକ୍ଷରତା ଏବଂ ଶିକ୍ଷା ଦାରିଦ୍ର୍ୟ ଦୂର କରିଥାଏ ।

ବର୍ତ୍ତମାନ ରାଜ୍ୟର ୪ ଗୋଟି ଜିଲ୍ଲାରେ ଥିବା ୧୯ ଗୋଟି ପଛୁଆ ବ୍ଲକ୍‌ରେ ଆନ୍ତର୍ଜାତିକ କୃଷି ଉନ୍ନୟନ ପାଣ୍ଠି (ଆଇ.ଏଫ୍.ଏ.ଡି.), ଆନ୍ତର୍ଜାତିକ ଉନ୍ନୟନ ସଂସ୍ଥା (ଡି.ଏଫ୍.ଆଇ.ଡି.) ଏବଂ ୟୁନାଇଟେଡ୍ ନେସନ୍ସ ୱାର୍ଲ୍ଡ ଫୁଡ୍ ପ୍ରୋଗ୍ରାମ ଦ୍ୱାରା ସାହାଯ୍ୟପ୍ରାପ୍ତ ଓଡ଼ିଶା ଆଦିବାସୀ

ସଶକ୍ତିକରଣ ଏବଂ ଜୀବିକା ନିର୍ବାହ ପ୍ରକଳ୍ପ (ଓ.ଟି.ଇ.ଏଲ୍.ପି.) କାର୍ଯ୍ୟକାରୀ କରାଯାଉଛି । ଓଡ଼ିଶାର ଦକ୍ଷିଣାଞ୍ଚଳରେ ଥିବା ଆଦିବାସୀଙ୍କ ଉନ୍ନତି ପାଇଁ ଏହା ଏକ ନିରବଚ୍ଛିନ୍ନ ମୂଳସ୍ତରର କାର୍ଯ୍ୟକ୍ରମ ଅଟେ ।

ରାଜ୍ୟର ଗରିବ ଅନୁସୂଚିତ ଜାତି ଓ ଜନଜାତିର ଲୋକ ଏବଂ ଝାଡୁଦାରମାନଙ୍କର ସୁବିଧା ନିମନ୍ତେ ଓଡ଼ିଶା ଅନୁସୂଚିତ ଜାତି ଓ ଜନଜାତି ଉନ୍ନୟନ ଆର୍ଥିକ ସମବାୟ ନିଗମ ବିଭିନ୍ନ ପ୍ରକାର ରୋଜଗାର ସୃଷ୍ଟିକାରୀ ଯୋଜନା କାର୍ଯ୍ୟକାରୀ କରୁଛନ୍ତି । ୨୦୦୭-୦୮ ବର୍ଷର ଡିସେମ୍ବର ମାସ ୨୦୦୭ ଶେଷ ସୁଦ୍ଧା ଏହି ନିଗମ କ୍ରେଡ଼ିଟ୍ ସୁବିଧା ଥାଇ ରୋଜଗାର ସୃଷ୍ଟିକାରୀ ଯୋଜନା ଅଧୀନରେ ବ୍ୟାଙ୍କ୍ ଜରିଆରେ ବି.ପି.ଏଲ୍. ତାଲିକାଭୁକ୍ତ ୩,୭୨୦ ଜଣ ଅନୁସୂଚିତ ଜାତି, ୧,୩୯୫ ଜଣ ଅନସୂଚିତ ଜନଜାତି ଏବଂ ୨୨୦ ଜଣ ଝାଡୁଦାରଙ୍କୁ ଆର୍ଥିକ ସହାୟତା ପ୍ରଦାନ କରିଛି ।

ରାଜ୍ୟର ୨୪ ଗୋଟି ଜିଲ୍ଲାରେ ଜାତୀୟ ଗ୍ରାମୀଣ ନିଶ୍ଚିତ କର୍ମନିଯୁକ୍ତି ଯୋଜନା କାର୍ଯ୍ୟକାରୀ ହେଉଛି ଏବଂ ଅବଶିଷ୍ଟ ୬ ଗୋଟି ଜିଲ୍ଲାରେ ଏହି ଯୋଜନାକୁ ପରିବର୍ଦ୍ଧିତ କରି ଆସନ୍ତା ୨୦୦୮ ଏପ୍ରିଲ୍ ପହିଲାରୁ ରାଜ୍ୟର ସମସ୍ତ ୩୦ ଗୋଟି ଜିଲ୍ଲାରେ କାର୍ଯ୍ୟକାରୀ ହେବ । ଅଦ୍ୟାବଧି ଏହି ୨୪ ଗୋଟି ଜିଲ୍ଲାରେ ଥିବା ୩୭ ଲକ୍ଷ ଗ୍ରାମୀଣ ପରିବାର ନିଜକୁ ପଞ୍ଜିକରଣ କରିଛନ୍ତି ଏବଂ କାର୍ଯ୍ୟପତ୍ର ହାସଲ କରିଛନ୍ତି । ୨୦୦୭ ମସିହା ଡିସେମ୍ବର ମାସ ଶେଷ ସୁଦ୍ଧା ପ୍ରାୟ ୮ ଲକ୍ଷ ପରିବାର ମଜୁରିଭିତ୍ତିକ କାର୍ଯ୍ୟ ପାଇଁ ଆବେଦନ କରିଥିଲେ ଏବଂ ଏହି ଯୋଜନାର ନିୟମ ମୁତାବକ ସମସ୍ତଙ୍କୁ କାମ ଯୋଗାଇ ଦିଆଯାଇଛି ।

ଜାତୀୟ ଗ୍ରାମୀଣ ନିଶ୍ଚିତ ରୋଜଗାର ଯୋଜନା ଅଧୀନରେ ଆସୁଥିବା ବି.ପି.ଏଲ୍. ତାଲିକାଭୁକ୍ତ ପରିବାରର ବ୍ୟକ୍ତିଗତ ମାଲିକାନାରେ ଥିବା ଜମିରେ ଫାର୍ମ ପୋଖରୀ ଖୋଳିବାକୁ ମୋ' ସରକାର ସକ୍ରିୟ ଭାବେ ଉତ୍ସାହିତ କରୁଛନ୍ତି, ଯାହାକି ସ୍ୱଳ୍ପବୃଷ୍ଟି ହେଉଥିବା ଅଞ୍ଚଳର ଗ୍ରାମୀଣ ଜନସାଧାରଣଙ୍କ ଦ୍ୱାରା ଆଦୃତ ହୋଇଛି । ଏହି ଫାର୍ମ ପୋଖରୀଗୁଡ଼ିକ କେବଳ ମୃତ୍ତିକା ଏବଂ ଜଳ ସଂରକ୍ଷଣ କ୍ଷେତ୍ରରେ ସାହାଯ୍ୟ କରୁ ନାହିଁ, ପରନ୍ତୁ ବର୍ଷାଋତୁରେ ସ୍ୱଳ୍ପବୃଷ୍ଟି ହେଉଥିବା ସମୟରେ ଏହା ଜୀବନ ରକ୍ଷକ ଜଳସେଚନର ସୁବିଧା ଯୋଗାଉଛି ।

ଜାତୀୟ ଗ୍ରାମୀଣ ନିଶ୍ଚିତ କର୍ମ ନିଯୁକ୍ତି ଯୋଜନାର କାର୍ଯ୍ୟକାରିତାରେ ସ୍ୱଚ୍ଛତା ବଜାୟ ରଖିବା ନିମନ୍ତେ ଏହି ଯୋଜନା ସମ୍ପର୍କିତ ସମସ୍ତ ତଥ୍ୟ ଓ ସୂଚନା ଇଣ୍ଟରନେଟରେ ଉପଲବ୍ଧ ହେବା କ୍ଷେତ୍ରରେ ଓଡ଼ିଶା ହେଉଛି ଏକ ଅଗ୍ରଣୀ ରାଜ୍ୟ ।

କାର୍ଯ୍ୟକ୍ରମର ରୂପାୟନରେ ସାଧୁତା, ସ୍ୱଚ୍ଛତା ଏବଂ ଦାୟବଦ୍ଧତାକୁ ନିଶ୍ଚିତ କରିବା ନିମନ୍ତେ ବର୍ଦ୍ଧିତ ସଚେତନତାସହ ସ୍ୱଚ୍ଛତା ରକ୍ଷାର ବ୍ୟବସ୍ଥା କରି ମୋ' ସରକାର ଅନେକଗୁଡ଼ିଏ ସକ୍ରିୟ ପଦକ୍ଷେପ ଗ୍ରହଣ କରିଛନ୍ତି ଏବଂ ଏହାମଧ ନିଶ୍ଚିତ କରୁଛନ୍ତି ଯେ ସମସ୍ତ ଦାରିଦ୍ର୍ୟ ଦୂରୀକରଣ ଏବଂ ଉନ୍ନୟନ କାର୍ଯ୍ୟକ୍ରମର ସୁଫଳ ଯେପରି ପ୍ରତ୍ୟେକ ଯୋଗ୍ୟ ହିତାଧିକାରୀଙ୍କ ନିକଟରେ ପହଞ୍ଚି ପାରିବ ।

ଆଞ୍ଚଳିକ ବୈଷମ୍ୟ ଦୂର କରିବା ଲକ୍ଷ୍ୟରେ ରାଜ୍ୟର ୧୯ ଗୋଟି ଜିଲ୍ଲାରେ କେନ୍ଦ୍ରୀୟ ଅନୁଦାନ ଦ୍ୱାରା ପଛୁଆ ଅଞ୍ଚଳ ଅନୁଦାନ ପାଣ୍ଠି (ବି.ଆର୍.ଜି.ଏଫ୍.) ଯୋଜନା କାର୍ଯ୍ୟକାରୀ ହେଉଛି । ବି.ଆର୍.ଜି.ଏଫ୍. ଯୋଜନାରେ ଅନ୍ତର୍ଭୁକ୍ତ ହୋଇନଥିବା ରାଜ୍ୟର ୧୧ ଗୋଟି ଜିଲ୍ଲାର ସାମଗ୍ରିକ ବିକାଶ ନିମନ୍ତେ ମୋ' ସରକାର ୨୦୦୬-୦୭ ମସିହାରୁ ରାଜ୍ୟ ଯୋଜନା ଅନ୍ତର୍ଗତ ନିଜସ୍ୱ 'ଗୋପବନ୍ଧୁ ଗ୍ରାମୀଣ ଯୋଜନା' ଆରମ୍ଭ କରିଛନ୍ତି । 'ଗୋପବନ୍ଧୁ ଗ୍ରାମୀଣ ଯୋଜନା' ଅଧୀନରେ ବିଜୁଳି, ସଡ଼କ ଓ ପାଣି ପରି କ୍ଷେତ୍ରର ବିକାଶ ପାଇଁ ପ୍ରତି ଜିଲ୍ଲାକୁ ବାର୍ଷିକ ୧୦ କୋଟି ଟଙ୍କା ଯୋଗାଇ ଦିଆଯାଉଛି ।

ବିଭିନ୍ନ ପ୍ରକାର ଗ୍ରାମ୍ୟ ଉନ୍ନୟନ ଏବଂ ଦାରିଦ୍ର୍ୟ ଦୂରୀକରଣ ଯୋଜନାର ସଫଳ ରୂପାୟନ ପାଇଁ ତଳସ୍ତରର ପ୍ରଶାସନକୁ ସୁଦୃଢ଼ କରିବା ଏବଂ ପଞ୍ଚାୟତିରାଜ ଅନୁଷ୍ଠାନର ନିର୍ବାଚିତ ପ୍ରତିନିଧି ଏବଂ କର୍ମକର୍ତ୍ତାମାନଙ୍କ ସାମର୍ଥ୍ୟ ବୃଦ୍ଧି କରିବା ଏକ ଗୁରୁତ୍ୱପୂର୍ଣ୍ଣ ଆବଶ୍ୟକତା । ଏ ଦିଗରେ ମୋ' ସରକାର ଅନେକ ପଦକ୍ଷେପ ଗ୍ରହଣ କରିଛନ୍ତି । ଜାତୀୟ ଗ୍ରାମୀଣ ନିଶ୍ଚିତ ନିଯୁକ୍ତି ଯୋଜନାର ସଫଳ କାର୍ଯ୍ୟକାରିତା ପାଇଁ ବ୍ଲକ୍ ସ୍ତରରେ ବୈଷୟିକ ସହାୟତା କର୍ମଚାରୀଙ୍କ ବ୍ୟତୀତ ପ୍ରତି ଗ୍ରାମପଞ୍ଚାୟତରେ ଜଣେ ଲେଖାଏଁ ଗ୍ରାମ ରୋଜଗାର ସେବକ ନିଯୁକ୍ତ ହୋଇଛନ୍ତି । ଏନ୍.ଆର୍.ଜି.ଏସ୍. କାର୍ଯ୍ୟର ସୁପରିଚାଳନା ନିମନ୍ତେ ସହାୟତା କରିବା ପାଇଁ ପ୍ରତି ରାଜସ୍ୱ ଗ୍ରାମରେ ଦୁଇଜଣ ଲେଖାଏଁ ଗାଁ ସାଥୀ ନିଯୁକ୍ତି କରିବାକୁ ମୋ' ସରକାର ନିକଟରେ ନିଷ୍ପତ୍ତି ଗ୍ରହଣ କରିଛନ୍ତି ।

ଯେଉଁ ହିତାଧିକାରୀମାନେ ଇନ୍ଦିରା ଆବାସ ଯୋଜନାରେ ଅନ୍ତର୍ଭୁକ୍ତ ହେବା ପାଇଁ ଅପେକ୍ଷା କରିଛନ୍ତି କିନ୍ତୁ ବି.ପି.ଏଲ୍. ତାଲିକାର ସମ୍ଭାବ୍ୟ ସଂଶୋଧନ ଯୋଗୁଁ ଏହି ସୁବିଧାରୁ ବଞ୍ଚିତ ହେବାର ଆଶଙ୍କା ରହିଛି, ସେମାନଙ୍କ ପାଇଁ 'ମୋ କୁଡ଼ିଆ' ନାମକ ଏକ ନୂତନ ଯୋଜନା ଆରମ୍ଭ କରିବାକୁ ମୋ' ସରକାର ମଧ ସ୍ଥିର କରିଛନ୍ତି ।

ଓଡ଼ିଶାର ଜନସାଧାରଣଙ୍କ ସ୍ୱାସ୍ଥ୍ୟସେବା ଆବଶ୍ୟକତା ବିଷୟରେ ମୋ' ସରକାର ସମ୍ପୂର୍ଣ୍ଣ ଭାବେ ସଚେତନ ଅଛନ୍ତି । ରାଜ୍ୟର ଜନସାଧାରଣଙ୍କ ପାଇଁ ଗୁଣାତ୍ମକ, ପ୍ରତିରୋଧକ ଏବଂ ଆରୋଗ୍ୟକାରୀ ସ୍ୱାସ୍ଥ୍ୟସେବାର ସୁବିଧା ପ୍ରଦାନ ନିମନ୍ତେ ଯଥେଷ୍ଟ ବ୍ୟବସ୍ଥା କରାଯାଇଛି । ସ୍ୱାସ୍ଥ୍ୟସେବା କ୍ଷେତ୍ରକୁ ସୁଦୃଢ଼ କରିବା ପାଇଁ ନିର୍ଦ୍ଦିଷ୍ଟ ପଛୁଆ ଅଞ୍ଚଳଗୁଡ଼ିକରେ ସ୍ୱାସ୍ଥ୍ୟସେବା ଆବଶ୍ୟକ କରୁଥିବା ବ୍ୟକ୍ତି ଏବଂ ପଛୁଆବର୍ଗର ବ୍ୟକ୍ତିଙ୍କୁ ଭ୍ରାମ୍ୟମାଣ ସ୍ୱାସ୍ଥ୍ୟସେବା ୟୁନିଟ୍ ମାଧ୍ୟମରେ ସ୍ୱାସ୍ଥ୍ୟସେବା ଯୋଗାଇ ଦିଆଯାଉଛି । ବର୍ତ୍ତମାନ ୮ ଗୋଟି କେ.ବି.କେ. ଜିଲ୍ଲାରେ ୯୦ ଗୋଟି ଭ୍ରାମ୍ୟମାଣ ସ୍ୱାସ୍ଥ୍ୟ ୟୁନିଟ୍ କାର୍ଯ୍ୟ କରୁଅଛି ।

ଡାକ୍ତରମାନଙ୍କର ଅଭାବକୁ ପୂରଣ କରିବା ନିମନ୍ତେ ମେଡ଼ିକାଲ କଲେଜମାନଙ୍କରେ ଏମ୍.ବି.ବି.ଏସ୍. ପାଠ୍ୟକ୍ରମ ସହିତ ବି.ଡି.ଏସ୍. ପାଠ୍ୟକ୍ରମର ସ୍ଥାନ ସଂଖ୍ୟା ବୃଦ୍ଧି କରାଯାଇଛି । ଏତଦ୍‌ବ୍ୟତୀତ ଘରୋଇ ପରିଚାଳନାରେ ମେଡ଼ିକାଲ ଓ ଦନ୍ତ ଚିକିତ୍ସା ମହାବିଦ୍ୟାଳୟ ସ୍ଥାପନ କରିବା ପାଇଁ ୧୭ ଗୋଟି ସଂସ୍ଥାକୁ ଏନ୍.ଓ.ସି. ପ୍ରଦାନ କରାଯାଇଛି ।

ମ୍ୟାଲେରିଆ ଜନିତ ମୃତ୍ୟୁ କ୍ରମଶଃ ହ୍ରାସ ପାଉଛି । ଅଧିକନ୍ତୁ ମ୍ୟାଲେରିଆ ପ୍ରତିରୋଧକ ପଦକ୍ଷେପ ବ୍ୟାପକ କରାଯାଇଛି । ଜଳବାହିତ ରୋଗ ଏବଂ ହଇଜା ପରି ମହାମାରୀ ରୋକିବା ଦିଗରେ ସମସ୍ତ ସମ୍ଭାବ୍ୟ ପଦକ୍ଷେପ ନେବାକୁ ମୋ' ସରକାର ମଧ୍ୟ ପ୍ରତିଶ୍ରୁତିବଦ୍ଧ ।

ରାଜ୍ୟରେ ଏଚ୍.ଆଇ.ଭି. ସଂକ୍ରମଣକୁ ହ୍ରାସ କରିବା ପାଇଁ ଜାତୀୟ ଏଡ୍‌ସ ନିୟନ୍ତ୍ରଣ କାର୍ଯ୍ୟକ୍ରମ ସଫଳ ଭାବେ କାର୍ଯ୍ୟକାରୀ ହେଉଛି ।

ରାଜ୍ୟର ଗ୍ରାମାଞ୍ଚଳ ଲୋକମାନଙ୍କୁ ଉପଯୁକ୍ତ ସ୍ୱାସ୍ଥ୍ୟସେବା ଯୋଗାଇ ଦେବା ନିମନ୍ତେ ୧୭ ଜୁନ୍ ୨୦୦୫ ମସିହାଠାରୁ ଜାତୀୟ ଗ୍ରାମୀଣ ସ୍ୱାସ୍ଥ୍ୟ ମିଶନ୍ କାର୍ଯ୍ୟକାରୀ ହୋଇଛି । ଏନ୍.ଆର୍.ଏଚ୍.ଏମ୍. ଅଧୀନରେ 'ଆଶା' ନାମକ ଏକ ନୂତନ ଯୋଜନା ମାଧ୍ୟମରେ ଗ୍ରାମସ୍ତରରେ ସ୍ୱାସ୍ଥ୍ୟସେବା ପହଞ୍ଚାଇ ଦିଆଯାଉଛି । ବର୍ତ୍ତମାନ ୩୦ଟି ଜିଲ୍ଲାରେ ୩୪,୨୩୧ ଜଣ ଆଶାକର୍ମୀଙ୍କୁ ତାଲିମ୍ ପ୍ରଦାନ କରାଯାଇଛି । ସେହିପରି ଗ୍ରାମାଞ୍ଚଳର ଜନସାଧାରଣଙ୍କୁ ଉପଯୁକ୍ତ ସ୍ୱାସ୍ଥ୍ୟସେବା ଯୋଗାଇ ଦେବା ନିମନ୍ତେ ଗ୍ରାମ୍ୟ ସ୍ୱାସ୍ଥ୍ୟ ଯୋଜନା ଜନନୀ ସୁରକ୍ଷା ଯୋଜନା, ଆୟୁଷ, ଟୀକାକରଣ ଇତ୍ୟାଦି କାର୍ଯ୍ୟକ୍ରମ ଜାତୀୟ ଗ୍ରାମୀଣ ସ୍ୱାସ୍ଥ୍ୟ ମିଶନ ଜରିଆରେ କାର୍ଯ୍ୟକାରୀ କରାଯାଉଛି । ରୋଗୀମାନଙ୍କୁ ଟେଲି ସ୍ୱାସ୍ଥ୍ୟସେବା ଯୋଗାଇ ଦେବା ଲକ୍ଷ୍ୟରଖି ଟେଲିମେଡ଼ିସିନ୍ କାର୍ଯ୍ୟକ୍ରମ ଆରମ୍ଭ କରିବାରେ ଅଧିକ ପରାମର୍ଶ ଲୋଡୁଥିବା ସମଗ୍ର ଦେଶରେ ଓଡ଼ିଶା ହେଉଛି ଏକ ଅଗ୍ରଣୀ ରାଜ୍ୟ ।

ଦାରିଦ୍ର୍ୟ ସୀମାରେଖା ତଳେ ଥିବା ପରିବାରମାନଙ୍କୁ ରିହାତି ମୂଲ୍ୟରେ ଖାଦ୍ୟଶସ୍ୟ ଯୋଗାଇ ଦେବା ପାଇଁ ରାଜ୍ୟରେ ଏକ ବ୍ୟାପକ ବ୍ୟବସ୍ଥା ଜରିଆରେ ସାଧାରଣ ବଣ୍ଟନ ବ୍ୟବସ୍ଥା କାର୍ଯ୍ୟ କରୁଅଛି ।

ଧାନ ସଂଗ୍ରହ କ୍ଷେତ୍ରରେ ମୋ' ସରକାରଙ୍କର ପଦକ୍ଷେପଗୁଡ଼ିକ ଧାନର ଅଭାବୀ ବିକ୍ରୀକୁ ପ୍ରତିହତ କରିବାରେ ଏବଂ କୃଷକମାନଙ୍କୁ ସେମାନଙ୍କର ଉପଯୁକ୍ତ ମୂଲ୍ୟ ପ୍ରଦାନ କରିବାରେ ସହାୟକ ହୋଇଛି । ୨୦୦୭-୦୮ ଖରିଫ୍ ବିପଣନ ସମୟରେ ମୋ' ସରକାର ୨୫ ଲକ୍ଷ ମେଟ୍ରିକ୍ ଟନ୍ ଚାଉଳ ସଂଗ୍ରହର ଲକ୍ଷ୍ୟ ରଖିଛନ୍ତି । ଏହାମଧ୍ୟରୁ ୨୩ ଲକ୍ଷ ମେଟ୍ରିକ୍ ଟନ୍ ଚାଉଳ ହେବାଭଳି ଧାନ ସଂଗ୍ରହ ପାଇଁ ମୋ' ସରକାର ବିଭିନ୍ନ ସରକାରୀ ସଂସ୍ଥା ମାଧ୍ୟମରେ କୃଷକମାନଙ୍କଠାରୁ ସିଧାସଳଖ ସଂଗ୍ରହ କରିବା ନିମନ୍ତେ ଲକ୍ଷ୍ୟ ରଖିଛନ୍ତି । ଯଦ୍ୱାରା କୃଷକମାନେ ସହାୟକ ମୂଲ୍ୟ ନୀତି ନିର୍ଦ୍ଧାରଣରେ ସମ୍ପୂର୍ଣ୍ଣ ସୁବିଧା ହାସଲ କରିପାରିବେ । ଏହି ଅନୁଷ୍ଠାନଗୁଡ଼ିକୁ ସୁଦୃଢ଼ କରିବା ପାଇଁ ଧାନ ସଂଗ୍ରହ କାର୍ଯ୍ୟକ୍ରମ ସହିତ ମହିଳା ସ୍ୱୟଂ ସହାୟକ ଗୋଷ୍ଠୀ ଏବଂ ପାଣିପଞ୍ଚାୟତକୁ ସାମିଲ କରାଯାଇଛି । ଗୋଟିଏ ରାଜ୍ୟ ଖାଉଟି ବିବାଦ ସମାଧାନ ଫୋରମ୍ ଏବଂ ୩୧ ଗୋଟି ଜିଲ୍ଲା ଖାଉଟି ବିବାଦ ସମାଧାନ ଫୋରମ୍ ରାଜ୍ୟରେ କାର୍ଯ୍ୟ କରୁଅଛି । ଏହି ଫୋରମଗୁଡ଼ିକ ଅଧିକ ସକ୍ରିୟ କରିବା ନିମନ୍ତେ ଆବଶ୍ୟକୀୟ ଭିତ୍ତିଭୂମିଗୁଡ଼ିକର ବିକାଶ କରାଯାଉଛି ।

ଅଣ ସଂଗଠିତ କ୍ଷେତ୍ରରେ କାର୍ଯ୍ୟ କରୁଥିବା ବହୁ ସଂଖ୍ୟକ ଶ୍ରମିକ ସାମାଜିକ ନିରାପତ୍ତା ସୁବିଧା ପାଇଁ ମୋ' ସରକାର ନିରାପତ୍ତା, ସ୍ୱାସ୍ଥ୍ୟ, ଶିକ୍ଷା, ପରିବାର ପେନ୍‌ସନ, ଗୋଷ୍ଠୀ ବୀମାକରଣ ପରି ସୁବିଧା ଥାଇ ସାମାଜିକ ନିରାପତ୍ତା ଅଧୀନରେ କୋଠାବାଡ଼ି ଏବଂ ଅନ୍ୟାନ୍ୟ ନିର୍ମାଣ କାର୍ଯ୍ୟରେ ନିୟୋଜିତ ଶ୍ରମିକ କଲ୍ୟାଣ ଯୋଜନା କାର୍ଯ୍ୟକାରୀ କରିଛନ୍ତି । ବିପଦପୂର୍ଣ୍ଣ କାର୍ଯ୍ୟରେ ଥିବା ଶିଶୁ ଶ୍ରମିକମାନଙ୍କର ନିୟୋଜନକୁ ନିୟନ୍ତ୍ରଣ କରିବା ଉଦ୍ଦେଶ୍ୟରେ ଜିଲ୍ଲାପାଳଙ୍କ ଅଧକ୍ଷତାରେ ପ୍ରତି ଜିଲ୍ଲାରେ ଜିଲ୍ଲାସ୍ତରୀୟ ଟାସ୍କଫୋର୍ସ ଗଠନ କରାଯାଇଛି । ଏହି ଟାସ୍କଫୋର୍ସଗୁଡ଼ିକ ଶିଶୁ ଶ୍ରମିକ ଚିହ୍ନଟ, ସେମାନଙ୍କର ମୁକ୍ତି ଏବଂ ଥଇଥାନ ପାଇଁ ବ୍ୟାପକ ଚଢ଼ାଉ ଏବଂ ତଦାରଖ କରୁଛନ୍ତି । ମୋ' ସରକାର ୨୦୦୮ ମସିହା ଏପ୍ରିଲ୍ ପହିଲାରୁ କେନ୍ଦ୍ରୀୟ ପ୍ରାୟୋଜିତ ''ରାଷ୍ଟ୍ରୀୟ ସ୍ୱାସ୍ଥ୍ୟ ବୀମା ଯୋଜନା'' କାର୍ଯ୍ୟକାରୀ କରିବାକୁ ଯାଉଛନ୍ତି ।

ଦୁରାରୋଗ୍ୟ ବ୍ୟାଧିର ଚିକିତ୍ସା ପାଇଁ ଦୁଃସ୍ଥ ଆବେଦନକାରୀଙ୍କୁ ମୁଖ୍ୟମନ୍ତ୍ରୀଙ୍କ ରିଲିଫ୍ ପାଣ୍ଠିରୁ ଆର୍ଥିକ ସହାୟତା ଯୋଗାଇ ଦିଆଯାଉଛି । ଏତଦ୍‌ବ୍ୟତୀତ ଗୁରୁତର ଦୁର୍ଘଟଣା, ଉଗ୍ରବାଦ ହିଂସା ଏବଂ ପ୍ରାକୃତିକ ବିପର୍ଯ୍ୟୟ ଦ୍ୱାରା କ୍ଷତିଗ୍ରସ୍ତ ବ୍ୟକ୍ତିମାନଙ୍କୁ ମଧ୍ୟ ଆର୍ଥିକ ସହାୟତା ଯୋଗାଇ ଦିଆଯାଉଛି । ରାଜ୍ୟର କୋଣ ଅନୁକୋଣରେ ଥିବା ଅଭାବୀ ଏବଂ ପୀଡ଼ିତ ବ୍ୟକ୍ତିବିଶେଷଙ୍କ ସହାୟତା ପାଇଁ ମୁଖ୍ୟମନ୍ତ୍ରୀଙ୍କ ରିଲିଫ୍ ପାଣ୍ଠି ନିୟମାବଳୀରେ ସଂଶୋଧନ କରାଯାଇଛି ।

ରାଜସ୍ୱ ପ୍ରଶାସନକୁ ଲୋକମାନଙ୍କର ନିକଟତର କରିବା ପାଇଁ ଏବଂ ଇ-ପ୍ରଶାସନ ପଦକ୍ଷେପର ଏକ ଅଂଶ ସ୍ୱରୂପ ଉନ୍ନତ ସେବାକୁ ନିଶ୍ଚିତ କରିବା ଲକ୍ଷ୍ୟରେ ମୋ' ସରକାର ରାଜ୍ୟର ବିଭିନ୍ନ ତହସିଲରେ ଥିବା ଜମିଜମା ସମ୍ପର୍କିତ କାଗଜପତ୍ରର କମ୍ପ୍ୟୁଟରୀକରଣ କରିଛନ୍ତି । ନାଗରିକମାନେ ଦାବୀ ମୁତାବକ ତହସିଲ କମ୍ପ୍ୟୁଟର କେନ୍ଦ୍ର ଜରିଆରେ ଏସବୁ କାଗଜପତ୍ର ପାଇପାରିବେ । ରାଜ୍ୟର ସମସ୍ତ ଜମି ସ୍ୱତ୍ୱାଧିକାରୀ ପରିବାରବର୍ଗଙ୍କୁ ଜମି ପାଶବୁକ୍ ବଣ୍ଟନ ପାଇଁ ମୋ' ସରକାର ପଦକ୍ଷେପ ଗ୍ରହଣ କରିଛନ୍ତି । ଏହି ଜମି ପାଶବୁକ୍ ଜାତି, ଆୟ, ଆବାସିକ, ଉତ୍ତରାଧିକାରୀ ଏବଂ ବି.ପି.ଏଲ୍. ପ୍ରଭୃତି ଉଦ୍ଦେଶ୍ୟରେ ପ୍ରମାଣପତ୍ର ରୂପେ ବ୍ୟବହାର କରାଯାଇପାରିବ । ୨୦୦୭ ମସିହା ନଭେମ୍ବର ମାସ ଶେଷ ସୁଦ୍ଧା ୧୩,୯୫,୦୧୧ ସଂଖ୍ୟକ ଜମି ପାଶବୁକ୍ ବଣ୍ଟନ କରାଯାଇଛି ।

୨୦୦୫-୦୬ରୁ ୨୦୦୭-୦୮ ବର୍ଷର ଅବଧି ମଧ୍ୟରେ ଚିହ୍ନଟ ହୋଇଥିବା ୨,୪୯,୩୩୪ ଗୋଟି ବାସହୀନ ପରିବାରଙ୍କୁ ୪ ଡେସିମିଲି ପରିମିତ ଘରଡିହ ଯୋଗାଇ ଦେବାକୁ ମୋ' ସରକାର ପ୍ରତିଶ୍ରୁତିବଦ୍ଧ । ଏହି କାର୍ଯ୍ୟକ୍ରମ ଅଧୀନରେ ୨୦୦୭ ମସିହା ଅକ୍ଟୋବର ମାସ ଶେଷସୁଦ୍ଧା ୧ ଲକ୍ଷ ୬୪ ହଜାର ୪୨୮ ଗୋଟି ଭୂମିହୀନ ପରିବାରଙ୍କୁ ଘରଡିହ ଯୋଗାଇ ଦିଆଯାଇଛି ।

ଗରିବମାନଙ୍କର ଜମି ଅଧିକାରକୁ ସୁରକ୍ଷା କରିବା ପାଇଁ ମୋ' ସରକାର 'ମୋ ଜମି ମୋ ଡିହ' ନାମକ ଏକ ଯୋଜନା ଆରମ୍ଭ କରିଛନ୍ତି । ଏହି କାର୍ଯ୍ୟକ୍ରମର ପ୍ରଥମ ପର୍ଯ୍ୟାୟରେ ଗତ ସେପ୍ଟେମ୍ବର ଏବଂ ଅକ୍ଟୋବର ମାସ ମଧ୍ୟରେ ରାଜ୍ୟର ପ୍ରତ୍ୟେକ ତହସିଲରେ 'ମୋ ଜମି ମୋ ଡିହ' ମେଳା ଆୟୋଜନ କରାଯାଇଛି ।

ମୋ' ସରକାର ଏକ ପୁନର୍ବାସ ଓ ଥଇଥାନ ନୀତି ପ୍ରଣୟନ କରିଛନ୍ତି, ଯାହାକି ଦେଶରେ ସର୍ବୋତ୍ତମ ଭାବେ ବିବେଚିତ ହେଉଛି । ଏକ ନିର୍ଦ୍ଦିଷ୍ଟ ସମୟସୀମା ମଧ୍ୟରେ ଏହି ପୁନର୍ବାସ ଓ ଥଇଥାନ ଯୋଜନାର ସଠିକ୍ ରୂପାୟନ ପାଇଁ ପ୍ରକଳ୍ପ ଦ୍ୱାରା କ୍ଷତିଗ୍ରସ୍ତ ପରିବାର ଏବଂ ପ୍ରକଳ୍ପ କର୍ତ୍ତୃପକ୍ଷଙ୍କ ମଧ୍ୟରେ ଏକ ଫଳପ୍ରଦ ଆଲୋଚନାର ଭିତ୍ତିଭୂମି ଯୋଗାଇ ଦେବା ସହ କ୍ଷତିଗ୍ରସ୍ତ ପରିବାର ଯେପରି ସ୍ୱଇଚ୍ଛାରେ ବିସ୍ଥାପିତ ହୋଇପାରିବେ ସେଥିପାଇଁ ଏହି ନୀତିରେ ବ୍ୟବସ୍ଥା କରାଯାଇଛି । ଏହି ନୀତି ଅଂଶୀଦାରୀ ପ୍ରକ୍ରିୟା ଜରିଆରେ ପରିବେଶ ସୁରକ୍ଷା ନିଶ୍ଚିତ କରିବା ସହ କାର୍ଯ୍ୟକ୍ରମର ରୂପାୟନ, ତଦାରଖ, ଅଭିଯୋଗ ଶୁଣାଣି ଓ ବିବାଦ ସମାଧାନର ସୁବିଧା ମଧ୍ୟ ଯୋଗାଇ ଦେବ ।

୨୦୦୭ ମସିହା ଡିସେମ୍ବର ମାସର ଶେଷ ଭାଗରେ କନ୍ଧମାଳ ଜିଲ୍ଲାରେ ଏକ ସାମ୍ପ୍ରଦାୟିକ ପରିସ୍ଥିତି ଉପୁଜି ଥିଲା । ପ୍ରଶାସନ ଦ୍ୱାରା ବିହିତ ପଦକ୍ଷେପ ଗ୍ରହଣ କରାଯାଇ ଏହାକୁ ଯତ୍ନ ସହକାରେ ଏବଂ ସମ୍ବେଦନପୂର୍ବକ ସମାଧାନ କରାଯାଇଥିଲା । ଯାହାଫଳରେ ଏହାମାତ୍ର ୪ ଦିନ ମଧ୍ୟରେ ନିୟନ୍ତ୍ରଣକୁ ଆସି ପାରିଥିଲା । ଜିଲ୍ଲାର ସମ୍ବେଦନଶୀଳ ଅଞ୍ଚଳରେ ପ୍ରଶାସନ ଦ୍ୱାରା ଶାନ୍ତି କମିଟି ଗଠନ କରାଯାଇ ଏବଂ କ୍ଷତିଗ୍ରସ୍ତଙ୍କ ସହ ନିରବଚ୍ଛିନ୍ନ ଆଲୋଚନା ମାଧ୍ୟମରେ କନ୍ଧମାଳ ଜିଲ୍ଲାରେ ସ୍ୱାଭାବିକ ଅବସ୍ଥା ଫେରାଇ ଅଣାଯାଇଛି ।

କଟକ ଏବଂ ଭୁବନେଶ୍ୱର ଦ୍ୱୈତ ନଗରୀରେ ଅପରାଧ ନିୟନ୍ତ୍ରଣ କରିବା ପାଇଁ ୨୦୦୮ ମସିହା ଜାନୁଆରୀ ପହିଲାରୁ ଓଡ଼ିଶା ସହରାଞ୍ଚଳ ଆରକ୍ଷୀ ଅଧିନିୟମ, ୨୦୦୩ କାର୍ଯ୍ୟକାରୀ କରାଯାଇଛି । ଆରକ୍ଷୀ ବଳର ଆଧୁନିକୀକରଣ ଏବଂ ଦୁର୍ବଳ ପ୍ରତିଷ୍ଠାନଗୁଡ଼ିକୁ ସୁଦୃଢ଼ୀକରଣ ପାଇଁ ମୋ' ସରକାର ସର୍ବାଧିକ ଗୁରୁତ୍ୱ ଆରୋପ କରିଆସୁଛନ୍ତି । ଜେଲ୍‌ରେ ବର୍ଦ୍ଧିତ କଏଦୀମାନଙ୍କ ସଂଖ୍ୟାକୁ ଦୃଷ୍ଟିରେ ରଖି ୧୫ ଗୋଟି ନୂତନ ଉପକାରାଗାର, ୩୫ ଗୋଟି ଅତିରିକ୍ତ ୱାର୍ଡ଼, ୩୬୫ଟି ପକ୍କା ପାଇଖାନା ଏବଂ ୨୬ଟି ଜଳଯୋଗାଣ ବ୍ୟବସ୍ଥାର ସୁବିଧା କରିଛନ୍ତି । ୨୪ଟି ଜେଲ୍‌ର ପ୍ରାଚୀର ସୁଦୃଢ଼ୀକରଣ କରାଯାଇଛି ।

ଅନ୍ୟ ରାଜ୍ୟ ତୁଳନାରେ ଆମ ରାଜ୍ୟରେ ଉଗ୍ରବାଦୀ ହିଂସା ଯଥେଷ୍ଟ କମ୍ । ତଥାପି ନିରବଚ୍ଛିନ୍ନ ଚଢ଼ାଉ ଏବଂ କୋମ୍ବିଂ ଅପରେସନ୍ ଜରିଆରେ ଉଗ୍ରବାଦୀ କାର୍ଯ୍ୟକଳାପକୁ ଦମନ କରିବା ପାଇଁ ମୋ' ସରକାର ପଦକ୍ଷେପ ଗ୍ରହଣ କରିଛନ୍ତି । ମୋ' ସରକାର ଦ୍ୱାରା ଘୋଷିତ ଆତ୍ମସମର୍ପଣ ନୀତିର ଫଳାଫଳ ସ୍ୱରୂପ ଅନେକ ଦୁର୍ଦ୍ଧର୍ଷ ମାଓବାଦୀ ପ୍ରଶାସନ ନିକଟରେ ଆତ୍ମସମର୍ପଣ କରିଛନ୍ତି ।

ଗତ ଦଶନ୍ଧିରେ ରାଜ୍ୟର ସହରାଞ୍ଚଳରେ ୩୦ ଶତାଂଶ ଅଭିବୃଦ୍ଧି ଘଟିଛି । ନଗରାଞ୍ଚଳରେ ଅଧିକ ନାଗରିକ ସୁବିଧା ଓ ଭିତ୍ତିଭୂମିର ସୁବିଧା ପାଇଁ କ୍ରମବର୍ଦ୍ଧିଷ୍ଣୁ ଦାବୀ ସରକାରଙ୍କ ପାଇଁ ଏକ ଆହ୍ୱାନ ସୃଷ୍ଟି କରିଛି । ଏହି ଆହ୍ୱାନକୁ ଗ୍ରହଣ କରି ଲୋକଙ୍କୁ ଅଧିକ ସୁବିଧା ସୁଯୋଗ ଯୋଗାଇ ଦେବାକୁ ମୋ' ସରକାର ପ୍ରତିଶ୍ରୁତିବଦ୍ଧ ।

ଗତ ୨୦୦୭-୦୮ରେ ବିଭିନ୍ନ ନଗରାଞ୍ଚଳ ସ୍ଥାନୀୟ ସଂସ୍ଥା ଦ୍ୱାରା ୧୪୮ ଗୋଟି ସହରାଞ୍ଚଳ ପାନୀୟ ଯୋଗାଣ ବ୍ୟବସ୍ଥାର ଉନ୍ନୟନ / କ୍ଷମତାବୃଦ୍ଧି / ସଂପ୍ରସାରଣ କାର୍ଯ୍ୟ ହାତକୁ ନିଆଯାଇଛି । କେତେକ ଅଞ୍ଚଳରେ ଆର୍.ଏଲ୍.ଟି.ଏ.ପି. ଯୋଜନାରେ ୧୧ଟି ଜଳଯୋଗାଣ ପ୍ରକଳ୍ପ ହାତକୁ ନିଆଯାଇଛି । ତନ୍ମଧ୍ୟରୁ ବଲାଙ୍ଗୀର, ଜୟପୁର ଓ ନବରଙ୍ଗପୁର ଟାଉନରେ ୩ଟି ପ୍ରକଳ୍ପ ପୂର୍ଣ୍ଣାଙ୍ଗ ହୋଇଥିଲାବେଳେ ଅବଶିଷ୍ଟ ପ୍ରକଳ୍ପଗୁଡ଼ିକର କାର୍ଯ୍ୟ ବିଭିନ୍ନ ପର୍ଯ୍ୟାୟରେ ରହିଛି ।

ତ୍ୱରିତ ସହରାଞ୍ଚଳ ଜଳଯୋଗାଣ କାର୍ଯ୍ୟକ୍ରମ (ଏ.ୟୁ.ଡବ୍ଲ୍ୟୁ.ଏସ୍.ପି.)ରେ ୩୪ ଗୋଟି ଜଳଯୋଗାଣ ପ୍ରକଳ୍ପର କାମ ହାତକୁ ନିଆଯାଇଛି । ଏଥିମଧ୍ୟରୁ ୧୭ଟି ପ୍ରକଳ୍ପ ଶେଷ ହୋଇଥିଲାବେଳେ ୭ଟିର କାର୍ଯ୍ୟ ଚାଲୁରହିଛି, ୨ଟି ପ୍ରକଳ୍ପ ଆଂଶିକଭାବେ କାର୍ଯ୍ୟକାରୀ ହୋଇଛି ଓ ଅବଶିଷ୍ଟ ୮ ଗୋଟି ପ୍ରକଳ୍ପଗୁଡ଼ିକର ନିର୍ମାଣ ବିଭିନ୍ନ ପର୍ଯ୍ୟାୟରେ ରହିଛି ।

ଭାରତ ସରକାର ଭୁବନେଶ୍ୱର ଓ ପୁରୀକୁ ଜବାହରଲାଲ ନେହରୁ ଜାତୀୟ ସହରାଞ୍ଚଳ ନବୀକରଣ ମିଶନ (ଜେ.ଏନ୍.ଏନ୍.ୟୁ.ଆର୍.ଏମ୍.)ରେ ଅନ୍ତର୍ଭୁକ୍ତ କରିଛନ୍ତି । ଉଭୟ ସହର ପାଇଁ ନଗର ଉନ୍ନୟନ ଯୋଜନା ଅନୁମୋଦିତ ହୋଇଛି । ଜେ.ଏନ୍.ଏନ୍.ୟୁ.ଆର୍.ଏମ୍.ରେ ଅନ୍ତର୍ଗତ ନଗରାଞ୍ଚଳ ଭିତ୍ତିଭୂମି ପ୍ରଶାସନ ଅଧୀନରେ ଭୁବନେଶ୍ୱର ସହରର ସମନ୍ୱିତ ସୋରେଜ୍ ପ୍ରକଳ୍ପ ପାଇଁ ୭୫୪ କୋଟି ଟଙ୍କା ମଂଜୁର ହୋଇଥିଲାବେଳେ ୪୯୮.୯୧ କୋଟି ଟଙ୍କା ଜେ.ଏନ୍.ଏନ୍.ୟୁ.ଆର୍.ଏମ୍. ବହନ କରିବ ।

ସହରାଞ୍ଚଳ ଦରିଦ୍ର ଜନସାଧାରଣଙ୍କ ମୌଳିକ ସେବାଯୋଜନା (ବି.ଏସ୍.ୟୁ.ପି.) ଅଧୀନରେ ଜେ.ଏନ୍.ଏନ୍.ୟୁ.ଆର୍.ଏମ୍. ଯୋଜନା ଅନୁଯାୟୀ ଭୁବନେଶ୍ୱର ଓ ପୁରୀର ୪ଟି ବସ୍ତି ଅଞ୍ଚଳର ବିକାଶ ପାଇଁ ୪,୩୫୫.୫୮ ଲକ୍ଷ ଟଙ୍କା ମଂଜୁର ହୋଇଛି । ଏହାଦ୍ୱାରା ନଗରାଞ୍ଚଳରେ ୨୦୦୮ ଗରିବ ପରିବାର ଉପକୃତ ହେବେ ।

କ୍ଷୁଦ୍ର ଓ ମଧ୍ୟମ ସହରାଞ୍ଚଳ ଭିତ୍ତିଭୂମି ଉନ୍ନୟନ (ୟୁ.ଆଇ.ଡି.ଏସ୍.ଏସ୍.ଏମ୍.ଟି.) ଯୋଜନାରେ ୩୪ଟି ମ୍ୟୁନିସିପାଲିଟି, ୮ଟି ଜିଲ୍ଲା ସଦରମହକୁମାରେ ଥିବା ବିଜ୍ଞାପିତ ଅଞ୍ଚଳ ପରିଷଦ ଓ କଟକ ମହାନଗର ନିଗମକୁ ଅନ୍ତର୍ଭୁକ୍ତ କରାଯାଇଛି । ୭ଟି ଟାଉନ୍ ପାଇଁ ଭାରତ ସରକାର ୧୪୪୦୬.୪୬ ଲକ୍ଷ ଟଙ୍କାର ୧୧ଟି ପ୍ରକଳ୍ପ ମଂଜୁର କରିଛନ୍ତି । ଅନ୍ୟ ମ୍ୟୁନିସିପାଲିଟି ଓ ଜିଲ୍ଲା ସଦର ମହକୁମାରେ ବିଜ୍ଞାପିତ ଅଞ୍ଚଳ ପରିଷଦ ପାଇଁ ଉଦ୍ଦିଷ୍ଟ ପ୍ରକଳ୍ପଗୁଡ଼ିକୁ ୨୦୦୭-୦୮ରେ ମଂଜୁର ମିଳିବା ପାଇଁ ଅପେକ୍ଷାରେ ରହିଛି ।

ଆନ୍ତର୍ଜାତିକ ସହଯୋଗ ପାଇଁ ଉଦ୍ଦିଷ୍ଟ ଜାପାନ ବ୍ୟାଙ୍କ (ଜେ.ବି.ଆଇ.ସି.)ରୁ ୭୫,୭୪୪.୦୦ ଲକ୍ଷ ଟଙ୍କାର ଋଣ ସହାୟତା ନିଆଯାଇ କଟକର ସମନ୍ୱିତ ସ୍ୱରେଜ୍ ଓ ଡ୍ରେନେଜ୍ ପ୍ରକଳ୍ପ କାମ ହାତକୁ ନିଆଯାଇଛି ।

ଭୁବନେଶ୍ୱର, କଟକ, ଚୌଦ୍ୱାର, ଖୋର୍ଦ୍ଧା ଓ ଜଟଣୀର ନଗରାଞ୍ଚଳକୁ ନେଇ ବୃହତ୍ତର କଟକ-ଭୁବନେଶ୍ୱର ଅର୍ବାନ କମ୍ପ୍ଲେକ୍ସ ପାଇଁ ଆଗାମୀ ଯୋଜନା ଓ ଭିଜନ ୨୦୩୦ ଆଇ.ଆଇ.ଟି., ଖଡ଼ଗପୁର ଦ୍ୱାରା ପ୍ରସ୍ତୁତ କରାଯାଇଛି । ଭୁବନେଶ୍ୱର ଉନ୍ନୟନ ଯୋଜନା ଓ କଟକ ଉନ୍ନୟନ ଯୋଜନା ପାଇଁ ବିସ୍ତୃତ ଯୋଜନା ପ୍ରସ୍ତୁତ କରାଯାଇଛି ।

ରାଉରକେଲା, ସମ୍ବଲପୁର, ବ୍ରହ୍ମପୁର, ପୁରୀ, ପାରାଦୀପ, ଅନୁଗୋଳ-ତାଳଚେର, କଳିଙ୍ଗନଗର ଓ ଝାରସୁଗୁଡ଼ାର ଶିଳ୍ପାଞ୍ଚଳମାନଙ୍କ ବିସ୍ତୃତ ଉନ୍ନୟନ ଯୋଜନା ଓ ମାଷ୍ଟର ପ୍ଲାନ ପ୍ରସ୍ତୁତି ମଧ୍ୟ ମୋ' ସରକାର ହାତକୁ ନେଇଛନ୍ତି ।

ପ୍ରଶାସନର କଡ଼ା ନଜରରେ ମଦ ପ୍ରସ୍ତୁତି, ଡିଷ୍ଟିଲେସନ ଓ ବିକ୍ରୀବଟା ପାଇଁ ଏକ ନୀତି ମୋ' ସରକାର ପ୍ରଣୟନ କରିଛନ୍ତି । ଏହା ଅତିରିକ୍ତ ସମ୍ବଳ ସଂଗ୍ରହ ସହିତ ମଦର ବେଆଇନ କାରବାରକୁ ରୋକିବାକୁ ସାହାଯ୍ୟ କରିପାରିଛି ।

ମଦର ବେଆଇନ କାରବାରକୁ ରୋକିବା ପାଇଁ ୨୦୦୬-୦୭ ମସିହାରେ ବିହାର ଓ ଓଡ଼ିଶା ଅବକାରୀ ଆଇନ, ୧୯୧୫କୁ ସଂଶୋଧନ କରାଯାଇ ଅବକାରୀ ଅପରାଧ ଜନିତ ଦଣ୍ଡବିଧାନକୁ ଅଧିକ କଠୋର କରାଯାଇଛି । ଅବକାରୀ ଏନ୍‌ଫୋର୍ସମେଣ୍ଟ ବ୍ୟବସ୍ଥାକୁ କଡ଼ାକଡ଼ି କରାଯାଇଛି । ସନ୍ଦିଗ୍ଧ ବେଆଇନ ମଦ ପ୍ରସ୍ତୁତି କେନ୍ଦ୍ର ଓ ନକଲି ମଦ ପ୍ରସ୍ତୁତି ଓ କାରବାର ଉପରେ ତୀକ୍ଷ୍ଣ ଦୃଷ୍ଟି ରଖିବାପାଇଁ ଜିଲ୍ଲାପାଳ ଓ ଏସ୍.ପି.ମାନଙ୍କୁ ନିର୍ଦ୍ଦେଶ ଦିଆଯାଇଛି । ବେଆଇନ ମଦ ପ୍ରସ୍ତୁତି, ଯୋଗାଣ ଓ ବିକ୍ରୀ କାରବାର ରୋକିବା ପାଇଁ ଏନ୍‌ଫୋର୍ସମେଣ୍ଟ ବ୍ୟବସ୍ଥାକୁ ଅଧିକ ଜୋରଦାର୍ କରିବା ଜିଲ୍ଲାସ୍ତର ପୋଲିସ ଓ ଅବକାରୀ କର୍ମଚାରୀମାନଙ୍କ ଦ୍ୱାରା ମିଳିତ ଚଢ଼ାଉ କରାଯାଇଛି ।

୨୦୦୭-୦୮ରେ ମୋ' ସରକାର କଟକ, ବାଲେଶ୍ୱର, ଜୟପୁର, ବଲାଙ୍ଗୀର ଓ ଭୁବନେଶ୍ୱରରେ ୫ଟି ଅତିରିକ୍ତ ଜିଲ୍ଲା ଓ ଦୌରା ଜଜ୍ ତଥା ସ୍ୱତନ୍ତ୍ର ଜଜ୍ (ଭିଜିଲାନ୍ସ) କୋର୍ଟ ପ୍ରତିଷ୍ଠା କରିଛନ୍ତି । ଏହାଛଡ଼ା ଯାଜପୁର ରୋଡ଼ରେ ଏକ ସିଭିଲ ଜଜ୍ (ସିନିୟର ଡିଭିଜନ) ଓ ଚଣ୍ଡିଖୋଲଠାରେ ଏକ ସିଭିଲ ଜଜ୍ (ଜୁନିୟର ଡିଭିଜନ) କୋର୍ଟ ମଧ ପ୍ରତିଷ୍ଠା କରାଯାଇଛି ।

ସୂଚନା ଅଧିକାର ଅଧିନିୟମର ସଠିକ୍ କାର୍ଯ୍ୟକାରିତା ଜରିଆରେ ମୋ' ସରକାର ଅଧିକ ସ୍ୱଚ୍ଛତା ଓ ଉତ୍ତରଦାୟିତ୍ୱ ଭାବକୁ ବଜାୟ ରଖିବା ପାଇଁ ପ୍ରତିଶ୍ରୁତିବଦ୍ଧ । ପ୍ରତ୍ୟେକଙ୍କୁ ତୁରନ୍ତ ନ୍ୟାୟ ପ୍ରଦାନ ପାଇଁ ମୋ' ସରକାର ପ୍ରତିଶ୍ରୁତିବଦ୍ଧ । ସେଥିପାଇଁ ୨୦୦୭-୦୮ ମସିହାରେ ଓଡ଼ିଶା ରାଜ୍ୟ ଲିଗାଲ ସର୍ଭିସ୍‌ର କର୍ତ୍ତୃପକ୍ଷଙ୍କ ଦ୍ୱାରା ଆୟୋଜିତ ୪୭୭ଟି ଲୋକ ଅଦାଲତ ମାଧ୍ୟମରେ ଜିଲ୍ଲା ଲିଗାଲ ସର୍ଭିସେସ୍ କର୍ତ୍ତୃପକ୍ଷ ଓ ତାଲୁକ ଲିଗାଲ ସର୍ଭିସେସ କମିଟିଙ୍କ ଦ୍ୱାରା ମୋଟ ୧,୦୧,୮୮୦ଟି ମାମଲାର ଫଏସଲା କରାଯାଇଛି ।

ଗ୍ରାମାଞ୍ଚଳର ଜନସାଧାରଣଙ୍କ ମଧ୍ୟରେ ଆଇନଗତ ସଚେତନତା ଜାଗ୍ରତ କରିବା ପାଇଁ ୨୦୦୭-୦୮ରେ ୪୮୩ ଗୋଟି ଆଇନଗତ ସଚେତନତା/ସାକ୍ଷରତା ଶିବିର ଆୟୋଜନ କରାଯାଇଛି ।

ରାଜ୍ୟରେ କ୍ରୀଡ଼ାର ବିକାଶ ପାଇଁ ମୋ' ସରକାର ଆଗ୍ରହ ପ୍ରକାଶ କରିଛନ୍ତି । ନଭେମ୍ବର ୨୦୦୭ରେ ଗୋଆରେ ଅନୁଷ୍ଠିତ ସର୍ବଭାରତୀୟ ଗ୍ରାମ୍ୟ ସ୍ପୋର୍ଟସ ଟୁର୍ଣ୍ଣାମେଣ୍ଟରେ ରାଜ୍ୟ ଗ୍ରାମାଞ୍ଚଳ ଫୁଟବଲ୍ ଟିମ୍ ଚାମ୍ପିଅନ୍ ହୋଇଛି । ଗତବର୍ଷ ଶ୍ରୀଲଙ୍କାରେ ଅନୁଷ୍ଠିତ ଏସ୍.ଏ.ଏଫ୍. ଜୁନିୟର ଆଥ୍ଲେଟିକ୍ ମିଟ୍‌ରେ ଭୁବନେଶ୍ୱର ସ୍ପୋର୍ଟସ୍ ହଷ୍ଟେଲର ଶ୍ରାବଣୀ ନନ୍ଦ ଓ ରେଣୁବାଳା ମହାନ୍ତ ପଦକ ଜିତିଛନ୍ତି । ଜାତୀୟ ହକିଦଳର ସଫଳତାରେ ଉଲ୍ଲେଖନୀୟ ଅବଦାନ ଓଡ଼ିଶାର ହକି ଖେଳାଳୀଙ୍କୁ ଗୌରବ ଆଣି ଦେଇଛି ।

ସଙ୍ଗୀତ ଓ ନୃତ୍ୟରେ ଶାସ୍ତ୍ରୀୟ ଏବଂ ମନ୍ଦିର କଳାରେ ଓଡ଼ିଶାର ସାଂସ୍କୃତିକ ଐତିହ୍ୟ ପ୍ରତିଫଳିତ । ଦ୍ୱାଦଶ ଅର୍ଥ କମିଶନଙ୍କ ଅନୁଦାନରେ ମୋ' ସରକାର ମନ୍ଦିର ପ୍ରାଚୀନ କଳାର ସଂରକ୍ଷଣ କାମ ହାତକୁ ନେଇଛନ୍ତି । ଓଡ଼ିଶୀ ନୃତ୍ୟ ଓ ସଂଗୀତର ବିକାଶ ପାଇଁ ଭୁବନେଶ୍ୱରରେ ପ୍ରତିବର୍ଷ ଓଡ଼ିଶୀ ନୃତ୍ୟ ମହୋତ୍ସବର ଆୟୋଜନ କରିବାକୁ ସଂସ୍କୃତି ବିଭାଗ ନିଷ୍ପତ୍ତି ନେଇଛନ୍ତି । ଚଣ୍ଡୀଗଡ଼ ଓ ନୂଆଦିଲ୍ଲୀରେ ଓଡ଼ିଶୀ ଉତ୍ସବ ଓ ଓଡ଼ିଶୀ ସନ୍ଧ୍ୟା କାର୍ଯ୍ୟକ୍ରମ ଅନୁଷ୍ଠିତ ହୋଇଯାଇଛି । ଅଧିକ ଦୁଃସ୍ଥ କଳାକାରମାନଙ୍କୁ ସାମାଜିକ ସୁରକ୍ଷା ଯୋଗାଇ ଦେବାପାଇଁ ମୋ' ସରକାର ଚଳିତବର୍ଷ ପେନ୍‌ସନ୍‌ଧାରୀଙ୍କ ସଂଖ୍ୟା ଆହୁରି ୫୦୦ ବୃଦ୍ଧି କରିବାକୁ ସ୍ଥିର କରିଛନ୍ତି । ପ୍ରଚଳିତ ମାସିକ ୫୦୦ ଟଙ୍କା ପେନ୍‌ସନ୍‌କୁ ବୃଦ୍ଧି କରିବା ପାଇଁ ମଧ ମୋ' ସରକାର ଚିନ୍ତା କରୁଛନ୍ତି ।

ଜନସାଧାରଣଙ୍କ ସକ୍ରିୟ ସହଯୋଗରେ ୨୦୦୭-୦୮ ମସିହାରେ ବିଭିନ୍ନ ଯୋଜନା ମାଧ୍ୟମରେ ରାଜ୍ୟର ୫୭,୭୨୯ ହେକ୍ଟରରେ ବନୀକରଣ କାର୍ଯ୍ୟକ୍ରମ ହାତକୁ ନିଆଯାଇଛି । ଲୋକଙ୍କ ଭିତରେ ବିଶେଷ କରି ଅନୁସୂଚିତ ଜନଜାତି ଲୋକଙ୍କ ଭିତରେ ଯୁଗ୍ମ ଜଙ୍ଗଲ ପରିଚାଳନା ଯୋଜନାରେ ସଂଶ୍ଳିଷ୍ଟ ହେବା ଦ୍ୱାରା 'ଜଙ୍ଗଲ ମୋର' ଭାବନା ସୃଷ୍ଟି ହୋଇଛି । ବର୍ତ୍ତମାନ ରାଜ୍ୟରେ ୧୦,୫୦୪ ଗୋଟି ବନ ସଂରକ୍ଷଣ ସମିତି ଗଠିତ ହୋଇଛି । ଏମାନେ ଜଙ୍ଗଲ ସୁରକ୍ଷା ଓ ନୂତନ ଜଙ୍ଗଲ ସୃଷ୍ଟି ପାଇଁ ସକ୍ରିୟ ଭାବରେ କାମ କରୁଛନ୍ତି । ୨୦୦୭-୦୮ ବର୍ଷରେ ବନୀକରଣ କାର୍ଯ୍ୟକ୍ରମରେ ୫୦୦ଟି ବିକେନ୍ଦ୍ରୀକୃତ ନର୍ସରୀରୁ ୫୦ ଲକ୍ଷ ଚାରା ଉତ୍ପାଦନ କରାଯାଇ ୫୦୦ଟି ବଛାବଛା ବନସଂରକ୍ଷଣ ସମିତି / ସ୍ୱୟଂ ସହାୟକ ଗୋଷ୍ଠୀ / ବ୍ୟକ୍ତିବିଶେଷଙ୍କ ଜରିଆରେ ବିକ୍ରୀ କରାଯିବ ।

ବାୟୁ ଓ ଜଳ ପ୍ରଦୂଷଣ ଉପରେ ନିରନ୍ତର ନଜର ରଖାଯାଇଛି । 'ଜଳ ଆଇନ', 'ବାୟୁ ଆଇନ' ଓ 'ବାୟୋମେଡ଼ିକାଲ ୱେଷ୍ଟ ନିୟମାବଳୀ' ଅନୁଯାୟୀ ଯେକୌଣସି ଆଦେଶର ଶୁଣାଣି ପାଇଁ ରାଜ୍ୟ ସରକାର ତିନିଗୋଟି ଅପିଲ କର୍ତ୍ତୃପକ୍ଷ ଗଠନ କରିଛନ୍ତି । ଜିଲ୍ଲାପାଳମାନଙ୍କ ଅଧ୍ୟକ୍ଷତାରେ ୩୦ଟି ଜିଲ୍ଲା ପରିବେଶ ସମିତି ଗଠନ କରାଯାଇଛି ।

ଆଞ୍ଚଳିକ ବୈଷମ୍ୟ ଦୂରୀକରଣ ଉପରେ ରାଜ୍ୟ ସରକାରଙ୍କ ଦୃଷ୍ଟି କେନ୍ଦ୍ରିତ ରହିଛି । ଆଞ୍ଚଳିକ ବୈଷମ୍ୟ ଦୂରୀକରଣ ପାଇଁ ଅନେକଗୁଡ଼ିଏ କାର୍ଯ୍ୟକ୍ରମ ଆରମ୍ଭ ହୋଇଛି । ସେଗୁଡ଼ିକ ମଧ୍ୟରେ -

(କ) କେତେକ ଜିଲ୍ଲା ପାଇଁ ସଂଶୋଧିତ ଦୀର୍ଘମିଆଦି କ୍ରିୟାଭିମୁଖୀ ଯୋଜନା

(ଖ) ପଛୁଆ ଅଞ୍ଚଳ ମଂଜୁରୀପାଣ୍ଠିରେ ୧୯ଟି ଜିଲ୍ଲାର ଅନ୍ତର୍ଭୁକ୍ତ

(ଗ) କେ.ବି.କେ. ଜିଲ୍ଲା ପାଇଁ ବିଜୁ କେ.ବି.କେ. ଯୋଜନା

(ଘ) ପଛୁଆ ଅଞ୍ଚଳ ମଂଜୁରୀ ପାଣ୍ଠିରୁ ବାଦ ପଡ଼ିଥିବା ଜିଲ୍ଲାମାନଙ୍କ ପାଇଁ ଗୋପବନ୍ଧୁ ଗ୍ରାମୀଣ ଯୋଜନା

(ଙ) ବିଜୁ ଗ୍ରାମଜ୍ୟୋତି ଯୋଜନା

(ଚ) ପଶ୍ଚିମ ଓଡ଼ିଶା ବିକାଶ ପରିଷଦ ଦ୍ୱାରା ବିଶେଷ ଭିତ୍ତିଭୂମିର ସୁବିଧା

(ଛ) ସମ୍ବିଧାନର ୨୭୫(୧) ଧାରା ଅନୁଯାୟୀ ଓ ଆଦିବାସୀ ଉପଯୋଜନା ଅନୁଯାୟୀ ଅନୁସୂଚିତ ଜନଜାତି ଅଞ୍ଚଳରେ ଭିତ୍ତିଭୂମିର ବିକାଶ ଅନ୍ତର୍ଭୁକ୍ତ ।

ଗତ କିଛି ବର୍ଷ ଧରି ମୋ' ସରକାର ବ୍ୟୟ ସମୀକରଣ ଓ ରାଜସ୍ୱ ଅଭିବୃଦ୍ଧି ପାଇଁ ଆର୍ଥିକ ସଂସ୍କାର ମାଧ୍ୟମରେ ରାଜ୍ୟର ଆର୍ଥିକ ଅବସ୍ଥାରେ ଉନ୍ନତି ଆଣିବାକୁ ନାନାବିଧ ପଦକ୍ଷେପ ଗ୍ରହଣ କରିଛନ୍ତି । ଫଳରେ, ୨୦୦୫-୦୬ ଆର୍ଥିକ ବର୍ଷ ଶେଷରେ ୪୮୧.୧୯ କୋଟି ଟଙ୍କା ରାଜସ୍ୱ ବଳକା ସୃଷ୍ଟି ହୋଇପାରିଛି । ପରବର୍ତ୍ତୀ ବର୍ଷମାନଙ୍କରେ ମଧ୍ୟ ଏହି ଅବସ୍ଥା ଅବ୍ୟାହତ ରହିଛି । ୨୦୦୦-୦୧ରୁ ୨୦୦୬-୦୭ ମଧ୍ୟରେ ରାଜ୍ୟର ନିଜସ୍ୱ ଟିକସ ଓ ଅଣଟିକସ ରାଜସ୍ୱରେ ଆଖିଦୃଶିଆ ଅଭିବୃଦ୍ଧି ଘଟିଛି ।

କିନ୍ତୁ ଏ କ୍ଷେତ୍ରରେ ଆତ୍ମସନ୍ତୋଷର ସ୍ଥାନ ନାହିଁ । ଋଣହାରକୁ ଠିକ୍ ବାଟରେ ପରିଚାଳନା କରିବା ରାଜ୍ୟ ସରକାରଙ୍କ ପାଇଁ ଏକ ଧାରାବାହିକ ସମସ୍ୟା ଭାବରେ ରହିଆସିଛି । ଦ୍ୱାଦଶ ଅର୍ଥ କମିଶନଙ୍କ ଦ୍ୱାରା ଶତକଡ଼ା ୨୮ ଭାଗ ସୁପାରିଶ କରାଯାଇଥିବା ସ୍ଥଳେ ଆମର ୨୦୦୬-୦୭ ବର୍ଷରେ ଋଣ ଜି.ଏସ୍.ଡି.ପି. (୧୯୯୯-୨୦୦୦ ମୂଲ୍ୟରେ) ହାର ଶତକଡ଼ା ୪୪.୮୭ ଭାଗ ରହିଛି । ମୋ' ସରକାର ଋଣଭାର କମାଇବା ପାଇଁ ସଂକଳ୍ପବଦ୍ଧ, ଫଳରେ ଋଣଭାର ବୃଦ୍ଧି କମିବାରେ ଲାଗିଛି । ଉଦାହରଣ ସ୍ୱରୂପ- ୨୦୦୩-୦୪ରେ ମୋଟ ଋଣ ପରିମାଣ ୩୮୨୨.୭୭ କୋଟି ଟଙ୍କା ଥିଲାବେଳେ ୨୦୦୬-୦୭ରେ ଓଡ଼ିଶାର ଏ.ଜି.ଙ୍କ ପ୍ରଦତ୍ତ ତଥ୍ୟ ଅନୁଯାୟୀ ଏହା ୭୯୩.୦୬ କୋଟି ଟଙ୍କାକୁ ଖସି ଆସିଛି । ଏହା ମୋ' ସରକାରଙ୍କର ଏକ ଉଲ୍ଲେଖନୀୟ ସଫଳତା ।

ସାଧାରଣ ଲୋକଙ୍କ ଆଶା ଆକାଂକ୍ଷା ପୂରଣ ପାଇଁ ଏକ ଜନମଂଗଳ ରାଜ୍ୟ ଭାବରେ ମୋ' ସରକାର ସଂକଳ୍ପବଦ୍ଧ । କିନ୍ତୁ ଅଣଉତ୍ପାଦକ ଖର୍ଚ୍ଚ କାଟ ସହିତ ଭିତ୍ତିଭୂମିର ବିକାଶ ପାଇଁ ପୁଞ୍ଜି ବିନିଯୋଗ ବଢ଼ାଇବାକୁ ପଡ଼ିବ । ଯୋଜନା ଅଟକଳ ବୃଦ୍ଧି ଦ୍ୱାରା ଉନ୍ନୟନ ଓ କଲ୍ୟାଣମୂଳକ କାର୍ଯ୍ୟକ୍ରମକୁ ଅଧିକ କରିବା ପାଇଁ ପର୍ଯ୍ୟାପ୍ତ ସୁଯୋଗ ରହିଛି ।

ଏହି ଅବସରରେ ମୋ' ସରକାରଙ୍କ ଗୁରୁତ୍ୱପୂର୍ଣ୍ଣ ନୀତି ଓ କାଯ୍ୟକ୍ରମର ସଂକ୍ଷେପ ବିବରଣୀ ଦେବାପାଇଁ ମୁଁ ଉଦ୍ୟମ କରିଛି । ରାଜ୍ୟର ଜନସାଧାରଣଙ୍କର କଲ୍ୟାଣ ନିମନ୍ତେ ଗ୍ରହଣ କରାଯାଇଥିବା ସମସ୍ତ କାର୍ଯ୍ୟକ୍ରମ ଓ ଦେଇଥିବା ପ୍ରତିଶ୍ରୁତି ପୂରଣ କରିବା ଦିଗରେ ମୋ' ସରକାର ଯଥାସାଧ୍ୟ ଉଦ୍ୟମ କରୁଛନ୍ତି । ଆମର ଚରମ ଲକ୍ଷ୍ୟ ହେଉଛି ଏକ ନ୍ୟାୟପୂର୍ଣ୍ଣ, ଗଣତାନ୍ତ୍ରିକ ଓ ଧର୍ମ ନିରପେକ୍ଷ ସମାଜ ଗଠନ ଏବଂ ଅଭାବ, ବିଭେଦ ଓ ସକଳ ପ୍ରକାର ସଂକୀର୍ଣ୍ଣତା ଓ ଗୋଷ୍ଠୀଗତ ଭାବନାରୁ ମୁକ୍ତ ଏକ ଦୃଢ଼ ଆର୍ଥିକ ବ୍ୟବସ୍ଥା । ଏହି ପବିତ୍ର ଗୃହର ସମସ୍ତ ଶ୍ରମ ଏ ଦିଗରେ ବିନିଯୋଗ ହେବ ବୋଲି ମୁଁ ନିଃସନ୍ଦେହ ।

ଅବଶେଷରେ ଆପଣମାନଙ୍କର ବିତର୍କ ଓ ଏହି ଅଧିବେଶନର କାର୍ଯ୍ୟକ୍ରମଗୁଡ଼ିକୁ ସୂଚାରୁରୂପେ ତୁଲାଇବା ସହ ଏକ ସଫଳ ବଜେଟ୍ ଅଧିବେଶନ ନିମନ୍ତେ ଆପଣମାନଙ୍କୁ ଶୁଭେଚ୍ଛା ଜ୍ଞାପନ କରୁଛି । ଓଡ଼ିଶା ବିଧାନସଭା ଅନ୍ୟ ବିଧାନସଭାଗୁଡ଼ିକ ପାଇଁ ସୁଦୃଢ଼ ଗଣତନ୍ତ୍ରର ଏକ ଉଜ୍ଜ୍ୱଳ ଉଦାହରଣ ହେଉ ।

ଏଥିସହିତ ମୁଁ ଆପଣମାନଙ୍କର ବିଚାର ଆଲୋଚନାର ସଫଳତା କାମନା କରୁଛି ।

ଜୟହିନ୍ଦ୍

# ୨୦୦୮-୦୯ ଆର୍ଥିକ ବର୍ଷର ବଜେଟ ଓଡ଼ିଶା ବିଧାନସଭାରେ ଆଗତ କରି ମାନ୍ୟବର ଅର୍ଥ ମନ୍ତ୍ରୀ ଶ୍ରୀ ପ୍ରଫୁଲ୍ଲଚନ୍ଦ୍ର ଘଡାଇଙ୍କ ଅଭିଭାଷଣ



ମାନ୍ୟବର ବାଚସ୍ପତି ମହୋଦୟ !

ଏହି ପବିତ୍ର ଗୃହରେ ୨୦୦୮-୦୯ ଆର୍ଥିକ ବର୍ଷ ପାଇଁ ବଜେଟ୍ ଆଗତ କରିବାକୁ ମୋତେ ସୁଯୋଗ ଦେଇଥିବାରୁ ମୁଁ ପ୍ରଥମେ ଆପଣଙ୍କୁ ଏବଂ ମାନ୍ୟବର ମୁଖ୍ୟମନ୍ତ୍ରୀଙ୍କୁ ମୋର କୃତଜ୍ଞତା ଜଣାଉଛି । ବିଗତ ବର୍ଷଗୁଡ଼ିକରେ ମୁଁ ଏହି ଗୃହର ମାନ୍ୟବର ବିରୋଧୀଦଳ ନେତା ଓ ମାନ୍ୟବର ସଦସ୍ୟ ଏବଂ ସଦସ୍ୟାମାନଙ୍କର ଅକୁଣ୍ଠ ସାହାଯ୍ୟ ସହଯୋଗ ପାଇଥିବା ଯୋଗୁଁ ଆପଣଙ୍କ ଜରିଆରେ ସେମାନଙ୍କୁ ମଧ୍ୟ ମୋର ଆନ୍ତରିକ କୃତଜ୍ଞତା ଜଣାଉଛି । ଅର୍ଥମନ୍ତ୍ରୀ ହିସାବରେ କ୍ରମାଗତ ଭାବେ ପଞ୍ଚମ ବର୍ଷ ପାଇଁ ବଜେଟ୍ ଉପସ୍ଥାପନ କରିବା ମୋର ସୌଭାଗ୍ୟ । ବିଗତ ଦିନରେ ବିପର୍ଯ୍ୟସ୍ତ ଆର୍ଥିକ ପରିସ୍ଥିତିକୁ ସୁଧାରିବା ଆମ ସରକାରଙ୍କ ପକ୍ଷରେ ଏକ ଆହ୍ୱାନ ଥିଲା । ଏହି ଆହ୍ୱାନକୁ ଆମେ ନମ୍ରତାର ସହିତ ଗ୍ରହଣ କରିଥିଲୁ । ଆଗାମୀ ବର୍ଷରେ ମଧ୍ୟ ଓଡ଼ିଶାର ଆର୍ଥିକ ସ୍ଥିତିକୁ ଅଧିକ ଶୃଙ୍ଖଳିତ ମାର୍ଗରେ ଆଗେଇନେବାକୁ ଆପଣମାନଙ୍କର ସାହାଯ୍ୟ ଓ ସହଯୋଗ ପୂର୍ବଭଳି ନିଶ୍ଚୟ ମିଳିବ, ଏ ଆଶା ଓ ବିଶ୍ୱାସ ମୋର ରହିଛି ।


ଓଡିଶା ସରକାର

ଓଡିଶା ବିଧାନ ସଭାରେ
୨୦୦୮-୦୯ ଆର୍ଥିକ ବର୍ଷ ପାଇଁ
ବଜେଟ୍ ଉପସ୍ଥାପନ କରି
ଶ୍ରୀ ପ୍ରଫୁଲ୍ଲ ଚନ୍ଦ୍ର ଘଡାଇ,
ଅର୍ଥ ମନ୍ତ୍ରୀଙ୍କର ଅଭିଭାଷଣ

୧୬ ଫେବୃଆରୀ, ୨୦୦୮

ବିଗତ ବର୍ଷଗୁଡ଼ିକରେ ରାଜ୍ୟର ଆର୍ଥିକ ପରିଚାଳନାରେ ଯେଉଁ ଉନ୍ନତି ସାଧିତ ହୋଇଛି, ଦାରିଦ୍ର୍ୟ ଦୂରୀକରଣ ଓ ବିଭିନ୍ନ ଉନ୍ନୟନମୂଳକ କାର୍ଯ୍ୟ ପାଇଁ ଯେଉଁ ପଦକ୍ଷେପ ନିଆଯାଇଛି ଏବଂ ଆଗାମୀ ଦିନରେ ସରକାର ଯେଉଁ ଯୋଜନା କାର୍ଯ୍ୟକାରୀ କରିବେ ତାହା ମହାମହିମ ରାଜ୍ୟପାଳଙ୍କ ଅଭିଭାଷଣରେ ବିସ୍ତୃତଭାବେ ବର୍ଣ୍ଣନା କରାଯାଇଛି । ମୁଁ ସେସବୁର ପୁନରାବୃତ୍ତି ନକରି ୨୦୦୮-୦୯ ଆର୍ଥିକ ବର୍ଷର ବଜେଟ୍ ଅଟକଳ ସମ୍ପର୍କରେ ଆଲୋକପାତ କରୁଅଛି ।

ଆମର ସମ୍ବଳ ସୀମିତ, କିନ୍ତୁ ଆବଶ୍ୟକତା ଅନେକ । ରାଜ୍ୟର ପ୍ରଗତି ଅଧିକ ସମ୍ବଳ ସଂଗ୍ରହ ଏବଂ ସଦୁପଯୋଗ ଉପରେ ନିର୍ଭର କରିଥାଏ । ଏହି ପରିପ୍ରେକ୍ଷୀରେ ଓଡ଼ିଶାର ଜନସାଧାରଣଙ୍କ ଆଶା ଆକାଂକ୍ଷାକୁ ପୂରଣ କରି ରାଜ୍ୟକୁ ପ୍ରଗତି ପଥରେ ଆଗେଇ ନେବା ପାଇଁ ୨୦୦୮-୦୯ ବଜେଟରେ ସୀମିତ ସମ୍ବଳ ମଧ୍ୟରେ କେତେଗୁଡ଼ିଏ ଗୁରୁତ୍ୱପୂର୍ଣ୍ଣ ଦିଗ ପ୍ରତି ଦୃଷ୍ଟି ଦିଆଯାଇଛି । ସେଗୁଡ଼ିକ ହେଲା-

- ଓଡ଼ିଶା ବିତ୍ତୀୟ ଉତ୍ତରଦାୟୀ ଓ ବଜେଟ ପରିଚାଳନା ଆଇନର ଧାରା ୫ରେ ସୂଚିତ ଆର୍ଥିକ ଲକ୍ଷ୍ୟ ହାସଲ
- ଦ୍ୱାଦଶ ଅର୍ଥ କମିଶନଙ୍କର ସୁପାରିଶ
- ଅଗ୍ରାଧିକାର ଭିତ୍ତିରେ ସୀମିତ ସମ୍ବଳର ବିନିଯୋଗ
- ଅଧିକ କେନ୍ଦ୍ରୀୟ ସହାୟତା ହାସଲ ପାଇଁ ରାଜ୍ୟ ସରକାରଙ୍କ ଅଂଶ ଧନ ବୃଦ୍ଧି

- ଅଣଯୋଜନା ରାଜସ୍ୱ ଖର୍ଚ୍ଚକୁ ଯଥାସମ୍ଭବ ସୀମିତ ରଖିବା
- ଭିତ୍ତିଭୂମି ଉନ୍ନୟନ ପାଇଁ ଅଧିକ ପୁଞ୍ଜି ବିନିଯୋଗ
- ସ୍ୱାସ୍ଥ୍ୟ ସେବାର ଭିତ୍ତିଭୂମି ଓ ମାନର ଉନ୍ନତି ସାଧନ
- ବିଦ୍ୟାଳୟ, ଉଚ୍ଚଶିକ୍ଷା ଏବଂ ବୈଷୟିକ ଶିକ୍ଷାର ବିକାଶ
- କୃଷି ଓ ଆନୁଷଙ୍ଗିକ କ୍ଷେତ୍ରର ବିକାଶ
- ଶିଳ୍ପ, କୁଟୀର ଓ ହସ୍ତଶିଳ୍ପର ବିକାଶ
- ଜଳସେଚନ ସଂପ୍ରସାରଣ ଓ ଉନ୍ନତି
- ସହରାଞ୍ଚଳ ଓ ଗ୍ରାମାଞ୍ଚଳର ଜଳଯୋଗାଣ ଓ ପରିମଳ ବ୍ୟବସ୍ଥାର ଉନ୍ନତି
- ଗ୍ରାମାଞ୍ଚଳର ବିକାଶ
- ସୂଚନା ଓ ପ୍ରଯୁକ୍ତି କ୍ଷେତ୍ରର ବିକାଶ
- ସମ୍ବଳର ସଦୁପଯୋଗ ଓ ଆତ୍ମନିଯୁକ୍ତି ସୁଯୋଗ
- ରାଜ୍ୟରେ ଖଣିଜ ଶିଳ୍ପର ବିକାଶ
- ଗ୍ରାମ୍ୟ ବିଦ୍ୟୁତିକରଣ
- ଆବଶ୍ୟକତା ଅନୁଯାୟୀ ବ୍ୟୟବରାଦ କରି ଅସଂପୂର୍ଣ୍ଣ ପ୍ରକଳ୍ପଗୁଡ଼ିକୁ ଯଥାସମ୍ଭବ ଶୀଘ୍ର ସଂପୂର୍ଣ୍ଣ କରିବା
- ବୃଦ୍ଧ ଓ ବୃଦ୍ଧା, ଭିନ୍ନକ୍ଷମ, ମହିଳା, ଅନୁସୂଚିତ ଜାତି ଓ ଜନଜାତି ତଥା ଅନ୍ୟାନ୍ୟ ଆର୍ଥିକ ଦୁର୍ବଳ ଶ୍ରେଣୀର ଲୋକମାନଙ୍କ ଉନ୍ନତି ଓ ସାମାଜିକ ସୁରକ୍ଷା ପାଇଁ ଅଧିକ ବ୍ୟୟବରାଦ
- ସରକାରୀ କୋଠାବାଡ଼ି, ରାସ୍ତାଘାଟ, ଜଳଯୋଗାଣ ପ୍ରକଳ୍ପ ଇତ୍ୟାଦିର ରକ୍ଷଣାବେକ୍ଷଣ ପାଇଁ ଅଧିକ ବ୍ୟୟବରାଦ

ମୁଁ ଏହି ପବିତ୍ର ଗୃହର ମାନ୍ୟବର ସଦସ୍ୟ ସଦସ୍ୟାମାନଙ୍କର ଅବଗତି ନିମନ୍ତେ ଏକଥା ସୂଚାଇ ଦେବାକୁ ଚାହେଁ ଯେ ରାଜ୍ୟ ସରକାର ବିଗତ କିଛିବର୍ଷ ହେଲା ଆର୍ଥିକ ପରିସ୍ଥିତିରେ ଉନ୍ନତି ପାଇଁ ବ୍ୟୟ ସଂଗତିକରଣ (Expenditure Rationalisation) ଓ ରାଜସ୍ୱ ବୃଦ୍ଧି ପଦକ୍ଷେପ ସମେତ ଅନେକଗୁଡ଼ିଏ ଆର୍ଥିକ ସଂଶୋଧନ କାର୍ଯ୍ୟକ୍ରମ ହାତକୁ ନେଇଛନ୍ତି । ଫଳସ୍ୱରୂପ ୨୦୦୫-୦୬ ଆର୍ଥିକ ବର୍ଷ ଶେଷରେ ଦୀର୍ଘ ୨୨ ବର୍ଷର ବ୍ୟବଧାନ ପରେ ପ୍ରଥମଥର ପାଇଁ ଆମ ରାଜ୍ୟର ରାଜସ୍ୱ ବଳକା ୪୮୧.୧୯ କୋଟି ଟଙ୍କା ହେଲା । ଏହି ରାଜସ୍ୱ ବଳକା ଦୃଶ୍ୟପଟ ପରବର୍ତ୍ତୀ ବର୍ଷରେ ମଧ ଜାରି ରହିଛି । କେବଳ ସେତିକି ନୁହେଁ, ୨୦୦୬-୦୭ ଆର୍ଥିକ ବର୍ଷରେ ଆମ ରାଜ୍ୟ ପ୍ରଥମଥର ପାଇଁ ବିତ୍ତୀୟ ବଳକା ରାଜ୍ୟରେ ପରିଣତ ହେଲା । କହିବା ବାହୁଲ୍ୟ ଯେ ଏହି ବର୍ଷ ଆମ ରାଜ୍ୟର ବିତ୍ତୀୟ ବଳକା ପରିମାଣ ୮୨୩.୧୮ କୋଟି ଟଙ୍କା ଅଟେ । ଏଠାରେ ଉଲ୍ଲେଖଯୋଗ୍ୟ ଯେ ୨୦୦୫-୦୬ ଆର୍ଥିକ ବର୍ଷରେ ରାଜସ୍ୱ ଖର୍ଚ୍ଚ ୧୩୬୦୩.୫୨ କୋଟି ଟଙ୍କା ହୋଇଥିବାବେଳେ ୨୦୦୬-୦୭ ଆର୍ଥିକ ବର୍ଷ ବେଳକୁ ଏହା ବୃଦ୍ଧି ପାଇ ୧୫୭୭୨.୦୨ କୋଟି ଟଙ୍କା ହୋଇଅଛି । ଅନ୍ୟପକ୍ଷରେ ୨୦୦୫-୦୬ ଆର୍ଥିକ ବର୍ଷରେ ରାଜସ୍ୱ ପ୍ରାପ୍ତି ୧୪୦୮୪.୭୧ କୋଟି ଟଙ୍କା ଥିବାବେଳେ ୨୦୦୬-୦୭ ଆର୍ଥିକ ବର୍ଷରେ ଏହା ବୃଦ୍ଧି ପାଇ ୧୮୦୩୨.୬୨ କୋଟି ଟଙ୍କା ହୋଇଅଛି । ୨୦୦୫-୦୬ ଆର୍ଥିକ ବର୍ଷରେ ରାଜ୍ୟର ନିଜସ୍ୱ ଟିକସ ରାଜସ୍ୱ ପରିମାଣ ୫୦୦୨.୨୮ କୋଟି ଟଙ୍କା ଥିବାବେଳେ ୨୦୦୬-୦୭ ଆର୍ଥିକ ବର୍ଷ ବେଳକୁ ଏହା ବୃଦ୍ଧି ପାଇ ୬୦୬୫.୦୬ କୋଟି ଟଙ୍କାରେ ପହଞ୍ଚିଛି । ଏହି ଅଭିବୃଦ୍ଧି ହାର ୨୧.୨୫ ପ୍ରତିଶତ ଅଟେ । ସେହିପରି ରାଜ୍ୟ ସରକାରଙ୍କର ତତ୍ପରତା ହେତୁ ନିଜ ଅଣଟିକସ ରାଜସ୍ୱ କ୍ଷେତ୍ରରେ ମଧ ଆଖିଦୃଶିଆ ଅଭିବୃଦ୍ଧି ଘଟିଛି । ୨୦୦୫-୦୬ ଆର୍ଥିକ ବର୍ଷରେ ରାଜ୍ୟର ନିଜ ଅଣଟିକସ ରାଜସ୍ୱ ପରିମାଣ ୧୫୩୧.୯୧ କୋଟି ଟଙ୍କା ଥିବାବେଳେ ୨୦୦୬-୦୭ ଆର୍ଥିକ ବର୍ଷରେ ଏହା ୧୮୨୪.୩୨ କୋଟି ଟଙ୍କାକୁ ବୃଦ୍ଧି ପାଇଥିଲା । ଏହି ଅଭିବୃଦ୍ଧି ହାର ୧୯.୦୯ ପ୍ରତିଶତ ଅଟେ । ଏତଦ୍‌ବ୍ୟତୀତ କେନ୍ଦ୍ର ସରକାରଙ୍କଠାରୁ ଋଣ ଛାଡ଼ ବାବଦକୁ ମିଳିଥିବା ପ୍ରାପ୍ୟ ୭୬୩.୮୦ ଟଙ୍କାକୁ ହିସାବକୁ ନେଲେ ମୋଟ ଅଣଟିକସ ରାଜସ୍ୱ ୨୫୮୮.୧୨ କୋଟି ଟଙ୍କା ହେବ ।

ସରକାରଙ୍କର ଆନ୍ତରିକ ଉଦ୍ୟମ ଫଳରେ ରାଜସ୍ୱ ଆଦାୟ ଓ ବ୍ୟୟ ସଂଗତିକରଣ କ୍ଷେତ୍ରରେ ଫଳପ୍ରଦ ପଦକ୍ଷେପ ଦ୍ୱାରା ରାଜ୍ୟର ଆର୍ଥିକ ପରିସ୍ଥିତିରେ ଯଥେଷ୍ଟ ଉନ୍ନତି ଆସିଛି । ଫଳତଃ ତା.୦୧.୧୨.୨୦୦୪ରିଖଠାରୁ ସରକାର ଗୋଟିଏ ଟଙ୍କା ମଧ୍ୟ ସାଧନୋପାୟ ଅଗ୍ରୀମ (Ways & Means Advance) ଆଣିନାହାନ୍ତି କିମ୍ବା ରିଜର୍ଭ ବ୍ୟାଙ୍କରୁ ଅଧିକ ଟଙ୍କା ଉଠାଣ (Over Draft) କରିନାହାନ୍ତି । ଉନ୍ନୟନ କାର୍ଯ୍ୟରେ ନିୟୋଜିତ ଥିବା ବିଭାଗଗୁଡ଼ିକୁ ଆବଶ୍ୟକତା ଅନୁଯାୟୀ ପ୍ରତ୍ୟୟ ପତ୍ର (Letter of Credit) ଦିଆଯାଉଅଛି ।

ଆର୍ଥିକ କ୍ଷେତ୍ରରେ ଉନ୍ନତି ହେତୁ ଆମର ପୁଞ୍ଜି ଖର୍ଚ୍ଚ (Capital Expenditure) ମଧ୍ୟ ବଢ଼ିବାରେ ଲାଗିଛି । ୨୦୦୫-୦୬ ଆର୍ଥିକ ବର୍ଷରେ ପୁଞ୍ଜି ଖର୍ଚ୍ଚ ପରିମାଣ ୧୦୩୮.୦୬ କୋଟି ଟଙ୍କା ଥିବାବେଳେ ୨୦୦୬-୦୭ ମସିହା ବେଳକୁ ଏହା ବଢ଼ି ୧୪୫୧.୪୭ କୋଟି ଟଙ୍କାରେ ପହଞ୍ଚିଥିଲା । ସେହିପରି ୨୦୦୭-୦୮ ଆର୍ଥିକ ବର୍ଷର ସଂଶୋଧିତ ଅଟକଳ ଅନୁସାରେ ଏହି ପୁଞ୍ଜି ଖର୍ଚ୍ଚ ପରିମାଣ ୨୭୪୦.୩୮ କୋଟି ଟଙ୍କା ଥିବାବେଳେ ୨୦୦୮-୦୯ ବଜେଟ ଆକଳନ ଅନୁସାରେ ୩୦୧୯.୬୩ କୋଟି ଟଙ୍କା ଅଟେ ।

୨୦୦୬-୦୭ ଆର୍ଥିକ ବର୍ଷରେ ରାଜ୍ୟ ଯୋଜନା ପାଇଁ ମୂଳ ବଜେଟ ବ୍ୟୟ ବରାଦ ୩୫୦୦ କୋଟି ଟଙ୍କା ଥିବାବେଳେ ସଂଶୋଧିତ ଅଟକଳରେ ୩୬୦୦ କୋଟି ଟଙ୍କାକୁ ବୃଦ୍ଧି କରାଯାଇଥିଲା । ୨୦୦୭-୦୮ ଆର୍ଥିକ ବର୍ଷ ପାଇଁ ଯୋଜନା ଅଟକଳକୁ ୫୧୦୫ କୋଟି ଟଙ୍କାକୁ ବୃଦ୍ଧି କରାଯାଇଥିଲା ଏବଂ ସଂଶୋଧିତ ଅଟକଳ ଅନୁସାରେ ଏହା ୫୫୨୦ କୋଟି ଟଙ୍କା ଅଟେ । ସବୁଠାରୁ ବଡ଼ କଥା ହେଉଛି ଆଗରୁ ନିଟ୍ ଋଣ ପରିମାଣ ଅଧିକ ଥିଲେ ସୁଦ୍ଧା ରାଜ୍ୟ ଯୋଜନା ଅଟକଳ ୨୫୦୦ କୋଟି ଟଙ୍କାରୁ ୩୦୦୦ କୋଟି ଟଙ୍କା ମଧ୍ୟରେ ସୀମିତ ରହୁଥିଲା । କିନ୍ତୁ ବର୍ତ୍ତମାନ ଯୋଜନା କଳେବର ଯଥେଷ୍ଟ ପରିମାଣରେ ବୃଦ୍ଧି ପାଇଥିଲେ ମଧ୍ୟ ନିଟ୍ ଋଣ ପରିମାଣ ସେହି ପରିମାଣରେ ବୃଦ୍ଧି ହୋଇନାହିଁ । ଉଦାହରଣ ସ୍ୱରୂପ ୨୦୦୩-୦୪ ଆର୍ଥିକ ବର୍ଷରେ ୩୨୦୦.୦୦ କୋଟି ଟଙ୍କାର ରାଜ୍ୟ ଯୋଜନା ପାଇଁ ୨୪୬୩.୯୩ କୋଟି ଟଙ୍କା ନିଟ୍ ଋଣ କରାଯାଇଥିଲା ବେଳେ ୨୦୦୮-୦୯ ଆର୍ଥିକ ବର୍ଷରେ ୭୧୦୦ କୋଟି ଟଙ୍କାର ରାଜ୍ୟ ଯୋଜନା ପାଇଁ ୨୭୦୦.୧୧ କୋଟି ଟଙ୍କା ନିଟ୍ ଋଣ ଆକଳନ କରାଯାଇଛି । ଯୋଜନା କମିଶନ ଉପାଧ୍ୟକ୍ଷଙ୍କ ସହ ମାନ୍ୟବର ମୁଖ୍ୟମନ୍ତ୍ରୀଙ୍କ ଆଲୋଚନା ପରେ ରାଜ୍ୟ ଯୋଜନା ଅଟକଳ ସ୍ଥିରୀକୃତ ହୋଇଥାଏ । କିନ୍ତୁ ଅଦ୍ୟାବଧି ଏଥିପାଇଁ ଆଲୋଚନା ହୋଇନଥିବାରୁ ବିଭିନ୍ନ ଯୋଜନାର ଆବଶ୍ୟକତାକୁ ଆଖି ଆଗରେ ରଖି ୨୦୦୮-୦୯ ଆର୍ଥିକ ବର୍ଷ ପାଇଁ ଯୋଜନା ବ୍ୟୟ ଅଟକଳକୁ ୭୧୦୦ କୋଟି ଟଙ୍କା ରଖାଯାଇଛି । ପୂର୍ବବର୍ଷ ତୁଳନାରେ ଏହି ବର୍ଷର ଯୋଜନା ଅଟକଳ ପ୍ରାୟ ୩୯ ପ୍ରତିଶତ ବୃଦ୍ଧି ହୋଇଛି । ଯୋଜନା କଳେବରର ଏପରି ବୃଦ୍ଧି ବିଶେଷ ଭାବରେ ଆମ ରାଜ୍ୟର ଆର୍ଥିକ କ୍ଷେତ୍ରରେ ଢାଞ୍ଚାଗତ ପରିବର୍ତ୍ତନ ଓ ସୁପରିଚାଳନା ହେତୁ ସମ୍ଭବ ହୋଇପାରିଛି । ଏଥିପାଇଁ ସମସ୍ତଙ୍କର ସହଯୋଗ ମିଳିଥିବାରୁ ମୁଁ କୃତଜ୍ଞତା ଜଣାଉଛି ।

ଜନସାଧାରଣଙ୍କର କ୍ରମବର୍ଦ୍ଧିଷ୍ଣୁ ଆଶା ଓ ଆକାଂକ୍ଷାକୁ ଆଖି ଆଗରେ ରଖି ଆମ ସରକାର ୨୦୦୮-୦୯ ବଜେଟରେ ବ୍ୟୟବରାଦ କରିଛନ୍ତି । ୨୦୦୭-୦୮ ଆର୍ଥିକ ବର୍ଷର ମୂଳ ବଜେଟରେ ରାଜ୍ୟ ଯୋଜନା, କେନ୍ଦ୍ର ଯୋଜନା, କେନ୍ଦ୍ରୀୟ ପ୍ରବର୍ତ୍ତିତ ଯୋଜନା ଓ ଅଣଯୋଜନା ପାଇଁ ଯଥାକ୍ରମେ ୪୬୨୩.୩୪ କୋଟି ଟଙ୍କା, ୫୪୯.୧୩ କୋଟି ଟଙ୍କା, ୮୨୧.୮୫ କୋଟି ଟଙ୍କା ଓ ୧୭୫୧୭.୨୮ କୋଟି ଟଙ୍କା ବ୍ୟୟବରାଦ ହୋଇଥିବାବେଳେ ୨୦୦୮-୦୯ ବଜେଟରେ ଏଥିପାଇଁ ଯଥାକ୍ରମେ ୬୫୮୧.୮୮ କୋଟି ଟଙ୍କା, ୫୩୮.୯୫ କୋଟି ଟଙ୍କା, ୧୨୦୪.୩୭ କୋଟି ଟଙ୍କା ଓ ୧୯୬୨୩.୨୯ କୋଟି ଟଙ୍କାକୁ ବୃଦ୍ଧି କରାଯାଇଛି ।

ରାଜ୍ୟବାସୀଙ୍କର ବିଭିନ୍ନ ଆବଶ୍ୟକତାକୁ ଆଖି ଆଗରେ ରଖି ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକଙ୍କ ନେତୃତ୍ୱରେ ଗଠିତ ଲୋକପ୍ରିୟ ସରକାର ରାଜ୍ୟର ବିକାଶ ପାଇଁ ଏବଂ ଜନସାଧାରଣଙ୍କର କଲ୍ୟାଣ ପାଇଁ ଅଗ୍ରାଧିକାର ଭିତ୍ତିରେ ବ୍ୟୟବରାଦ କରିଛନ୍ତି । ଗରିବ ଓ ସମାଜର ନିମ୍ନବର୍ଗର ଲୋକଙ୍କର ଆର୍ଥିକ ଓ ସାମାଜିକ ଉନ୍ନତି ପାଇଁ ଆମ ସରକାର ଅଙ୍ଗୀକାରବଦ୍ଧ । ସୀମିତ ସମ୍ବଳ ସତ୍ତ୍ୱେ ଆମ ସରକାର ନିଜସ୍ୱ ସମ୍ବଳରୁ 'ମୋ କୁଡ଼ିଆ ଯୋଜନା', ୩ ଲକ୍ଷ ଅତିରିକ୍ତ ହିତାଧିକାରୀଙ୍କୁ 'ମଧୁବାବୁ ପେନ୍‌ସନ୍ ଯୋଜନା'ରେ ସାମିଲ, ଆଦିବାସୀ ଓ ଅନଗ୍ରସର ଅଞ୍ଚଳରେ ଭ୍ରାମ୍ୟମାଣ ସ୍ୱାସ୍ଥ୍ୟ ୟୁନିଟ୍ ପ୍ରଚଳନ, ହୀରାକୁଦ ସେଚ ଅଞ୍ଚଳର ଉନ୍ନତି, ୧ ଲକ୍ଷ ସ୍ୱୟଂ ସହାୟିକା ଗୋଷ୍ଠୀକୁ ଆର୍ଥିକ ସହାୟତା, ସାଧାରଣ ବଣ୍ଟନ ପ୍ରକ୍ରିୟାରେ ଗରୀବ ଶ୍ରେଣୀର ଲୋକଙ୍କ ପାଇଁ ଚାଉଳ ଯୋଗାଣ ଦରରେ ରିହାତି (Subsidy), 'ଜଳନିଧି', ଏଡ଼ସ୍ ଚିହ୍ନଟ ପାଇଁ ଯନ୍ତ୍ରପାତି ଯୋଗାଣ, ପ୍ରାକ୍ ମାଟ୍ରିକ୍ ବୃତ୍ତି ୨୦ ଟଙ୍କାରୁ ୧୦୦ ଟଙ୍କାକୁ ବୃଦ୍ଧି, ଉଚ୍ଚଶିକ୍ଷା ବିଭାଗରେ ବୃତ୍ତିଗତ ଶିକ୍ଷା ପାଇଁ (ଇଞ୍ଜିନିୟରିଂ/ଡାକ୍ତରୀ/ଏମ୍.ବି.ଏ./ଏମ୍.ସି.ଏ.) ୧୦୦୦୦ ଛାତ୍ରଛାତ୍ରୀଙ୍କୁ ପ୍ରତ୍ୟେକ ବାର୍ଷିକ ୧୦,୦୦୦ ଟଙ୍କା ବୃତ୍ତି ପ୍ରଦାନ, ଭିତ୍ତିଭୂମି ଉନ୍ନୟନ, ପ୍ରାଚୀନ ଓ ଐତିହ୍ୟ ସମ୍ପନ୍ନ କୀର୍ତ୍ତିରାଜର ସୁରକ୍ଷା ସହ ରାଜ୍ୟର ବିଭିନ୍ନ ପର୍ଯ୍ୟଟନସ୍ଥଳୀର ବିକାଶ ଇତ୍ୟାଦି କ୍ଷେତ୍ରରେ ବଜେଟ୍‌ରେ ବ୍ୟବସ୍ଥା କରିଛନ୍ତି ।

ଆପଣମାନେ ଜାଣନ୍ତି ଯେ, ପୂର୍ବରୁ ଯେଉଁ କେନ୍ଦ୍ରୀୟ ସହାୟତା ମିଳୁଥିଲା, ସେଥିରେ ୩୦ ପ୍ରତିଶତ ଅନୁଦାନ ଓ ୭୦ ପ୍ରତିଶତ ଋଣ ଥିଲା । କିନ୍ତୁ ଦ୍ୱାଦଶ ଅର୍ଥ କମିଶନଙ୍କ ସୁପାରିଶ ଅନୁସାରେ ଏଣିକି କେନ୍ଦ୍ରୀୟ ସହାୟତାର ଋଣ ଅଂଶ ରାଜ୍ୟ ସରକାରଙ୍କୁ ନିଜେ ହିଁ ଯୋଗାଡ଼ କରିବାକୁ

ପଡୁଛି । ଏହି ବ୍ୟବସ୍ଥା ୨୦୦୫-୦୬ ଆର୍ଥିକ ବର୍ଷରୁ ଲାଗୁ ହେଲାଣି । ପୁନଶ୍ଚ ଭାରତ ସରକାର ଦ୍ୱାଦଶ ଅର୍ଥ କମିଶନଙ୍କ ସୁପାରିଶ ଅନୁସାରେ କେଉଁ ରାଜ୍ୟ କେଉଁ ବର୍ଷ ପାଇଁ କେତେ ଋଣ କରିବେ ତାହା ଧାର୍ଯ୍ୟ କରିଥାନ୍ତି ।

ରାଜ୍ୟର ନିଜସ୍ୱ ଟିକସ, ଅଣଟିକସ, କେନ୍ଦ୍ରୀୟ ଟିକସରୁ ରାଜ୍ୟର ଅଂଶ ଓ କେନ୍ଦ୍ରୀୟ ଅନୁଦାନକୁ ହିସାବକୁ ନେଇ ୨୦୦୭-୦୮ ଆର୍ଥିକ ବର୍ଷ ପାଇଁ ମୋଟ ରାଜସ୍ୱ ୧୯୪୬୭.୨୦ କୋଟି ଟଙ୍କା ରଖାଯାଇଥିବା ବେଳେ ମୋଟ ରାଜସ୍ୱ ବ୍ୟୟବରାଦ ୧୮୪୨୧.୪୪ କୋଟି ଟଙ୍କା ରଖାଯାଇଛି । ୨୦୦୬-୦୭ ଆର୍ଥିକ ବର୍ଷରେ ରାଜସ୍ୱ ବଳକା ୨୨୬୦.୬୦ କୋଟି ଟଙ୍କା ଥିବାବେଳେ ୨୦୦୭-୦୮ ଆର୍ଥିକ ବର୍ଷର ସଂଶୋଧିତ ଅଟକଳ ଅନୁସାରେ ଏହି ରାଜସ୍ୱ ବଳକା ୧୬୮୨.୨୩ କୋଟି ଟଙ୍କା ଏବଂ ୨୦୦୮-୦୯ ଆର୍ଥିକ ବର୍ଷରେ ଏହା ୫୬୩.୮୭ କୋଟି ଟଙ୍କା ହେବ ବୋଲି ଆକଳନ କରାଯାଇଛି । ଅନ୍ୟପକ୍ଷରେ ପୁଞ୍ଜି ହିସାବ (Capital Account)ରେ ଆୟ ତୁଳନାରେ ବ୍ୟୟ ୮୯୩.୫୯ କୋଟି ଟଙ୍କା ଅଧିକ ହେବ ବୋଲି ଆକଳନ କରାଯାଇଛି । ବିଭିନ୍ନ ସୂତ୍ରରୁ ଯେତିକି ଋଣ ଓ ଅଗ୍ରୀମ ଆଦାୟ କରାଯିବ ଏବଂ ଋଣ ଅଣାଯିବ ତା'ଠାରୁ ଅଧିକ ପୁଞ୍ଜି ବିନିଯୋଗ ଓ ଆଗରୁ ଅଣାଯାଇଥିବା ଋଣର କିସ୍ତି ପରିଶୋଧ କରାଯିବ । ମୋଟ ଉପରେ କହିବାକୁ ଗଲେ ରାଜସ୍ୱ ହିସାବ ଓ ପୁଞ୍ଜି ହିସାବର ଆକଳନ ଅନୁସାରେ ସଂଗଠିତ ପାଣ୍ଠି (Consolidated Fund)ରେ ୩୨୯ କୋଟି ୭୨ ଲକ୍ଷ ୨୦ ହଜାର ଟଙ୍କା ନିଅଣ୍ଟ ଆକଳନ କରାଯାଇଛି ଏବଂ ସେହି ପରିମାଣର ବଳକା ସରକାରୀ ହିସାବ (Public Account)ରେ ଦର୍ଶାଯାଇଛି । ଏହାର ଅର୍ଥ ହେଲା ଯେ ରାଜସ୍ୱ ପୁଞ୍ଜି ଓ ସରକାରୀ ହିସାବର ଅଟକଳକୁ ବିଚାରକୁ ନେଇ ଉଭୟ ଆୟ ଓ ବ୍ୟୟକୁ ସମାନ କରାଯାଇଛି । ତେଣୁ ଏହା ଏକ ପକ୍ଷରେ ରାଜସ୍ୱ ବଳକା ବଜେଟ୍ ହେବା ସଂଗେସଂଗେ ଏକ ସମତୁଲ ବଜେଟ ଅଟେ ।

ସୀମିତ ସମ୍ବଳ ପରିପ୍ରେକ୍ଷୀରେ ମୁଁ ଏହି ପବିତ୍ର ଗୃହର ମାନ୍ୟବର ସଦସ୍ୟ/ସଦସ୍ୟାମାନଙ୍କୁ ଏକଥା ସ୍ପଷ୍ଟ କରିଦେବାକୁ ଚାହେଁ ଯେ, ରାଜ୍ୟର ଦ୍ରୁତ ବିକାଶ ପାଇଁ ଆମକୁ କୃଷି, ମତ୍ସ୍ୟ ଏବଂ ପଶୁସମ୍ପଦ ପ୍ରଭୃତି କ୍ଷେତ୍ରରେ ଅଭିବୃଦ୍ଧିର ହାର ବଢ଼ାଇବାକୁ ପଡ଼ିବ । ତେଣୁ ଆମର ଲୋକପ୍ରିୟ ମୁଖ୍ୟମନ୍ତ୍ରୀ ବର୍ତ୍ତମାନ କୃଷିଭିତ୍ତିକ କାର୍ଯ୍ୟକ୍ରମ ଉପରେ ଅଧିକ ଗୁରୁତ୍ୱାରୋପ କରୁଛନ୍ତି । ଆପଣମାନେ ଜାଣି ଖୁସି ହେବେ ଯେ, ଜଳଛାୟା କାର୍ଯ୍ୟକ୍ରମ ଅନ୍ତର୍ଗତ ୬ ଗୋଟି ଆଦିବାସୀ ଅଧ୍ୟୁଷିତ ଜିଲ୍ଲା ଯଥା- ମୟୂରଭଞ୍ଜ, କନ୍ଧମାଳ, ରାୟଗଡ଼ା, ନବରଙ୍ଗପୁର, ମାଲକାନଗିରି ଓ କୋରାପୁଟ ଜିଲ୍ଲାରେ ଚାଲୁ ରହିଥିବା ଜଳଛାୟା ଯୁକ୍ତ କାର୍ଯ୍ୟକ୍ରମ (Watershed Plus Programme)କୁ ଜୀବିକା (Jeebika) ନାମରେ ନାମିତ କରାଯାଇଛି । ଏଥିପାଇଁ ୨୦୦୭-୦୮ ଆର୍ଥିକ ବର୍ଷରେ ୭.୦୦ କୋଟି ଟଙ୍କାର ବ୍ୟୟବରାଦ ହୋଇଥିଲାବେଳେ ୨୦୦୮-୦୯ ଆର୍ଥିକ ବର୍ଷ ବଜେଟରେ ମଧ୍ୟ ୭.୦୦ କୋଟି ଟଙ୍କାର ବ୍ୟୟବରାଦ କରାଯାଇଛି । କୃଷି ଓ ଉଦ୍ୟାନ କୃଷି କ୍ଷେତ୍ରରେ ଉନ୍ନତ ଅଭିଜ୍ଞତା ହାସଲ ପାଇଁ ଚଳିତ ଆର୍ଥିକ ବର୍ଷରେ ୨୨୭୦ ଜଣ କୃଷକଙ୍କୁ ରାଜ୍ୟ ବାହାରକୁ ପଠାଯାଇଛି । ପୁନଶ୍ଚ ଚଳିତ ଆର୍ଥିକ ବର୍ଷରେ ବ୍ୟବସାୟଭିତ୍ତିକ ଉଦ୍ୟାନ କୃଷିରେ ଆତ୍ମନିଯୁକ୍ତି ପାଇଁ ୧୦୧୫୦ ଜଣ ବେକାର ଯୁବକଙ୍କୁ ପ୍ରଶିକ୍ଷଣ ଦିଆଯାଇଛି । ଏହି କାର୍ଯ୍ୟକ୍ରମ ମଧ୍ୟ ୨୦୦୮-୦୯ ଆର୍ଥିକ ବର୍ଷରେ ଚାଲୁ ରହିବ । ସେହିପରି ଉଦ୍ୟାନ କୃଷିର ଉନ୍ନତି ପାଇଁ ୨୦୦୭-୦୮ ଆର୍ଥିକ ବର୍ଷରେ ଅଧିକ ୫ ଗୋଟି ଜିଲ୍ଲା ଯଥା- ଅନୁଗୁଳ, ବରଗଡ଼, ଦେଓଗଡ଼, ସମ୍ବଲପୁର ଓ ସୁନ୍ଦରଗଡ଼ ଜିଲ୍ଲାକୁ ଏହିପରି ଭାବେ ମୋଟ ୨୪ ଗୋଟି ଜିଲ୍ଲାକୁ ଜାତୀୟ ଉଦ୍ୟାନ କୃଷି ମିଶନରେ ସାମିଲ କରାଯାଇଛି । ଆପଣମାନେ ଜାଣି ଖୁସି ହେବେ ଯେ ୨୦୦୭-୦୮ ଆର୍ଥିକ ବର୍ଷରେ ସରକାରୀ କୃଷିକ୍ଷେତ୍ର ଓ ବେସରକାରୀ ଚାରା ବଗିଚାରେ ବିଭିନ୍ନ କିସମର ୨୧.୨୦ ଲକ୍ଷ ଉନ୍ନତମାନର ଚାରା (Quality Planting Materials) ରୋପଣ କରାଯାଇଛି । ଆଗାମୀ ଆର୍ଥିକ ବର୍ଷ ଅର୍ଥାତ୍ ୨୦୦୮-୦୯ରେ ଏହିପରି ୩୦ ଲକ୍ଷ ଉନ୍ନତମାନର ଚାରାରୋପଣ କରିବାର ଲକ୍ଷ୍ୟଧାର୍ଯ୍ୟ କରାଯାଇଛି ।

ଆପଣମାନେ ସମସ୍ତେ ଜାଣନ୍ତି ଯେ, ଜଳସେଚନ ହେଉଛି କୃଷିର ପରିପୂରକ । ତେଣୁ କୃଷି କ୍ଷେତ୍ରରେ ଉତ୍ପାଦନ ବଢ଼ାଇବାକୁ ହେଲେ ଅଣଜଳସେଚିତ ଅଞ୍ଚଳରେ ବ୍ୟାପକ ଜଳସେଚନର ଆବଶ୍ୟକତା ଅଛି । ଓଡ଼ିଶାରେ ଜଳସେଚନ ପାଇଁ ଆବଶ୍ୟକ ସୁଯୋଗ ଅଛି । ତେଣୁ ଏକାଦଶ ପଞ୍ଚବାର୍ଷିକ ଯୋଜନାରେ ସରକାର ବ୍ୟାପକ ଜଳସେଚନ ପାଇଁ ଯୋଜନା ରଖିଛନ୍ତି ଏବଂ ଦଶମ ପଞ୍ଚବାର୍ଷିକ ଯୋଜନାରେ ସମ୍ପୂର୍ଣ୍ଣ ହୋଇପାରିନଥିବା ବୃହତ୍ ଓ ମଧ୍ୟମ ଜଳସେଚନ ଯୋଜନାକୁ ଏକାଦଶ ପଞ୍ଚବାର୍ଷିକ ଯୋଜନାରେ ସମ୍ପୂର୍ଣ୍ଣ କରିବା ପାଇଁ ଲକ୍ଷ୍ୟଧାର୍ଯ୍ୟ କରାଯାଇଛି । ଆପଣମାନେ ଜାଣି ଖୁସି ହେବେ ଯେ ଆମର ଲୋକପ୍ରିୟ ମୁଖ୍ୟମନ୍ତ୍ରୀ ୨୦୦୮-୦୯ ଆର୍ଥିକ ବର୍ଷକୁ ଜଳସେଚନ ବର୍ଷ ରୂପେ ଘୋଷଣା କରିଛନ୍ତି । ଏକାଦଶ ପଞ୍ଚବାର୍ଷିକ ଯୋଜନାରେ ରାଜ୍ୟର ପ୍ରତ୍ୟେକ ବ୍ଲକ୍‌ରେ ମୋଟ ଚାଷ ଜମିର ଅନ୍ତତଃ ୩୫ ପ୍ରତିଶତ ଜମି ଜଳସେଚିତ କରିବାକୁ ଲକ୍ଷ୍ୟଧାର୍ଯ୍ୟ କରାଯାଇଛି ।

ଓଡ଼ିଶାରେ ଶିଳ୍ପ ପ୍ରତିଷ୍ଠା ଉଦ୍ଦେଶ୍ୟରେ ଘରୋଇ ପୁଞ୍ଜିନିବେଶକାରୀଙ୍କୁ ଆକୃଷ୍ଟ କରିବା ପାଇଁ ସମସ୍ତ ପଦକ୍ଷେପ ନିଆଯାଉଛି । ଏଥିପାଇଁ ଏକକ ଅନୁମୋଦନ ପ୍ରକ୍ରିୟା (Single Window Clearance Mechanism), ସ୍ୱଚ୍ଛ ବ୍ୟବସ୍ଥା ଏବଂ ସୁଚିନ୍ତିତ ପୁନର୍ବାସ ଓ ଥଇଥାନ ନୀତି

ରାଜ୍ୟସରକାର ଗ୍ରହଣ କରିଛନ୍ତି । ଏହା ଫଳରେ ଘରୋଇ କ୍ଷେତ୍ରରେ ଆମ ରାଜ୍ୟରେ ବିଶେଷକରି ଖଣିଭିତ୍ତିକ ଶିଳ୍ପ ପ୍ରତିଷ୍ଠା ପାଇଁ ଘରୋଇ ପୁଞ୍ଜି ନିବେଶକାରୀମାନେ ଆକୃଷ୍ଟ ହୋଇଛନ୍ତି । ତେଣୁ ଏସବୁ ଅଞ୍ଚଳରେ ରାସ୍ତା, ବନ୍ଦର, ରେଳପଥ, ବିଜୁଳି ଉତ୍ପାଦନ ଓ ବଣ୍ଟନ ଆଦି ଭିତ୍ତିଭୂମିର ଉନ୍ନୟନ ପାଇଁ ବ୍ୟାପକ ପୁଞ୍ଜି ନିବେଶର ତୁରନ୍ତ ଆବଶ୍ୟକତା ଅଛି । ମୁଁ ଏହି ପବିତ୍ର ଗୃହର ମାନ୍ୟବର ସଦସ୍ୟ, ସଦସ୍ୟାମାନଙ୍କୁ ଜଣାଇ ଦେବାକୁ ଚାହେଁ ଯେ ବିଶେଷ ଭାବେ ବନ୍ଦର ଏବଂ ରାସ୍ତା ନିର୍ମାଣ ଏବଂ ସେତୁ ନିର୍ମାଣ ଆଦି ଭିତ୍ତିଭୂମି ଉନ୍ନୟନ ପାଇଁ ଆମ ଲୋକପ୍ରିୟ ସରକାର ବେସରକାରୀ ପୁଞ୍ଜି ବିନିଯୋଗ (Public Private Partnership) ଉପରେ ପ୍ରାଧାନ୍ୟ ଦେଉଛନ୍ତି ।

ଏଠାରେ ଉଲ୍ଲେଖଯୋଗ୍ୟ ଯେ ଗ୍ରାମ୍ୟ ଭିତ୍ତିଭୂମି ଉନ୍ନୟନ ପାଣ୍ଠି (RIDF) ପାଇଁ ୨୦୦୭-୦୮ ମୂଳ ବଜେଟରେ ୩୦୦ କୋଟି ଟଙ୍କାର ବ୍ୟୟବରାଦ କରାଯାଇଥିଲା ବେଳେ ୨୦୦୮-୦୯ ବଜେଟ ଅଟକଳ ଅନୁସାରେ ଏହାକୁ ୪୬୫.୦୦ କୋଟି ଟଙ୍କାକୁ ବୃଦ୍ଧି କରାଯାଇଛି । ସେହିପରି ତ୍ୱରିତ ଜଳସେଚନ ପ୍ରକଳ୍ପ (Accelerated Irrigation Benefit Programme) ପାଇଁ ୨୦୦୭-୦୮ ମୂଳ ବଜେଟରେ ୪୬୪.୨୮ କୋଟି ଟଙ୍କାର ବ୍ୟୟବରାଦ କରାଯାଇଥିଲା ବେଳେ ୨୦୦୮-୦୯ ବଜେଟ ଆକଳନ ଅନୁସାରେ ଏହା ୮୦୦.୦୦ କୋଟି ଟଙ୍କା ଅଟେ । ଜବାହରଲାଲ ନେହେରୁ ଜାତୀୟ ନଗରାଞ୍ଚଳ ନବୀକରଣ ମିଶନ (JNNURM) ପାଇଁ ୨୦୦୭-୦୮ ବଜେଟରେ ଆକଳନ ଅନୁସାରେ ୬୨.୨୫ କୋଟି ଟଙ୍କା ଥିବାବେଳେ ୨୦୦୮-୦୯ ବଜେଟ ଆକଳନ ଅନୁସାରେ ଏହା ୯୫.୨୩ କୋଟି ଟଙ୍କା ଅଟେ । ମୁଁ ଏଠାରେ ଏହି ପବିତ୍ର ଗୃହର ମାନ୍ୟବର ସଦସ୍ୟ ସଦସ୍ୟାମାନଙ୍କର ଅବଗତି ନିମନ୍ତେ ଏକଥା ସ୍ପଷ୍ଟ କରିଦେବାକୁ ଚାହେଁ ଯେ ବିଭିନ୍ନ କେନ୍ଦ୍ରୀୟ ପ୍ରବର୍ତ୍ତିତ ଯୋଜନା ପାଇଁ ପୂର୍ବବର୍ଷ ତୁଳନାରେ ଏହି ବଜେଟରେ ରାଜ୍ୟର ଅଂଶ ବାବଦରେ ଯଥେଷ୍ଟ ବ୍ୟୟବରାଦ କରାଯାଇଛି । ଉଦାହରଣ ସ୍ୱରୂପ ୨୦୦୭-୦୮ ଆର୍ଥିକ ବର୍ଷର ବଜେଟ ଆକଳନ ଅନୁସାରେ କେନ୍ଦ୍ର ପ୍ରବର୍ତ୍ତିତ ଯୋଜନାରେ ରାଜ୍ୟ ଅଂଶ ପାଇଁ ୬୬୨.୬୭ କୋଟି ଟଙ୍କାର ବ୍ୟୟବରାଦ କରାଯାଇଥିଲାବେଳେ ୨୦୦୮-୦୯ ବଜେଟରେ ଅଧିକ କେନ୍ଦ୍ରୀୟ ସହାୟତା ପାଇଁ ଏହାକୁ ୧୧୨୮.୨୧ କୋଟି ଟଙ୍କାକୁ ବୃଦ୍ଧି କରାଯାଇଛି ।

**ରାଜ୍ୟ ଯୋଜନା ଓ ଅଣଯୋଜନା ଖର୍ଚ୍ଚର ମୁଖ୍ୟାଂଶ**

୨୦୦୮-୦୯ ଆର୍ଥିକ ବର୍ଷ ପାଇଁ ଯେଉଁ ପୂର୍ଣ୍ଣାଙ୍ଗ ବଜେଟ ଏହି ପବିତ୍ର ଗୃହରେ ଆଗତ କରାଯାଇଛି ତହିଁରୁ କେତେକ ପ୍ରମୁଖ ରାଜ୍ୟ ଯୋଜନା ଓ ଅଣଯୋଜନା ବ୍ୟୟ ସମ୍ବଳିତ କାର୍ଯ୍ୟକ୍ରମ ଉପରେ ମୁଁ ଆଲୋକପାତ କରୁଛି ।

**କୃଷି ବିଭାଗ**

➢ ଆମ ରାଜ୍ୟର ଅର୍ଥନୀତି କୃଷି ଉପରେ ନିର୍ଭରଶୀଳ ଏବଂ ରାଜ୍ୟର ପ୍ରାୟ ୭୦ ପ୍ରତିଶତ ଲୋକ କୃଷିକୁ ହିଁ ସେମାନଙ୍କ ଜୀବିକାରୂପେ ଆଦରି ନେଇଛନ୍ତି । ତେଣୁ ଆମ ସରକାର କୃଷି ଓ କୃଷକର ବିକାଶ ପାଇଁ ସର୍ବଦା ଯତ୍ନଶୀଳ । ନୂତନ ଭାବେ ନିଆଯାଇଥିବା 'ରାଷ୍ଟ୍ରୀୟ କୃଷି ବିକାଶ ଯୋଜନା' (RKVY) ପାଇଁ ୨୦୦୮-୦୯ ବଜେଟରେ ୧୦୦.୦୦ କୋଟି ଟଙ୍କାର ବ୍ୟୟବରାଦ କରାଯାଇଛି । ସେହିପରି କେନ୍ଦ୍ରୀୟ ପ୍ରବର୍ତ୍ତିତ ଯୋଜନା ପାଇଁ ରାଜ୍ୟର ଅଂଶ ବାବଦରେ ୨୦୦୮-୦୯ ଆର୍ଥିକ ବର୍ଷ ବଜେଟରେ ୧୩.୯୭ କୋଟି ଟଙ୍କାର ବ୍ୟବସ୍ଥା ରଖାଯାଇଛି ।

➢ 'ଗ୍ରାମ୍ୟ ଭିତ୍ତିଭୂମି ଉନ୍ନୟନ', ଓଡ଼ିଶା ଗ୍ରାମ୍ୟ ଜୀବିକା କାର୍ଯ୍ୟକ୍ରମ ଅନ୍ତର୍ଗତ 'ଜୀବିକା' ଓ 'ଜଳନିଧି' ପାଇଁ ୨୦୦୮-୦୯ ଆର୍ଥିକ ବର୍ଷ ବଜେଟରେ ଯଥାକ୍ରମେ ୫୦.୦୦ କୋଟି ଟଙ୍କା, ୭.୦୦ କୋଟି ଟଙ୍କା ଏବଂ ୧୫.୦୦ କୋଟି ଟଙ୍କା ବ୍ୟୟବରାଦ କରାଯାଇଛି ।

➢ କୃଷି ବିଭାଗ ଅଧୀନରେ ରାଜ୍ୟ ଯୋଜନାର ଅନ୍ୟାନ୍ୟ କାର୍ଯ୍ୟକ୍ରମ ପାଇଁ ୧୫.୦୦ କୋଟି ଟଙ୍କାର ସ୍ୱତନ୍ତ୍ର ବ୍ୟୟବରାଦ କରାଯାଇଛି । ଏହା ଆଳୁ, ପନିପରିବା ଓ ମସଲା ଉତ୍ପାଦନ ତଥା ଉନ୍ନତମାନଯୁକ୍ତ ଚାରା ଉତ୍ପାଦନ ପାଇଁ ଏବଂ ବିଭିନ୍ନ ପ୍ରଶିକ୍ଷଣ କେନ୍ଦ୍ରର ଉନ୍ନତି ତଥା କୃଷି ଉପକରଣ କାରଖାନା (Agricultural Implement Factory) ଇତ୍ୟାଦି ପାଇଁ ଉଦ୍ଦିଷ୍ଟ ।

➢ କ୍ଷାରଯୁକ୍ତ ମୃତ୍ତିକା ପରିଚାଳନା ନିମନ୍ତେ ୫୦ ଲକ୍ଷ ଟଙ୍କାର ବ୍ୟୟବରାଦ ବଜେଟରେ କରାଯାଇଥିବାବେଳେ ମଞ୍ଜି, ସାର, ଜୈବସାର ଓ ଜୈବ କୀଟନାଶକ ପାଇଁ ୧୦ କୋଟି ଟଙ୍କାର ବ୍ୟବସ୍ଥା ବଜେଟରେ ରଖାଯାଇଛି ।

➢ ବେସରକାରୀ ଉଦ୍ୟମରେ ଗ୍ରାମାଞ୍ଚଳରେ ୫୦ ହଜାର ଉଠାଜଳସେଚନ ପଏଣ୍ଟ ସ୍ଥାପନ ପାଇଁ କୃଷି ଉନ୍ନୟନ ଓ ବିନିଯୋଗ ନିଗମ ଲିଃ (Agriculture Promotion and Investment Corporation Limited)କୁ ୫୦ ଲକ୍ଷ ଟଙ୍କାର ଆର୍ଥିକ ସହାୟତା (Subsidy) ଦେବାପାଇଁ ବଜେଟରେ ବ୍ୟବସ୍ଥା ହୋଇଛି ।

- ବ୍ଲକ୍ ସ୍ତରରେ ଚାରା ବଗିଚାର ପୁନରୁଦ୍ଧାର ଓ ପ୍ରତିଷ୍ଠା ପାଇଁ ୨୦୦୮-୦୯ ଆର୍ଥିକ ବର୍ଷରେ ୬୨ ଲକ୍ଷ ଟଙ୍କାର ବ୍ୟୟବରାଦ କରାଯାଇଛି ।
- ଫଳ ବଗିଚାରେ ଆନ୍ତଃଫସଲ (Inter Cropping) ଉତ୍ପାଦନ ପାଇଁ ୫୩ ଲକ୍ଷ ଟଙ୍କାର ବ୍ୟବସ୍ଥା ବଜେଟରେ ହୋଇଅଛି ।

**ସମବାୟ ବିଭାଗ**

- ସ୍ୱଳ୍ପ ମିଆଦି ସମବାୟ ଋଣ ସମିତିର ପୁନରୁଦ୍ଧାର ପାଇଁ ବୈଦ୍ୟନାଥନ୍ କମିଟି ସୁପାରିଶ ଭିତରେ ୫୦ କୋଟି ଟଙ୍କାର ଆର୍ଥିକ ସାହାଯ୍ୟ ।
- ସମବାୟ ବ୍ୟାଙ୍କ ଦେଉଥିବା ସୁଧ ରିହାତି ଭରଣା ନିମନ୍ତେ ୧୧ କୋଟି ୪୦ ଲକ୍ଷ ଟଙ୍କାର ବ୍ୟୟବରାଦ କରାଯାଇଛି ।
- ଚିନିକଳମାନଙ୍କୁ ଆର୍ଥିକ ସହାୟତା ଦେବା ଉଦ୍ଦେଶ୍ୟରେ ୩ କୋଟି ଟଙ୍କାର ବ୍ୟବସ୍ଥା ବଜେଟରେ ରଖାଯାଇଛି ।
- ଶସ୍ୟବୀମା ପାଇଁ ବଜେଟରେ ୩ କୋଟି ଟଙ୍କାର ବ୍ୟୟବରାଦ ପ୍ରସ୍ତାବ ରଖାଯାଇଛି ।

**ଜଳସମ୍ପଦ ବିଭାଗ**

- ଆପଣମାନେ ଜାଣନ୍ତି ଯେ, ଜଳସେଚନର ଉନ୍ନତିରେ ହିଁ କୃଷିର ଉନ୍ନତି ସମ୍ଭବ । ତେଣୁ ଆମ ସରକାର ବ୍ୟାପକ ଜଳସେଚନ କାର୍ଯ୍ୟକ୍ରମ ଉପରେ ସଦାସର୍ବଦା ଗୁରୁତ୍ୱ ଦେଇଆସୁଛନ୍ତି । ଏହାଦ୍ୱାରା କୃଷିରେ ଉନ୍ନତି ହେବା ସହ ରାଜ୍ୟର ବିକାଶ ମଧ୍ୟ ସମ୍ଭବ ହୋଇପାରିବ । ଏସବୁ କଥାକୁ ଆଖି ଆଗରେ ରଖି ଜଳସେଚନ କ୍ଷେତ୍ରରେ ବ୍ୟାପକ ଅର୍ଥ ବିନିଯୋଗର ଆବଶ୍ୟକତା ଅଛି ଏବଂ ସରକାର ସୀମିତ ସମ୍ବଳକୁ ଦୃଷ୍ଟିରେ ରଖି ଜଳସେଚନ କ୍ଷେତ୍ରରେ ଆବଶ୍ୟକୀୟ ଅର୍ଥ ବ୍ୟବସ୍ଥା କରିଛନ୍ତି ।
- ତ୍ୱରିତ ଜଳସେଚନ ସୁବିଧା ଯୋଜନା (Accelerated Irrigation Benefit Programme) ପାଇଁ ୨୦୦୭-୦୮ ମୂଳ ବଜେଟରେ ୪୬୪.୨୮ କୋଟି ଟଙ୍କାର ବ୍ୟୟବରାଦ କରାଯାଇଥିବାବେଳେ ୨୦୦୮-୦୯ ବଜେଟରେ ଏହା ୮୦୦ କୋଟି ଟଙ୍କାକୁ ବୃଦ୍ଧି କରାଯାଇଛି ।
- ଗ୍ରାମ୍ୟ ଭିତ୍ତିଭୂମି ଉନ୍ନୟନ ପାଣ୍ଠି ପାଇଁ ୨୦୦୭-୦୮ ମୂଳ ବଜେଟରେ ୧୨୫ କୋଟି ଟଙ୍କାର ବ୍ୟବସ୍ଥା ଥିବାବେଳେ ୨୦୦୮-୦୯ ବଜେଟରେ ଏହା ୧୯୫.୦୦ କୋଟି ଟଙ୍କାକୁ ବୃଦ୍ଧି କରାଯାଇଛି ।
- ବନ୍ୟା ନିୟନ୍ତ୍ରଣ ଓ ଜଳ ନିଷ୍କାସନ ବାବଦରେ ୨୦୦୮-୦୯ ବଜେଟରେ ୪୯.୫୦ କୋଟି ଟଙ୍କାର ବ୍ୟୟବରାଦ କରାଯାଇଛି ।
- ସେହିପରି ହୀରାକୁଦ ସେଚ ଅଞ୍ଚଳର ଉନ୍ନତି ପାଇଁ ୨୦୦୮-୦୯ ବଜେଟରେ ୫୦ କୋଟି ଟଙ୍କାର ସ୍ୱତନ୍ତ୍ର ବ୍ୟୟବରାଦ କରାଯାଇଛି ।
- ଉଠାଜଳସେଚନ ନିଗମକୁ ୨୦୦୭-୦୮ ମୂଳ ବଜେଟରେ ୧୬.୩୨ କୋଟି ଟଙ୍କାର ଆର୍ଥିକ ସହାୟତା ବ୍ୟବସ୍ଥା ଥିବାବେଳେ ୨୦୦୮-୦୯ ବଜେଟରେ ଏଥିପାଇଁ ଅନୁରୂପ ବ୍ୟବସ୍ଥା କରାଯାଇଛି ।
- ବୃହତ୍, ମଧ୍ୟମ ଓ କ୍ଷୁଦ୍ର ଜଳସେଚନ ପ୍ରକଳ୍ପ ପରିଚାଳନା ପାଇଁ ୨୦୦୭-୦୮ ଆର୍ଥିକ ବର୍ଷ ବଜେଟରେ ୧୭୧.୨୨ କୋଟି ଟଙ୍କାର ବ୍ୟୟବରାଦ ହୋଇଥିବାବେଳେ ୨୦୦୮-୦୯ ଆର୍ଥିକ ବର୍ଷ ବଜେଟରେ ଏଥିପାଇଁ ୧୮୮.୦୦ କୋଟି ଟଙ୍କାର ବ୍ୟୟବରାଦ କରାଯାଇଛି ।
- ଜଟିଳ ବନ୍ୟା ନିୟନ୍ତ୍ରଣ ପରିଚାଳନା କାର୍ଯ୍ୟ ପାଇଁ ୨୦୦୭-୦୮ ଆର୍ଥିକ ବର୍ଷ ବଜେଟରେ ୪୮.୧୧ କୋଟି ଟଙ୍କାର ବ୍ୟୟବରାଦ ହୋଇଥିବାବେଳେ ୨୦୦୮-୦୯ ଆର୍ଥିକ ବର୍ଷ ବଜେଟରେ ଏହାକୁ ୫୨.୦୦ କୋଟି ଟଙ୍କାକୁ ବୃଦ୍ଧି କରାଯାଇଛି ।

**ପଞ୍ଚାୟତିରାଜ ବିଭାଗ**

- ୧୯ ଗୋଟି ଜିଲ୍ଲା ପାଇଁ ପଛୁଆ ଅଞ୍ଚଳ ଉନ୍ନୟନ ପାଣ୍ଠି (BRGF)ରେ ୩୨୪.୦୦ କୋଟି ଟଙ୍କା ବ୍ୟୟବରାଦ କରାଯାଇଛି ।
- ଇନ୍ଦିରା ଆବାସ ଯୋଜନା (IAY) ପାଇଁ ଆବଶ୍ୟକୀୟ କେନ୍ଦ୍ରୀୟ ସହାୟତାରୁ ବଞ୍ଚିତ ହେଉଥିବା ଗ୍ରାମାଞ୍ଚଳର ଗରିବ ଲୋକଙ୍କ ପାଇଁ ରାଜ୍ୟ ସରକାର ନିଜ ସମ୍ବଳରୁ 'ମୋ କୁଡ଼ିଆ' ନାମରେ ଏକ ନୂତନ ବାସଗୃହ ଯୋଗାଣ ଯୋଜନା ହାତକୁ ନେଇଛନ୍ତି ଏବଂ ଏଥିପାଇଁ ୨୦୦୮-୦୯ ବଜେଟରେ ୧୦୦.୦୦ କୋଟି ଟଙ୍କାର ବ୍ୟବସ୍ଥା ରଖାଯାଇଛି ।

- ପଞ୍ଚାୟତମାନଙ୍କୁ ପ୍ରୋତ୍ସାହନ (Incentive Awards) ଦେବା ଉଦ୍ଦେଶ୍ୟରେ ୫୮.୦୦ ଲକ୍ଷ ଟଙ୍କାର ବ୍ୟୟବରାଦ ୨୦୦୮-୦୯ ବଜେଟରେ ରଖାଯାଇଛି ।
- ଉପକୂଳବର୍ତ୍ତୀ ୧୧ଟି ଜିଲ୍ଲାର ଗ୍ରାମାଞ୍ଚଳ ଲୋକଙ୍କ ବିକାଶ ପାଇଁ ଉଦ୍ଦିଷ୍ଟ ଗୋପବନ୍ଧୁ ଗ୍ରାମୀଣ ଯୋଜନା ପାଇଁ ୨୦୦୮-୦୯ ଆର୍ଥିକ ବର୍ଷ ବଜେଟରେ ୧୧୦.୦୦ କୋଟି ଟଙ୍କାର ବ୍ୟୟବରାଦ କରାଯାଇଛି ।
- ଜାତୀୟ ନିଶ୍ଚିତ ଗ୍ରାମ୍ୟ ନିଯୁକ୍ତି ଯୋଜନା ପାଇଁ ରାଜ୍ୟ ସରକାରଙ୍କ ଅଂଶ ବାବଦରେ ୨୦୦୮-୦୯ ଆର୍ଥିକ ବର୍ଷ ବଜେଟରେ ୧୦୦.୦୦ କୋଟି ଟଙ୍କାର ବ୍ୟୟ ବରାଦ କରାଯାଇଛି ।
- ସ୍ୱର୍ଣ୍ଣ ଜୟନ୍ତୀ ଗ୍ରାମ୍ୟ ସ୍ୱରୋଜଗାର ଯୋଜନାର ରାଜ୍ୟ ଅଂଶ ବାବଦରେ ବଜେଟରେ ୨୨.୬୬ କୋଟି ଟଙ୍କାର ବ୍ୟୟବରାଦ ।

**ଶିଳ୍ପ ବିଭାଗ**

- ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ନବୀନ ପଟ୍ଟନାୟକଙ୍କ ନେତୃତ୍ୱରେ ଗଠିତ ସରକାର ଯୁବକଯୁବତୀମାନଙ୍କର ନିଯୁକ୍ତି ସୁଯୋଗ ସୃଷ୍ଟି ପାଇଁ ଶିଳ୍ପ ପ୍ରତିଷ୍ଠା ଉପରେ ଗୁରୁତ୍ୱାରୋପ କରୁଛନ୍ତି । ଏତଦ୍‌ବ୍ୟତୀତ ୨୦୦୮-୦୯ ବଜେଟରେ କେତେକ ନୂଆ ଯୋଜନା ହାତକୁ ନେବାର ପ୍ରସ୍ତାବ ରହିଛି ।
- ଏକ ବୃହତ୍ ଖାଦ୍ୟ ପାର୍କ ପ୍ରତିଷ୍ଠା ପାଇଁ ୨୦୦୮-୦୯ ବଜେଟରେ ୧.୦୦ କୋଟି ଟଙ୍କାର ବ୍ୟୟବରାଦ କରାଯାଇଛି ।
- ସେହିପରି ଶିଳ୍ପ ଭିତ୍ତିଭୂମିର ଉନ୍ନତିକରଣ ପାଇଁ ବଜେଟରେ ୧.୦୦ କୋଟି ଟଙ୍କାର ବ୍ୟବସ୍ଥା ରଖାଯାଇଛି ।
- ଭୁବନେଶ୍ୱରଠାରେ ସମନ୍ୱିତ ବୟନ ପାର୍କ (Apparel Park) ପ୍ରତିଷ୍ଠା ପାଇଁ ୯୨ ଲକ୍ଷ ଟଙ୍କାର ବ୍ୟୟବରାଦ କରାଯାଇଛି ।
- ଆନୁଷଙ୍ଗିକ ଶିଳ୍ପ ପାଇଁ ନୂଆ ଶିଳ୍ପାଞ୍ଚଳ ପ୍ରତିଷ୍ଠା ପାଇଁ ୨୦୦୮-୦୯ ଆର୍ଥିକ ବର୍ଷ ବଜେଟରେ ୧.୦୦ କୋଟି ଟଙ୍କାର ବ୍ୟବସ୍ଥା ରଖାଯାଇଛି ।
- ଉତ୍କଳିକାର ପୁନରୁଦ୍ଧାର ପାଇଁ ୨୦୦୭-୦୮ ମୂଳ ବଜେଟରେ ୫୨ ଲକ୍ଷ ଟଙ୍କାର ବ୍ୟବସ୍ଥା ଥିବାବେଳେ ୨୦୦୮-୦୯ ବଜେଟରେ ଏଥିପାଇଁ ୮୧ ଲକ୍ଷ ଟଙ୍କାର ବ୍ୟବସ୍ଥା କରାଯାଇଛି ।
- କତାଶିଳ୍ପର ଉନ୍ନତି ପାଇଁ ୨୦୦୭-୦୮ ମୂଳ ବଜେଟରେ ୩୯ ଲକ୍ଷ ଟଙ୍କାର ବ୍ୟବସ୍ଥା ଥିବାବେଳେ ୨୦୦୮-୦୯ ବଜେଟରେ ଏଥିପାଇଁ ୪୪.୦୩ ଲକ୍ଷ ଟଙ୍କାର ବ୍ୟୟବରାଦ କରାଯାଇଛି ।
- ଶିଳ୍ପ ବିଭାଗ ଅଧୀନରେ ହସ୍ତଶିଳ୍ପର ଉନ୍ନତି ପାଇଁ ମାନ୍ୟବର ମୁଖ୍ୟମନ୍ତ୍ରୀଙ୍କ ଘୋଷଣାକ୍ରମେ ୧୦.୧୯ କୋଟି ଟଙ୍କାର ସ୍ୱତନ୍ତ୍ର ବ୍ୟୟବରାଦ ବଜେଟରେ ରଖାଯାଇଛି ।
- ବିଭିନ୍ନ କେନ୍ଦ୍ରୀୟ ପ୍ରବର୍ତ୍ତିତ ଯୋଜନା ପାଇଁ ରାଜ୍ୟ ସରକାରଙ୍କ ଅଂଶ ବାବଦରେ ୨୦୦୭-୦୮ ମୂଳ ବଜେଟରେ ୫.୦୩ କୋଟି ଟଙ୍କାର ବ୍ୟବସ୍ଥା ରଖାଯାଇଥିଲା ବେଳେ ୨୦୦୮-୦୯ ବଜେଟରେ ଏହାକୁ ୫.୨୩ କୋଟି ଟଙ୍କାକୁ ବୃଦ୍ଧି କରାଯାଇଛି ।
- ଆଞ୍ଚଳିକ ଶିଳ୍ପ କେନ୍ଦ୍ର (Regional Industries Centre) ପ୍ରତିଷ୍ଠା ପାଇଁ ୧.୨୦ କୋଟି ଟଙ୍କାର ବ୍ୟୟବରାଦ ବଜେଟରେ କରାଯାଇଛି ।
- କାରିଗରୀ ଗ୍ରାମ (Craft Village) ପ୍ରତିଷ୍ଠା ପାଇଁ ୨୦୦୮-୦୯ ବଜେଟରେ ୨.୫୨ କୋଟି ଟଙ୍କାର ବ୍ୟୟବରାଦ କରାଯାଇଛି ।
- ଲବଣ ଶିଳ୍ପର ଉନ୍ନତି (Improvement of Salt Industries) ପାଇଁ ୧୯.୫୦ ଲକ୍ଷ ଟଙ୍କାର ବ୍ୟୟବରାଦ କରାଯାଇଛି ।
- ଖଦୀ ଓ ଗ୍ରାମ୍ୟ ଶିଳ୍ପ ଅନୁଷ୍ଠାନ ପାଇଁ ୨୦୦୭-୦୮ ଆର୍ଥିକ ବର୍ଷ ମୂଳ ବଜେଟରେ ୨.୮୦ କୋଟି ଟଙ୍କାର ବ୍ୟବସ୍ଥା ରଖାଯାଇଥିବାବେଳେ ୨୦୦୮-୦୯ ଆର୍ଥିକ ବର୍ଷ ବଜେଟରେ ୩.୧୩ କୋଟି ଟଙ୍କାର ବ୍ୟବସ୍ଥା ରଖାଯାଇଛି ।

**ବାଣିଜ୍ୟ ବିଭାଗ**

- ସରକାରୀ ଛାପାଖାନାର ଆଧୁନୀକିକରଣ ପାଇଁ ୨୦୦୮-୦୯ ଆର୍ଥିକ ବର୍ଷ ବଜେଟରେ ୭.୦୦ କୋଟି ଟଙ୍କାର ବ୍ୟୟବରାଦ କରାଯାଇଛି ।

**ସଂସ୍କୃତି ବିଭାଗ**

- ସଂସ୍କୃତି ବିଭାଗ ଅଧୀନରେ କଳାକାରମାନଙ୍କର ମାସିକ ପେନସନ୍‌ର ହାର ୫୦୦.୦୦ ଟଙ୍କାରୁ ୧୦୦୦ ଟଙ୍କାକୁ ବୃଦ୍ଧି କରାଯାଇଛି । ଏଥିସଂଗେ ସଂଗେ କଳାକାର ପେନସନଧାରୀଙ୍କ ସଂଖ୍ୟା ୧୦୦୦ରୁ ୧୫୦୦କୁ ବୃଦ୍ଧି କରାଯାଇଛି । ତଦନୁସାରେ ୨୦୦୮-୦୯ ଆର୍ଥିକ ବର୍ଷ ବଜେଟରେ ୧.୮୦ କୋଟି ଟଙ୍କାର ବ୍ୟୟବରାଦ କରାଯାଇଛି ।
- ରାଜ୍ୟ ସଂଗ୍ରହାଳୟରେ ସ୍ୱାଧୀନତା ସଂଗ୍ରାମୀଙ୍କ ପାଇଁ ଏକ ଗ୍ୟାଲେରି ପ୍ରତିଷ୍ଠା ଉଦ୍ଦେଶ୍ୟରେ ବଜେଟରେ ୩୦ ଲକ୍ଷ ଟଙ୍କାର ବ୍ୟୟବରାଦ କରାଯାଇଛି ।

**ଶକ୍ତି ବିଭାଗ**

- 'ବିଜୁ ଗ୍ରାମଜ୍ୟୋତି ଯୋଜନା' ପାଇଁ ୨୦୦୭-୦୮ ଆର୍ଥିକ ବର୍ଷ ମୂଳ ବଜେଟରେ ୫୦.୦୦ କୋଟି ଟଙ୍କାର ବ୍ୟୟବରାଦ ହୋଇଥିବାବେଳେ ୨୦୦୮-୦୯ ଆର୍ଥିକ ବର୍ଷ ବଜେଟରେ ଏଥିପାଇଁ ୧୦୦.୫୦ କୋଟି ଟଙ୍କାର ବ୍ୟବସ୍ଥା ରଖାଯାଇଛି ।
- କେନ୍ଦ୍ରୀୟ ପ୍ରବର୍ତ୍ତିତ ଯୋଜନାରେ ରାଜ୍ୟ ଅଂଶ ପାଇଁ (ରାଜୀବ ଗାନ୍ଧୀ ଗ୍ରାମୀଣ ବିଦ୍ୟୁତ୍ ଯୋଜନା ଅନ୍ତର୍ଗତ ଋଣ (Loan portion of RGGVY) ଆଗାମୀ ବର୍ଷ ବଜେଟରେ ୬୫.୦୦ କୋଟି ଟଙ୍କାର ବ୍ୟୟବରାଦ କରାଯାଇଛି । ସେହିପରି ତ୍ୱରିତ ବିଦ୍ୟୁତ୍ ଉନ୍ନୟନ ସଂସ୍କାର କାର୍ଯ୍ୟକ୍ରମ (APDRP) ପାଇଁ ୨୦୦୭-୦୮ ମୂଳ ବଜେଟରେ ୬୭.୨୦ କୋଟି ଟଙ୍କାର ବ୍ୟୟବରାଦ କରାଯାଇଥିବାବେଳେ ୨୦୦୮-୦୯ ଆର୍ଥିକ ବର୍ଷ ବଜେଟରେ ୭୦.୪୦ କୋଟି ଟଙ୍କାର ବ୍ୟବସ୍ଥା କରାଯାଇଛି ।

**ମତ୍ସ୍ୟ ଓ ପଶୁ ସଂପଦ ଉନ୍ନୟନ ବିଭାଗ**

- ମତ୍ସ୍ୟ ଓ ପଶୁ ସଂପଦ ଉନ୍ନୟନ ବିଭାଗରେ ଭିତ୍ତିଭୂମି ଉନ୍ନୟନ ପାଣ୍ଠି ପାଇଁ ୨୦୦୮-୦୯ ଆର୍ଥିକ ବର୍ଷ ବଜେଟରେ ୬.୦୦ କୋଟି ଟଙ୍କା ବ୍ୟୟବରାଦ କରାଯାଇଛି ।
- ମଧୁର ଜଳ ମତ୍ସ୍ୟ ଚାଷ ଉନ୍ନୟନ ସଂସ୍ଥା ଜରିଆରେ ମାଛ ଚାଷ ପାଇଁ ୬.୫୭ କୋଟି ଟଙ୍କାର ବ୍ୟୟବରାଦ କରାଯାଇଛି ।

**ଜଙ୍ଗଲ ଓ ପରିବେଶ ବିଭାଗ**

- ଜଙ୍ଗଲ ଓ ପରିବେଶ ବିଭାଗରେ ବନ୍ୟକ୍ଷେତ୍ର ଉନ୍ନୟନ ପ୍ରକଳ୍ପ ପାଇଁ ୨୦୦୭-୦୮ ଆର୍ଥିକ ବର୍ଷ ମୂଳ ବଜେଟରେ ୮୨.୨୦ କୋଟି ଟଙ୍କାର ବ୍ୟୟବରାଦ କରାଯାଇଥିବାବେଳେ ୨୦୦୮-୦୯ ଆର୍ଥିକ ବର୍ଷ ବଜେଟରେ ୧୧୩.୮୧ କୋଟି ଟଙ୍କାର ବ୍ୟୟବରାଦ କରାଯାଇଛି ।
- ସେହିପରି ଉକ୍ତ ବିଭାଗରେ ନନ୍ଦନକାନନ ଚିଡ଼ିଆଖାନା ଓ ଉଦ୍ଭିଦ ବଗିଚାର ଉନ୍ନୟନ ଓ ସୌନ୍ଦର୍ଯ୍ୟକରଣ ପାଇଁ ୨୦୦୮-୦୯ ଆର୍ଥିକ ବର୍ଷ ବଜେଟରେ ୨.୦୦ କୋଟି ଟଙ୍କା ହିସାବରେ ୪.୦୦ କୋଟି ଟଙ୍କାର ବ୍ୟୟବରାଦ କରାଯାଇଛି ।
- ଚନ୍ଦକା ହାତୀ ଅଭୟାରଣ୍ୟରେ ହାତୀଙ୍କ ଗତିପଥକୁ ନିୟନ୍ତ୍ରଣ କରିବା ପାଇଁ ଖାଇ ନିର୍ମାଣ ଉଦ୍ଦେଶ୍ୟରେ ୨.୦୦ କୋଟି ଟଙ୍କାର ବ୍ୟୟବରାଦ ।
- ଓଡ଼ିଶା ବନ ଉନ୍ନୟନ ନିଗମକୁ ଭୁବନେଶ୍ୱରରେ ବୃକ୍ଷ ରୋପଣ ପାଇଁ ୨.୦୦ କୋଟି ଟଙ୍କାର ବ୍ୟୟବରାଦ ।

**ସାଧାରଣ ପ୍ରଶାସନ ବିଭାଗ**

- ଭୁବନେଶ୍ୱରଠାରେ ଥିବା ସରକାରୀ ବାସଗୃହ ନିର୍ମାଣ/ନବୀକରଣ ପାଇଁ ୨୦୦୮-୦୯ ଆର୍ଥିକ ବର୍ଷ ବଜେଟରେ ୨.୦୦ କୋଟି ଟଙ୍କା ରଖାଯାଇଛି ।

- ଭଡ଼ାଘରେ ଚାଲୁଥିବା ସରକାରୀ କାର୍ଯ୍ୟାଳୟକୁ ତୋଷାଳି ପ୍ଲାଜାକୁ ସ୍ଥାନାନ୍ତରିତ କରିବା ପାଇଁ ସରକାର ନିଷ୍ପତ୍ତି ନେଇଛନ୍ତି । ସେଥିପାଇଁ ତୋଷାଳି ପ୍ଲାଜାର ନବୀକରଣ ପାଇଁ ୫.୦୦ କୋଟି ଟଙ୍କାର ବ୍ୟୟବରାଦ ।
- ଦୁର୍ନୀତି ନିବାରଣ ସଂସ୍ଥାରେ ସରକାରୀ ଅଫିସ ଗୃହ ନିର୍ମାଣ ପାଇଁ ୨୦୦୮-୦୯ ବଜେଟରେ ୨.୦୦ କୋଟି ଟଙ୍କାର ବ୍ୟବସ୍ଥା ରଖାଯାଇଛି ।
- ସାଧାରଣ ପ୍ରଶାସନ ବିଭାଗ ଅଧୀନରେ ଥିବା ରାଜ୍ୟ ପ୍ରଶିକ୍ଷଣ ଅନୁଷ୍ଠାନର ଉନ୍ନତିକରଣ ପାଇଁ ୧.୦୦ କୋଟି ଟଙ୍କାର ବ୍ୟୟବରାଦ କରାଯାଇଛି ।
- ମୁଖ୍ୟମନ୍ତ୍ରୀଙ୍କ ରିଲିଫ୍ ପାଣ୍ଠି ପାଇଁ ୨୦୦୮-୦୯ ବଜେଟରେ ୧୦ କୋଟି ଟଙ୍କାର ବ୍ୟୟବରାଦ କରାଯାଇଛି ।
- ଦୁର୍ନୀତି ନିବାରଣ ସଂସ୍ଥାର ଅଫିସ୍ ଗୃହ ଓ କର୍ମଚାରୀଙ୍କ ବାସଭବନ ନିର୍ମାଣ ନିମନ୍ତେ ୨୦୦୮-୦୯ ଆର୍ଥିକ ବଜେଟରେ ୧.୯୯ କୋଟି ଟଙ୍କାର ବ୍ୟବସ୍ଥା କରାଯାଇଛି ।
- ଭୁବନେଶ୍ୱରଠାରେ ସରକାରୀ ବାସଭବନର ମରାମତି ଓ ନବୀକରଣ ପାଇଁ ୨୩ କୋଟି ଟଙ୍କାର ବ୍ୟୟବରାଦ ।

**ଗୃହ ଓ ନଗର ଉନ୍ନୟନ ବିଭାଗ**

- ଜବାହରଲାଲ ନେହେରୁ ଜାତୀୟ ନବୀକରଣ ମିଶନ ପାଇଁ ୨୦୦୭-୦୮ ଆର୍ଥିକ ବର୍ଷ ମୂଳ ବଜେଟରେ ୬୨.୨୫ କୋଟି ଟଙ୍କାର ବ୍ୟବସ୍ଥା ଥିବାବେଳେ ୨୦୦୮-୦୯ ଆର୍ଥିକ ବର୍ଷ ବଜେଟରେ ୯୫.୨୩ କୋଟି ଟଙ୍କାର ବ୍ୟୟବରାଦ କରାଯାଇଛି ।
- ନଗରାଞ୍ଚଳ ଉନ୍ନୟନ ସଂସ୍ଥା (ULBs) ଅଧୀନରେ ରାସ୍ତାଘାଟର ଉନ୍ନତି ପାଇଁ ୨୦୦୮-୦୯ ବଜେଟରେ ୬୦.୦୦ କୋଟି ଟଙ୍କାର ବ୍ୟୟବରାଦ ।
- କେ.ବି.କେ. ଜିଲ୍ଲାର ନଗରାଞ୍ଚଳରେ ବାସ କରୁଥିବା ଗରିବ ଜନସାଧାରଣଙ୍କୁ ପାନୀୟ ଜଳ ଯୋଗାଣ ପାଇଁ ୨୦୦୮-୦୯ ବଜେଟରେ ୧୦.୦୦ କୋଟି ଟଙ୍କାର ବ୍ୟୟବରାଦ ।
- ଗୃହ ନିର୍ମାଣ ଓ ନଗର ଉନ୍ନୟନ ବିଭାଗରେ ଜଳ ଯୋଗାଣ ଓ ମଇଳା ପାଣି ନିଷ୍କାସନ କାର୍ଯ୍ୟ ସଂପନ୍ନ ପାଇଁ ୨୦୦୮-୦୯ ଆର୍ଥିକ ବର୍ଷ ବଜେଟରେ ୬ କୋଟି ଟଙ୍କାର ବ୍ୟୟବରାଦ କରାଯାଇଛି । ସେହିପରି ଜଳଯୋଗାଣ ଓ ପରିମଳ ବ୍ୟବସ୍ଥାରେ ଉନ୍ନତି ଆଣିବା ପାଇଁ ୨୦୦୭-୦୮ ଆର୍ଥିକ ବର୍ଷ ବଜେଟରେ ୧୦୮.୮୫ କୋଟି ଟଙ୍କାର ବ୍ୟୟବରାଦ କରାଯାଇଥିବାବେଳେ ଆଗାମୀ ବର୍ଷ ବଜେଟରେ ଏହାକୁ ୧୧୦.୦୦ କୋଟି ଟଙ୍କାକୁ ବୃଦ୍ଧି କରାଯାଇଛି ।

**ସ୍ୱାସ୍ଥ୍ୟ ଓ ପରିବାର କଲ୍ୟାଣ ବିଭାଗ**

- ଜୈବ ହାସପାତାଳ ବର୍ଯ୍ୟବସ୍ତୁ ନିଷ୍କାସନ ପାଇଁ ୨୦୦୭-୦୮ ମୂଳ ବଜେଟରେ କୌଣସି ବ୍ୟବସ୍ଥା ନଥିବାବେଳେ ୨୦୦୮-୦୯ ଆର୍ଥିକ ବର୍ଷ ବଜେଟରେ ୧୫.୦୦ କୋଟି ଟଙ୍କାର ବ୍ୟୟବରାଦ କରାଯାଇଛି । ଆଚାର୍ଯ୍ୟ ହରିହର କ୍ୟାନସର ପ୍ରତିଷ୍ଠାନକୁ ସହାୟତା ବାବଦରେ ୨୦୦୮-୦୯ ଆର୍ଥିକ ବର୍ଷ ବଜେଟରେ ୭.୫୦ କୋଟି ଟଙ୍କା ବ୍ୟୟବରାଦ କରାଯାଇଛି ।
- ଆଦିବାସୀ ଓ ଅନଗ୍ରସର ଜିଲ୍ଲାରେ ଭ୍ରାମ୍ୟମାଣ ସ୍ୱାସ୍ଥ୍ୟ ୟୁନିଟ୍ ସ୍ଥାପନ ପାଇଁ ୨୦୦୮-୦୯ ଆର୍ଥିକ ବର୍ଷ ବଜେଟରେ ୬.୦୦ କୋଟି ଟଙ୍କାର ବ୍ୟୟବରାଦ କରାଯାଇଛି ।
- ଏଡ଼୍ସ ପରୀକ୍ଷାଗାର, ଖାଦ୍ୟ ପରୀକ୍ଷାଗାର ଓ ଔଷଧ ପରୀକ୍ଷାଗାରର ଉନ୍ନତିକରଣ ପାଇଁ ୨୦୦୮-୦୯ ଆର୍ଥିକ ବର୍ଷ ବଜେଟରେ ୩ କୋଟି ଟଙ୍କାର ବ୍ୟୟବରାଦ କରାଯାଇଛି ।
- ଜାତୀୟ ଗ୍ରାମ୍ୟ ସ୍ୱାସ୍ଥ୍ୟ ମିଶନ ପାଇଁ ୨୦୦୮-୦୯ ବଜେଟରେ ୬୧ କୋଟି ଟଙ୍କାର ବ୍ୟୟବରାଦ କରାଯାଇଛି ।
- ପ୍ରାଥମିକ ସ୍ୱାସ୍ଥ୍ୟ କେନ୍ଦ୍ରଗୁଡ଼ିକର ଗୃହ ନିର୍ମାଣ ପାଇଁ ୫୦.୦୦ କୋଟି ଟଙ୍କାର ବ୍ୟୟବରାଦ କରାଯାଇଛି ।
- ସେହିପରି ନୂତନ ଭାବେ ୫୦ ଗୋଟି ପ୍ରାଥମିକ ସ୍ୱାସ୍ଥ୍ୟ କେନ୍ଦ୍ର ପ୍ରତିଷ୍ଠା ପାଇଁ ୫.୦୦ କୋଟି ଟଙ୍କାର ବ୍ୟବସ୍ଥା କରାଯାଇଛି ।

- ଡାକ୍ତରଖାନାରେ ଚିକିତ୍ସିତ ହେଉଥିବା ରୋଗୀଙ୍କ ଖାଦ୍ୟ ବାବଦରେ ୨୦୦୭-୦୮ ଆର୍ଥିକ ବର୍ଷର ମୂଳ ବଜେଟରେ ୩.୮୪ କୋଟି ଟଙ୍କାର ବ୍ୟବସ୍ଥା ଥିବାବେଳେ ୨୦୦୮-୦୯ ଆର୍ଥିକ ବର୍ଷ ବଜେଟରେ ୭.୪୨ କୋଟି ଟଙ୍କାକୁ ବୃଦ୍ଧି କରାଯାଇଛି ।
- ସରକାରୀ ଡାକ୍ତରଖାନାରେ ଔଷଧ ଓ ଯନ୍ତ୍ରପାତି କ୍ରୟ ନିମନ୍ତେ ଯଥାକ୍ରମେ ୨୪.୦୭ ଓ ୨୮.୪୧ କୋଟି ଟଙ୍କାର ବ୍ୟୟବରାଦ କରାଯାଇଛି ।

**ଆଇନ ବିଭାଗ**

- ଶ୍ରୀଜଗନ୍ନାଥ ମନ୍ଦିରର ଉନ୍ନୟନ ପାଇଁ ମନ୍ଦିର କର୍ପସ ପାଣ୍ଠିକୁ ୫.୦୦ କୋଟି ଟଙ୍କା ପ୍ରଦାନ କରାଯାଇଛି ।
- ବିବାହ ବିଚ୍ଛେଦ ହୋଇଥିବା ଅଧିକ ମୁସଲମାନ ମହିଳାମାନଙ୍କୁ ତଲାକୀ ପେନସନ୍ ଦେବାପାଇଁ ବିଭିନ୍ନ ସ୍ୱେଚ୍ଛାସେବୀ ଅନୁଷ୍ଠାନ ତଥା ମୁସଲମାନ ସଂପ୍ରଦାୟ ତରଫରୁ ବାରମ୍ବାର ଦାବୀ ହୋଇଆସୁଥିଲା । ସରକାର ଏହାକୁ ବିଚାରକୁ ନେଇ ରାଜ୍ୟ ବଜେଟରେ ୦.୩୧ କୋଟି ଟଙ୍କାର ବ୍ୟୟବରାଦ କରିଛନ୍ତି ।
- କନ୍ଧମାଳ, କଳାହାଣ୍ଡି ଓ କେନ୍ଦୁଝର ଜିଲ୍ଲାରେ ୩ ଗୋଟି ନୂଆ ଦୁର୍ନୀତି ନିବାରଣ ଅଦାଲତ (Vigilance Court) ସ୍ଥାପନ ପାଇଁ ୨୦୦୮-୦୯ ବଜେଟରେ ୬୨.୦୦ ଲକ୍ଷ ଟଙ୍କାର ବ୍ୟୟବରାଦ କରାଯାଇଛି ।

**ଉଚ୍ଚଶିକ୍ଷା ବିଭାଗ**

- ଶିକ୍ଷା ହେଉଛି ଜୀବନର ମାନଦଣ୍ଡ । ଯେଉଁ ଜାତି ଯେତେ ଶିକ୍ଷିତ, ସେ ଜାତି ସେତେ ଉନ୍ନତ । ଉଚ୍ଚଶିକ୍ଷାର ବିକାଶ ପାଇଁ ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ନବୀନ ପଟ୍ଟନାୟକଙ୍କ ନେତୃତ୍ୱରେ ଗଠିତ ସରକାର ସଦାସର୍ବଦା ଗୁରୁତ୍ୱ ଦେଇ ଆସିଛନ୍ତି ।
- ଉଚ୍ଚଶିକ୍ଷା ବିଭାଗରେ ବୃତ୍ତିଗତ ଶିକ୍ଷାପାଇଁ (ଇଞ୍ଜିନିୟରିଂ/ଡାକ୍ତରୀ/ଏମ୍.ବି.ଏ./ଏମ୍.ସି.ଏ.) ୧୦୦୦୦ ଛାତ୍ରଛାତ୍ରୀଙ୍କୁ ପ୍ରତ୍ୟେକ ବାର୍ଷିକ ୧୦୦୦୦ ଟଙ୍କା ବୃତ୍ତି ଦେବା ପାଇଁ ସ୍ଥିର ହୋଇଛି ଏବଂ ଏଥିପାଇଁ ୨୦୦୮-୦୯ ଆର୍ଥିକ ବର୍ଷ ବଜେଟ୍‌ରେ ୧୦ କୋଟି ଟଙ୍କାର ବ୍ୟୟବରାଦ କରାଯାଇଛି ।
- ରେଭେନ୍ସା ବିଶ୍ୱବିଦ୍ୟାଳୟର ଭିତ୍ତିଭୂମି ଉନ୍ନୟନ ପାଇଁ ୫ କୋଟି ଟଙ୍କା ଏବଂ ପ୍ରଥମ ଥର ପାଇଁ ପ୍ରସ୍ତାବିତ ଆଇନ୍ ବିଶ୍ୱବିଦ୍ୟାଳୟ ପାଇଁ ୩ କୋଟି ଟଙ୍କାର ବ୍ୟୟବରାଦ ଆଗାମୀ ବର୍ଷ ବଜେଟରେ କରାଯାଇଛି ।
- ବିଶ୍ୱବିଦ୍ୟାଳୟଗୁଡ଼ିକର ମାନଦଣ୍ଡରେ ଉନ୍ନତି ଆଣିବା ପାଇଁ ଆଗାମୀ ୨୦୦୮-୦୯ ଆର୍ଥିକ ବର୍ଷ ବଜେଟରେ ବିଭିନ୍ନ ବିଶ୍ୱବିଦ୍ୟାଳୟକୁ ବ୍ଲକ୍ ଅନୁଦାନ ଦେବାପାଇଁ ୭୧.୩୭ କୋଟି ଟଙ୍କାର ବ୍ୟୟବରାଦ ନିମ୍ନମତେ କରାଯାଇଛି -

| | | |
|---|---|---|
| ଉତ୍କଳ ବିଶ୍ୱବିଦ୍ୟାଳୟ | - | ୨୮.୦୪ କୋଟି ଟଙ୍କା |
| ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ | - | ୧୫.୩୩ କୋଟି ଟଙ୍କା |
| ସମ୍ବଲପୁର ବିଶ୍ୱବିଦ୍ୟାଳୟ | - | ୧୫.୯୪ କୋଟି ଟଙ୍କା |
| ଶ୍ରୀଜଗନ୍ନାଥ ସଂସ୍କୃତ ବିଶ୍ୱବିଦ୍ୟାଳୟ | - | ୨.୩୭ କୋଟି ଟଙ୍କା |
| ଫକୀରମୋହନ ବିଶ୍ୱବିଦ୍ୟାଳୟ | - | ୧.୯୪ କୋଟି ଟଙ୍କା |
| ଉତ୍ତର ଓଡ଼ିଶା ବିଶ୍ୱବିଦ୍ୟାଳୟ | - | ୧.୬୩ କୋଟି ଟଙ୍କା |
| ଉତ୍କଳ କୃଷି ଓ ବୈଷୟିକ ବିଶ୍ୱବିଦ୍ୟାଳୟ ଅଧୀନସ୍ଥ ମୌଳିକ ବିଜ୍ଞାନ ଓ କଳା ମହାବିଦ୍ୟାଳୟ | - | ୧.୧୨ କୋଟି ଟଙ୍କା |
| ରେଭେନ୍ସା ବିଶ୍ୱବିଦ୍ୟାଳୟ | - | ୫.୦୦ କୋଟି ଟଙ୍କା |

➢ ଉଚ୍ଚଶିକ୍ଷା ବିଭାଗ ଅଧୀନରେ ବେସରକାରୀ ମହାବିଦ୍ୟାଳୟମାନଙ୍କୁ ଅନୁଦାନ ପ୍ରଦାନ ପାଇଁ ୧୧୩.୦୧ କୋଟି ଟଙ୍କାର ବ୍ୟୟବରାଦ କରାଯାଇଥିବା ବେଳେ ତନ୍ମଧ୍ୟରୁ ୧୧.୦୦ କୋଟି ଟଙ୍କା ବକେୟା ଦରମା ପାଇଁ ଉଦ୍ଦିଷ୍ଟ ଅଟେ ।

➢ ସବୁଠାରୁ ଗୁରୁତ୍ୱପୂର୍ଣ୍ଣ କଥା ହେଉଛି ଉଚ୍ଚଶିକ୍ଷା ବିଭାଗରେ ପ୍ରଥମ ଥର ପାଇଁ ୧୭୨ କୋଟି ଟଙ୍କା ଯୋଜନା କ୍ଷେତ୍ରରୁ ଅଣଯୋଜନା କ୍ଷେତ୍ରକୁ ହସ୍ତାନ୍ତର ହୋଇଛି ଏବଂ ତନ୍ମଧ୍ୟରୁ ୨୯.୨୭ କୋଟି ଟଙ୍କା ବକେୟା ଦରମା ପାଇଁ ଉଦ୍ଦିଷ୍ଟ ଅଟେ ।

➢ ସରକାରୀ କଲେଜର କମ୍ପ୍ୟୁଟରୀକରଣ ପାଇଁ ୨୦୦୮-୦୯ ବଜେଟରେ ୧୬.୭୫ କୋଟି ଟଙ୍କାର ବ୍ୟୟବରାଦ କରାଯାଇଛି ।

**ବିଦ୍ୟାଳୟ ଓ ଗଣଶିକ୍ଷା ବିଭାଗ**

➢ ସର୍ବଶିକ୍ଷା ଅଭିଯାନ ପାଇଁ ରାଜ୍ୟ ଅଂଶ ବାବଦରେ ୨୦୦୮-୦୯ ଆର୍ଥିକ ବର୍ଷ ବଜେଟରେ ୩୦୦ କୋଟି ଟଙ୍କାର ବ୍ୟୟବରାଦ କରାଯାଇଛି ।

➢ ନୂଆ ମଡ଼େଲ ସ୍କୁଲ ସ୍ଥାପନ, ହାଇସ୍କୁଲମାନଙ୍କର ଭିତ୍ତିଭୂମି ଉନ୍ନୟନ ଓ ଛାତ୍ରୀଙ୍କୁ ପ୍ରୋତ୍ସାହନ ଯୋଗାଇ ଦେବା ଲକ୍ଷ୍ୟରେ SUCCESS ନାମରେ କେନ୍ଦ୍ରୀୟ ପ୍ରବର୍ତ୍ତିତ ଯୋଜନା ପାଇଁ ରାଜ୍ୟ ଅଂଶ ବାବଦରେ ୨୦୦୮-୦୯ ଆର୍ଥିକ ବର୍ଷ ବଜେଟରେ ୫ କୋଟି ଟଙ୍କାର ବ୍ୟୟବରାଦ କରାଯାଇଛି ।

➢ କସ୍ତୁରବା ଗାନ୍ଧୀ ବାଳିକା ବିଦ୍ୟାଳୟ ପାଇଁ ୨୦୦୭-୦୮ ଆର୍ଥିକ ବର୍ଷ ମୂଳ ବଜେଟରେ ୪.୦୧ କୋଟି ଟଙ୍କାର ବ୍ୟୟବରାଦ ହୋଇଥିବା ବେଳେ ୨୦୦୮-୦୯ ଆର୍ଥିକ ବର୍ଷ ବଜେଟରେ ଏଥିପାଇଁ ୧୨ କୋଟି ଟଙ୍କାର ବ୍ୟବସ୍ଥା ରଖାଯାଇଛି ।

➢ ପ୍ରାକ୍ ମାଟ୍ରିକ୍ ବୃତ୍ତି ୨୦ ଟଙ୍କାରୁ ୧୦୦ ଟଙ୍କାକୁ ବୃଦ୍ଧି କରାଯିବାର ପ୍ରସ୍ତାବ ଅଛି । ଏଥିନିମନ୍ତେ ଆଗାମୀ ବଜେଟରେ ୫ କୋଟି ଟଙ୍କାର ବ୍ୟୟବରାଦ କରାଯାଇଛି ।

➢ ଉଚ୍ଚବିଦ୍ୟାଳୟ (High School) ଓ ଉଚ୍ଚ ପ୍ରାଥମିକ ବିଦ୍ୟାଳୟ କ୍ଷେତ୍ରରେ ବ୍ଲକ୍ ଅନୁଦାନ ପାଇଁ ୨୦୦୮-୦୯ ବଜେଟରେ ଯଥାକ୍ରମେ ୪୫.୭୧ କୋଟି ଏବଂ ୪.୮୨ କୋଟି ଟଙ୍କାର ବ୍ୟୟବରାଦ କରାଯାଇଛି ।

➢ ସରକାରୀ ଉଚ୍ଚ ବିଦ୍ୟାଳୟରେ ଖାଲି ପଡୁଥିବା ଶିକ୍ଷକ ପଦବୀ ପୂରଣ ପାଇଁ ସରକାର ଚୁକ୍ତିଭିତ୍ତିରେ ଶିକ୍ଷକ ନିଯୁକ୍ତି କରିବା ସଂଗେସଂଗେ ମାସିକ ବେତନ ବୃଦ୍ଧି କରାଯାଇଛି । ଏଥିପାଇଁ ୨୦୦୮-୦୯ ବଜେଟରେ ୧୯.୫୭ କୋଟି ଟଙ୍କାର ବ୍ୟୟବରାଦ କରାଯାଇଛି ।

➢ ମୁଁ ମାନ୍ୟବର ସଦସ୍ୟ ଓ ସଦସ୍ୟାମାନଙ୍କୁ ଜଣାଇଦେବାକୁ ଚାହେଁ ଯେ, ନିଶ୍ଚିତ ଶିକ୍ଷା ଯୋଜନା (Education Guarantee Scheme) ଅଧୀନରେ ଛଟେଇ ହୋଇଥିବା ଶିକ୍ଷକମାନଙ୍କୁ ଗଣଶିକ୍ଷକ ରୂପେ ନିଯୁକ୍ତି ଦେବାପାଇଁ ସରକାର ଏକ ଗୁରୁତ୍ୱପୂର୍ଣ୍ଣ ନିଷ୍ପତ୍ତି ନେଇଛନ୍ତି ।

➢ ବିଦ୍ୟାଳୟ ଓ ଗଣଶିକ୍ଷା ବିଭାଗ ଅଧୀନରେ ୭୬୬୧ ଶିକ୍ଷା ସହାୟକଙ୍କୁ ୬ ବର୍ଷ ଚାକିରି କଲାପରେ ନିୟମିତ ଶିକ୍ଷକ ରୂପେ ଗ୍ରହଣ କରିବା ପାଇଁ ସରକାର ନୀତିଗତ ଭାବେ ନିଷ୍ପତ୍ତି ନେଇଛନ୍ତି ଏବଂ ଏଥିପାଇଁ ୨୦୦୮-୦୯ ଆର୍ଥିକ ବର୍ଷ ବଜେଟରେ ୭୨.୪୮ କୋଟି ଟଙ୍କାର ବ୍ୟୟବରାଦ କରାଯାଇଛି ।

➢ ଯୋଜନା କ୍ଷେତ୍ରରୁ ଅଣ ଯୋଜନା କ୍ଷେତ୍ରକୁ ହସ୍ତାନ୍ତର ପାଇଁ ୧୦୬.୬୩ କୋଟି ଟଙ୍କାର ବ୍ୟୟବରାଦ କରାଯାଇଛି ।

➢ ସେହିପରି ବେସରକାରୀ ଉଚ୍ଚ ବିଦ୍ୟାଳୟ, ଉଚ୍ଚ ପ୍ରାଥମିକ ବିଦ୍ୟାଳୟ, ପ୍ରାଥମିକ ବିଦ୍ୟାଳୟ, ସଂସ୍କୃତ ଟୋଲ୍ ଏବଂ ମଦ୍ରାସା ପାଇଁ ୨୦୦୮-୦୯ ଆର୍ଥିକ ବର୍ଷ ବଜେଟରେ ଯଥାକ୍ରମେ- ୯.୦୭, ୩.୧୨, ୫.୪୦, ୮.୨୩ ଏବଂ ୨.୧୮ କୋଟି ଟଙ୍କାର ବ୍ୟୟବରାଦ କରାଯାଇଛି ।

➢ ବିଦ୍ୟାଳୟମାନଙ୍କରେ ଶିକ୍ଷାଦାନ ସାମଗ୍ରୀ ଓ ବିଜ୍ଞାନ ଉପକରଣ କ୍ରୟ ନିମନ୍ତେ ଯଥାକ୍ରମେ ୫୦.୦୦ କୋଟି ଓ ୩.୪୭ କୋଟି ଟଙ୍କା ୨୦୦୮-୦୯ ବଜେଟରେ ବ୍ୟୟବରାଦ କରାଯାଇଛି ।

**ଯୋଜନା ଓ ସମନ୍ୱୟ ବିଭାଗ**

- ପଶ୍ଚିମ ଓଡ଼ିଶା ବିକାଶ ପରିଷଦ ପାଇଁ ୮୦ କୋଟି ଟଙ୍କାର ଅନୁଦାନ ବ୍ୟବସ୍ଥା ୨୦୦୮-୦୯ ବଜେଟରେ କରାଯାଇଛି । ଏଥିମଧ୍ୟରୁ ୫୦ କୋଟି ଟଙ୍କା ପଶ୍ଚିମ ଓଡ଼ିଶା ବିକାଶ ପରିଷଦର ସ୍ୱତନ୍ତ୍ର ପ୍ରକଳ୍ପ ପାଇଁ ଉଦ୍ଦିଷ୍ଟ ।
- ବିଜୁ କେ.ବି.କେ. ଯୋଜନା ପାଇଁ ୨୦୦୮-୦୯ ବଜେଟରେ ୧୨୦ କୋଟି ଟଙ୍କାର ବ୍ୟୟବରାଦ କରାଯାଇଛି ।
- ବିଧାୟକ ଆଞ୍ଚଳିକ ଉନ୍ନୟନ ପାଣ୍ଠି ପାଇଁ ବଜେଟରେ ୧୧୦.୨୫ କୋଟି ଟଙ୍କାର ବ୍ୟୟବରାଦ କରାଯାଇଛି ।
- ସ୍ୱତନ୍ତ୍ର ସମସ୍ୟା ପାଣ୍ଠି (Special Problem Fund) ପାଇଁ ୨୦୦୮-୦୯ ବଜେଟରେ ୨୦.୦୦ କୋଟି ଟଙ୍କାର ବ୍ୟୟବରାଦ କରାଯାଇଛି ।
- ଏକ ଲକ୍ଷ ଯୁବକଙ୍କୁ ଆତ୍ମନିଯୁକ୍ତି ମିଶନ ଜରିଆରେ କମ୍ପ୍ୟୁଟର ପ୍ରଶିକ୍ଷଣ ଦେବା ପାଇଁ ୨୦୦୮-୦୯ ବଜେଟରେ ୨୦ କୋଟି ଟଙ୍କାର ବ୍ୟୟବରାଦ କରାଯାଇଛି ।

**ରାଜସ୍ୱ ଓ ବିପର୍ଯ୍ୟୟ ପରିଚାଳନା ବିଭାଗ**

- କେନ୍ଦ୍ରୀୟ ପ୍ରବର୍ତ୍ତିତ ଯୋଜନା ପାଇଁ ରାଜ୍ୟ ଅଂଶ ବାବଦରେ ୨୦୦୭-୦୮ ଆର୍ଥିକ ବର୍ଷ ମୂଳ ବଜେଟରେ ମାତ୍ର ୦.୦୧ କୋଟି ଟଙ୍କାର ବ୍ୟୟବରାଦ କରାଯାଇଥିବା ବେଳେ ୨୦୦୮-୦୯ ବଜେଟରେ ଏହାକୁ ୨.୮୩ କୋଟି ଟଙ୍କାକୁ ବୃଦ୍ଧି କରାଯାଇଛି ।
- ସେହିପରି ଜମିଜମା ସମ୍ବନ୍ଧୀୟ ନକ୍ସା ନିରୀକ୍ଷଣ (Scanning of Cadastral Map) ପାଇଁ ୨୦୦୮-୦୯ ବଜେଟରେ ୨.୦୦ କୋଟି ଟଙ୍କାର ବ୍ୟୟବରାଦ ।
- ଏହି ପବିତ୍ର ଗୃହର ମାନ୍ୟବର ସଦସ୍ୟ/ସଦସ୍ୟାମାନଙ୍କୁ ମୁଁ ଜଣାଇଦେବାକୁ ଚାହେଁ ଯେ ଆମ ସରକାର ଗରିବ ଓ ସାଧାରଣ ଲୋକଙ୍କର ସୁବିଧାକୁ ଆଖି ଆଗରେ ରଖି ଚଳିତ ବର୍ଷ ୬୦ ଗୋଟି, ଆଗାମୀ ବର୍ଷରେ ୫୦ ଗୋଟି ଏବଂ ୨୦୦୯-୧୦ ଆର୍ଥିକ ବର୍ଷରେ ଅବଶିଷ୍ଟ ନୂଆ ତହସିଲ ପ୍ରତିଷ୍ଠା କରିବା ପାଇଁ ନିଷ୍ପତ୍ତି ନେଇଛନ୍ତି ଏବଂ ତଦନୁସାରେ ଆଗାମୀ ବର୍ଷ ବଜେଟରେ ୧୦.୦୦ କୋଟି ଟଙ୍କାର ବ୍ୟୟବରାଦ କରାଯାଇଛି ।
- ନୂତନ ଏବଂ ଆଗରୁ ଥିବା ତହସିଲ ଅଫିସ୍ ଗୃହ ନିର୍ମାଣ ପାଇଁ ୨୧.୬୦ କୋଟି ଟଙ୍କାର ବ୍ୟବସ୍ଥା ବଜେଟରେ ରଖାଯାଇଛି ।
- ତହସିଲ ଏବଂ ସବ୍‌ଡ଼ିଭିଜନର ସଦର ମହକୁମାରେ କର୍ମଚାରୀଙ୍କ ସରକାରୀ ବାସଗୃହ ନିର୍ମାଣ ପାଇଁ ୨୦୦୮-୦୯ ବଜେଟରେ ୧୧.୦୦ କୋଟି ଟଙ୍କାର ବ୍ୟୟବରାଦ କରାଯାଇଛି
- ସେହିପରି ବଜ୍ରପାତରେ ମୃତ୍ୟୁବରଣ କରିଥିବା ବ୍ୟକ୍ତିଙ୍କ ନିକଟ ସମ୍ପର୍କୀୟଙ୍କୁ ୫୦ ହଜାର ଟଙ୍କା ହାରରେ ଅନୁକମ୍ପା ଅର୍ଥ ପ୍ରଦାନ ପାଇଁ ଆଗାମୀ ଆର୍ଥିକ ବର୍ଷ ବଜେଟରେ ୧.୦୦ କୋଟି ଟଙ୍କାର ବ୍ୟବସ୍ଥା ରଖାଯାଇଛି ।

**କ୍ରୀଡ଼ା ଓ ଯୁବସେବା ବିଭାଗ**

- ଖେଳ ପଡ଼ିଆର ଉନ୍ନତି ପାଇଁ ୨୦୦୮-୦୯ ବଜେଟରେ ୭ କୋଟି ଟଙ୍କାର ବ୍ୟୟବରାଦ ।
- ସମ୍ବେଦନଶୀଳ ଅଞ୍ଚଳରେ କ୍ରୀଡ଼ା ଉପକରଣ ବଣ୍ଟନ ନିମନ୍ତେ ୧୦ କୋଟି ଟଙ୍କାର ବ୍ୟୟବରାଦ ।
- **ଇସ୍ପାତ ଓ ଖଣି ବିଭାଗ**
- ଖଣିଜ ପଥର ଚୋରା କାରବାରକୁ ରୋକିବାପାଇଁ ୨୦୦୮-୦୯ ଆର୍ଥିକ ବର୍ଷ ବଜେଟରେ ୨ କୋଟି ଟଙ୍କାର ବ୍ୟୟବରାଦ କରାଯାଇଛି ।

**ଗ୍ରାମ୍ୟ ଉନ୍ନୟନ ବିଭାଗ**

- ଗ୍ରାମ୍ୟ ଉନ୍ନୟନ ବିଭାଗରେ 'ଜଳଧାରା' ନାମରେ ଏକ ନୂତନ ଯୋଜନା ପ୍ରଣୟନ ପାଇଁ ୨୦୦୮-୦୯ ଆର୍ଥିକ ବର୍ଷ ବଜେଟରେ ୧ କୋଟି ଟଙ୍କାର ବ୍ୟବସ୍ଥା କରାଯାଇଛି ।

- ଗ୍ରାମ୍ୟ ଭିତ୍ତିଭୂମି ଉନ୍ନୟନ ପାଣ୍ଠି ପାଇଁ ୨୦୦୭-୦୮ ଆର୍ଥିକ ବର୍ଷ ମୂଳ ବଜେଟରେ ୫୮ କୋଟି ଟଙ୍କାର ବ୍ୟୟବରାଦ ହୋଇଥିବାବେଳେ ୨୦୦୮-୦୯ ଆର୍ଥିକ ବର୍ଷ ବଜେଟରେ ଏହାକୁ ୭୧ କୋଟି ଟଙ୍କାକୁ ବୃଦ୍ଧି କରାଯାଇଛି ।
- ଗ୍ରାମ୍ୟ ଉନ୍ନୟନ ବିଭାଗରେ ବିଭିନ୍ନ କେନ୍ଦ୍ରୀୟ ପ୍ରବର୍ତ୍ତିତ ଯୋଜନା ପାଇଁ ୨୦୦୭-୦୮ ମୂଳ ବଜେଟରେ ୧୦୮.୦୦ କୋଟି ଟଙ୍କାର ବ୍ୟୟବରାଦ ହୋଇଥିବାବେଳେ ୨୦୦୮-୦୯ ଆର୍ଥିକ ବର୍ଷ ବଜେଟରେ ଏହାକୁ ୧୮୨ କୋଟି ଟଙ୍କାକୁ ବୃଦ୍ଧି କରାଯାଇଛି ।
- ଗ୍ରାମ୍ୟ ଉନ୍ନୟନ ବିଭାଗ ଅଧୀନସ୍ଥ ବିଭିନ୍ନ କାର୍ଯ୍ୟାଳୟ ଏବଂ ଆବାସିକ ଗୃହ ନିର୍ମାଣ ପାଇଁ ୧୧.୦୦ କୋଟି ଟଙ୍କାର ବ୍ୟୟବରାଦ କରାଯାଇଛି ।
- ଗ୍ରାମ୍ୟ ଉନ୍ନୟନ ବିଭାଗରେ ଆବାସିକ ଓ ଅଣଆବାସିକ ଗୃହର ରକ୍ଷଣାବେକ୍ଷଣ ପାଇଁ ୨୦୦୭-୦୮ ଆର୍ଥିକ ବର୍ଷ ମୂଳ ବଜେଟରେ ୧୦୫.୮୬ କୋଟି ଟଙ୍କାର ବ୍ୟୟବରାଦ ହୋଇଥିବାବେଳେ ୨୦୦୮-୦୯ ଆର୍ଥିକ ବର୍ଷ ବଜେଟରେ ଏଥିପାଇଁ ୧୧୨.୩୬ କୋଟି ଟଙ୍କାର ବ୍ୟୟବରାଦ ହୋଇଛି । ସେହିପରି ଜଳଯୋଗାଣ ଓ ପରିମଳ ବ୍ୟବସ୍ଥା ପାଇଁ ୨୦୦୭-୦୮ ଆର୍ଥିକ ବର୍ଷ ମୂଳ ବଜେଟରେ ୧୯.୧୫ କୋଟି ଟଙ୍କାର ବ୍ୟୟବରାଦ ହୋଇଥିବାବେଳେ ୨୦୦୮-୦୯ ଆର୍ଥିକ ବର୍ଷ ବଜେଟରେ ଏହାକୁ ୨୦.୦୦ କୋଟି ଟଙ୍କାକୁ ବୃଦ୍ଧି କରାଯାଇଛି ।
- ଅପରପକ୍ଷେ ଅଣଯୋଜନା କ୍ଷେତ୍ରରେ ମଧ୍ୟ ରାସ୍ତାଘାଟର ରକ୍ଷଣାବେକ୍ଷଣ ଓ ଗ୍ରାମ୍ୟ ଭିତ୍ତିଭୂମି ଉନ୍ନୟନ ପାଣ୍ଠି ଓ ଅନ୍ୟ ପାଣ୍ଠି ଦ୍ୱାରା ଅସଂପୂର୍ଣ୍ଣ ପ୍ରକଳ୍ପକୁ ସମ୍ପୂର୍ଣ୍ଣ କରିବା ପାଇଁ ୨୦୦୮-୦୯ ଆର୍ଥିକ ବର୍ଷ ବଜେଟରେ ଯଥାକ୍ରମେ ୨୮୮.୭୦ କୋଟି ଟଙ୍କା ଏବଂ ୨୯.୦୦ କୋଟି ଟଙ୍କାର ବ୍ୟୟବରାଦ କରାଯାଇଛି ।

**ବିଜ୍ଞାନ ଓ କାରିଗରି ବିଭାଗ**

- ଭୁବନେଶ୍ୱରଠାରେ ଜୈବ ବୈଷୟିକ ସୂଚନା ଓ ପ୍ରଯୁକ୍ତି ପାର୍କ ପାଇଁ ୨୦୦୮-୦୯ ଆର୍ଥିକ ବର୍ଷରେ ୭ କୋଟି ଟଙ୍କାର ବ୍ୟୟବରାଦ କରାଯାଇଛି ।
- ଜୈବ-ଡିଜେଲ ପ୍ରକଳ୍ପ ପାଇଁ ୨୦୦୮-୦୯ ବଜେଟରେ ୧ କୋଟି ଟଙ୍କାର ବ୍ୟୟବରାଦ କରାଯାଇଛି ।

**ପରିବହନ ବିଭାଗ**

- ସଡ଼କ ସୁରକ୍ଷା ଏବଂ ରାଜ୍ୟ ପରିବହନ କର୍ତ୍ତୃପକ୍ଷ, ଆଞ୍ଚଳିକ ପରିବହନ କାର୍ଯ୍ୟାଳୟ ଏବଂ ତନଖି ଫାଟକ ଆଧୁନିକୀକରଣ ତଥା ନୂତନ ଆଞ୍ଚଳିକ ପରିବହନ କାର୍ଯ୍ୟାଳୟ ପାଇଁ ୧୮ କୋଟି ଟଙ୍କାର ବ୍ୟୟବରାଦ କରାଯାଇଛି ।

**ପର୍ଯ୍ୟଟନ ବିଭାଗ**

- ପୁରୀଠାରେ ଜଳଜ ଉଦ୍ଭିଦ ଓ ଜୀବଜନ୍ତୁ ରଖିବା ପାଇଁ ଜଳାଧାର (Aquarium) ପ୍ରତିଷ୍ଠା ପାଇଁ ୨୦୦୮-୦୯ ଆର୍ଥିକ ବର୍ଷ ବଜେଟରେ ୩ କୋଟି ଟଙ୍କାର ବ୍ୟୟବରାଦ ।
- ଶାମୁକା ପ୍ରକଳ୍ପ ପାଇଁ ୧୦ କୋଟି ଟଙ୍କାର ବ୍ୟୟବରାଦ ୨୦୦୮-୦୯ ବଜେଟରେ କରାଯାଇଛି ।
- ଓଡ଼ିଶାର ପର୍ଯ୍ୟଟନ କ୍ଷେତ୍ରରେ ଥିବା ପ୍ରାଚୀନ ଐତିହ୍ୟ ଓ କୀର୍ତ୍ତିରାଜିକୁ ବିଶ୍ୱବାସୀଙ୍କ ଦୃଷ୍ଟି ଆକର୍ଷଣ କରିବା ନିମନ୍ତେ ଉପଯୁକ୍ତ ବିଜ୍ଞାପନ ପାଇଁ ୨୦୦୮-୦୯ ବଜେଟରେ ୨.୦୦ କୋଟି ଟଙ୍କାର ବ୍ୟୟବରାଦ କରାଯାଇଛି ।
- ଖଣ୍ଡଗିରି ଏବଂ ପ୍ରାଚୀ ଐତିହ୍ୟର ଉନ୍ନତି ପାଇଁ ବଜେଟରେ ୧.୦୦ କୋଟି ଟଙ୍କାର ବ୍ୟୟବରାଦ କରାଯାଇଛି ।

**ବୟନ ଓ ହସ୍ତତନ୍ତ ବିଭାଗ**

- ମୁଖ୍ୟମନ୍ତ୍ରୀଙ୍କ ଘୋଷଣା ଅନୁସାରେ ଏହି ବିଭାଗରେ ହସ୍ତତନ୍ତର ଉନ୍ନତି ପାଇଁ ସ୍ୱତନ୍ତ୍ର ପ୍ୟାକେଜର ବ୍ୟବସ୍ଥା କରାଯାଇଛି । ଏଥିପାଇଁ ୨୦୦୮-୦୯ ଆର୍ଥିକ ବର୍ଷ ବଜେଟରେ ୭.୧୪ କୋଟି ଟଙ୍କା ବ୍ୟୟବରାଦ କରାଯାଇଛି ।

**ପୂର୍ତ୍ତ ବିଭାଗ**

- ପୂର୍ତ୍ତ ବିଭାଗ ଅଧୀନରେ କେନ୍ଦ୍ରୀୟ ସଡ଼କ ପାଣ୍ଠି ଓ କଟକ ପାରାଦୀପ ରାସ୍ତା ପାଇଁ ୨୦୦୭-୦୮ ବର୍ଷର ମୂଳ ବଜେଟରେ ଯଥାକ୍ରମେ ୧୪.୭୩ କୋଟି ଟଙ୍କା ଓ ୧୦.୨୯ କୋଟି ଟଙ୍କାର ବ୍ୟୟବରାଦ ହୋଇଥିଲା ବେଳେ ୨୦୦୮-୦୯ ଆର୍ଥିକ ବର୍ଷ ବଜେଟରେ ଏହାକୁ ଯଥାକ୍ରମେ ୫୮.୨୫ କୋଟି ଟଙ୍କା ଏବଂ ୫୦.୦୦ କୋଟି ଟଙ୍କାକୁ ବୃଦ୍ଧି କରାଯାଇଛି । ସେହିପରି ଗ୍ରାମ୍ୟ ଭିତ୍ତିଭୂମି ଉନ୍ନୟନ ପାଣ୍ଠି ଓ ଜମି ଅଧିଗ୍ରହଣ/ବିସ୍ତୃତ ପ୍ରକଳ୍ପ ରିପୋର୍ଟ ପ୍ରସ୍ତୁତି ଭିତ୍ତି ସଂରଚନା ପାଇଁ ୨୦୦୮-୦୯ ଆର୍ଥିକ ବର୍ଷ ବଜେଟରେ ଯଥାକ୍ରମେ ୧୪୩.୦୦ କୋଟି ଟଙ୍କା ଓ ୧୦.୦୦ କୋଟି ଟଙ୍କାର ବ୍ୟୟବରାଦ କରାଯାଇଛି ।
- ଗ୍ରାମ୍ୟ ଭିତ୍ତିଭୂମି ଉନ୍ନୟନ ପାଣ୍ଠି ଓ ଅନ୍ୟ ପାଣ୍ଠି ଦ୍ୱାରା ଅସମ୍ପୂର୍ଣ୍ଣ ପ୍ରକଳ୍ପକୁ ସମ୍ପୂର୍ଣ୍ଣ କରିବା ପାଇଁ ୨୦୦୭-୦୮ ଆର୍ଥିକ ବର୍ଷ ବଜେଟରେ ୨୫ କୋଟି ଟଙ୍କାର ବ୍ୟୟବରାଦ କରାଯାଇଥିବାବେଳେ ୨୦୦୮-୦୯ ଆର୍ଥିକ ବର୍ଷ ବଜେଟରେ ଏଥିପାଇଁ ୪୭ କୋଟି ଟଙ୍କାର ବ୍ୟବସ୍ଥା କରାଯାଇଛି ।
- ପୂର୍ତ୍ତ ବିଭାଗ ଅଧୀନରେ ଆବାସିକ ଓ ଅଣଆବାସିକ ଗୃହର ରକ୍ଷଣାବେକ୍ଷଣ ପାଇଁ ୨୦୦୭-୦୮ ଆର୍ଥିକ ବର୍ଷ ବଜେଟରେ ୧୯୨.୨୫ କୋଟି ଟଙ୍କାର ବ୍ୟୟବରାଦ କରାଯାଇଥିବାବେଳେ ୨୦୦୮-୦୯ ଆର୍ଥିକ ବର୍ଷ ବଜେଟରେ ଏଥିପାଇଁ ୨୧୨.୩୬ କୋଟି ଟଙ୍କାର ବ୍ୟୟବରାଦ କରାଯାଇଛି । ସେହିପରି ରାସ୍ତାଘାଟର ରକ୍ଷଣାବେକ୍ଷଣ ପାଇଁ ଆଗାମୀ ବର୍ଷ ବଜେଟରେ ୪୦୬.୯୫ କୋଟି ଟଙ୍କାର ବ୍ୟୟବରାଦ କରାଯାଇଛି ଏବଂ ତନ୍ମଧ୍ୟରୁ କଟକ, ସମ୍ବଲପୁର ଓ ବ୍ରହ୍ମପୁର ସହର ଓ ଏହାର ଆଖପାଖ ଅଞ୍ଚଳରେ ରାସ୍ତାଘାଟର ଉନ୍ନତି ପାଇଁ ୩୦.୦୦ କୋଟି ଟଙ୍କା ଉଦ୍ଦିଷ୍ଟ ।

**ଅବକାରୀ ବିଭାଗ**

- ଅବକାରୀ ପ୍ରଶାସନକୁ ସୁଦୃଢ଼ କରିବା ଉଦ୍ଦେଶ୍ୟରେ ବନ୍ଧୁକ, ଗାଡ଼ି ଇତ୍ୟାଦି କ୍ରୟ ଓ ମାନ ନିର୍ଦ୍ଧାରଣ ପରୀକ୍ଷାଗାର ତଥା ନୂତନ ଅବକାରୀ ଜିଲ୍ଲା ଗଠନ ଇତ୍ୟାଦି ନିମନ୍ତେ ୨୦୦୮-୦୯ ଆର୍ଥିକ ବର୍ଷ ବଜେଟରେ ୨.୧୭ କୋଟି ଟଙ୍କାର ବ୍ୟୟବରାଦ କରାଯାଇଛି ।
- ଅବକାରୀ ବିଭାଗର ଅଣଆବାସିକ ଗୃହ ନିର୍ମାଣ ପାଇଁ ୫.୦୦ କୋଟି ଟଙ୍କା ଓ କର୍ମଚାରୀମାନଙ୍କ ବାସଗୃହ ନିର୍ମାଣ ପାଇଁ ୫.୦୦ କୋଟି ଟଙ୍କା ଏହିପରି ମୋଟ ୧୦.୦୦ କୋଟି ଟଙ୍କାର ବ୍ୟୟବରାଦ କରାଯାଇଛି ।

**ଖାଦ୍ୟ ଯୋଗାଣ ଓ ଖାଉଟି କଲ୍ୟାଣ ବିଭାଗ**

- ମାପ ଓ ଓଜନ ନିର୍ଦ୍ଦେଶାଳୟକୁ ଅଧିକ ସକ୍ରିୟ କରିବା ପାଇଁ ୨୦୦୮-୦୯ ବଜେଟରେ ୨.୦୦ କୋଟି ଟଙ୍କାର ବ୍ୟୟବରାଦ କରାଯାଇଛି ।
- ଦାରିଦ୍ର୍ୟ ସୀମାରେଖା ତଳେ ରହୁଥିବା ଲୋକଙ୍କୁ ରିହାତି ଦରରେ ଚାଉଳ ଯୋଗାଇ ଦେବା ପାଇଁ ନୂତନ ଭାବେ ବଜେଟରେ ୩୦.୦୦ କୋଟି ଟଙ୍କାର ବ୍ୟୟବରାଦ କରାଯାଇଛି ।

**ମହିଳା ଓ ଶିଶୁ କଲ୍ୟାଣ ବିଭାଗ**

- ନୂତନ ଭାବେ ପ୍ରଚଳିତ ମଧୁବାବୁ ପେନ୍‌ସନ୍ ଯୋଜନାରେ ଅଧିକ ୩ ଲକ୍ଷ ହିତାଧିକାରୀଙ୍କ ପାଇଁ ୭୨.୦୦ କୋଟି ଟଙ୍କାର ବ୍ୟୟବରାଦ ବଜେଟରେ କରାଯାଇଛି ।
- ଜାତୀୟ ବାର୍ଦ୍ଧକ୍ୟ ଭତ୍ତା ଯୋଜନାରେ ୨୦୦୭-୦୮ ଆର୍ଥିକ ବର୍ଷ ମୂଳ ବଜେଟରେ ୧୫୨.୨୧ କୋଟି ଟଙ୍କା ବ୍ୟୟବରାଦ କରାଯାଇଥିଲା ବେଳେ ୨୦୦୮-୦୯ ଆର୍ଥିକ ବର୍ଷ ବଜେଟରେ ଏହାକୁ ୧୮୫.୬୬ କୋଟି ଟଙ୍କାକୁ ବୃଦ୍ଧି କରାଯାଇଛି ।
- ନାରୀ ଶିକ୍ଷାର ପ୍ରସାର ପାଇଁ ଅନୁସୂଚିତ ଜାତି ଓ ଜନଜାତି ବର୍ଗର ସ୍କୁଲ ଛାତ୍ରୀମାନଙ୍କୁ ସାଇକେଲ ପ୍ରଦାନ ପାଇଁ ୨୦.୦୦ କୋଟି ଟଙ୍କାର ବ୍ୟୟବରାଦ କରାଯାଇଛି ।
- ଏହି ବିଭାଗର ବିଭିନ୍ନ କେନ୍ଦ୍ରୀୟ ପ୍ରବର୍ତ୍ତିତ ଯୋଜନା ପାଇଁ ୨୦୦୮-୦୯ ଆର୍ଥିକ ବର୍ଷ ବଜେଟରେ ୧୬୩.୩୫ କୋଟି ଟଙ୍କାର ବ୍ୟୟବରାଦ କରାଯାଇଛି ।

➢ ନୂତନ ଭାବେ ଏକ ଲକ୍ଷ ମହିଳା ସ୍ୱୟଂ ସହାୟକ ଗୋଷ୍ଠୀଙ୍କୁ ୫୦୦୦ ଟଙ୍କା ହିସାବରେ ପ୍ରତ୍ୟେକ ଗୋଷ୍ଠୀକୁ ଆର୍ଥିକ ସହାୟତା ପ୍ରଦାନ ପାଇଁ ୫୦.୦୦ କୋଟି ଟଙ୍କାର ବ୍ୟୟବରାଦ ।

➢ ମଧ୍ୟାହ୍ନ ଭୋଜନ ଯୋଜନା (ଏମ୍.ଡି.ଏମ୍.) ଓ ଅତିରିକ୍ତ ପୁଷ୍ଟି ଯୋଜନା (ଏସ୍.ଏନ୍.ପି.) କାର୍ଯ୍ୟକ୍ରମ ପାଇଁ ୨୦୦୮-୦୯ ବଜେଟରେ ଯଥାକ୍ରମେ ୬୬.୧୯ କୋଟି ଟଙ୍କା ଏବଂ ୯୬.୦୭ କୋଟିର ବ୍ୟୟବରାଦ କରାଯାଇଛି ।

➢ ଶାରୀରିକ ଓ ମାନସିକ ଅନଗ୍ରସର ଲୋକଙ୍କ କଲ୍ୟାଣ ପାଇଁ ୨୦୦୮-୦୯ ବଜେଟରେ ୭.୦୦ କୋଟି ଟଙ୍କାର ବ୍ୟୟବରାଦ କରାଯାଇଛି ।

➢ ସେହିପରି ଅନାଥାଶ୍ରମ ଓ ଜରାନିବାସଗୁଡ଼ିକର ଉନ୍ନତି ପାଇଁ ବଜେଟରେ ୨.୦୦ କୋଟି ଟଙ୍କାର ବ୍ୟୟବରାଦ କରାଯାଇଛି ।

➢ ରାଜ୍ୟ ବାର୍ଦ୍ଧକ୍ୟ ଭତ୍ତା ଯୋଜନା ଓ ଭିନ୍ନକ୍ଷମ ଭତ୍ତା ଯୋଜନାକୁ ମିଶାଇ ଚଳିତ ବର୍ଷଠାରୁ ସରକାର ମଧୁବାବୁ ପେନ୍‌ସନ୍ ଯୋଜନା ପ୍ରଣୟନ କରିଛନ୍ତି । ଏଥିପାଇଁ ୨୦୦୮-୦୯ ଆର୍ଥିକ ବର୍ଷ ବଜେଟରେ ୨୧୮.୦୨ କୋଟି ଟଙ୍କାର ବ୍ୟୟବରାଦ କରାଯାଇଛି ।

➢ ସେହିପରି ଅନାଥାଶ୍ରମର ପରିଚାଳନା, ଅଙ୍ଗନୱାଡ଼ି କେନ୍ଦ୍ରର ମରାମତି ଓ ପରିଚାଳନା ଏବଂ ଭିନ୍ନକ୍ଷମ ଓ ମାନସିକ ଅନଗ୍ରସର ପିଲାଙ୍କୁ ଦେଖାଶୁଣା କରିବା ପାଇଁ ବିଭିନ୍ନ ସ୍ୱେଚ୍ଛାସେବୀ ଅନୁଷ୍ଠାନକୁ ୨୦୦୭-୦୮ ଆର୍ଥିକ ବର୍ଷ ବଜେଟରେ ଯଥାକ୍ରମେ ୩.୪୮, ୭.୦୦ ଏବଂ ୩.୮୦ କୋଟି ଟଙ୍କାର ବ୍ୟୟ ବରାଦ କରାଯାଇଥିବାବେଳେ ୨୦୦୮-୦୯ ଆର୍ଥିକ ବର୍ଷ ବଜେଟରେ ଏଥିପାଇଁ ଯଥାକ୍ରମେ ୩.୬୨, ୭.୦୦ ଏବଂ ୩.୮୦ କୋଟି ଟଙ୍କାର ବ୍ୟୟବରାଦ କରାଯାଇଛି ।

**ଅନୁସୂଚିତ ଜନଜାତି ଓ ଅନୁସୂଚିତ ଜାତି ଉନ୍ନୟନ ବିଭାଗ**

➢ ଅନୁସୂଚିତ ଜାତି, ଜନଜାତି ସଂଖ୍ୟା ଲଘୁ ଓ ଅନ୍ୟାନ୍ୟ ପଛୁଆ ବର୍ଗର ସାମାଜିକ ଉନ୍ନତି ପାଇଁ ଆମ ସରକାର ସବୁବେଳେ ଗୁରୁତ୍ୱ ଦେଇଆସୁଛନ୍ତି । ମୁଁ ଏହି ଗୃହର ମାନ୍ୟବର ସଦସ୍ୟ ସଦସ୍ୟାମାନଙ୍କର ଅବଗତି ନିମନ୍ତେ ଏହା ସୂଚାଇ ଦେବାକୁ ଚାହେଁ ଯେ ଏହି ବିଭାଗର ସମନ୍ୱିତ ଆଦିବାସୀ ଉନ୍ନୟନ ସଂସ୍ଥା ମାଧ୍ୟମରେ ବିଦ୍ୟାଳୟ ଓ ଛାତ୍ରାବାସର ମରାମତି ଓ ନବୀକରଣ ପାଇଁ ଏହି ବଜେଟରେ ୨୦ କୋଟି ଟଙ୍କାର ବ୍ୟୟବରାଦ କରାଯାଇଛି ।

➢ ଅନୁସୂଚିତ ଜନଜାତି ଓ ଜାତିର ଛାତ୍ରଛାତ୍ରୀମାନଙ୍କୁ ପ୍ରାକ୍ ମାଟ୍ରିକ୍ ବୃତ୍ତି ପାଇଁ ୨୦୦୭-୦୮ ଆର୍ଥିକ ବର୍ଷ ବଜେଟରେ ୩୮ କୋଟି ଟଙ୍କାର ବ୍ୟୟବରାଦ କରାଯାଇଥିବା ବେଳେ ୨୦୦୮-୦୯ ଆର୍ଥିକ ବର୍ଷ ବଜେଟରେ ଏହାକୁ ୪୨.୫୦ କୋଟି ଟଙ୍କାକୁ ବୃଦ୍ଧି କରାଯାଇଛି ।

➢ କେ.ବି.କେ. ଜିଲ୍ଲାର ଆଦିବାସୀ ଛାତ୍ରୀଙ୍କ ଛାତ୍ରୀନିବାସ ଭିତ୍ତିଭୂମି ପାଇଁ ୫.୫୦ କୋଟି ଟଙ୍କା, ଆଦିବାସୀ ଓ ହରିଜନ ଛାତ୍ରଛାତ୍ରୀଙ୍କ ସ୍କୁଲର ଶ୍ରେଣୀଗୃହ ନିମନ୍ତେ ୩.୯୯ କୋଟି ଟଙ୍କା, ଆଦିବାସୀ ଛାତ୍ରୀ ନିବାସ ଓ ଛାତ୍ରାବାସ ନିର୍ମାଣ ପାଇଁ ୧୬.୨୦ କୋଟି ଟଙ୍କା ବ୍ୟୟ ବରାଦ କରାଯାଇଛି ।

**ସ୍ୱରାଷ୍ଟ୍ର ବିଭାଗ**

➢ ଆବାସିକ ଓ ଅଣଆବାସିକ ଗୃହର ରକ୍ଷଣାବେକ୍ଷଣ ପାଇଁ ଏହି ବିଭାଗ ଅଧୀନରେ ୨୦୦୭-୦୮ ଆର୍ଥିକ ବର୍ଷ ବଜେଟରେ ୪୯.୨୫ କୋଟି ଟଙ୍କାର ବ୍ୟୟବରାଦ କରାଯାଇଥିବା ବେଳେ ୨୦୦୮-୦୯ ଆର୍ଥିକ ବର୍ଷ ବଜେଟରେ ଏହାକୁ ୫୪.୧୫ କୋଟି ଟଙ୍କାକୁ ବୃଦ୍ଧି କରାଯାଇଛି ।

➢ ୨୦୦୮-୦୯ ଆର୍ଥିକ ବର୍ଷ ବଜେଟରେ ରାଜ୍ୟ ସୈନିକ ବୋର୍ଡ଼କୁ ପୂର୍ବତନ ସୈନିକଙ୍କର ଆର୍ଥିକ ସହାୟତା ପାଇଁ ୧.୦୦ କୋଟି ଟଙ୍କାର ବ୍ୟୟବରାଦ କରାଯାଇଛି ।

➢ ଆପଣମାନଙ୍କ ଅବଗତି ନିମନ୍ତେ ମୁଁ ଜଣାଇଦେବାକୁ ଚାହୁଁଛି ଯେ, ଅଗ୍ନି ନିରୋଧକ ନିୟନ୍ତ୍ରଣ, ଗାଡ଼ି ଓ ସରଞ୍ଜାମ ନିମନ୍ତେ ଚଳିତ ବର୍ଷର ମୂଳ ବଜେଟରେ ୨.୧୨ କୋଟି ଟଙ୍କାର ବ୍ୟୟବରାଦ ହୋଇଥିବାବେଳେ ୨୦୦୮-୦୯ ଆର୍ଥିକ ବର୍ଷ ବଜେଟରେ ଏହାକୁ ୧୦.୦୦ କୋଟି ଟଙ୍କାକୁ ବୃଦ୍ଧି କରାଯାଇଛି ।

➢ ଏକ ସ୍ୱଚ୍ଛ ଓ ଉତ୍ତରଦାୟୀ ପ୍ରଶାସନ ପାଇଁ ଆମ ସରକାର ଅଙ୍ଗୀକାରବଦ୍ଧ । ଦୁର୍ନୀତି ନିବାରଣ ବିଭାଗ ତରଫରୁ ରୁଜୁ କରାଯାଇଥିବା ମାମଲାର ଶୀଘ୍ର ଫଏସଲା ପାଇଁ ରାଜ୍ୟ ସରକାର 'ଓଡ଼ିଶା ସ୍ୱତନ୍ତ୍ର କୋର୍ଟ ଆଇନ, ୨୦୦୬' (The Orissa Special Courts

Act, 2006) ପ୍ରଣୟନ କରିଛନ୍ତି । ଏହି ଆଇନକୁ କାର୍ଯ୍ୟକାରୀ କରିବା ପାଇଁ କଟକ ଓ ଭୁବନେଶ୍ୱରଠାରେ ସ୍ୱତନ୍ତ୍ର ଅଦାଲତର ଆନୁଷଙ୍ଗିକ ବ୍ୟୟ ପାଇଁ ୨୦୦୮-୦୯ ବଜେଟରେ ୬୩.୩୨ ଲକ୍ଷ ଟଙ୍କାର ବ୍ୟୟବରାଦ କରାଯାଇଛି ।

➢ ଗୃହ ବିଭାଗ ଅଧୀନରେ ବିଭିନ୍ନ କାର୍ଯ୍ୟକ୍ରମ ପାଇଁ ୨୦୦୮-୦୯ ଆର୍ଥିକ ବର୍ଷ ବଜେଟରେ ନିମ୍ନୋକ୍ତ ପ୍ରକାରେ ୮୬.୬୪ କୋଟି ଟଙ୍କାର ବ୍ୟୟବରାଦ କରାଯାଇଛି ।

| | | | |
|---|---|---|---|
| ୧. | ଭୁବନେଶ୍ୱର ଓ କଟକରେ କମିଶନରେଟ ବ୍ୟବସ୍ଥା ପ୍ରଚଳନ ପାଇଁ | - | ୪୬.୧୪ କୋଟି ଟଙ୍କା |
| ୨. | ୨୧ ଗୋଟି ନୂଆ ଜେଲକୁ କାର୍ଯ୍ୟକ୍ଷମ କରିବା ନିମନ୍ତେ | - | ୧.୫୦ କୋଟି ଟଙ୍କା |
| ୩. | ଥାନାମାନଙ୍କର ମରାମତି ଓ ପୁନରୁଦ୍ଧାର ପାଇଁ | - | ୫.୫୦ କୋଟି ଟଙ୍କା |
| ୪. | ନୂଆ ଅଗ୍ନି ନିରୋଧକ କେନ୍ଦ୍ର ସ୍ଥାପନ ପାଇଁ | - | ୨.୦୦ କୋଟି ଟଙ୍କା |
| ୫. | ପୋଲିସ କର୍ମଚାରୀଙ୍କ ବାସଗୃହ ମରାମତି ପାଇଁ | - | ୫.୫୦ କୋଟି ଟଙ୍କା |
| ୬. | ଜେଲ କର୍ମଚାରୀଙ୍କ ବାସଗୃହ ମରାମତି ପାଇଁ | - | ୧.୦୦ କୋଟି ଟଙ୍କା |
| ୭. | ଦୁଇ ଗୋଟି ନୂଆ ଭାରତୀୟ ରିଜର୍ଭ ବାଟାଲିୟନ ଗଠନ ପାଇଁ | - | ୨୫.୦୦ କୋଟି ଟଙ୍କା |

**ଅର୍ଥ ବିଭାଗ**

➢ ଦେଶର ସ୍ୱାଧୀନତା ଆଣିବା କ୍ଷେତ୍ରରେ ସ୍ୱାଧୀନତା ସଂଗ୍ରାମୀମାନଙ୍କ ଭୂମିକାକୁ ଭୁଲି ହେବ ନାହିଁ । ଆଜି ଏମାନଙ୍କ ମଧ୍ୟରୁ ଅଧିକାଂଶ ଦୁଃସ୍ଥ ଏବଂ ନିରାଶ୍ରୟ । ସ୍ୱାଧୀନତା ସଂଗ୍ରାମରେ ସେମାନଙ୍କ ଭୂମିକାକୁ କୃତଜ୍ଞତାର ସହ ସ୍ୱୀକାର କରି ରାଜ୍ୟ ସରକାର ବନ୍ଦୀ ଓ ଅଣବନ୍ଦୀ ସ୍ୱାଧୀନତା ସଂଗ୍ରାମୀଙ୍କର ମାସିକ ପେନ୍‌ସନ୍ ଯଥାକ୍ରମେ ୧୦୦୦ ଟଙ୍କାରୁ ୧୫୦୦ ଟଙ୍କା ଏବଂ ୯୦୦ ଟଙ୍କାରୁ ୧୦୦୦ ଟଙ୍କାକୁ ବୃଦ୍ଧି କରିଛନ୍ତି । ତଦନୁସାରେ ୨୦୦୮-୦୯ ଆର୍ଥିକ ବର୍ଷ ବଜେଟରେ ୭୦ ଲକ୍ଷ ଟଙ୍କାର ବ୍ୟୟବରାଦ କରାଯାଇଛି ।

**ଅନ୍ୟାନ୍ୟ ମୁଖ୍ୟ ବ୍ୟୟବରାଦ**

ଏତଦ୍‌ବ୍ୟତୀତ ଅନ୍ୟାନ୍ୟ କ୍ଷେତ୍ରରେ ଯେଉଁ ମୁଖ୍ୟ ବ୍ୟୟବରାଦ ହୋଇଛି ତାହାର ସମ୍ୟକ୍ ସୂଚନା ମୁଁ ଏଠାରେ ଦେବାକୁ ଉଚିତ୍ ମନେ କରୁଛି ।

**ରାସ୍ତା, ସରକାରୀ ଗୃହ ଓ ବାସଗୃହର ରକ୍ଷଣାବେକ୍ଷଣ ନିର୍ମାଣ ଓ ରକ୍ଷଣାବେକ୍ଷଣ**

➢ ସରକାରୀ ଅଫିସ୍, ସରକାରୀ କର୍ମଚାରୀଙ୍କ ବାସଗୃହ, ରାସ୍ତାଘାଟ, ପାନୀୟ ଜଳଯୋଗାଣ, ଜଳସେଚନ ପ୍ରକଳ୍ପ ଓ ବନ୍ୟା ନିୟନ୍ତ୍ରଣ ତଥା ବନ୍ଧବାଡ଼ର ରକ୍ଷଣାବେକ୍ଷଣ ପାଇଁ ୨୦୦୭-୦୮ ମୂଳ ବଜେଟରେ ୧୫୪୬.୨୯ କୋଟି ଟଙ୍କାର ବ୍ୟୟବରାଦ କରାଯାଇଥିବାବେଳେ ୨୦୦୮-୦୯ ଆର୍ଥିକ ବର୍ଷ ବଜେଟରେ ଏଥିପାଇଁ ୧୬୫୧.୯୭ କୋଟି ଟଙ୍କାର ବ୍ୟୟବରାଦ କରାଯାଇଛି ।

**ସୁଧ ଦେୟ**

➢ ଭାରତ ସରକାର ଏବଂ ଅନ୍ୟାନ୍ୟ ସଂସ୍ଥାରୁ ଅଣାଯାଇଥିବା ଋଣର ସୁଧ ଦେୟ ବାବଦରେ ୨୦୦୮-୦୯ ବଜେଟରେ ୪୩୧୨.୩୦ କୋଟି ଟଙ୍କାର ବ୍ୟୟବରାଦ କରାଯାଇଛି ।

**ପେନ୍‌ସନ୍ ଓ ଅବସରକାଳୀନ ଦେୟ**

➢ ୨୦୦୭-୦୮ ଆର୍ଥିକ ବର୍ଷ ବଜେଟରେ ପେନ୍‌ସନ ଓ ଅନ୍ୟାନ୍ୟ ଅବସରକାଳୀନ ଦେୟ ପ୍ରଦାନ ପାଇଁ ୨୧୨୬.୨୬ କୋଟି ଟଙ୍କାର ବ୍ୟବସ୍ଥା ଥିବାବେଳେ ୨୦୦୮-୦୯ ବଜେଟରେ ୨୭୯୫.୬୫ କୋଟି ଟଙ୍କାର ବ୍ୟୟବରାଦ କରାଯାଇଛି ।

**ବାହ୍ୟ ସାହାଯ୍ୟ ପ୍ରକଳ୍ପ**

➢ ବିଭିନ୍ନ ବାହ୍ୟ ସାହାଯ୍ୟ ପ୍ରକଳ୍ପ (Externally Aided Projects) ପାଇଁ ୨୦୦୮-୦୯ ଆର୍ଥିକ ବର୍ଷ ବଜେଟରେ ୭୬୨.୮୬ କୋଟି ଟଙ୍କାର ବ୍ୟୟବରାଦ କରାଯାଇଛି ।

ମୁଁ ଏଠାରେ ସୂଚାଇ ଦେବାକୁ ଚାହେଁ ଯେ ରାଜ୍ୟର ଋଣଭାର ଓ ସାମଗ୍ରିକ ଘରୋଇ ଉତ୍ପାଦନ ଅନୁପାତ (Debt as percentage of GSDP) ଅଧିକ ଅଟେ । ଏ କଥା ସତ୍ୟ ଯେ ରାଜ୍ୟର ଉନ୍ନୟନ ପାଇଁ ଋଣ କରିବା ଆବଶ୍ୟକ । କିନ୍ତୁ ମୋଟ ରାଜସ୍ୱକୁ ଆଖି ଆଗରେ ରଖି ଋଣର ପରିମାଣ ନିର୍ଦ୍ଦିଷ୍ଟ ସୀମା ଭିତରେ ରହିବା ଉଚିତ । ଅର୍ଥନୀତି ବିଶାରଦମାନେ ଋଣର ପୋଷଣୀୟତା (Debt Sustainability)କୁ ହିସାବକୁ ନେଲାବେଳେ ଋଣବୋଝ ରାଜସ୍ୱ ପ୍ରାପ୍ତିର ୩୦୦ ପ୍ରତିଶତ ମଧ୍ୟରେ ସୀମିତ ରହିବା ଉଚିତ ବୋଲି ମତବ୍ୟକ୍ତ କରିଛନ୍ତି । ମୁଁ ଏଠାରେ ସ୍ପଷ୍ଟ କରିଦେବାକୁ ଚାହେଁ ଯେ ୧୯୯୮-୯୯ ଆର୍ଥିକ ବର୍ଷରେ ଋଣବୋଝ ରାଜସ୍ୱ ପ୍ରାପ୍ତିର ୩୨୪ ପ୍ରତିଶତ ଥିବାବେଳେ ୨୦୦୬-୦୭ ଆର୍ଥିକ ବର୍ଷ ଶେଷ ସୁଦ୍ଧା ଏହା ୨୦୬.୬ ପ୍ରତିଶତକୁ ହ୍ରାସ ପାଇଛି । ସେହିପରି ଦ୍ୱାଦଶ ଅର୍ଥ କମିଶନଙ୍କ ସୁପାରିଶ କ୍ରମେ ସୁଧଦେୟ ମୋଟ ରାଜସ୍ୱ ପ୍ରାପ୍ତିର ୧୫ ପ୍ରତିଶତ ରହିବା ବାଞ୍ଛନୀୟ । ୧୯୯୮-୯୯ ଆର୍ଥିକ ବର୍ଷରେ ସୁଧ ଦେୟ ମୋଟ ରାଜସ୍ୱ ପ୍ରାପ୍ତିର ୩୨.୬ ପ୍ରତିଶତ ଥିବାବେଳେ ୨୦୦୬-୦୭ ଆର୍ଥିକ ବର୍ଷ ସୁଦ୍ଧା ଏହା ୧୭.୭ ପ୍ରତିଶତରେ ପହଞ୍ଚିଛି । ପୁନଶ୍ଚ ଦ୍ୱାଦଶ ଅର୍ଥ କମିଶନଙ୍କ ସୁପାରିଶ ଅନୁସାରେ ଋଣ ଓ ସାମଗ୍ରିକ ଘରୋଇ ଉତ୍ପାଦନ ଅନୁପାତ ୨୮ ପ୍ରତିଶତରେ ସୀମିତ ରହିବା କଥା । ଏହି ପରିପ୍ରେକ୍ଷୀରେ ବିଚାର କଲେ ୨୦୦୫-୦୬ ଆର୍ଥିକ ବର୍ଷରେ ଋଣ ଓ ସାମଗ୍ରିକ ଘରୋଇ ଉତ୍ପାଦନର ଅନୁପାତ ୪୬.୪୨ ପ୍ରତିଶତ ଥିବାବେଳେ ୨୦୦୬-୦୭ ଆର୍ଥିକ ବର୍ଷ ଶେଷକୁ ଏହା ୪୦.୮୭ ପ୍ରତିଶତକୁ ଖସିଆସିଛି । ଋଣଭାରକୁ ଲାଘବ କରିବା ପାଇଁ ସରକାରଙ୍କର ଉଦ୍ୟମ ଅବ୍ୟାହତ ରହିଛି ।

ଆଗରୁ ନିଟ୍ ଋଣ (Total Loan incurred - Loan repaid) ଯେଉଁ ପରିମାଣରେ ବଢୁଥିଲା ତାହା ଗତ କିଛି ବର୍ଷ ହେଲା କମିବାରେ ଲାଗିଛି । ୨୦୦୩-୦୪ ଆର୍ଥିକ ବର୍ଷରେ କରାଯାଇଥିବା ନିଟ୍ ଋଣ ପରିମାଣ ୩୮୩୨.୭୭ କୋଟି ଟଙ୍କା ଥିବାବେଳେ ୨୦୦୪-୦୫ ଆର୍ଥିକ ବର୍ଷରେ ଏହା ୨୪୧୭.୨୨ କୋଟି ଟଙ୍କା ଏବଂ ୨୦୦୫-୦୬ ଆର୍ଥିକ ବର୍ଷରେ ଏହା ୨୪୦୫.୨୭ କୋଟି ଟଙ୍କା ଥିବାବେଳେ ୨୦୦୬-୦୭ ଆର୍ଥିକ ବର୍ଷ ଶେଷସୁଦ୍ଧା ଏହି ନିଟ୍ ଋଣ ପରିମାଣ ଉଲ୍ଲେଖନୀୟ ଭାବେ ହ୍ରାସ ପାଇ ୭୯୩.୦୬ କୋଟି ଟଙ୍କାରେ ପହଞ୍ଚିଛି ।

ରାଜସ୍ୱ ନିଅଣ୍ଟ ହ୍ରାସ ସମ୍ପର୍କରେ ଆଗରୁ ସୂଚାଇ ଦେଇଛି । ଭାରତ ସରକାରଙ୍କର ଋଣ ପ୍ରତିବଦଳ ଯୋଜନା (Debt Swap Scheme) ଅନୁସାରେ ଉଚ୍ଚ ସୁଧହାର ବିଶିଷ୍ଟ ଋଣକୁ ନିମ୍ନ ସୁଧହାର ବିଶିଷ୍ଟ ଋଣରେ ପରିବର୍ତ୍ତନ କରିବା ଦ୍ୱାରା ରାଜ୍ୟ ସରକାର ୨୫୪୩.୬୨ କୋଟି ଟଙ୍କାର ଉଚ୍ଚ ସୁଧହାର ବିଶିଷ୍ଟ ଋଣ ପରିଶୋଧ କରି ୧୪୪.୪୭ କୋଟି ଟଙ୍କାର ସୁଧ ରିହାତି ପାଇଛନ୍ତି । ଇତିମଧ୍ୟରେ ରାଜ୍ୟ ସରକାର ସରକାରୀ ଋଣଭାରକୁ ଲାଘବ କରିବା ଉଦ୍ଦେଶ୍ୟରେ ଖୋଲା ବଜାରରୁ ଅଣାଯାଇଥିବା ୩୯୪.୬୧ କୋଟି ଟଙ୍କାର ଉଚ୍ଚ ସୁଧହାର ବିଶିଷ୍ଟ ଋଣକୁ ଅବଧି ସଂପୂର୍ଣ୍ଣ ହେବା ପୂର୍ବରୁ ପୁନଃକ୍ରୟ ଓ ଆଗୁଆ ପୈଠ କରିଛନ୍ତି । (Debt Buy Back) ଏହା ଦ୍ୱାରା ଉନ୍ନୟନ କାର୍ଯ୍ୟ ପାଇଁ ଅଧିକ ସମ୍ବଳ ଉପଲବ୍ଧ ହୋଇଅଛି ।

ଉଚ୍ଚ ସୁଧହାରଯୁକ୍ତ ଜାତୀୟ ସ୍ୱଳ୍ପ ସଞ୍ଚୟ ନିଧି ଋଣକୁ (NSSF) ନିମ୍ନ ସୁଧହାରରେ ଏକତ୍ରିକରଣ କରିବା ଓ ସେହି ଋଣକୁ ଆଗୁଆ ପୈଠ କରିବା ପାଇଁ କେନ୍ଦ୍ର ସରକାରଙ୍କଠାରେ ରାଜ୍ୟ ସରକାର ପ୍ରସ୍ତାବ ରଖିଥିଲେ । ଭାରତ ସରକାର ଏହି ଉଚ୍ଚହାର ସୁଧ ବିଶିଷ୍ଟ ଏନ୍.ଏସ୍.ଏସ୍.ଏଫ୍. ଋଣ ୧୯୯.୭୨ କୋଟି ଟଙ୍କା ଆଗୁଆ ପୈଠ ଲାଗି ଅନୁମତି ପ୍ରଦାନ କରିବାରୁ ରାଜ୍ୟ ସରକାର ଏହାକୁ ଆଗୁଆ ପୈଠ କରିଛନ୍ତି । ଏତଦ୍ୱାରା ଏହି ଋଣ ଜନିତ ସୁଧଦେୟକୁ ହ୍ରାସ କରାଯାଇପାରିବ ଏବଂ ଉନ୍ନୟନ କାର୍ଯ୍ୟ ତଥା ଭିତ୍ତିଭୂମି ଉନ୍ନୟନ ପାଇଁ ଅଧିକ ପୁଞ୍ଜି ମିଳିପାରିବ ।

ଦ୍ୱାଦଶ ଅର୍ଥ କମିଶନଙ୍କ ସୁପାରିଶ ଭିତ୍ତିରେ ୨୦୦୪-୦୫ ଓ ୨୦୦୫-୦୬ ବର୍ଷର ଆର୍ଥିକ ସଫଳତା ପାଇଁ ରାଜ୍ୟ ସରକାର ୩୮୧.୯୦ କୋଟି ଟଙ୍କା ହାରରେ ମୋଟ ୭୬୩.୮୦ କୋଟି ଟଙ୍କାର ଋଣ ଛାଡ଼ ୨୦୦୬-୦୭ ଆର୍ଥିକ ବର୍ଷରେ ପାଇଛନ୍ତି । ୨୦୦୬-୦୭ ଆର୍ଥିକ ବର୍ଷର ସଫଳତା ପାଇଁ ମଧ୍ୟ ଅନୁରୂପ ୩୮୧.୯୦ କୋଟି ଟଙ୍କାର ଋଣ ରିହାତି ପାଇବେ ।

ଏକ ଗଣତାନ୍ତ୍ରିକ ତଥା ଜନମଙ୍ଗଳ ରାଷ୍ଟ୍ରରେ ଜନସାଧାରଣଙ୍କ ସୁଖ ସୁବିଧା ପାଇଁ ଦୃଷ୍ଟିଦେବା ସରକାରର ପ୍ରଥମ ତଥା ପ୍ରଧାନ କର୍ତ୍ତବ୍ୟ । ଏତଦ୍‌ବ୍ୟତୀତ ଯେଉଁ ଟିକସଗୁଡ଼ିକର ସ୍ଥିତି ସ୍ଥାପକତା (Elasticity) ଅଧିକ ସେଗୁଡ଼ିକ କେନ୍ଦ୍ର ସରକାରଙ୍କ ନିୟନ୍ତ୍ରଣାଧୀନ । କେତେକ କ୍ଷେତ୍ରରେ କେନ୍ଦ୍ର ସରକାରଙ୍କର ନୀତି ଯୋଗୁଁ କୋଇଲା ଆଦି ଖଣିଜ ଦ୍ରବ୍ୟ ଉପରେ ରୟାଲଟି ମୂଲ୍ୟଭିତ୍ତିକ ହେଉ ନାହିଁ କିମ୍ବା ଠିକଣା ସମୟରେ ସଂଶୋଧନ

ହେଉନାହିଁ । ଋଣ ବାବଦରେ ଯାହା କେନ୍ଦ୍ର ସରକାର ଦେଇ ଆସୁଥିଲେ ତାହା ଏବେ ରାଜ୍ୟ ସରକାର ନିଜେ ସଂଗ୍ରହ କରୁଛନ୍ତି । ତେଣୁ ଋଣ ନକରି ଯୋଜନା ଖର୍ଚ୍ଚ କରିବା ସମ୍ଭବ ନୁହେଁ ।

ଓଡ଼ିଶାରେ ଇସ୍ପାତ, ଆଲୁମିନିୟମ, ସିମେଣ୍ଟ, ପେଟ୍ରୋଲିୟମ ଓ ସୂଚନା ପ୍ରଯୁକ୍ତି ବିଜ୍ଞାନ ଆଦି କ୍ଷେତ୍ରରେ ବୃହତ୍ ଶିଳ୍ପ ପ୍ରତିଷ୍ଠା ପାଇଁ ବାତାବରଣ ସୃଷ୍ଟି ହୋଇଛି । ଏଥିପାଇଁ ମାନବ ସମ୍ବଳର ବିକାଶ ଜରୁରୀ ଅଟେ । ତେଣୁ ସରକାରୀ-ବେସରକାରୀ ମିଳିତ ଉଦ୍ୟୋଗରେ ଧନ୍ଦାମୂଳକ ଓ ବୈଷୟିକ ଶିକ୍ଷାନୁଷ୍ଠାନର ଉନ୍ନତି ପାଇଁ ସରକାର ଯତ୍ନଶୀଳ ଅଛନ୍ତି । ଓଡ଼ିଶାରେ କେନ୍ଦ୍ରୀୟ ବିଶ୍ୱବିଦ୍ୟାଳୟ, ଆଇ.ଆଇ.ଟି. ଓ ଆଇ.ଆଇ.ଏମ୍. ସ୍ଥାପନ ନେଇ କେନ୍ଦ୍ର ସରକାରଙ୍କ ନିକଟରେ ଆମ ସରକାର ବାରମ୍ବାର ଦାବୀ ଜଣାଇ ଆସୁଛନ୍ତି ।

ସୀମିତ ସମ୍ବଳ ପରିପ୍ରେକ୍ଷୀରେ ମୁଁ ଏକଥା ମଧ୍ୟ ସ୍ପଷ୍ଟ କରିବାକୁ ଚାହେଁ ଯେ ଆଗାମୀ ଦିନରେ ରାଜ୍ୟର ଉନ୍ନୟନମୂଳକ କାର୍ଯ୍ୟ ପାଇଁ ଯେଉଁ ବ୍ୟୟବରାଦ କରାଯାଇଛି ତାହା ଯେପରି ସଠିକ୍ ଭାବରେ ବିନିଯୋଗ ହୋଇପାରିବ ଏବଂ ଅସମ୍ପୂର୍ଣ୍ଣ ପ୍ରକଳ୍ପଗୁଡ଼ିକୁ ସମ୍ପୂର୍ଣ୍ଣ କରାଯାଇପାରିବ, ସେଥିପାଇଁ ରାଜ୍ୟ ସରକାର ଗୁରୁତ୍ୱାରୋପ କରୁଛନ୍ତି । ୨୦୦୭-୦୮ ଆର୍ଥିକ ବର୍ଷରେ ୧ କୋଟି ଟଙ୍କାରୁ ଊର୍ଦ୍ଧ୍ୱ ୬୦ଟି ପ୍ରକଳ୍ପ (ଜଳସମ୍ପଦ ୮, ଗ୍ରାମ୍ୟ ଉନ୍ନୟନ ୨୮, ପୂର୍ତ୍ତ ୨୦, ପର୍ଯ୍ୟଟନ ୩ ଓ ଶିଳ୍ପ ୧) ସମ୍ପୂର୍ଣ୍ଣ କରିବା ପାଇଁ ଚିହ୍ନଟ ହୋଇଛି । ଏତଦ୍‌ବ୍ୟତୀତ ୨୦୦୬-୦୭ ଆର୍ଥିକ ବର୍ଷରେ ସମ୍ପୂର୍ଣ୍ଣ ହୋଇନଥିବା ୪୭ଟି ପ୍ରକଳ୍ପକୁ ମିଶାଇ ମୋଟ ୧୦୭ଟି ପ୍ରକଳ୍ପ ସମ୍ପୂର୍ଣ୍ଣ କରିବା ପାଇଁ ଚଳିତ ୨୦୦୭-୦୮ ବର୍ଷରେ ଲକ୍ଷ୍ୟଧାର୍ଯ୍ୟ କରାଯାଇଛି ।

ଏଠାରେ ମୁଁ ଉଲ୍ଲେଖ କରିବାକୁ ଚାହେଁ ଯେ ବିଭିନ୍ନ କେନ୍ଦ୍ରୀୟ ଯୋଜନାରେ ମିଳୁଥିବା ଅର୍ଥର ସଠିକ୍ ସମୟରେ ସଦୁପଯୋଗ ଏବଂ ତତ୍‌ସଂକ୍ରାନ୍ତ ବିନିଯୋଗ ପ୍ରମାଣପତ୍ର ଦାଖଲରେ ଉନ୍ନତିକରଣ ସରକାରଙ୍କର ନୈତିକ ଦାୟିତ୍ୱ । ସରକାରଙ୍କ ଦ୍ୱାରା ବାରମ୍ବାର ସମୀକ୍ଷା ଓ ତାଗିଦ୍ କରିବା ଦ୍ୱାରା ବିଭିନ୍ନ କେନ୍ଦ୍ରୀୟ ସହାୟତା ବାବଦରେ ଆସୁଥିବା ଅର୍ଥର ବିନିଯୋଗ ପ୍ରମାଣପତ୍ର ଦାଖଲରେ ଯଥେଷ୍ଟ ଉନ୍ନତି ହୋଇଛି । ଉଦାହରଣ ସ୍ୱରୂପ ୨୦୦୫-୦୬ ଆର୍ଥିକ ବର୍ଷରେ ୨୪୭୦.୫୮ କୋଟି ଟଙ୍କାର ବିନିଯୋଗ ପ୍ରମାଣପତ୍ର ଦାଖଲ ହୋଇଥିବାବେଳେ ୨୦୦୬-୦୭ ଆର୍ଥିକ ବର୍ଷରେ ୨୮୫୨.୨୫ କୋଟି ଟଙ୍କାର ପ୍ରମାଣପତ୍ର ଦାଖଲ କରାଯାଇଛି । ଚଳିତ ଆର୍ଥିକ ବର୍ଷରେ ନଭେମ୍ବର ମାସ ଶେଷ ସୁଦ୍ଧା ୨୫୭୨.୧୯ କୋଟି ଟଙ୍କାର ବିନିଯୋଗ ପ୍ରମାଣପତ୍ର ଦାଖଲ କରାଯାଇଛି ।

ଆପଣମାନେ ସମସ୍ତେ ଜାଣନ୍ତି ଯେ ଇତି ମଧ୍ୟରେ ଭାରତ ସରକାରଙ୍କ ଦ୍ୱାରା ତ୍ରୟୋଦଶ ଅର୍ଥ କମିଶନ (Thirteenth Finance Commission) ଗଠନ କରାଯାଇଛି । ଏଥିପାଇଁ ତ୍ରୟୋଦଶ ଅର୍ଥ କମିଶନ ନିକଟରେ ଆମର ଯୁକ୍ତିଯୁକ୍ତ ଦାବି ଏବଂ ପରାମର୍ଶ ଉପସ୍ଥାପନ କରିବା ପାଇଁ ଦଳମତ ନିର୍ବିଶେଷରେ ସମସ୍ତଙ୍କର ସାହାଯ୍ୟ ଓ ସହଯୋଗ କାମନା କରୁଛି ।

ବିଗତ ବର୍ଷମାନଙ୍କରେ ମାନ୍ୟବର ମୁଖ୍ୟମନ୍ତ୍ରୀଙ୍କ ଦୃଢ଼ ସଂକଳ୍ପ ଫଳରେ ରାଜ୍ୟରେ ଆର୍ଥିକ ସଂସ୍କାର ପ୍ରକ୍ରିୟା କାର୍ଯ୍ୟକାରୀ ହୋଇ ଆର୍ଥିକ ପରିଚାଳନା କ୍ଷେତ୍ରରେ ଅନେକ ସୁଫଳ ମିଳିପାରିଛି । ଏହି ସଂସ୍କାର କାର୍ଯ୍ୟକ୍ରମକୁ ଆଗେଇ ନେବାକୁ ହେବ । ଆମକୁ ଲକ୍ଷ୍ୟସ୍ଥଳରେ ପହଞ୍ଚିବା ପାଇଁ ଗଭୀର ଆତ୍ମବିଶ୍ୱାସ ଓ ନିଷ୍ଠା ସହ ଅନେକ ପଥ ଅତିକ୍ରମ କରିବାକୁ ପଡ଼ିବ । ଏହି ରାଜ୍ୟ ଆମ ସମସ୍ତଙ୍କର ଏବଂ ଏହାର ସର୍ବବିଧ ଉନ୍ନତି ଆମ ସମସ୍ତଙ୍କର ନୈତିକ ଦାୟିତ୍ୱ । ରାଜ୍ୟର ଜନସାଧାରଣଙ୍କର ଅଭାବ, ଅସୁବିଧା ପୂରଣ କରିବାରେ ଏବଂ ରାଜ୍ୟର ବିକାଶ ପ୍ରକ୍ରିୟାକୁ ତ୍ୱରାନ୍ୱିତ କରିବା ଦିଗରେ ଆଜି ଆଗତ ହୋଇଥିବା ୨୦୦୮-୦୯ ବର୍ଷର ବଜେଟ୍ ନିଶ୍ଚିତ ଭାବେ ସହାୟକ ହେବ, ଏହା ମୋର ଦୃଢ଼ ଆଶା ଓ ବିଶ୍ୱାସ ।

ବାଚସ୍ପତି ମହୋଦୟ, ୨୦୦୮-୦୯ ଆର୍ଥିକ ବର୍ଷ ପାଇଁ ରାଜ୍ୟ ବଜେଟ ଉପସ୍ଥାପନ ବେଳେ ଦଳମତ ନିର୍ବିଶେଷରେ ମୁଁ ସମସ୍ତଙ୍କର ଆନ୍ତରିକ ସହଯୋଗ କାମନା କରୁଛି । ମୋର ଦୀର୍ଘ ଭାଷଣକୁ ଧୈର୍ଯ୍ୟର ସହିତ ଶୁଣିଥିବାରୁ ମୁଁ ଆପଣଙ୍କୁ, ଗୃହର ନେତା ମାନ୍ୟବର ମୁଖ୍ୟମନ୍ତ୍ରୀ, ମାନ୍ୟବର ବିରୋଧୀ ଦଳନେତା ଓ ସମସ୍ତ ସମ୍ମାନସ୍ପଦ ସଦସ୍ୟ ସଦସ୍ୟାମାନଙ୍କୁ ଆନ୍ତରିକ ଧନ୍ୟବାଦ ଜଣାଉଛି । ଆଗାମୀ ଆର୍ଥିକ ବର୍ଷ ଆମ ସମସ୍ତଙ୍କ ପାଇଁ ଶୁଭଙ୍କର ହେଉ ଏହା ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କ ନିକଟରେ ପ୍ରାର୍ଥନା କରି ମୋର ବକ୍ତବ୍ୟ ଶେଷ କରୁଛି ।

ଜୟହିନ୍ଦ୍

ବନ୍ଦେ ଉତ୍କଳ ଜନନୀ

(ଶ୍ରୀ ପ୍ରଫୁଲ୍ଲ ଚନ୍ଦ୍ର ଘଡ଼ାଇ, ଅର୍ଥ ମନ୍ତ୍ରୀ)

# ଚାଷୀମାନଙ୍କ ପାଇଁ ନୂଆ ସୁଯୋଗ

## (ଓଡ଼ିଶାର ଚାଷୀମାନଙ୍କ ପାଇଁ ମୁଖ୍ୟମନ୍ତ୍ରୀ ପ୍ୟାକେଜ)

ବିହନ

୧. ଉତ୍ପାଦନ ଓ ଉତ୍ପାଦକତା ବୃଦ୍ଧି ନିମନ୍ତେ ଚାଷୀଙ୍କ କ୍ଷେତରେ ଧାନର ଗୁଣାତ୍ମକ ବିହନ ଉତ୍ପାଦନ କରାଯାଇ ବିହନ ପ୍ରତିବଦଳ ହାର (Seed Replacement Rate) ଶତକଡ଼ା ୭ ଭାଗରୁ ବୃଦ୍ଧି କରି ୨୦୦୭-୦୮ ବର୍ଷରେ ୧୨%, ୨୦୦୮-୦୯ ବର୍ଷରେ ୧୮% ଓ ୨୦୦୯-୧୦ ବର୍ଷରେ ୨୫% କରାଯିବ ।



୨. ପ୍ରତ୍ୟେକ ବ୍ଲକ୍‌ରେ ବିହନ ଗ୍ରାମ ଯୋଜନା କରାଯାଇ ଆସନ୍ତା ଦୁଇ ବର୍ଷ ମଧ୍ୟରେ ୫ ଲକ୍ଷ କ୍ୱିଣ୍ଟାଲ ପ୍ରାମାଣିକ ବିହନ (Certified Seeds) ଉତ୍ପାଦନ କରାଯିବ ।

୩. ୨୦୦୯-୧୦ ମସିହା ଶେଷ ସୁଦ୍ଧା ପ୍ରତ୍ୟେକ ଜିଲ୍ଲାରେ ବିହନ ପ୍ରକ୍ରିୟାକରଣ କେନ୍ଦ୍ର (Seed Processing Plant) ପ୍ରତିଷ୍ଠା କରାଯିବ । ଉକ୍ତ ଲକ୍ଷ୍ୟକୁ ହାସଲ କରିବା ପାଇଁ ଗଜପତି, କେନ୍ଦ୍ରାପଡ଼ା ଓ ଝାରସୁଗୁଡ଼ା ଜିଲ୍ଲାରେ ଏହିଭଳି କେନ୍ଦ୍ର ଏହି ସମୟ ମଧ୍ୟରେ ସ୍ଥାପନ ହେବ ।

୪. ସ୍ପର୍ଶକାତର (Sensitive) ଉନ୍ନତ ବିହନଗୁଡ଼ିକର ଗୁଣ ଓ ସତେଜତା ବଜାୟ ରଖିବା ପାଇଁ ଆସନ୍ତା ୩ ବର୍ଷ ମଧ୍ୟରେ ବାଲେଶ୍ୱର, ଜୟପୁର, ବ୍ରହ୍ମପୁର, ଅନୁଗୋଳ ଓ ବରଗଡ଼ଠାରେ ପାଞ୍ଚଗୋଟି ଆର୍ଦ୍ରତାବିହୀନ କୋଠରୀ (De-humidified Chamber) ସ୍ଥାପନ କରାଯିବ ।

୫. ଗୁଣାତ୍ମକ ବିହନକୁ ନିରାପଦ ଭାବେ ସାଇତି ରଖିବା ପାଇଁ ସବୁ ଜିଲ୍ଲାରେ ୩ ବର୍ଷ ମଧ୍ୟରେ ଗୋଦାମ ଘର ପ୍ରତିଷ୍ଠା କରାଯିବ । ଏଥିପାଇଁ ୧୭ ଗୋଟି ନୂତନ ଗୋଦାମ ଘର ନିର୍ମାଣ କରାଯିବ ।

୬. ଓଡ଼ିଶା ରାଜ୍ୟ ବିହନ ନିଗମ ପ୍ରତ୍ୟେକ ଗ୍ରାମପଞ୍ଚାୟତରେ ବିହନ ବିକ୍ରୟ କେନ୍ଦ୍ର ଖୋଲିବ । ଏସବୁ ବେସରକାରୀ ବିହନ ବ୍ୟବସାୟୀ, ପାଣିପଞ୍ଚାୟତ କିମ୍ବା ସ୍ୱୟଂ ସହାୟକ ଗୋଷ୍ଠୀ ଇତ୍ୟାଦି ଅନୁଷ୍ଠାନମାନଙ୍କଦ୍ୱାରା ପରିଚାଳିତ ହେବ ।

ଜୈବିକ କୃଷି

ଜୈବିକ କୃଷିର ପ୍ରସାର ପାଇଁ ଗୁରୁତ୍ୱ ପ୍ରଦାନ କରାଯିବ ।

୧. ରାଜ୍ୟର ପ୍ରତ୍ୟେକ ବ୍ଲକ୍‌ରେ ଗୋଟିଏ ଲେଖାଏଁ ଜିଆ ପ୍ରଜନନ କେନ୍ଦ୍ର (Vermi-hatchery) ପ୍ରତିଷ୍ଠା ସହ ଗ୍ରାମ୍ୟ ସ୍ତରରେ ଜିଆ ପ୍ରସ୍ତୁତି କେନ୍ଦ୍ର ପ୍ରତିଷ୍ଠା ପାଇଁ ରାଜ୍ୟ ସରକାର ପ୍ରୋତ୍ସାହନ ଯୋଗାଇ ଦେବେ ।

୩. ସବୁଜ ସାରକୁ ପ୍ରୋତ୍ସାହିତ କରିବା ପାଇଁ ପ୍ରତ୍ୟେକ ବର୍ଷ ୧୦ ହଜାର ହେକ୍ଟର ଜମିରେ ଧଣିଚା ପ୍ରୟୋଗ ପାଇଁ ପ୍ରୋତ୍ସାହନ ଦିଆଯିବ ।

୪. ଜୈବିକ ଚାଷ ପାଇଁ ଅଧିକ ସମ୍ଭାବନା ଥିବା କନ୍ଧମାଳ ଓ କୋରାପୁଟ ପରି ଜିଲ୍ଲାରେ ଏହି ଚାଷ ପାଇଁ ଆବଶ୍ୟକୀୟ ବ୍ୟବସ୍ଥା କରାଯିବା ସହ ଜୈବ ପ୍ରମାଣିକରଣ ପାଇଁ ସରକାର ଆବର୍ତ୍ତି ପାଣ୍ଠି ଯୋଗାଇବେ ।

ମୃତ୍ତିକା ପରୀକ୍ଷା ସୁବିଧା

୧. ରାଜ୍ୟର ସମସ୍ତ ବ୍ଲକ୍‌ରେ ମୃତ୍ତିକା ପରୀକ୍ଷା ପାଇଁ ବ୍ୟବସ୍ଥା କରାଯାଇଛି । ପ୍ରତ୍ୟେକ ବର୍ଷ ଅନ୍ତତଃପକ୍ଷେ ରାଜ୍ୟର ୧.୫ ଲକ୍ଷ ଚାଷୀଙ୍କୁ ମୃତ୍ତିକା ସ୍ୱାସ୍ଥ୍ୟ କାର୍ଡ଼ (Soil Health Card) ପ୍ରଦାନ କରାଯିବ ।

୨. ଆସନ୍ତା ୩ ବର୍ଷ ମଧ୍ୟରେ ରାଜ୍ୟର ୨.୫ ଲକ୍ଷ ହେକ୍ଟର ଜମିରେ ଅମ୍ଳ ମାଟିର ପରିଚାଳନା ପାଇଁ ଚାଷୀମାନଙ୍କୁ ଚୂନ, କାଗଜକଳ ସ୍ଲଜ୍ ଓ ବେସିକ୍ ସ୍ଲାଗ୍ ଉପରେ ରିହାତି ସହ ଏହାର ପରିବହନ ପାଇଁ ମଧ୍ୟ ରିହାତି ପ୍ରଦାନ କରାଯିବ ।

କୃଷକ ତାଲିମ ଓ ସମ୍ପ୍ରସାରଣ

୧. ଆସନ୍ତା ଚାରିବର୍ଷ ମଧ୍ୟରେ ରାଜ୍ୟର ପ୍ରତି ବ୍ଲକ୍‌ରେ ଏକ ହଜାର ଚାଷୀଙ୍କୁ ଉନ୍ନତ କୃଷି ପଦ୍ଧତି ସମ୍ପର୍କରେ ତାଲିମ ଦିଆଯିବ ।

୨. ଅନ୍ୟ କୃଷକମାନଙ୍କୁ କୃଷି ସମ୍ପର୍କୀୟ ସୂଚନା ଓ କୌଶଳ ସମ୍ପର୍କରେ ଅବଗତ କରିବା ପାଇଁ ଆଗାମୀ ୩ ବର୍ଷରେ ପ୍ରତି ଗ୍ରାମପଞ୍ଚାୟତରେ ଅଗ୍ରଣୀ ଚାଷୀମାନଙ୍କୁ କୃଷକ ସାଥୀ ଭାବେ ତାଲିମ ପ୍ରଦାନ କରାଯିବ ।

୩. ଜଳସେଚିତ ଅଞ୍ଚଳରେ ସମ୍ଭାବ୍ୟ ଗ୍ରାମରେ ସଘନୀକରଣ ପଦ୍ଧତିରେ ଧାନଚାଷ (System of Rice Intensification)ର ପ୍ରଦର୍ଶନ କ୍ଷେତ୍ର ଓ କୃଷକ ତାଲିମ କାର୍ଯ୍ୟକ୍ରମ କରାଯିବ ।

୪. ସମସ୍ତ ବ୍ଲକ୍‌ରେ ୨୦୦୮-୦୯ ମସିହା ସୁଦ୍ଧା କୃଷି ସୂଚନା ଓ ପରାମର୍ଶ କେନ୍ଦ୍ର (Farm Information & Advisory Centre) ପ୍ରତିଷ୍ଠା କରାଯିବ ।

୫. ରାଜ୍ୟ, ଜିଲ୍ଲା ଓ ବ୍ଲକ୍ ସ୍ତରରେ ଶ୍ରେଷ୍ଠ ଚାଷୀଙ୍କୁ ପ୍ରତିବର୍ଷ ଆର୍ଥିକ ପୁରସ୍କାର ପ୍ରଦାନ କରାଯିବ ।

୬. ବୈଷୟିକ ଜ୍ଞାନକୌଶଳର ଅଭିବୃଦ୍ଧି ନିମନ୍ତେ ରାଜ୍ୟର ପ୍ରତ୍ୟେକ ସ୍ତରରେ ଥିବା କୃଷି ଅଧିକାରୀମାନଙ୍କୁ ସଦ୍ୟ ତାଲିମ (Refresher Training) ଦିଆଯିବ ।

୭. କୃଷକମାନଙ୍କ ଭାଗିଦାରୀରେ ଗ୍ରାମସ୍ତରରୁ ଫସଲ ଯୋଜନା ଆରମ୍ଭ ହେବ ।

କୃଷି ଯାନ୍ତ୍ରିକୀକରଣ

୧. ହସ୍ତ ଓ ପଶୁ ଚାଳିତ କୃଷି ଯନ୍ତ୍ରପାତି କ୍ରୟ ଉପରେ ସେଟ୍ ପ୍ରତି ଶତକଡ଼ା ୫୦ ଭାଗ ସର୍ବୋଚ୍ଚ ୨୫୦୦ ଟଙ୍କା ପର୍ଯ୍ୟନ୍ତ ରିହାତି ପ୍ରଦାନ କରାଯିବ ।

୨. କେ.ବି.କେ. ଜିଲ୍ଲା, ପଶ୍ଚିମ ଓଡ଼ିଶା ଉନ୍ନୟନ ପରିଷଦ ଅନ୍ତର୍ଭୁକ୍ତ ଜିଲ୍ଲା ଓ ଆଦିବାସୀ ଉପଯୋଜନା ଅନ୍ତର୍ଗତ ବ୍ଲକ୍‌ମାନଙ୍କରେ ଶତକଡ଼ା ୩୩ ଭାଗ ସର୍ବୋଚ୍ଚ ୫ ହଜାର ଟଙ୍କା ପର୍ଯ୍ୟନ୍ତ ରିହାତିରେ ଆସନ୍ତା ୩ ବର୍ଷରେ ୩୦ ହଜାର ଗୋଟି ଡିଜେଲ୍ ପମ୍ପସେଟ୍ ଯୋଗାଇ ଦିଆଯିବ ।

ଆଗ୍ରୋ କ୍ଲିନିକ୍

୧. କୃଷକମାନଙ୍କୁ ବିହନ, ସାର, ଜୈବସାର, କୃଷି ଯନ୍ତ୍ରପାତି ଆଦି ଆବଶ୍ୟକୀୟ ଉପାଦାନ ଏକ ସ୍ଥାନରେ ଯୋଗାଇଦେବା ପାଇଁ ପ୍ରତି ଜିଲ୍ଲାରେ ଆଗ୍ରୋ କ୍ଲିନିକ ସ୍ଥାପନ କରାଯିବ । ଆତ୍ମନିଯୁକ୍ତି ପାଇଁ ଆଗ୍ରହୀ ଯୁବକ/ଯୁବତୀ ଓ ସ୍ୱୟଂ ସହାୟକ ଗୋଷ୍ଠୀ, ପାଣିପଞ୍ଚାୟତ ପ୍ରଭୃତି ସଂସ୍ଥାମାନଙ୍କୁ ଏଥିପାଇଁ ରାଜ୍ୟ ନିଯୁକ୍ତି ମିଶନ ଯୋଜନା ମାଧ୍ୟମରେ ସହାୟତା ଯୋଗାଇ ଦିଆଯିବ ।

ଜଳସେଚନ

୧. ରାଜ୍ୟରେ ଆସନ୍ତା ୨ ବର୍ଷରେ ବ୍ୟକ୍ତିଗତ ମାଲିକାନାରେ ରିହାତି ପ୍ରଦାନ କରାଯାଇ ୩୫ ହଜାର ଉଠାଜଳସେଚନ ଉତ୍ସ ପ୍ରତିଷ୍ଠା କରାଯିବ ।

୨. ଆସନ୍ତା ୨୦୦୮ ବର୍ଷ ସୁଦ୍ଧା ଦାରିଦ୍ର୍ୟ ସୀମାରେଖା ତଳେ ଥିବା ୨ ଲକ୍ଷ ଚାଷୀଙ୍କ ଜମିରେ ଜାତୀୟ ଗ୍ରାମୀଣ ନିଶ୍ଚିତ କର୍ମନିଯୁକ୍ତି ଯୋଜନାରେ କ୍ଷୁଦ୍ର ପୋଖରୀ (Farm Pond) ଖୋଳାଯିବ ।



୩. ନିକଟସ୍ଥ ବିଦ୍ୟୁତ୍ ଉତ୍ସଠାରୁ ଏକ କିଲୋମିଟର ମଧ୍ୟରେ କ୍ଷୁଦ୍ର ଓ ନାମମାତ୍ର ଚାଷୀଙ୍କଦ୍ୱାରା ସ୍ଥାପିତ ଉଠାଜଳସେଚନ ପ୍ରକଳ୍ପକୁ ବିଦ୍ୟୁତ୍ ସଂଯୋଗ ପାଇଁ କେ.ବି.କେ. ଜିଲ୍ଲା ଓ ଆଦିବାସୀ ଉପଯୋଜନା ଅନ୍ତର୍ଗତ ବ୍ଲକ୍‌ମାନଙ୍କରେ ଖର୍ଚ୍ଚର ଶତକଡ଼ା ୮୦ ଭାଗ ବିଜୁ ଗ୍ରାମ ଜ୍ୟୋତି ଯୋଜନାରେ ସରକାର ବହନ କରିବେ । ଅନ୍ୟ ଜିଲ୍ଲା/ବ୍ଲକ୍‌ର କ୍ଷୁଦ୍ର ଓ ନାମମାତ୍ର ଚାଷୀଙ୍କ ପାଇଁ ଏହି ରିହାତି ଶତକଡ଼ା ୭୦ ଭାଗ ରହିବ ।

୪. ଆସନ୍ତା ୫ ବର୍ଷରେ ପ୍ରତି ବ୍ଲକ୍‌ରେ ଅନ୍ୟୁନ ୩୫ ଭାଗ ଜମିରେ ଜଳସେଚନ ସୁବିଧା ସୃଷ୍ଟି କରାଯିବା ପାଇଁ ପଦକ୍ଷେପ ନିଆଯିବ ।

### ଉଦ୍ୟାନ କୃଷି

୧. ୭୫% ରିହାତିରେ ଆସନ୍ତା ୨ ବର୍ଷରେ ୨୫ ହଜାର ହେକ୍ଟର ଜମିରେ ଆମ୍ବ, ୧୫ ହଜାର ହେକ୍ଟର ଜମିରେ କାଜୁ ଓ ୨୫୦୦ ହେକ୍ଟର ଜମିରେ କଦଳୀ ଚାଷ କରାଯିବ ।

୨. ୫୦% ରିହାତିରେ ଆସନ୍ତା ୨ ବର୍ଷ ମଧ୍ୟରେ ରାଜ୍ୟରେ ୮,୧୦୦ ହେକ୍ଟର ଜମିରେ ବୁନ୍ଦା ଜଳସେଚନ ଓ ୬,୦୦୦ ହେକ୍ଟର ଜମିରେ ଛିଞ୍ଚା ଜଳସେଚନ ଯନ୍ତ୍ର ଯୋଗାଇ ଦିଆଯିବ ।

୩. ଆସନ୍ତା ଦୁଇ ବର୍ଷ ମଧ୍ୟରେ ଉତ୍ତମ ଦରରେ ପିଆଜ ବିକ୍ରୀ କରିବା ପାଇଁ ୫ ହଜାର କୃଷକଙ୍କୁ ସ୍ୱଳ୍ପମୂଲ୍ୟପିଆଜସାଇତାଗୃହ ନିର୍ମାଣ ନିମନ୍ତେ ସହାୟତା ଦିଆଯିବ ।

୪. ୨୦୦୭-୦୮ରେ ୩୫ ହଜାର, ୨୦୦୮-୦୯ରେ ୩୫ ହଜାର ଓ ୨୦୦୯-୧୦ରେ ୩୦ ହଜାର, ଏହିପରି ୧ ଲକ୍ଷ ବେକାର ଯୁବକ/ଯୁବତୀଙ୍କୁ ଆତ୍ମନିଯୁକ୍ତି ନିମନ୍ତେ ବ୍ୟବସାୟିକ ଉଦ୍ୟାନ କୃଷିରେ ତାଲିମ ଦିଆଯିବ ।

### ଜଳବିଭାଜିକା ଉନ୍ନୟନ



୧. ୨୦୦୭-୦୮ରେ ୧୩୫ କୋଟି ଟଙ୍କା ଖର୍ଚ୍ଚ କରାଯାଇ ୨ ଲକ୍ଷ ୩୫ ହଜାର ହେକ୍ଟର ବୃଷ୍ଟିପୁଷ୍ଟ ପତିତ ଜମି ଉଦ୍ଧାର କରାଯିବ ।

୨. ଆସନ୍ତା ୩ ବର୍ଷରେ ପଶ୍ଚିମ ଓଡ଼ିଶା ଗ୍ରାମ୍ୟ ଜୀବିକା ଯୋଜନା ମାଧ୍ୟମରେ ବଲାଙ୍ଗିର, କଳାହାଣ୍ଡି, ନୂଆପଡ଼ା ଓ ବରଗଡ଼ ଜିଲ୍ଲାରେ ୩୮୭ଟି କ୍ଷୁଦ୍ର ଜଳ ବିଭାଜିକାରେ ଜୀବିକା ଉନ୍ନୟନ ପାଇଁ ୭୨ କୋଟି ଟଙ୍କା ଯୋଗାଇ ଦିଆଯିବ ।

୩. କୋରାପୁଟ, ନବରଙ୍ଗପୁର, ମାଲକାନଗିରି, ରାୟଗଡ଼ା, କନ୍ଧମାଳ ଓ ମୟୂରଭଞ୍ଜ ଜିଲ୍ଲାର ୪୬୦ଟି କ୍ଷୁଦ୍ର ଜଳବିଭାଜିକାରେ ଜୀବିକା ଉନ୍ନୟନ ପାଇଁ ଓଡ଼ିଶା ଗ୍ରାମ୍ୟ ଜୀବିକା ଯୋଜନାରେ ଆସନ୍ତା ୩ ବର୍ଷ ମଧ୍ୟରେ ୯୦.୫୦ କୋଟି ଟଙ୍କା ଯୋଗାଇ ଦିଆଯିବ ।

### ମତ୍ସ୍ୟ ଚାଷ ବିକାଶ

୧. ମାଛ ଚାଷ ପାଇଁ ମତ୍ସ୍ୟଜୀବୀମାନଙ୍କୁ ସ୍ୱଳ୍ପ ମିଆଦି ଋଣର ବ୍ୟବସ୍ଥା କରାଯିବ ।

୨. ବ୍ଲକ୍ ସ୍ତରରେ ଆକ୍ୱା ସପ୍ (Aqua Shop) ମାନ ପ୍ରତିଷ୍ଠା କରାଯାଇ ବୈଜ୍ଞାନିକ ପଦ୍ଧତିରେ ମତ୍ସ୍ୟଚାଷ ପାଇଁ ଆବଶ୍ୟକୀୟ ସାମଗ୍ରୀ ବିକ୍ରୀ କରାଯିବା ସହ ମାଛଚାଷୀମାନଙ୍କୁ ମତ୍ସ୍ୟ ଚାଷ ସମ୍ବନ୍ଧୀୟ ବୈଜ୍ଞାନିକ କୌଶଳ ବିଷୟରେ ଅବଗତ କରାଯିବ । ଏଥିନିମନ୍ତେ ବ୍ୟବସାୟିକ ''କୃଷି ଉଦ୍ୟୋଗ'' ଯୋଜନାରୁ ଆପିକଲ ମାଧ୍ୟମରେ ରିହାତି ଦିଆଯିବ ।

ପଶୁ ସମ୍ପଦ ବିକାଶ

୧. ରାଜ୍ୟରେ ଥିବା ପଶୁ ସମ୍ପଦ ସ୍ୱାସ୍ଥ୍ୟର ସୁରକ୍ଷା ନିମନ୍ତେ ପ୍ରତିଷେଧକ ଟିକାମାନ ଦିଆଯିବାର ବ୍ୟବସ୍ଥା କରାଯିବ । ଭୁବନେଶ୍ୱରସ୍ଥିତ ଓଡ଼ିଶା ଜୈବ ବିଜ୍ଞାନ ଉତ୍ପାଦନ ପ୍ରତିଷ୍ଠାନ (OBPI) ଏବଂ ଏହାର ବ୍ରହ୍ମପୁରସ୍ଥିତ ଅନ୍ୟତମ ୟୁନିଟ୍‌ରେ ପ୍ରାୟ ୨ କୋଟି ୧ ଲକ୍ଷ ଗୋଟି ପ୍ରତିଷେଧକ ଟିକା ଉତ୍ପାଦିତ ହେବ ।

୨. ପଶୁ ସଂପଦ ଚାଷୀମାନେ ସହଜରେ ରୋଗକୁ ଚିହ୍ନିବା ପାଇଁ ପ୍ରତ୍ୟେକ ଜିଲ୍ଲାରେ ରୋଗ ଚିହ୍ନଟ ପ୍ରୟୋଗଶାଳା ପ୍ରତିଷ୍ଠା ହେବ ।

୩. ସମସ୍ତ ଜିଲ୍ଲାରେ କୁକୁଡ଼ା ଚିଆଁ ପ୍ରଜନନ କେନ୍ଦ୍ର ସ୍ଥାପନ କରାଯିବ ।

## ମାନ୍ୟବର ମୁଖ୍ୟମନ୍ତ୍ରୀଙ୍କ ଦ୍ୱାରା ଘୋଷିତ ଚାଷୀମାନଙ୍କ ନିମନ୍ତେ ପ୍ୟାକେଜ୍ ସମ୍ପର୍କିତ ସମବାୟ ବିଭାଗର ଯୋଜନା

୧. ସ୍ୱଳ୍ପମିଆଦୀ ସମବାୟ ଋଣ ସଂସ୍ଥାମାନଙ୍କର ପୁନରୁଦ୍ଧାର

ଆବଶ୍ୟକୀୟ କୃଷିଋଣ ଯୋଗାଇ ଦେବା ଉଦ୍ଦେଶ୍ୟରେ ରାଜ୍ୟର ସମବାୟ ଋଣ ସମିତିମାନଙ୍କୁ ସେମାନଙ୍କର ପୁଞ୍ଜିଭୂତ କ୍ଷତିର ଭରଣା ନିମନ୍ତେ ଆର୍ଥିକ ସହାୟତା ଯୋଗାଇ ଦିଆଯିବ । ବୈଦ୍ୟନାଥନ୍ କମିଟିଙ୍କ ସୁପାରିଶ ଅନୁଯାୟୀ ପୁନରୁଦ୍ଧାର ପ୍ୟାକେଜକୁ ଚଳିତ ବର୍ଷଠାରୁ କାର୍ଯ୍ୟକାରୀ କରାଯିବ ।

୨. ସମବାୟ ସମିତି ମାଧ୍ୟମରେ ସବୁ ଚାଷୀଙ୍କୁ କୃଷିଋଣ ସହାୟତା ପ୍ରଦାନ

କୌଣସି ଆନୁଷ୍ଠାନିକ ଋଣ ସହାୟତା ପାଉ ନଥିବା ସମସ୍ତ କୃଷିଜୀବୀ ପରିବାରଙ୍କୁ ଆସନ୍ତା ତିନି ବର୍ଷ ମଧ୍ୟରେ ସମବାୟ ଋଣ ଯୋଗାଇ ଦିଆଯିବ ।

୩. କପାଚାଷୀମାନଙ୍କୁ ଋଣ ସହାୟତା

କପା ଉତ୍ପାଦନ ହେଉଥିବା ଜିଲ୍ଲାମାନଙ୍କରେ କପାଚାଷୀମାନଙ୍କୁ ଅତ୍ୟଧିକ ସୁଧରେ ଋଣ ଦେଉଥିବା ମହାଜନମାନଙ୍କ ଶୋଷଣରୁ ମୁକ୍ତ ରଖିବା ଉଦ୍ଦେଶ୍ୟରେ ଚଳିତ ଖରିଫ ଋତୁରେ ସେମାନଙ୍କର କୃଷିକାର୍ଯ୍ୟ ପାଇଁ ଭବାନୀପାଟଣା, କୋରାପୁଟ, ବ୍ରହ୍ମପୁର, ବଲାଙ୍ଗିର ଓ ଆସ୍କା କେନ୍ଦ୍ର ସମବାୟ ବ୍ୟାଙ୍କ ମାଧ୍ୟମରେ ୭% ରିହାତି ସୁଧ ହାରରେ ଋଣ ଯୋଗାଇ ଦିଆଯିବ ।



୪. କପା ନିମନ୍ତେ ବିକ୍ରୀ ସୁବିଧା

କପାଚାଷୀମାନଙ୍କୁ ନିଶ୍ଚିତ ବିକ୍ରୀ ସୁବିଧା ଓ ଉପଯୁକ୍ତ ମୂଲ୍ୟ ପ୍ରଦାନ କରାଯିବା ସହିତ ଶୋଷଣରୁ ମୁକ୍ତ କରିବା ଲାଗି କପାଚାଷ କ୍ଷେତ୍ରରେ ଠିକା ଚାଷକୁ ପ୍ରୋତ୍ସାହନ ଦିଆଯିବ ।

୫. ସ୍ୱତନ୍ତ୍ର କପା ମଣ୍ଡି ସ୍ଥାପନ

ଗଜପତି ଜିଲ୍ଲାର ପାରଳାଖେମୁଣ୍ଡି ଓ ଗଞ୍ଜାମ ଜିଲ୍ଲାର ଦିଗପହଣ୍ଡିଠାରେ ପ୍ରକ୍ରିୟାକରଣ ସୁବିଧା ଥାଇ ଦୁଇଗୋଟି ସ୍ୱତନ୍ତ୍ର କପା ମଣ୍ଡି ସ୍ଥାପନ କରାଯିବ ।

୬. ସ୍ୱତନ୍ତ୍ର ମକା ମଣ୍ଡି ସ୍ଥାପନ

ଆଦିବାସୀ ଚାଷୀମାନଙ୍କ ସୁବିଧା ପାଇଁ ନବରଙ୍ଗପୁର ଜିଲ୍ଲାର ଉମରକୋଟ ଓ ରାଇଘରଠାରେ ଦୁଇଗୋଟି ସ୍ୱତନ୍ତ୍ର ମକା ମଣ୍ଡି ସ୍ଥାପନ କରାଯିବ ।

୭. ତୈଳବୀଜ ନିମନ୍ତେ ବଜାର ସୁବିଧା

ଚାଷୀମାନଙ୍କୁ ନିଶ୍ଚିତ ବିକ୍ରୀ ସୁବିଧା ଉପଯୁକ୍ତ ମୂଲ୍ୟ ପ୍ରଦାନ କରି ଶୋଷଣରୁ ମୁକ୍ତ କରିବା ନିମନ୍ତେ ନାଫେଡ୍ ମାଧ୍ୟମରେ ଚିନାବାଦାମ ଓ ରାଶି ଇତ୍ୟାଦି ତୈଳବୀଜ ଜାତୀୟ ଫସଲର ଠିକା ଚାଷକୁ ପ୍ରୋତ୍ସାହନ ଦିଆଯିବ ।

୮. ସମସ୍ତ ବ୍ଲକ୍‌ରେ ମାର୍କେଟ ୟାର୍ଡ଼ ପ୍ରତିଷ୍ଠା

ଆଗାମୀ ଚାରିବର୍ଷ ମଧ୍ୟରେ ମାର୍କେଟ ୟାର୍ଡ଼ ନଥିବା ରାଜ୍ୟର ୧୧୮ ଗୋଟି ବ୍ଲକ୍‌ରେ ନିୟନ୍ତ୍ରିତ ବଜାର କମିଟି ମାଧ୍ୟମରେ ମାର୍କେଟ ୟାର୍ଡ଼ ପ୍ରତିଷ୍ଠା କରାଯିବ ।

୯. ଗ୍ରାମ୍ୟ ଉତ୍ପାଦକ ସଂଗଠନ

ବିଭିନ୍ନ କୃଷିଜାତ ଦ୍ରବ୍ୟର ଉପଯୁକ୍ତ ବଜାର ସୁବିଧା ପ୍ରତିଷ୍ଠା ନିମନ୍ତେ ଦ୍ରବ୍ୟଭିତ୍ତିକ ଭିନ୍ନ ଭିନ୍ନ 'ଗ୍ରାମ୍ୟ ଉତ୍ପାଦନ ସଂଗଠନ' ଗଠନ କରାଯାଇ ବ୍ଲକ୍ ଅଥବା ଆଞ୍ଚଳିକ ସମବାୟ ବାଣିଜ୍ୟ ସମିତି ସ୍ତରରେ ମହାସଂଘମାନ ଗଠନ କରାଯିବ ।

୧୦. ସମବାୟ ଋଣ ବ୍ୟବସ୍ଥାର ସମ୍ପ୍ରସାରଣ

ଆଦିବାସୀ ଅଞ୍ଚଳରେ ଲ୍ୟାମ୍ପସ ବ୍ୟବସ୍ଥା ଯୋଗୁଁ ପ୍ରାଥମିକ ସମବାୟ ଋଣ ସମିତିମାନଙ୍କର ଆଶାନୁରୂପ ଅଭିବୃଦ୍ଧି ସଙ୍କୁଚିତ ହୋଇଥିବାରୁ ଏହି ଅଞ୍ଚଳର ଚାଷୀମାନଙ୍କ ପାଇଁ କୃଷି ଋଣକୁ ସହଜଲଭ୍ୟ କରିବା ଉଦ୍ଦେଶ୍ୟରେ ତୃଣମୂଳ ସ୍ତରରେ ସମବାୟ ଋଣ ସମିତିମାନ ଗଠନ କରାଯାଇ ସମବାୟ ଋଣ ବ୍ୟବସ୍ଥାକୁ ସମ୍ପ୍ରସାରିତ କରାଯିବ ।

---

# ୪୦ତମ ରାଜ୍ୟ ଅବକାରୀ କ୍ରୀଡ଼ା ଉତ୍ସବ

ଗତ ଫେବୃଆରୀ ପହିଲାରେ ୪୦ତମ ଅବକାରୀ କ୍ରୀଡ଼ା ପ୍ରତିଯୋଗିତା ଅନୁଷ୍ଠିତ ହୋଇଥିଲା । ରାଜ୍ୟ ଅବକାରୀ କ୍ରୀଡ଼ା କମିଟି ପକ୍ଷରୁ କଳିଙ୍ଗ ଷ୍ଟାଡ଼ିୟମଠାରେ ଆୟୋଜିତ ଏହି ପ୍ରତିଯୋଗିତାକୁ ଅବକାରୀ ଓ ପର୍ଯ୍ୟଟନ ମନ୍ତ୍ରୀ ଶ୍ରୀ ଦେବୀପ୍ରସାଦ ମିଶ୍ର ଆନୁଷ୍ଠାନିକ ଭାବେ ଉଦ୍‌ଘାଟନ କରିଥିଲେ । ଏହି ଅବସରରେ ଉଦ୍‌ବୋଧନ ଦେଇ ମନ୍ତ୍ରୀ ଶ୍ରୀ ମିଶ୍ର ଆମ ସାମାଜିକ ଜୀବନରେ କ୍ରୀଡ଼ାର ମହତ୍ୱ ସଂପର୍କରେ ଉଲ୍ଲେଖ କରି ଏକ ସୁସ୍ଥ ନିରାମୟ ଜୀବନଯାପନ ତଥା ଦୃଢ଼ ମନୋବଳ ନେଇ କାର୍ଯ୍ୟ ସଂପାଦନ ପାଇଁ କ୍ରୀଡ଼ାର ଆବଶ୍ୟକତା ରହିଛି ବୋଲି କହିଥିଲେ । ଦୁଇଦିନ ଧରି ଚାଲିଥିବା ଏହି ପ୍ରତିଯୋଗିତାରେ ୩୦ଟି ଜିଲ୍ଲାରୁ ୩୫ଟି ଦଳରେ ୪୦୦ରୁ ଉର୍ଦ୍ଧ୍ୱ ଅବକାରୀ ବିଭାଗର କାର୍ଯ୍ୟରତ ମହିଳା ଓ ପୁରୁଷ କର୍ମଚାରୀ ଅଂଶଗ୍ରହଣ କରିଥିଲେ ।

ଅବକାରୀ କମିଶନର ଶ୍ରୀ ସୁଦର୍ଶନ ନାୟକଙ୍କ ଅଧ୍ୟକ୍ଷତାରେ ଅନୁଷ୍ଠିତ ଉଦ୍‌ଘାଟନୀ ଉତ୍ସବରେ ରାଜ୍ୟ ପାନୀୟ ନିଗମ ପରିଚାଳନା ନିର୍ଦ୍ଦେଶକ ଶ୍ରୀ ସୌମ୍ୟପ୍ରସାଦ ମିଶ୍ର ମୁଖ୍ୟବକ୍ତା ଏବଂ ଅବକାରୀ ବିଭାଗ ଯୁଗ୍ମ ଶାସନ ସଚିବ ଶ୍ରୀ ବନବିହାରୀ ଜେନା ସମ୍ମାନିତ ଅତିଥି ଭାବେ ଯୋଗ ଦେଇଥିଲେ । ଖୋର୍ଦ୍ଧା ଅବକାରୀ ଅଧୀକ୍ଷକ ଶ୍ରୀ ଲକ୍ଷ୍ମୀନାରାୟଣ ମହାପାତ୍ର ସ୍ୱାଗତ ଭାଷଣ ଓ ସେଣ୍ଟ୍ରାଲ ଡିଭିଜନ କଟକର ଉପକମିଶନର ଏହି କ୍ରୀଡ଼ା ପ୍ରତିଯୋଗିତାର ଆୟୋଜନ ସଂପର୍କରେ ସୂଚନା ପ୍ରଦାନ କରିଥିଲେ ।

# ୨୦୦୮-୦୯ର ଓଡ଼ିଶା ବଜେଟ୍ : ଏକ ଦୃଷ୍ଟିପାତ

ଗୁରୁକଲ୍ୟାଣ ମହାପାତ୍ର

**ଗ**ତ ୨୦୦୭ ଡିସେମ୍ବର ୧୯ ତାରିଖରେ ଜାତୀୟ ଉନ୍ନୟନ ପରିଷଦର ବୈଠକରେ ଏକାଦଶ ପଞ୍ଚବାର୍ଷିକ ଯୋଜନା (୨୦୦୭-୧୨)କୁ ସୁପାରିଶ କରାଯିବାବେଳେ ପ୍ରଥମ ଚାରିବର୍ଷରେ ବାର୍ଷିକ ନଅ ପ୍ରତିଶତ ସାମଗ୍ରିକ ଘରୋଇ ଉତ୍ପାଦନର ଅଭିବୃଦ୍ଧି ହାରପ୍ରତି ଲକ୍ଷ୍ୟ ରଖାଯାଇଥିଲା । ସେହିପରି ୨୦୧୧-୧୨ରେ ଏହି ବର୍ଷକ ମଧରେ ଉପରୋକ୍ତ ନଅ ପ୍ରତିଶତ ଅଭିବୃଦ୍ଧି ହାରକୁ ଦଶ ପ୍ରତିଶତରେ ପରିଣତ କରାଯିବାକୁ ଲକ୍ଷ୍ୟଧାର୍ଯ୍ୟ ହୋଇଥିଲା । ନୂଆଦିଲ୍ଲୀଠାରେ ଏହି ବୈଠକ ଶେଷରେ କେନ୍ଦ୍ର ଯୋଜନା କମିଶନଙ୍କ ଉପାଧକ୍ଷ ଶ୍ରୀ ମଣ୍ଟେକ ସିଂ ଆଲୱାଲିଆ ସାମ୍ବାଦିକମାନଙ୍କୁ ସୂଚନା ଦେଇ କହିଥିଲେ ଯେ ରାଜ୍ୟ ଯୋଜନାମାନଙ୍କରେ ସେହି ଏକାଦଶ ପଞ୍ଚବାର୍ଷିକ ଯୋଜନାର ପ୍ରତିଫଳନ ହେବ । କେନ୍ଦ୍ର ଯୋଜନା କମିଶନଙ୍କ ସେହି ଦୃଷ୍ଟିଭଙ୍ଗୀର ପ୍ରତିଫଳନ ହିଁ ସମ୍ଭବ ହୋଇଛି ଓଡ଼ିଶା ସରକାରଙ୍କ ୨୦୦୮-୦୯ର ବଜେଟରେ, ଯାହାକି ଗତ ଫେବୃଆରୀ ୧୬ (୨୦୦୮)ରେ ଓଡ଼ିଶା ବିଧାନସଭାରେ ଅର୍ଥମନ୍ତ୍ରୀ ଶ୍ରୀ ପ୍ରଫୁଲ୍ଲଚନ୍ଦ୍ର ଘଡ଼ାଇଙ୍କଦ୍ୱାରା ଉପସ୍ଥାପିତ ହୋଇଥିଲା ।

ସେହି ବଜେଟ୍ ବିଧାନସଭାରେ ଉପସ୍ଥାପିତ ହେବା ପୂର୍ବରୁ ଓଡ଼ିଶାର ମାନ୍ୟବର ରାଜ୍ୟପାଳ ଶ୍ରୀ ମୁରଲୀଧର ଚନ୍ଦ୍ରକାନ୍ତ ଭଣ୍ଡାରେ ଓଡ଼ିଶା ବିଧାନସଭାର ବଜେଟ ଅଧିବେଶନକୁ ଗତ ଫେବୃଆରୀ ୧୩ (୨୦୦୮)ରେ ଉଦ୍‌ଘାଟନ କରି ତାଙ୍କ ଅଭିଭାଷଣରେ ଉଲ୍ଲେଖ କରିଥିଲେ, 'ଏକାଦଶ ଯୋଜନାର ପ୍ରସ୍ତୁତି ଚିଠା ଅନୁଯାୟୀ ଓଡ଼ିଶାର ଉନ୍ନୟନ ଆବଶ୍ୟକତାକୁ ଦୃଷ୍ଟିରେ ରଖି ମୋ' ସରକାର (୧) କୃଷି ଓ ଆନୁଷଙ୍ଗିକ କ୍ଷେତ୍ରରେ ବାର୍ଷିକ ୪ ଶତାଂଶରୁ ଊର୍ଦ୍ଧ୍ୱ ବାର୍ଷିକ ଅଭିବୃଦ୍ଧି ସହିତ ଦ୍ରୁତ ଓ ସାର୍ବଜନୀନ ବାର୍ଷିକ ହାରାହାରି ଅଭିବୃଦ୍ଧି ହାର ୯ ଶତାଂଶ ଏବଂ (୨) ଏକାଦଶ ପଞ୍ଚବାର୍ଷିକ ଯୋଜନା କାଳରେ ଅଧିକ ମାତ୍ରାରେ ଦାରିଦ୍ର୍ୟ ଦୂରୀକରଣର ଲକ୍ଷ୍ୟ ରଖିଛି । ଏହାକୁ ଦୃଷ୍ଟିରେ ରଖି ଦଶମ ଯୋଜନା କାଳ ମଧରେ ଥିବା ବ୍ୟୟଅଟକଳ ୧୯,୦୦୦ କୋଟି ଟଙ୍କାରୁ ଏକାଦଶ ଯୋଜନା ଅବଧି ପାଇଁ ୩୨,୨୨୫ କୋଟି ଟଙ୍କାକୁ ବୃଦ୍ଧି କରାଯାଇଛି ।'

ଏହି ଯୋଜନାକୁ ରାଜ୍ୟ ସରକାର ଟିକସରେ ଭାରାକ୍ରାନ୍ତ ନକରି ଜନସାଧାରଣଙ୍କ ସ୍ୱାର୍ଥକୁ ସୁରକ୍ଷା ଦେଲାପରି କରିଥିବା କୁହାଯାଉଛି । ଆଗାମୀ ବର୍ଷର ରାଜ୍ୟ ଯୋଜନା ବ୍ୟୟଅଟକଳକୁ ୩୯ ପ୍ରତିଶତ ଅର୍ଥାତ୍ ୭,୧୦୦ କୋଟି ଟଙ୍କାଯାଏଁ ବୃଦ୍ଧି କରାଯାଇଛି । ଯୋଜନା ଅଟକଳରେ ୪୦ ପ୍ରତିଶତ (୨୭୦୦ କୋଟି ଟଙ୍କା) ଋଣ ଉଠାଇ ଭରଣା କରାଯିବ ବୋଲି ରାଜ୍ୟ ଅର୍ଥ ମନ୍ତ୍ରୀ ତାଙ୍କ ବଜେଟ ଭାଷଣରେ ସୂଚନା ଦେଇଛନ୍ତି । ବିତ୍ତୀୟ ନିଅଣ୍ଟ (Fiscal Deficit)ର ପରିମାଣ ଗତ ବଜେଟ ତୁଳନାରେ ୩୫ ପ୍ରତିଶତ ଅର୍ଥାତ୍ ୧୧୪୫ କୋଟି ଟଙ୍କାକୁ ଏହି ବଜେଟରେ ବୃଦ୍ଧି କରାଯାଇଛି । ଗତ ବଜେଟରେ ଏହାଥିଲା ୩,୨୮୬ କୋଟି ଟଙ୍କା ଏବଂ ଚଳିତ ବଜେଟରେ ତାହା ୪,୪୩୧ କୋଟି ଟଙ୍କା କରାଯିବାକୁ ପ୍ରସ୍ତାବ ରହିଛି ।

> ଆର୍ଥିକ ସଂସ୍କାର ଓ ଆର୍ଥିକ ପରିଚାଳନାକୁ ଏହି ବଜେଟ୍‌ରେ ଗୁରୁତ୍ୱ ଦିଆଯିବା ସହିତ ରାଜ୍ୟବାସୀଙ୍କ ଅଭାବ ଓ ଅସୁବିଧାକୁ ଦୂର କରି ରାଜ୍ୟର ବିକାଶ ପ୍ରକ୍ରିୟାକୁ ତ୍ୱରାନ୍ୱିତ କରିବାକୁ ଏହି ବଜେଟ ଲକ୍ଷ୍ୟ ରଖିଛି ବୋଲି ରାଜ୍ୟ ଅର୍ଥ ମନ୍ତ୍ରୀ ତାଙ୍କ ବଜେଟ ଭାଷଣରେ ସୂଚନା ଦେଇ ସାରିଛନ୍ତି ।

ଟିକସ, ଅଣଟିକସ, ଋଣ ପରିଶୋଧ ଓ ଅନ୍ୟାନ୍ୟ ସୂତ୍ରରୁ ଯେତିକି ରାଜସ୍ୱ ମିଳିବ, ତାହାଠାରୁ ରାଜ୍ୟ ସରକାର ଅଧିକ ୪,୪୩୧ କୋଟି ଟଙ୍କା ଖର୍ଚ୍ଚ କରିବେ । ତେବେ ଆସନ୍ତା ବର୍ଷ ୫୬୩ କୋଟି ଟଙ୍କାର ରାଜସ୍ୱ ବଳକା ହେବ ବୋଲି ଏହି ବଜେଟ୍‌ରେ ଦର୍ଶାଯାଇଛି । ତଦ୍ୱାରା ଯେତିକି ରାଜସ୍ୱ ଆୟ ଆକାରରେ ମିଳିବ, ତା' ତୁଳନାରେ ଖର୍ଚ୍ଚ କମ୍ ହୋଇଯିବ ।

ଆର୍ଥିକ ସଂସ୍କାର ଓ ଆର୍ଥିକ ପରିଚାଳନାକୁ ଏହି ବଜେଟ୍‌ରେ ଗୁରୁତ୍ୱ ଦିଆଯିବା ସହିତ ରାଜ୍ୟବାସୀଙ୍କ ଅଭାବ ଓ ଅସୁବିଧାକୁ ଦୂର କରି ରାଜ୍ୟର ବିକାଶ ପ୍ରକ୍ରିୟାକୁ ତ୍ୱରାନ୍ୱିତ କରିବାକୁ ଏହି ବଜେଟ ଲକ୍ଷ୍ୟ ରଖିଛି ବୋଲି ରାଜ୍ୟ ଅର୍ଥ ମନ୍ତ୍ରୀ ତାଙ୍କ ବଜେଟ ଭାଷଣରେ ସୂଚନା ଦେଇ ସାରିଛନ୍ତି ।

ଭାରତ ସରକାରଙ୍କ ନିର୍ଦ୍ଦେଶାନୁଯାୟୀ ରାଜ୍ୟରେ ବିପର୍ଯ୍ୟସ୍ତ ହୋଇ ପଡ଼ିଥିବା ଆର୍ଥିକ ପରିସ୍ଥିତିକୁ ସୁଧାରିବା ଦିଗରେ ରାଜ୍ୟ ସରକାର

ନିରବଚ୍ଛିନ୍ନ ଭାବେ ଉଦ୍ୟମ କରି ସଫଳ ହୋଇଛନ୍ତି । ପୁଣି ଏକାଦଶ ପଞ୍ଚବାର୍ଷିକ ଯୋଜନାକୁ ଦୃଷ୍ଟିରେ ରଖି ରାଜ୍ୟ ସରକାର ଚଳିତ ବଜେଟରେ ଦାରିଦ୍ର୍ୟ ଦୂରୀକରଣ ଓ ବିଭିନ୍ନ ଉନ୍ନୟନମୂଳକ କାର୍ଯ୍ୟକ୍ରମଗୁଡ଼ିକ ସଂପନ୍ନ କରିବାକୁ ଆଶା ରଖିଛନ୍ତି ।

ରାଜ୍ୟର ସୀମିତ ସମ୍ବଳ ସତ୍ତ୍ୱେ, ରାଜ୍ୟ ସରକାର ନିଜସ୍ୱ ସମ୍ବଳରୁ 'ମୋ' କୁଡ଼ିଆ' ଯୋଜନାର ପ୍ରଚଳନ ପ୍ରଥମଥର ଲାଗି କରିଛନ୍ତି ଯାହାକୁ ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ନିକଟରେ ଘୋଷଣା କରିଥିଲେ । । ସେହିପରି ନିଜସ୍ୱ ସମ୍ବଳରୁ ରାଜ୍ୟ ସରକାର ମାନ୍ୟବର ମୁଖ୍ୟମନ୍ତ୍ରୀ ଘୋଷଣା କରିଥିବା ତିନି ଲକ୍ଷ ହିତାଧିକାରୀଙ୍କୁ 'ମଧୁବାବୁ ପେନ୍‌ସନ ଯୋଜନା'ରେ ସାମିଲ କରିବାର ବ୍ୟବସ୍ଥା ହୋଇଛି । ଆଦିବାସୀ ଅଧ୍ୟୁଷିତ ତଥା ଅନଗ୍ରସର ଅଞ୍ଚଳରେ ଭ୍ରାମ୍ୟମାଣ ସ୍ୱାସ୍ଥ୍ୟ ୟୁନିଟ୍‌ର ପ୍ରଚଳନ ସକାଶେ ଏହି ବଜେଟରେ ବ୍ୟୟବରାଦ ହୋଇଛି । ଚାଷୀମାନଙ୍କ ପାଇଁ ହୀରାକୁଦ ସେଚାଞ୍ଚଳର ଉନ୍ନତି ବ୍ୟବସ୍ଥା ସହିତ ଏକ ଲକ୍ଷ ସ୍ୱୟଂ ସହାୟିକା ଗୋଷ୍ଠୀକୁ ଆର୍ଥିକ ସହାୟତା ପ୍ରଦାନର ବ୍ୟବସ୍ଥା ସମେତ ସାଧାରଣ ବଣ୍ଟନ ପ୍ରକ୍ରିୟାରେ ଗରିବ ଶ୍ରେଣୀର ଲୋକଙ୍କ ପାଇଁ ରିହାତି ଦରରେ ଚାଉଳ ଯୋଗାଣର ବ୍ୟବସ୍ଥା ଏହି ବଜେଟରେ କରାଯାଇଛି । ଏସବୁ ସମେତ ଜଳନିଧି ଯୋଜନା, ଏଡ୍‌ସ ଚିହ୍ନଟ ପାଇଁ ଯନ୍ତ୍ରପାତି ଯୋଗାଣ, ପ୍ରାକ୍ ମାଟ୍ରିକ ବୃତ୍ତିକୁ ୨୦ ଟଙ୍କାରୁ ୧୦୦ ଟଙ୍କା ଯାଏଁ ବୃଦ୍ଧି କରିବା, ଉଚ୍ଚଶିକ୍ଷା ବିଭାଗରେ ବୃତ୍ତିଗତ ଶିକ୍ଷା ପାଇଁ ଇଞ୍ଜିନିଅରିଂ, ଡାକ୍ତରୀ, ଏମ୍.ବି.ଏ. ଓ ଏମ୍.ସି.ଏ.ର ଦଶହଜାର ଛାତ୍ରଛାତ୍ରୀଙ୍କୁ ପ୍ରତ୍ୟେକ ବର୍ଷକୁ ଦଶହଜାର ଟଙ୍କା ହିସାବରେ ବୃତ୍ତି ପ୍ରଦାନ କରାଯିବା ପ୍ରଭୃତିର ବ୍ୟୟବରାଦ ଏଥର ବଜେଟରେ କେତୋଗୋଟି ଉଲ୍ଲେଖନୀୟ ପଦକ୍ଷେପ । ଏଥର ବଜେଟରେ ମଧ ଭିତ୍ତିଭୂମି ଉନ୍ନୟନ, ପ୍ରାଚୀନ ଓ ଐତିହ୍ୟ ସଂପନ୍ନ କୀର୍ତ୍ତିରାଜିର ସୁରକ୍ଷା ତଥା ରାଜ୍ୟର ବିଭିନ୍ନ ପର୍ଯ୍ୟଟନସ୍ଥଳୀର ବିକାଶ ପାଇଁ ବିଶେଷ ଧ୍ୟାନ ଦିଆଯାଇଛି । ରାଜ୍ୟ ସରକାର ମଧ ଏଥର ବଜେଟରେ ଦେଶ ପାଇଁ ତ୍ୟାଗ କରିଥିବା ସ୍ୱାଧୀନତା ସଂଗ୍ରାମୀମାନଙ୍କର ଭତ୍ତାକୁ ଏକ ହଜାର ଟଙ୍କାରୁ ଏକ ହଜାର ପାଞ୍ଚ ଶହ ଟଙ୍କା ପର୍ଯ୍ୟନ୍ତ ବୃଦ୍ଧି କରିଥିବା ବେଳେ ଅଣବନ୍ଦୀ ସ୍ୱାଧୀନତା ସଂଗ୍ରାମୀଙ୍କର ଭତ୍ତାକୁ ୯୦୦ ଟଙ୍କାରୁ ୧୦୦୦ ଟଙ୍କା ପର୍ଯ୍ୟନ୍ତ ବୃଦ୍ଧି କରିଛନ୍ତି ।

ରାଜ୍ୟ ସରକାର ମଧ ଏଥର ବଜେଟରେ ଦେଶ ପାଇଁ ତ୍ୟାଗ କରିଥିବା ସ୍ୱାଧୀନତା ସଂଗ୍ରାମୀମାନଙ୍କର ଭତ୍ତାକୁ ଏକ ହଜାର ଟଙ୍କାରୁ ଏକ ହଜାର ପାଞ୍ଚ ଶହ ଟଙ୍କା ପର୍ଯ୍ୟନ୍ତ ବୃଦ୍ଧି କରିଥିବା ବେଳେ ଅଣବନ୍ଦୀ ସ୍ୱାଧୀନତା ସଂଗ୍ରାମୀଙ୍କର ଭତ୍ତାକୁ ୯୦୦ ଟଙ୍କାରୁ ୧୦୦୦ ଟଙ୍କା ପର୍ଯ୍ୟନ୍ତ ବୃଦ୍ଧି କରିଛନ୍ତି ।

ସୀମିତ ସମ୍ବଳ ମଧ୍ୟରେ ରାଜ୍ୟ ସରକାର ୨୦୦୮-୦୯ ବଜେଟରେ ଯେଉଁ କୋଡ଼ିଏଟି ବିଷୟ ଉପରେ ଗୁରୁତ୍ୱ ଦେଇଛନ୍ତି, ସେଗୁଡ଼ିକ ହେଲା- ୧) ଓଡ଼ିଶା ବିତ୍ତୀୟ ଉତ୍ତରଦାୟୀ ଓ ବଜେଟ ପରିଚାଳନା ଆଇନର ଧାରା-୫ରେ ସୂଚୀତ ଆର୍ଥିକ ଲକ୍ଷ୍ୟ ହାସଲ, ୨) ଦ୍ୱାଦଶ ଅର୍ଥ କମିଶନଙ୍କର ସୁପାରିଶ, ୩) ଅଗ୍ରାଧିକାର ଭିତ୍ତିରେ ସୀମିତ ସମ୍ବଳର ବିନିଯୋଗ, ୪) ଅଧିକ କେନ୍ଦ୍ରୀୟ ସହାୟତା ହାସଲ ପାଇଁ ରାଜ୍ୟ ସରକାରଙ୍କ ଅଂଶଧନ ବୃଦ୍ଧି, ୫) ଅଣଯୋଜନା ରାଜସ୍ୱ ଖର୍ଚ୍ଚକୁ ଯଥାସମ୍ଭବ ସୀମିତ ରଖିବା, ୫) ଭିତ୍ତିଭୂମି ଉନ୍ନୟନ ପାଇଁ ଅଧିକ ପୁଂଜି ବିନିଯୋଗ, ୭) ସ୍ୱାସ୍ଥ୍ୟସେବାର ଭିତ୍ତିଭୂମି ଓ ମାନର ଉନ୍ନତି ସାଧନ, ୮) ବିଦ୍ୟାଳୟ, ଉଚ୍ଚଶିକ୍ଷା ଓ ବୈଷୟିକ ଶିକ୍ଷାର ବିକାଶ, ୯) କୃଷି ଓ ଆନୁଷଙ୍ଗିକ କ୍ଷେତ୍ରର ବିକାଶ, ୧୦) ଶିଳ୍ପ, କୁଟୀର ଓ ହସ୍ତଶିଳ୍ପର ବିକାଶ, ୧୧) ଜଳସେଚନର ସଂପ୍ରସାରଣ ଓ ଉନ୍ନତି, ୧୨) ସହରାଞ୍ଚଳ ଓ ଗ୍ରାମାଞ୍ଚଳ ଜଳଯୋଗାଣ ଓ ପରିମଳ ବ୍ୟବସ୍ଥାର ଉନ୍ନତି, ୧୩) ଗ୍ରାମାଞ୍ଚଳର ବିକାଶ, ୧୪) ସୂଚନା ଓ ପ୍ରଯୁକ୍ତି କ୍ଷେତ୍ରର ବିକାଶ, ୧୫) ସମ୍ବଳର ସଦୁପଯୋଗ ଓ ଆତ୍ମନିଯୁକ୍ତି ସୁଯୋଗ, ୧୬) ରାଜ୍ୟରେ ଖଣିଜ ଶିଳ୍ପର ବିକାଶ, ୧୭) ଗ୍ରାମ୍ୟ ବିଦ୍ୟୁତିକରଣ, ୧୮) ଆବଶ୍ୟକତା ଅନୁଯାୟୀ ବ୍ୟୟବରାଦ କରି ଅସଂପୂର୍ଣ୍ଣ ପ୍ରକଳ୍ପଗୁଡ଼ିକୁ ଯଥାସମ୍ଭବ ଶୀଘ୍ର ସଂପୂର୍ଣ୍ଣ କରିବା, ୧୯) ବୃଦ୍ଧ ଓ ବୃଦ୍ଧା, ଭିନ୍ନକ୍ଷମ, ମହିଳା, ଅନୁସୂଚିତ ଜାତି ଓ ଜନଜାତି ତଥା ଅନ୍ୟାନ୍ୟ ଆର୍ଥିକ ଦୁର୍ବଳ ଶ୍ରେଣୀର ଲୋକମାନଙ୍କ ଉନ୍ନତି ଓ ସାମାଜିକ ସୁରକ୍ଷା ପାଇଁ ଅଧିକ ବ୍ୟୟବରାଦ, ୨୦) ସରକାରୀ କୋଠାବାଡ଼ି, ରାସ୍ତାଘାଟ, ଜଳଯୋଗାଣ ପ୍ରକଳ୍ପ ଇତ୍ୟାଦିର ରକ୍ଷଣାବେକ୍ଷଣ ପାଇଁ ଅଧିକ ବ୍ୟୟବରାଦ ।

ଏହା ଯେ ଲୋକାଭିମୁଖୀ ବଜେଟ୍, ଏଥିରେ ସନ୍ଦେହ ନାହିଁ ।

ଘର ନଂ: ଡି-୧୦/୫
ୟୁନିଟ୍-୮, ଭୁବନେଶ୍ୱର

# ବାଗ୍‌ଦେବୀ ସରସ୍ୱତୀ

ଦେବବ୍ରତ ଦାଶ

'ସରସ୍ୱତୀ ମହାଭାଗେ
ବିଦ୍ୟେ କମଳଲୋଚନେ,
ବିଶ୍ୱରୂପେ ବିଶାଳାକ୍ଷୀ
ବିଦ୍ୟାଂ ଦେହି ନମୋସ୍ତୁତେ ।'

**ନ**ବ ବସନ୍ତ ଆଗମନୀର ସ୍ୱାଗତ ଗୀତିକା ଗାନ କରେ ରସସ୍ରାବୀ ଚ୍ୟୁତମୁକୁଳ-ଭକ୍ଷିତ-କୋକିଳ । ଛବିଳ ପ୍ରକୃତି ହୋଇଉଠେ ଆତ୍ମହରା । ମଧୁଲୁବ୍ଧ ମଧୁପର ମଧୁଗୁଞ୍ଜନ, ମୃଦୁମଳୟ ଛୁଇଁ ଛୁଇଁ ଯାଉଥିବା ପୁଷ୍ପିତ ବୃକ୍ଷରାଜିଙ୍କ ବର୍ଣ୍ଣବିଭା, ଜାତି ଜାତି ମଲ୍ଲୀ, ମାଳତୀ, ଜୁଇ, ହେନା, ରକ୍ତମନ୍ଦାର, କନିଅର, କରବୀର ଆଦିଙ୍କ ଶୁଭ ବନ୍ଦାଣରେ ଧରାପୃଷ୍ଠକୁ ଅବତରଣ କରନ୍ତି ବସନ୍ତ ପଞ୍ଚମୀ, ଶୁକ୍ଳପକ୍ଷ ପଞ୍ଚମୀ, ଅଥବା ଶ୍ରୀପଞ୍ଚମୀ ତଥା ବସନ୍ତ ଋତୁର ଆଗମନ ପ୍ରଥମ ଦିବସରେ ଶୁକ୍ଳାବର୍ଣ୍ଣା ହଂସରୂପା, ଶ୍ୱେତ ପଦ୍ମାସନା, ବୀଣାପୁସ୍ତକ ଧାରିଣୀ ଓ ବିଦ୍ୟାର ଅଧିଷ୍ଠାତ୍ରୀ ଦେବୀ ସରସ୍ୱତୀ ।

ଦେବୀ ସରସ୍ୱତୀ ବିଦ୍ୟା ଓ ବୁଦ୍ଧି ପ୍ରଦାୟିନୀ । ତାହାଙ୍କ କୃପାରେ ମୂର୍ଖ ପଣ୍ଡିତ ହୁଏ । ପୁରାଣ ମତାନୁଯାୟୀ ଦେବୀ ସରସ୍ୱତୀ ଶ୍ରୀକୃଷ୍ଣ ଆଦେଶକ୍ରମେ ବୈକୁଣ୍ଠପୁରକୁ ଗମନ କରି ବିଷ୍ଣୁଙ୍କର ମନୋହାରିଣୀ ହେଲେ । ମାଘମାସ ଶୁକ୍ଳପକ୍ଷ ପଞ୍ଚମୀ ଦିନ ଏହି ପୂଜା ମର୍ତ୍ତ୍ୟଲୋକରେ ଭଗବାନ ଶ୍ରୀକୃଷ୍ଣଙ୍କଦ୍ୱାରା ଆରମ୍ଭ ହୋଇଥିଲା ।



'ଯୁଗକୁ ଯୁଗ ଏହିମତେ, ପରମାନନ୍ଦ ଏ ଜଗତେ ।' ସଂସାର ସୃଷ୍ଟି ପରେ ଯୁଗ ପରେ ଯୁଗ ବହିଯାଉଥିବା ସଂସାରର ଛବି ନାନାଦି ବିଚିତ୍ର ସମୟ ମଧ୍ୟଦେଇ ଗତି କରୁଛି । ତତ୍ ସଂଗେସଂଗେ ସଂସାରର ତଥାକଥିତ ବ୍ୟବସ୍ଥାନୁଯାୟୀ ବ୍ୟକ୍ତିବିଶେଷଙ୍କ ଚିତ୍ତକୁ ଧର୍ମ ଓ ପୁଣ୍ୟ ମାର୍ଗରେ ପରିଚାଳିତ କରିବା ପାଇଁ ଧର୍ମଚିନ୍ତକମାନେ ପୁରାଣ ଦର୍ଶନର ସାହାରା ନେଇଛନ୍ତି ଏବଂ ବିବିଧ ଧର୍ମରେ ଶାରଦାଙ୍କୁ ଜ୍ଞାନ ଓ ବିଦ୍ୟାର ପ୍ରବର୍ତ୍ତିକା ଭାବରେ ଗ୍ରହଣ କରାଯାଇଛି । 'ସରସ୍ୱତୀ ମାହାତ୍ମ୍ୟ'ରେ କୁହାଯାଇଛି, ସଂସାର ସୃଷ୍ଟି ପରବର୍ତ୍ତୀ ଅବସ୍ଥାରେ ପୃଥିବୀରେ ଚଳ ବର୍ଦ୍ଧମାନ ଅବସ୍ଥା ସୃଷ୍ଟି କରିବା ନିମନ୍ତେ ସୃଷ୍ଟିକର୍ତ୍ତା ବ୍ରହ୍ମା ଆପଣାର କମଣ୍ଡଳରୁ ଯେଉଁ ଜଳ ସିଞ୍ଚନ କରିଥିଲେ, ସେହି ହେତୁ ଏକ ବୃକ୍ଷରୁ ଯେଉଁ ଶକ୍ତି ଆବିର୍ଭୁତା ହୋଇଥିଲେ ତାହାଙ୍କ ବର୍ଣ୍ଣ ଶୁକ୍ଳବର୍ଣ୍ଣ, ଚତୁର୍ଭୁଜା, ବୀଣା ପୁସ୍ତକଧାରିଣୀ, ହଂସାରୁଢ଼ା, ସ୍ଫଟିକମାଳା ଧାରିଣୀ, ହସ ହସ ବଦନା, କରୁଣା ପ୍ରଦାୟିନୀ, ଶୁକ୍ଳାମ୍ବରା ।

'ଶୁକ୍ଳା ବ୍ରହ୍ମବିଚାର ସାର, ସାର ପରମା ମାତ୍ୟାଂ ଜଗତ୍ ବ୍ୟାପିନୀ,
ବୀଣା ପୁସ୍ତକ ଧାରିଣୀ, ମଭୟଦାଂ ଜାଡ୍ୟାନ୍ଧକାର ପହାମ୍ ।
ହସ୍ତେ ସ୍ଫଟିକ ମାଳିକାଂ ଚ ଦଧିତାଂ ପଦ୍ମାସନେ ସ୍ଥିତାଂ
ବନ୍ଦେ ତାଂ ପରମେଶ୍ୱରୀ, ଭଗବତୀ ବୁଦ୍ଧିପ୍ରଦାଂ ଶାରଦାମ୍ ।।'

ରୂପତତ୍ତ୍ୱ ଦୃଷ୍ଟିରୁ ଶୁକ୍ଳବର୍ଣ୍ଣ ଶୁଦ୍ଧ ସତ୍ତ୍ୱଗୁଣର ପ୍ରତୀକ । ଦେବୀ ସରସ୍ୱତୀଙ୍କର ଦକ୍ଷିଣ ହସ୍ତରେ ବୀଣା ଯନ୍ତ୍ରଟି ନାଦଶକ୍ତିର ପ୍ରତୀକ ଭାବରେ ସୁଶୋଭିତ ଜ୍ଞାନଶକ୍ତିର ପ୍ରତୀକ ଭାବରେ ପୁସ୍ତକ ଦେବୀଙ୍କର ବାମହସ୍ତରେ ବିରାଜିତ । ହଂସ ଯେପରି ଦୁଗ୍ଧରୁ ଜଳକୁ ଅଲଗା କରି ଦୁଗ୍ଧ ପାନ କରେ, ଠିକ୍ ସେହିଭଳି ସଂସାରର ଖରାପ ଜିନିଷକୁ ପରିତ୍ୟାଗ ପୂର୍ବକ ଉପଯୁକ୍ତକୁ ଗ୍ରହଣ କରିବାକୁ ମନୁଷ୍ୟ ମନ ମଧ୍ୟରେ ଏ ପ୍ରକାର ଜ୍ଞାନର ଚେତନା ସୃଷ୍ଟି କରିବା ଉଦ୍ଦେଶ୍ୟରେ ହଂସ ବାଗ୍‌ଦେବୀଙ୍କର ବାହନ ।

ବିଭିନ୍ନ ପୁରାଣାନୁଯାୟୀ ସେ ବ୍ରହ୍ମାଙ୍କ କନ୍ୟା, ମତାନ୍ତରେ ପତ୍ନୀ, କ୍ଷୀର ସାଗରଶାୟୀ ନାରାୟଣଙ୍କ ପତ୍ନୀ । ଶିବ ପୁରାଣ ମତେ ଶିବଶକ୍ତି ଦୁର୍ଗା ରୂପରେ ଆବିର୍ଭୁତା ।

କାଳେ କାଳେ ଭଗବତୀ ଭାରତୀ ସଂସାର ସାଗର ଜଳରୁ ମୂକ, ମୂର୍ଖ, ଜ୍ଞାନହୀନଙ୍କ ଦୁର୍ଦ୍ଦଶା ମୋଚନ କରି ମହାପଣ୍ଡିତରେ ଭୂଷିତ କରିଛନ୍ତି । ସୃଷ୍ଟିକର୍ତ୍ତା ବ୍ରହ୍ମାଙ୍କ ପୁତ୍ରୀ ସଦା କରୁଣା କଣା ବିଞ୍ଚି ଦେଇଛନ୍ତି ତାଙ୍କ ଭକ୍ତମାନଙ୍କ ମସ୍ତକରେ । ଏ ଦେଶ ଭାରତ ବିବିଧ ଧର୍ମ ଓ ସମ୍ପ୍ରଦାୟର ଲୋକଙ୍କୁ ନିଜ କୋଳରେ ସ୍ଥାନ ଦେଇଛି । ସେହିପରି ବିବିଧ ଧର୍ମର ସମାବେଶ ଘଟିଥିଲେ ହେଁ ସ୍ଥାନ, ସ୍ଥଳ ଭେଦରେ ପୂଜିତ ଦେବତାଙ୍କର ମତାନୁଯାୟୀ ପୂଜାବିଧାନ ସାଧିତ ହେଉଛି । ଯେପରି ଏକ ଦୃଷ୍ଟିରେ ଦେଖିଲେ ଈଶ୍ୱର ସର୍ବବ୍ୟାପୀ । ସେ ଅରୂପ, ଅଣାକାର । ଯେ ଯେଉଁ ମତରେ ନିଜ ମନ ଭିତରେ ତାହାଙ୍କର ମୂର୍ତ୍ତି ସ୍ଥାପନ କରି ପୂଜନ କରିପାରିଲା, ଠିକ୍ ସେହିଭଳି, ଇନ୍ଦା, ସୁରେଶ୍ୱରୀ, ଭାରତୀ ସରସ୍ୱତୀ ।

ସରସ୍ୱତୀଙ୍କ ନାମର ଅର୍ଥକୁ ଅନୁଧ୍ୟାନ କଲେ ସରସ ନଦୀ, ହ୍ରଦ ବା ସାଗର । ଯେପରି ନିର୍ଜଳ ମରୁକୁ ଶସ୍ୟ ଶ୍ୟାମଳା କରିବା ପାଇଁ ସୁନାବ୍ୟା ନଦୀର ସାହାରା ଏକାନ୍ତ ଅପରିହାର୍ଯ୍ୟ, ସେହିଭଳି ଜ୍ଞାନହୀନ ମରୁଭୂମି ସମ ଜୀବନ କ୍ଷେତକୁ ସ୍ୱୟଂ ସରସ୍ୱତୀ ସଦୃଶ ଜ୍ଞାନଦାୟିନୀ ନଦୀଙ୍କ ଆବଶ୍ୟକତା ଅନସ୍ୱୀକାର୍ଯ୍ୟ ।

ବହୁ ପୁରାତନ ଯୁଗରୁ ବୌଦ୍ଧ ଓ ଜୈନଧର୍ମରେ ଦେବୀ ସରସ୍ୱତୀଙ୍କୁ ଜ୍ଞାନର ଅଧିଷ୍ଠାତ୍ରୀ ଦେବୀ ବୋଲି ଗ୍ରହଣ କରାଯାଇଛି । ବୌଦ୍ଧ ଧର୍ମ ସାଧନମାଳାରେ ଜ୍ଞାନାବନ୍ଧର ଦେବୀ ରୂପେ ମହାସରସ୍ୱତୀ, ବଜ୍ର ବୀଣା, ସରସ୍ୱତୀ, ବଜ୍ର ଶାରଦା, ବଜ୍ର ସରସ୍ୱତୀ ନାମରେ ବର୍ଣ୍ଣନା କରାଯାଇଛି ।

ଏତଦ୍‌ବ୍ୟତୀତ ମଥୁରା ନିକଟରୁ ପ୍ରାପ୍ତ କାଳୀତିକାଠାରୁ ଜୈନ ସ୍ତୁପରୁ ପ୍ରାପ୍ତ ମନୋଜ୍ଞ ସରସ୍ୱତୀ ମୂର୍ତ୍ତି ଜୈନଧର୍ମରେ ସରସ୍ୱତୀ ଆରାଧନାର ସୂଚନା ପ୍ରଦାନ କରେ ।

ଅବଶେଷରେ ଏତିକି କୁହାଯାଇପାରେ ଯେ, ଭାରତୀୟ ସଂସ୍କୃତିରେ ପୂଜା ଉପାସନା ଏକ ଅବିଚ୍ଛେଦ୍ୟ ଅଙ୍ଗ । ଯାହା ଯୁଗ ଯୁଗରୁ ଚଳି ଆସିଛି ତତ୍ ସଂଗେସଂଗେ ଜ୍ଞାନ, ଆଦର୍ଶ, ବିଦ୍ୟା, ବିନୟ, ବିଚକ୍ଷଣତା, ପ୍ରତିଷ୍ଠା ଆଦି ବହନ କରି ଚାଲିଛି ଚାଲିଥିବ ଆଗକୁ ଆଗକୁ । ଦେବୀ ସରସ୍ୱତୀଙ୍କ ଉପାସନା ଯେ କୌଣସି ବିଦ୍ୟାକୁ ଆୟତ୍ତ କରିବାର ପଥ ସୁଗମ କରାଇଥାଏ ।

କ୍ୱାର୍ଟର୍ସ ନଂ- ୨ ଆର୍.ବି. ୧୭/୪
ୟୁନିଟ୍-୮, ଭୁବନେଶ୍ୱର-୧୨

# ସ୍ୱଳ୍ପ ସଞ୍ଚୟ ଯୋଜନାରେ ସୁଧ ସହ ପୁରସ୍କାର ମିଳିବାର ବ୍ୟବସ୍ଥା ରହିଛି

ଗତ ଫେବୃଆରୀ ୧୮ ତାରିଖ ଦିନ ସ୍ୱଳ୍ପ ସଂଚୟ ପ୍ରୋତ୍ସାହନ ଯୋଜନାର ଏଡି ସିରିଜ୍ ଉଠାଣରେ ପୁରସ୍କାର ପାଇବା ପାଇଁ ଯୋଗ୍ୟ ବିବେଚିତ ହୋଇଥିବା ଜମାକାରୀମାନଙ୍କୁ ଅର୍ଥ ବିଭାଗର ପ୍ରମୁଖ ଶାସନ ସଚିବ ଶ୍ରୀ ରବି ନାରାୟଣ ସେନାପତି ପୁରସ୍କାର ପ୍ରଦାନ କରିଥିଲେ । ପୁରସ୍କାର ବିତରଣ ପରେ ସେ କହିଲେ ଯେ ସ୍ୱଳ୍ପ ସଂଚୟ ଯୋଜନାରେ ଟଙ୍କା ଜମା ରଖିଲେ, ଉପଯୁକ୍ତ ସୁଧ ସହିତ ପୁରସ୍କାର ପାଇବାର ବ୍ୟବସ୍ଥା ଥିବାରୁ ଅଧିକରୁ ଅଧିକ ଲୋକ ଏହି ଯୋଜନାରେ ଅର୍ଥ ଜମା ରଖିବା ଆବଶ୍ୟକ ।

ପ୍ରଥମ ପୁରସ୍କାର ୪ ଲକ୍ଷ ଟଙ୍କାରୁ ଆୟକର ବାଦ୍ ଯାଇ ୨ ଲକ୍ଷ ୮୦ ହଜାର ଟଙ୍କାର ଚେକ୍ ସୁନ୍ଦରଗଡ଼ ଜିଲ୍ଲାର ମିଳିତ ବିଜେତା ଶ୍ରୀମତୀ ମଂଜୁ ଦେବୀ, ରଥେଶ କୁମାର ସିଂ ଓ ରାଜେଶ କୁମାର ସିଂଙ୍କୁ ଅର୍ଥ ବିଭାଗର ପ୍ରମୁଖ ଶାସନ ସଚିବ ଶ୍ରୀ ସେନାପତି ପ୍ରଦାନ କରିଥିଲେ । ସେହିପରି ଦ୍ୱିତୀୟ ପୁରସ୍କାର ୩ ଲକ୍ଷ ଟଙ୍କାରୁ ଆୟକର ବାଦ୍ ଯାଇ ୨ ଲକ୍ଷ ୧୦ ହଜାର ଟଙ୍କାର ଚେକ୍ ଗଞ୍ଜାମ ଜିଲ୍ଲାର ଯୁଗ୍ମ ବିଜେତା ଶ୍ରୀ ଶରତ କୁମାର ପରିଛା ଓ ଶ୍ରୀମତୀ ଝୁନୁ କୁମାରୀ ପରିଛାଙ୍କୁ ପ୍ରଦାନ କରାଯାଇଛି । ତୃତୀୟ ପୁରସ୍କାର ୨ ଲକ୍ଷ ଟଙ୍କାରୁ ଆୟକର ବାଦ୍ ଯାଇ ଏକ ଲକ୍ଷ ୪୦ ହଜାର ଟଙ୍କାର ଚେକ୍ କଟକ ଜିଲ୍ଲାର ଶ୍ରୀ ଦେବରାଜ ବିଶ୍ୱାଳଙ୍କୁ ପ୍ରଦାନ କରାଯାଇଛି । ଚତୁର୍ଥ ପୁରସ୍କାର ୩ଟି ଦିଆଯିବାର ବ୍ୟବସ୍ଥା ଥିବାରୁ ପ୍ରତ୍ୟେକ ପୁରସ୍କାର ବାବଦ ଏକ ଲକ୍ଷ ଟଙ୍କାରୁ ଆୟକର ବାଦ୍ ଯାଇ ୭୦ ହଜାର ଟଙ୍କା ଲେଖାଏଁ ସୁନ୍ଦରଗଡ଼ ଜିଲ୍ଲାର ଶ୍ରୀଲେଖା ତ୍ରିପାଠୀ ଓ ଦୀପକ କୁମାର ଦ୍ୱିବେଦୀ (ଯୁଗ୍ମ ବିଜେତା), ଖୋର୍ଦ୍ଧା ଜିଲ୍ଲାର ଶ୍ରୀ ମାନଗୋବିନ୍ଦ ବ୍ରହ୍ମା ଓ ଶ୍ରୀମତୀ ଅହଲ୍ୟା ପଣ୍ଡା (ଯୁଗ୍ମ ବିଜେତା) ଏବଂ ମୟୂରଭଂଜ ଜିଲ୍ଲାର ଶ୍ରୀମତୀ ସୁକାନ୍ତି ରଣାଙ୍କୁ ପ୍ରଦାନ କରାଯାଇଛି ।

ଉକ୍ତ ପୁରସ୍କାର ବିତରଣ ଉତ୍ସବରେ ଅର୍ଥ ବିଭାଗର ସ୍ୱତନ୍ତ୍ର ଶାସନ ସଚିବ ତଥା ସ୍ୱଳ୍ପ ସଂଚୟ ନିର୍ଦ୍ଦେଶକ ଶ୍ରୀ ପ୍ରିୟବ୍ରତ ପଟ୍ଟନାୟକ, ସ୍ୱଳ୍ପ ସଂଚୟ ଉପନିର୍ଦ୍ଦେଶକ ଶ୍ରୀ ସୁଧାଂଶୁ ମୋହନ କର ଓ ବିଭିନ୍ନ ଜିଲ୍ଲାର ସ୍ୱଳ୍ପ ସଂଚୟ ଅଧିକାରୀମାନେ ଯୋଗ ଦେଇଥିଲେ ।



# ଅଗ୍ନିମୀଡ଼େ ପୁରୋହିତମ୍

ରମେଶ ନନ୍ଦ

ବ୍ରାହ୍ମଣମାନଙ୍କର ଗୁରୁ ଶ୍ରୀ ଅଗ୍ନିଦେବଙ୍କ ଉଦ୍ଦେଶ୍ୟରେ ବେଦର ପ୍ରଥମ ମନ୍ତ୍ର ବା ସୂକ୍ତ ରଚିତ ହୋଇଛି । ବେଦ ବା ଶ୍ରୁତିରେ ଯେତେ ସୂକ୍ତ ରହିଛି, ସର୍ବାଧିକ 'ଇନ୍ଦ୍ର'ଙ୍କ ଉଦ୍ଦେଶ୍ୟରେ ଓ ତା'ପରେ ଅଗ୍ନିଦେବଙ୍କ ଉପଲକ୍ଷରେ । ସେଇଥିପାଇଁ ଅଗ୍ନିଦେବଙ୍କର ଅନ୍ୟ ନାମ 'ଜାତବେଦ' ଏହା ବେଦରୁ ସ୍ପଷ୍ଟ । ଅଗ୍ନିଦେବ ସୂର୍ଯ୍ୟଙ୍କର ପ୍ରଖର ତେଜରେ ଅଛନ୍ତି - ଅଛନ୍ତି ଦେବ ଦେବ ମହାଦେବଙ୍କ ତ୍ରିନେତ୍ରରେ ଏବଂ ମହାମାୟାଙ୍କର ତ୍ରିନୟନରେ ଧ୍ୱଂସର ପ୍ରତୀକାତ୍ମକ ବ୍ୟବସ୍ଥା ଭାବରେ । ହରଶଙ୍କର ଭଗବାନଙ୍କ ତୃତୀୟ ନେତ୍ରରୁ ନିର୍ଗତ ଅଗ୍ନିରୁ କନ୍ଦର୍ପ ମହାଭାଗ ବିନଷ୍ଟ ହୋଇ ପାଉଁଶ ହୋଇଯାଇଥିଲେ ।

ପୁରାଣ ପୃଷ୍ଠାରେ ଅଗ୍ନିଦେବ ହେଲେ ମୁଖ୍ୟ । ଯଜ୍ଞରେ ଯେଉଁ ଦେବତାଙ୍କ ଉଦ୍ଦେଶ୍ୟରେ ଆହୂତି ହୁଏ, ହବିର୍ଭାଗକୁ ସେଇ ଦେବତାଙ୍କ ନିକଟରେ ପହଞ୍ଚାଇ ଦେବା ଅଗ୍ନିଦେବଙ୍କର କାମ । ସେଇଥିପାଇଁ ଯଜ୍ଞରେ ବିଭିନ୍ନ ଦେବତାଙ୍କ ଉଦ୍ଦେଶ୍ୟରେ ଆହୂତି ପ୍ରଦାନ କରାଯାଇଥାଏ । ବୈଶ୍ୱାନର ଅଗ୍ନି ପ୍ରଥମେ କେବଳ ଘୃତରେ ସନ୍ତୁଷ୍ଟ ଥିଲେ । ପରେ ପରେ ସେ ସର୍ବଭକ୍ଷ ହୁତାଶନରେ ପରିଣତ ହେଲେ । ଯେଉଁ ପାଞ୍ଚଟି ମହାଭୂତରେ ଏ ସଂସାର ଓ ପିଣ୍ଡ ଗଢ଼ା, ସେ ଭିତରେ ଅଗ୍ନି ଏକ ମହାଭୂତ । ଶରୀର ଭିତରେ ସେ ମଧ୍ୟ ଅଛନ୍ତି । ଗୀତାର ୧୫ ଅଧ୍ୟାୟ 'ପୁରୁଷୋତ୍ତମ ଯୋଗ'ରେ ଭଗବାନ କହିଲେ, 'ଅହଂ ବୈଶ୍ୱାନର ଭୂତ୍ୱା ପ୍ରାଣୀନାଂ ଦେହ ମାଶ୍ରିତଃ ।'

ଅଗ୍ନି ରୂପରେ ସେ ଶରୀର ଭିତରେ ବିଦ୍ୟମାନ ଓ ସମସ୍ତ ଖାଦ୍ୟ ଦ୍ରବ୍ୟକୁ 'ପଚାମ୍ୟନ୍ନ ଚତୁର୍ବିଧମ୍' ହଜମ କରିଥାଆନ୍ତି । ଗୀତାର ଦଶମ ଅଧ୍ୟାୟ 'ବିଭୂତି ଯୋଗ'ରେ ଭଗବାନ 'ଅଷ୍ଟବାସୁ'ମାନଙ୍କ ମଧ୍ୟରେ ମୁଁ ଶ୍ରେଷ୍ଠ ବା ରାଜା 'ଅଗ୍ନି' ବୋଲି କହିଛନ୍ତି । 'ସ୍ୱାହା' ଓ 'ସ୍ୱଧା' ତାଙ୍କର ଦୁଇ ଧର୍ମ ପତ୍ନୀ ।

**ଅଗ୍ନି ହେଉଛନ୍ତି 'ବାୟୁ ସଖଃ' - ସେ ବାୟୁଙ୍କର ବନ୍ଧୁ । ତା' ଅର୍ଥ ବାୟୁ ସଂଚାଳିତ ହେଲେ ଅଗ୍ନି ପ୍ରଜ୍ୱଳିତ ହୁଅନ୍ତି ଏବଂ ଅଗ୍ନି ପ୍ରଜ୍ୱଳିତ ହେଲେ ବାୟୁ ପ୍ରବାହ ହୁଏ ।**

ସବୁ କଥାରେ ଅଗ୍ନିସାକ୍ଷୀ । ଅଗ୍ନିଦେବଙ୍କୁ ସାକ୍ଷୀ ରୂପରେ ଗ୍ରହଣ କରାଯାଏ । ତ୍ରେତୟା ଯୁଗରେ ମର୍ଯ୍ୟାଦା ପୁରୁଷୋତ୍ତମ ଶ୍ରୀରାମଚନ୍ଦ୍ର ମହାପ୍ରଭୁ ଅଗ୍ନିଦେବଙ୍କୁ ପ୍ରଜ୍ୱଳିତ କରି ସାକ୍ଷୀ ଭାବରେ ରଖି ସୁଗ୍ରୀବଙ୍କ ସହିତ ମିତ୍ରତା ସ୍ଥାପନ କରିଥିଲେ । ଏଠାରେ ଗ୍ରହଣୀୟ ଯେ ଅଗ୍ନିଦେବ ସର୍ବତ୍ର ବିରାଜିତ ସୂକ୍ଷ୍ମ ଭାବରେ । ପୁରାଣମାନଙ୍କରେ ଅଗ୍ନିଦେବଙ୍କୁ 'ଦୁଇ ମସ୍ତକ' ଏବଂ 'ସପ୍ତଜିହ୍ୱା' ଭାବରେ କଳ୍ପନା କରାଯାଇଛି ଯେ ସେ ଯଜ୍ଞର ପୁରୁଷ । ଅଗ୍ନିଦେବ ରାକ୍ଷସରାଜ ହିରଣ୍ୟକଶ୍ୟପୁଙ୍କୁ ମଧ୍ୟ ବରଦାନ କରିଥିଲେ । ସେ ମେଷାରୁଢ଼ ।

'ମହାଭାରତ'ର କଥାବସ୍ତୁ ଭିତରେ ଅଗ୍ନିଦେବଙ୍କର ଆଖ୍ୟାନ ଏକ ପବିତ୍ର ଆଖ୍ୟାନ । ଶ୍ୱେତରାଜା ଅଗ୍ନିଦେବଙ୍କୁ ଯଜ୍ଞ ମାଧ୍ୟମରେ ସନ୍ତୁଷ୍ଟ କରିବା ନିମିତ୍ତ 'ଘୃତସାଗର'ରୁ ଘୃତ ଆଣି ଐରାବତ ସହାୟତାରେ ଅଗ୍ନିଙ୍କୁ ଯଥେଷ୍ଟ ଘୃତରେ ଆପ୍ୟାୟିତ କଲେ । ଫଳରେ ଅଗ୍ନିଙ୍କର ଅଗ୍ନିମାନ୍ଦ୍ୟ ହେଲା ଓ ସେ ଲୁଦ୍‌ବୁଦ୍ ବ୍ୟାଧିରେ ପୀଡ଼ିତ ହେଲେ । ସେ ବ୍ୟାଧିରୁ ମୁକ୍ତି ହେବା ନିମନ୍ତେ ସ୍ୱର୍ଗର ବୈଦ୍ୟଙ୍କ ଦ୍ୱାରସ୍ଥ ହୋଇ 'ଖାଣ୍ଡବ ବନ'ରେ ଥିବା ଔଷଧୀୟ ବୃକ୍ଷ ଭକ୍ଷଣରେ ମୁକ୍ତ ହେବା ନିମନ୍ତେ ପରାମର୍ଶ ଗ୍ରହଣ କରିଥିଲେ । ଅଗ୍ନିଦେବ ଏଥିନିମିତ୍ତ ଅର୍ଜୁନଙ୍କ ସହାୟତା ଲୋଡ଼ିଥିଲେ । ଇନ୍ଦ୍ରଙ୍କ ଉପବନ ଥିଲା ଖାଣ୍ଡବପ୍ରସ୍ଥ । ମହାଭାରତର ମହାନାୟକ ଶ୍ରୀକୃଷ୍ଣଙ୍କ ପରାମର୍ଶକ୍ରମେ ଅର୍ଜୁନ ଇନ୍ଦ୍ରଙ୍କ ବିରୋଧରେ ଯୁଦ୍ଧକରି ଖାଣ୍ଡବ ବନ ଅଗ୍ନିଙ୍କୁ ଭକ୍ଷଣ କରିବା ନିମନ୍ତେ ପ୍ରସ୍ତୁତ ହୋଇଥିଲେ । ସେଥିପାଇଁ ବରଦାନପୂର୍ବକ ଅଗ୍ନିଦେବ ଅର୍ଜୁନଙ୍କୁ ରଥଟିଏ ଉପହାର ସ୍ୱରୂପ ଓ ଅକ୍ଷୟତୂଣୀର ପ୍ରଦାନ କରିଥିବାର ବର୍ଣ୍ଣନା ରହିଛି । ଅଗ୍ନିଦେବ ଜଣେ ଦିଗପାଳ । ଅଗ୍ନିକୋଣର ସେ ରକ୍ଷକ । ମଣିଷର ଜନ୍ମ ଅଗ୍ନିରୁ ଓ ଶେଷ ମଧ୍ୟ ଅଗ୍ନି କୋଳରେ ।

ଅଗ୍ନି ବିନା ସଭ୍ୟତାର ବିକାଶ ଅସମ୍ଭବ । ଅଗ୍ନିଙ୍କ ସଂରକ୍ଷଣ ଓ ସଦୁପଯୋଗ ବଳରେ ମଣିଷ ସଭ୍ୟତାର ବିକାଶ ସମ୍ଭବ ହୋଇଛି । ମଣିଷ ଅଗ୍ନିଦେବଙ୍କ ନିକଟରେ ଚିର କୃତଜ୍ଞ । ପବିତ୍ର ଅଗ୍ନ୍ୟୁତ୍ସବରେ ଗୁରୁ ଅଗ୍ନିଦେବ ଏବଂ ତାଙ୍କର ଦୁଇ ଧର୍ମପତ୍ନୀ ସ୍ୱାହା ଏବଂ ସ୍ୱଧାଙ୍କପ୍ରତି ଭକ୍ତିପୂତ ପ୍ରଣାମ ।

ଭୀମଟାଙ୍ଗୀ
ଭୁବନେଶ୍ୱର-୨

ଅଗ୍ନି ହେଉଛନ୍ତି 'ବାୟୁ ସଖଃ' - ସେ ବାୟୁଙ୍କର ବନ୍ଧୁ । ତା' ଅର୍ଥ ବାୟୁ ସଂଚାଳିତ ହେଲେ ଅଗ୍ନି ପ୍ରଜ୍ୱଳିତ ହୁଅନ୍ତି ଏବଂ ଅଗ୍ନି ପ୍ରଜ୍ୱଳିତ ହେଲେ ବାୟୁ ପ୍ରବାହ ହୁଏ ।

# ତତ୍କାଳୀନ ପ୍ରଧାନମନ୍ତ୍ରୀ ଚନ୍ଦ୍ରଶେଖରଙ୍କୁ ବିଜୁବାବୁଙ୍କ ଚିଠି

# ଆମ ଘରକୁ ସଜାଡ଼ିବା ପାଇଁ ଆଉ କେତେ ସତର୍କ ଘଣ୍ଟି ଦରକାର ?

ବିଜୁ ପଟ୍ଟନାୟକ

ବିବଦମାନ ବକ୍ତବ୍ୟ ଯୋଗୁଁ ବିଜୁବାବୁ ଦେଶର ରାଜନୈତିକ ଦୃଶ୍ୟପଟ୍ଟରେ ଓ ବୁଦ୍ଧିଜୀବୀ ମହଲରେ ବେଶ୍ କିଛିଟା ହଲଚଲ ସୃଷ୍ଟି କରିପାରନ୍ତି । ରାଜ୍ୟମାନଙ୍କୁ ଅର୍ଥନୈତିକ ସ୍ୱାତନ୍ତ୍ର୍ୟ ମିଳୁ ବୋଲି ସେ ଦାବି କରନ୍ତି । ସମ୍ବାଦପତ୍ରମାନଙ୍କରେ ତାଙ୍କର ବକ୍ତବ୍ୟ ଅନେକ ସମୟରେ କଦର୍ଥ ହୋଇଯାଏ । ସେ ସମୟରେ ସମ୍ବାଦପତ୍ରଗୁଡ଼ିକ ତର୍ଜମା କରିଥିଲେ ଯେ ଓଡ଼ିଶାକୁ ଭାରତରୁ ଅଲଗା କରି ଏକ ସ୍ୱତନ୍ତ୍ର ପ୍ରଦେଶ ଗଠନ କରିବାକୁ ବୋଧେ ବିଜୁବାବୁ ଚାହାନ୍ତି । ଶ୍ରୀ ପଟ୍ଟନାୟକ ଏ ସଂପର୍କରେ ତତ୍କାଳୀନ ପ୍ରଧାନମନ୍ତ୍ରୀ ଶ୍ରୀ ଚନ୍ଦ୍ରଶେଖରଙ୍କୁ ଯେଉଁ ଚିଠି ଲେଖିଥିଲେ, ତାହା ବେଶ୍ ପ୍ରଣିଧାନଯୋଗ୍ୟ । ସେଥିରେ ସେ କହିଥିଲେ ଦେଶର ସ୍ୱାଧୀନତା ପାଇଁ ଯିଏ ସବୁ ତ୍ୟାଗ ସ୍ୱୀକାର କରିଛି, ସେ ଚାହେଁ ଦେଶ କିପରି ମଜବୁତ୍ ହେଉ । ରାଜ୍ୟରେ ମହଜୁଦ୍ ଥିବା ପ୍ରାକୃତିକ ସମ୍ପଦକୁ ବିନିଯୋଗ କରି ଯଦି ସମ୍ପଦ ସୃଷ୍ଟି କରାଯାଏ ଏବଂ ରାଜ୍ୟ ସମୃଦ୍ଧିଶାଳୀ ହୁଏ, ସେଥିରେ ଦେଶର ସମୃଦ୍ଧି ବଢ଼ିବ । ସେଥିପାଇଁ ରାଜ୍ୟକୁ ଆର୍ଥିକ ସ୍ୱାତନ୍ତ୍ର୍ୟ ମିଳୁ, ପୃଥିବୀର ଯେକୌଣସି ରାଷ୍ଟ୍ରରୁ ପୁଞ୍ଜି ଯୋଗାଡ଼ କରି ରାଜ୍ୟର ସମୃଦ୍ଧି ପାଇଁ ବିନିଯୋଗ କରିବାକୁ ରାଜ୍ୟର ସ୍ୱାଧୀନତା ରହୁ, ସବୁ କଥାରେ ଦିଲ୍ଲୀ ସରକାର ଉପରେ ନିର୍ଭର ନ କରି ରାଜ୍ୟଗୁଡ଼ିକୁ ନିଜର ସମସ୍ୟା ସମାଧାନ କରିବାର ସୁଯୋଗ ମିଳୁ । ପୂର୍ବତନ ପ୍ରଧାନମନ୍ତ୍ରୀଙ୍କୁ ଶ୍ରୀ ପଟ୍ଟନାୟକ ଲେଖିଥିବା ଇଂରାଜୀ ଚିଠିର ଅନୁବାଦ- ଏଠାରେ ଦିଆଗଲା



ପ୍ରିୟ ଚନ୍ଦ୍ରଶେଖର,

ମୁଁ ଭୁବନେଶ୍ୱରରୁ ଫେରିଲା ପରେ ଆପଣଙ୍କ ଚିଠି ଏଇ ମାତ୍ର ଗତକାଲି ପାଇଲି । ଖବରକାଗଜରେ ପ୍ରକାଶିତ ପୂର୍ବାପର ସମ୍ପର୍କବିହୀନ ରିପୋର୍ଟ ଭାରତର ପ୍ରଧାନମନ୍ତ୍ରୀ ହିସାବରେ ଆପଣଙ୍କୁ ବିବ୍ରତ କରିଥିବା ଜାଣିଲି । କିନ୍ତୁ ଯେଉଁ ବ୍ୟକ୍ତି ଦେଶକୁ ସ୍ୱାଧୀନ କରିବା ପାଇଁ ନିଜ ଜୀବନକୁ ବାଜି ଲଗାଇଥିଲା ଓ ପଣ୍ଡିତଜୀଙ୍କ ସହିତ ଘନିଷ୍ଠ ଭାବରେ ବହୁ ବର୍ଷ ଧରି କାର୍ଯ୍ୟ କରିଥିଲା ସେ ଯେ ଦେଶ ବିଭାଜନ ପାଇଁ ଯୁକ୍ତି କରିବ ଏହା ଚିନ୍ତା କରିବା ହାସ୍ୟାସ୍ପଦ ।

ଆପଣଙ୍କର ମନେ ଥିବ ଗତ କିଛି ବର୍ଷ ହେବ ଆମ୍ଭମାନଙ୍କର ଅନେକଗୁଡ଼ିଏ ଗୁରୁତ୍ୱପୂର୍ଣ୍ଣ ସମ୍ମିଳନୀ ହାଇଦ୍ରାବାଦର ଶ୍ରୀ ଏନ୍.ଟି. ରାମାରାଓଙ୍କ ଅଧ୍ୟକ୍ଷତାରେ, ଶ୍ରୀନଗରରେ ଫାରୁକ୍ ଅବଦୁଲ୍ଲାଙ୍କ ଅଧ୍ୟକ୍ଷତାରେ ଓ କଲିକତାରେ ଜ୍ୟୋତି ବସୁଙ୍କ ଅଧ୍ୟକ୍ଷତାରେ ଅନୁଷ୍ଠିତ ହୋଇଯାଇଛି (ଗୋଟିଏ ସମ୍ମିଳନୀରେ ଆପଣ ନିଜେ ଉପସ୍ଥିତ ଥିଲେ) । ଏହି ସମ୍ମିଳନୀରେ କେବଳ କେନ୍ଦ୍ର ଓ ରାଜ୍ୟ ସମ୍ପର୍କ ବିଷୟରେ ଆଲୋଚନା କରାଯାଇଥିଲା ଏବଂ ବିଚ୍ଛିନ୍ନତାବାଦୀ ଶକ୍ତିଙ୍କ ପ୍ରଭାବ ଓ ଷଡ଼ଯନ୍ତ୍ର ପଣ୍ଡ କରିବା ସପକ୍ଷରେ ମତାନୈକ୍ୟ ପ୍ରକାଶ ପାଇଥିଲା । ଭାରତର ଐକ୍ୟ ପାଇଁ ଦେଶର ସବୁ ରାଜ୍ୟଗୁଡ଼ିକ ଆର୍ଥିକ ସ୍ୱାଧୀନତା ସହିତ ସ୍ୱାୟତ୍ତତା ଦେବା ସମ୍ପର୍କରେ ଆମେ ସମସ୍ତେ ରାଜି ହୋଇଥିଲେ । ଏହି ପ୍ରସ୍ତାବ ଯଦି ଆନ୍ତରିକତା ସହକାରେ ସକ୍ରିୟ କାର୍ଯ୍ୟକାରୀ ହୋଇଥାନ୍ତା, ତାହାହେଲେ ପଞ୍ଜାବ, କାଶ୍ମୀର ଓ ଅନ୍ୟ ସ୍ଥାନମାନଙ୍କରେ ଦେଖା ଦେଇଥିବା ଆନ୍ଦୋଳନ ଅନେକାଂଶରେ କମ୍ ହୋଇଥାନ୍ତା । କିନ୍ତୁ କେନ୍ଦ୍ରରେ ସମସ୍ତ ପ୍ରକାର କ୍ଷମତା ଠୁଳ କରିବାର ଉଗ୍ର ମନୋଭାବ ଓ ଏଣେ ପରିସ୍ଥିତିକୁ ଆୟତ୍ତାଧୀନ କରିବାର ଅପାରଗତା ଦେଶର କୋଟି କୋଟି ଭୋକିଲା ଲୋକଙ୍କ ମନ ଓ ହୃଦୟର ଅସନ୍ତୋଷ ଓ କ୍ରୋଧକୁ ଜାଗ୍ରତ କରିଛି । ଯାହାହେଲେ ବି ଭାରତର ଲୋକେ ରାଜ୍ୟମାନଙ୍କରେ ରୁହନ୍ତି, ନୂଆଦିଲ୍ଲୀର ନର୍ଥ ବା ସାଉଥ୍ ବ୍ଲକ୍‌ରେ ବା ତତ୍‌ସଂଲଗ୍ନ କୋଠାବାଡ଼ିରେ ନୁହେଁ । ଲୋକମାନଙ୍କ ଭିତରେ କୁହୁଳୁଥିବା ଅସନ୍ତୋଷ ଓ କ୍ରୋଧକୁ ଦୂର କରାଯିବା ଏକାନ୍ତ ଆବଶ୍ୟକ ।

ଭାରତର ସଂଘୀୟ ବ୍ୟବସ୍ଥାର ମୂଲ୍ୟ ହାସଲ ପାଇଁ ଏକାଠି ଚିନ୍ତା କରିବାର ବେଳ ଆସିଛି । ଦଶନ୍ଧି ଦଶନ୍ଧି ଧରି ମୁଁ ସଂଘୀୟ ବ୍ୟବସ୍ଥାର ଜଣେ ଦୃଢ଼ ସମର୍ଥକ । ଏଥିରେ କିଛି ବୈଚିତ୍ର୍ୟ ନାହିଁ । ସମ୍ବିଧାନର ପ୍ରଣୋତାମାନେ ମଧ୍ୟ ସଂଘୀୟ ବ୍ୟବସ୍ଥାର ଦୃଢ଼ ସମର୍ଥକ ଥିଲେ । ଭାରତୀୟ ସାଧାରଣତନ୍ତ୍ର ରାଷ୍ଟ୍ରସମୂହର ଏକ ୟୁନିୟନ ଭାବରେ ମଧ୍ୟ ପରିଚିତ । ଏହି ୟୁନିୟନରେ କେନ୍ଦ୍ର ହାତରେ ପ୍ରତିରକ୍ଷା, ବୈଦେଶିକ ବ୍ୟାପାର ଓ ମୁଦ୍ରା ଭଳି ବିଷୟଗୁଡ଼ିକ ଛାଡ଼ିଦେଇ ରାଜ୍ୟମାନେ ନିଜର ଯୋଜନା ଓ ବିକାଶ କଥା ନିଜେ ଚିନ୍ତା କରିବା ଓ ନିଜର ପ୍ରାକୃତିକ ସମ୍ପଦ ବିନିଯୋଗରେ ବିଶ୍ୱ ବଜାରରୁ ଅର୍ଥ ପାଇଁ କଥାବାର୍ତ୍ତା କରିବା ସକାଶେ ସ୍ୱାଧୀନତା ପାଇବା ଦରକାର । ୩୦ ବର୍ଷ ତଳେ ମୁଁ ଯେତେବେଳେ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଥିଲି, ସେତେବେଳେ ଭାରତର ସଂଘୀୟ ବ୍ୟବସ୍ଥା ପ୍ରବର୍ତ୍ତନ କରି ରାଜ୍ୟମାନଙ୍କୁ ଯଥାର୍ଥ କ୍ଷମତା ଦେବାକୁ ମୁଁ ପ୍ରଧାନମନ୍ତ୍ରୀ ପଣ୍ଡିତ ନେହେରୁଙ୍କୁ ପ୍ରସ୍ତାବ ଦେଇଥିଲି ଏବଂ ସେ ଏଥିରେ ସହମତ ହୋଇଥିଲେ । କିନ୍ତୁ କେନ୍ଦ୍ରୀୟ କ୍ଷମତାର ମୋହ ଓ ଅହମିକା ଯୋଗୁଁ ତାହା ସମ୍ଭବ ହୋଇପାରିନଥିଲା । ଫଳରେ ଆଜି ସାରା ଦେଶରେ ବଳିଷ୍ଠ ବିଚ୍ଛିନ୍ନତାବାଦୀ ଶକ୍ତି ପ୍ରଚଣ୍ଡ ଭାବରେ ମୁଣ୍ଡ ଟେକିଛି । ଆମ ଘରକୁ ସଜାଡ଼ିବା ପାଇଁ ଆମକୁ ଆଉ କେତେ ସତର୍କ ଘଣ୍ଟି ଦରକାର ? ପୃଥିବୀର ବିଭିନ୍ନ ବିପ୍ଳବର ଇତିହାସରୁ ଶିକ୍ଷା ଗ୍ରହଣ କରି ଆମ ଲୋକଙ୍କ ସ୍ୱାର୍ଥରକ୍ଷା ପାଇଁ ସମ୍ବିଧାନରେ ଆବଶ୍ୟକୀୟ ସଂଶୋଧନ ଆଣିବାକୁ ହେବ ।

ଏ ବିଷୟରେ ଆଉ କାଳବିଳମ୍ବ କରାଯାଇନପାରେ । ବ୍ୟକ୍ତିଗତ ଶ୍ରଦ୍ଧା ଓ ସମ୍ମାନର ସହ ।

ତା.୦୨.୦୪.୧୯୯୧ ଆପଣଙ୍କର ଅନ୍ତରଙ୍ଗ

ବିଜୁ ପଟ୍ଟନାୟକ

ସୌଜନ୍ୟ : 'ମୋ' ସ୍ୱପ୍ନର ଓଡ଼ିଶା' ସୂଚନା ଓ ଲୋକ ସଂପର୍କ ବିଭାଗ)

---

# ବିଜୁବାବୁଙ୍କ ଜନ୍ମଦିନରେ

ସୁପ୍ରଭା ମିଶ୍ର

ଏକମାତ୍ର ବାବୁ ଥିଲ
ଓଡ଼ିଶା ଭୂଇଁରେ ତୁମେ
ଭାବୁଥିଲ ରାତିଦିନ
ଗଢୁଥିଲ ଦେଇ ମନ
ସବୁଜ ଓଡ଼ିଶା ତୁମ ସ୍ୱପ୍ନ ଆଉ ସ୍ୱପ୍ନ ।
ଶତାବ୍ଦୀର ସୂର୍ଯ୍ୟଙ୍କର ଉତ୍ତରାଧିକାରୀ ରୂପେ
ଅହରହ ଦେଖୁଥିଲ
ଓଡ଼ିଶାର ମତିଗତି
ଭଲମନ୍ଦ ହାନିଲାଭ ଭୂତ ଭବିଷ୍ୟତ
ଅନୁଭବୁ ଥିଲ ପ୍ରାଣେ
ଓଡ଼ିଆର ଭୋକ ଦୁଃଖ
ଦୁର୍ବିପାକ ସାଥେ ସାଥେ ହସ ଓ ଉଲ୍ଲାସ ।
ମନ ମଧ୍ୟେ ସଞ୍ଚି ରଖି ସମୁଦ୍ରେ ସାହସ
ଚାଲୁଥିଲ ବୀରଯୋଦ୍ଧା ନୋହି ନିରଳସ
ସଙ୍କଳ୍ପ ସାଧନା ତୁମ ନାହିଁ ପଟାନ୍ତର
କେଣେ ଗଲ ହେ କଳିଙ୍ଗପୁତ୍ର-
ଦେଖ ଆଜି ଏଇ ମାଟି
ମଥାପିଟି ଖୋଜେ ତୁମ ପାଦଚିହ୍ନ
ଖୋଜେ ତୁମ ସୁକୁମାର ବଳ ବୀର୍ଯ୍ୟ ତେଜ
ପାରାଦ୍ୱୀପ ବନ୍ଦରରେ ଶୁଭେ ତୁମ ଚାଲି
ରାଉରକେଲା ବଜାଏ ସଗର୍ବେ
ତୁମରି ସେଇ ବିଜୟର ତୂରୀ
ହୀରାକୁଦ ହାତଯୋଡ଼ି ପ୍ରଣତି ଜଣାଏ
ଚିନିକଳ ସୂତାକଳ ଝୋଟ ଓ କାଗଜକଳ
ଝୁରି ଝୁରି ମର୍ମେ ମର୍ମେ ତୁମ ଗାଥା ଗାଏ ।
ମାଟି ମୁଠେଇ ଧରିଲେ ତୁମ ବାସ୍ନା ଆସେ
ସେ ମାଟି ଚିପୁଡ଼ି ଦେଲେ (ତୁମ) ଲୁହ ଲହୁ ଝରେ
ଏ ପାଣି ପବନେ ଖେଳେ ଦିନରାତି
ମଥାପିଟି ତୁମ ଇଚ୍ଛା ହେଉ
ହେ ବୀର ପୁରୁଷ ତୁମ ଆଶା ପୂର୍ଣ୍ଣ ହେଉ ।
ଖୋଜୁଛି ଓଡ଼ିଶା ତୁମ ହୃଦୟର ଦ୍ୱାର
ଖୋଜି ଲାଗିଛି ତୁମରି ଅନ୍ତରର ହାହାକାର
ଆଜି ତୁମ ଜନ୍ମଦିନେ-
ଦିଅହେ ଆଶୀଷ ଢାଳି ଓଡ଼ିଶାବାସୀଙ୍କୁ
ଦିଅ ଶୁଭାଶୀଷ ତୁମ ନାତି ନାତୁଣୀଙ୍କୁ
ତୁମ ବଂଶଧର ଆମେ
ରଖୁ ତୁମ ଗଉରବ ପରମ୍ପରାକ୍ରମେ
ଧନ୍ୟ ହେଉ ଏ ଓଡ଼ିଶା ଏଇ ଧରାଧାମେ
କରୁ ପ୍ରଣିପାତ ଆମେ ଆଶୀର୍ବାଦ କର
ତୁମରି ପ୍ରେରଣା ଲଭି
ଏ ଜାତି ହେଉ ଯେପରି ଅକ୍ଷୟ ଅମର ।

ଅଧ୍ୟାପିକା
ଶୈଳବାଳା ମହିଳା କଲେଜ, କଟକ

# ଦୁଃସାହସ ଯାହାଙ୍କର ପ୍ରବୃତ୍ତି

ବୈଜୟନ୍ତ ପଣ୍ଡା

**'କିଛି ହାସଲ କରିବାକୁ ହେଲେ ପ୍ରଥମେ ବିପଦକୁ ବରଣ କରିବା ଦରକାର'** ଏହି ଉକ୍ତିଟି ଅନେକ ପ୍ରତିଭାବାନ୍ ବ୍ୟକ୍ତିଙ୍କୁ ନିଜର ସ୍ୱପ୍ନ ସାକାର କରିବାରେ ବାଧକ ସାଜିଛି । କିନ୍ତୁ ବିଜୟାନନ୍ଦ ପଟ୍ଟନାୟକ (ବିଜୁ ପଟ୍ଟନାୟକ)ଙ୍କଠାରେ ଏହା ପ୍ରଯୁଜ୍ୟ ନୁହେଁ । ଦୁଃସାହସିକ କାର୍ଯ୍ୟ, ଶିଳ୍ପର ପ୍ରଗତି ଏବଂ ସର୍ବୋଚ୍ଚ ସ୍ତରର ରାଜନୀତିରେ ବିଜୁବାବୁ ଯେଉଁ ଦୁଃସାହସିକ ପଦକ୍ଷେପମାନ ନେଇଥିଲେ ତାହା ତାଙ୍କୁ ଅସାଧାରଣ ସାହସର ଏକ ଜ୍ୱଳନ୍ତ ଉଦାହରଣ ଭାବେ ଗଢ଼ି ତୋଳିଛି ।

କିଶୋର ଅବସ୍ଥାରୁ ହିଁ ବିଜୁବାବୁ ଦୁଃସାହସ ଏବଂ ଅଧ୍ୟବସାୟପ୍ରତି ଆକର୍ଷିତ ହୋଇଥିଲେ । ଏହାର ପ୍ରକୃଷ୍ଟ ଉଦାହରଣ ହେଉଛି କିଶୋର ଅବସ୍ଥାରେ କଟକରୁ ପେଶାବର ପର୍ଯ୍ୟନ୍ତ ସେ କରିଥିବା ଦୀର୍ଘ ପଥର ସାଇକେଲ୍ ଯାତ୍ରା । ମୂଳଦୁଆ କ୍ରମେ ଦୃଢ଼ତର ହେଲା ଏବଂ ତାଙ୍କର ଜୀବନ ରୂପାନ୍ତରିତ ହେଲା ଏକ ଦୁଃସାହସିକ ଯାତ୍ରାରେ । ଯୁଦ୍ଧ ବିମାନ ଚାଳକ ଭାବେ ସ୍ୱାଧୀନତା ସଂଗ୍ରାମୀ ଅବା ସାହରିର ଉଦ୍ଧାର କରିବାରେ ତାଙ୍କର ପରାକ୍ରମ ସର୍ବଜନବିଦିତ, ଯାହାକୁ ଦୋହରାଇବାର ଆବଶ୍ୟକତା ମୁଁ ମନେ କରୁନାହିଁ ।

ଏହା ବିଡ଼ମ୍ବନା ମାତ୍ର ଯେ, ସ୍ୱାଧୀନ ଭାରତର ଜଣେ ସଫଳ ଏବଂ ବିଶିଷ୍ଟ ଶିଳ୍ପପତି ଭାବେ ସେ ଯେଉଁ ଗୁରୁତ୍ୱ ପାଇବାକୁ ହକ୍‌ଦାର୍ ତାହା ତାଙ୍କୁ ଆଜି ପର୍ଯ୍ୟନ୍ତ ଦିଆଯାଇନାହିଁ । ପୂର୍ବ ଶତାବ୍ଦୀରେ ଯେତେବେଳେ ଓଡ଼ିଶାର କୌଣସି ରାଜନୈତିକ ଅସ୍ତିତ୍ୱ ନଥିଲା ସେ ସମୟରେ ମଧୁବାବୁଙ୍କ ଅବଦାନକୁ ବାଦ୍ ଦେଲେ ବିଜୁବାବୁ କେବଳ ଆଧୁନିକ ଓଡ଼ିଶାର ପ୍ରଥମ ଶିଳ୍ପପତି ନଥିଲେ ବରଂ ବିଂଶ ଶତାବ୍ଦୀର ମଧ୍ୟଭାଗରେ ବିଶିଷ୍ଟ ଶିଳ୍ପପତି ଭାବେ ଭାରତୀୟମାନଙ୍କର ସେ ଥିଲେ ଗର୍ବ ଓ ଗୌରବ । ଏହା ଅତ୍ୟନ୍ତ ଦୁଃଖର ବିଷୟ ଯେ, ଆଜିର ଓଡ଼ିଆ ଯୁବଗୋଷ୍ଠୀ ବିଜୁବାବୁଙ୍କ ଜୀବନର ସେହି ଗୁରୁତ୍ୱପୂର୍ଣ୍ଣ ଘଟଣା ବିଷୟରେ ଖୁବ୍ କମ୍ ଜାଣିଛନ୍ତି । ଏହା ସୂଚାଇବାରେ ମୁଁ ଖୁବ୍ ଗର୍ବ ଅନୁଭବ କରୁଅଛି ଯେ, ବିଜୁବାବୁଙ୍କ ଶିଳ୍ପ ସାମ୍ରାଜ୍ୟଭାବେ ପରିଚିତ କଳିଙ୍ଗ ଗ୍ରୁପ୍ ସେତେବେଳେ ବିର୍ଲା ଏବଂ ଟାଟା ଗ୍ରୁପ୍ ଭଳି ମାନ୍ୟତା ହାସଲ କରିପାରିଥିଲା ଯେତେବେଳେ ଡାଲମିଆ, ମଫତ୍‌ଲାଲ, ଓ୍ୱାଡ଼ିଆ, ନନ୍ଦା ଇତ୍ୟାଦି ମଧ୍ୟ ଖୁବ୍ ସଫଳତା ହାସଲ କରିଥିଲେ ।

କଳିଙ୍ଗ ଗ୍ରୁପ୍ ନିଜର ବ୍ୟବସାୟ ବହୁ ଦିଗରେ ବ୍ୟାପ୍ତ କରିପାରିଥିଲା, ଯଥା- ବିମାନ ସେବା, ଇସ୍ପାତ ଏବଂ ରେଫ୍ରିଜେରେସନ ଇତ୍ୟାଦି । ଏହିଭଳି ତାଲିକା ବହୁତ ଲମ୍ବା ହେବ । ସେ ଭାରତ ତଥା ପୃଥିବୀର ଯେକୌଣସି ସ୍ଥାନରେ ରହି ତାଙ୍କର ଶିଳ୍ପ ସାମ୍ରାଜ୍ୟ ନିୟନ୍ତ୍ରଣ କରିପାରିଥାନ୍ତେ କାରଣ କୋଲକାତା ଓ ଦିଲ୍ଲୀରେ ତାଙ୍କର ସମ୍ପତ୍ତି ଓ ପ୍ରାସାଦ ରହିଥିଲା ଏବଂ ଇଉରୋପ ତଥା ପୃଥିବୀର କୋଣ ଅନୁକୋଣରେ ଥିବା ଶ୍ରେଷ୍ଠ ଶିଳ୍ପ ଏବଂ ବ୍ୟବସାୟୀ ଗୋଷ୍ଠୀଙ୍କ ସହ ତାଙ୍କର ଉତ୍ତମ ସମ୍ପର୍କ ଥିଲା । କିନ୍ତୁ ସେ ତାଙ୍କର ଶିଳ୍ପ ସାମ୍ରାଜ୍ୟକୁ ନିଜର ପ୍ରିୟ ଓଡ଼ିଶାରେ ହିଁ ପ୍ରତିଷ୍ଠା କରିବାକୁ ପସନ୍ଦ କଲେ । ଶିଳ୍ପ ପ୍ରତିଷ୍ଠାଦ୍ୱାରା ହଜାର ହଜାର ରୋଜଗାର ସୃଷ୍ଟି କରିବା ଯେ କେବଳ ତାଙ୍କର ପ୍ରେରଣାର ଉତ୍ସଥିଲା ତାହା ନୁହେଁ, ଏହା ସହିତ ରାଜ୍ୟର ପୂର୍ବ ଗୌରବକୁ ପୁନର୍ଜୀବିତ କରିବାର ସ୍ୱପ୍ନ ମଧ୍ୟ ସେ ଏହାଦ୍ୱାରା ପୂରଣ କରିବାକୁ ଚାହିଁଥିଲେ ।

ତାଙ୍କର ଶିଳ୍ପ ସାମ୍ରାଜ୍ୟ, ବିଂଶ ଶତାବ୍ଦୀର ଭାରତ ଶିଳ୍ପ ବଳୟରେ ବହୁ ଉଚ୍ଚସ୍ଥାନ ଅଧିକାର କରିଥିଲା ସତ, କିନ୍ତୁ ବିଜୁବାବୁଙ୍କ ଦୂରଦୃଷ୍ଟି ଭବିଷ୍ୟତକୁ ମଧ୍ୟ ଭେଦ କରିପାରିଥିଲା । ଉଦାହରଣ ସ୍ୱରୂପ ସେ ହିଁ କିଛି ହାତ ଗଣତି ବ୍ୟକ୍ତିମାନଙ୍କ ମଧ୍ୟରେ ଥିଲେ, ଯେ କି ପ୍ରଥମେ କୋଇଲା ଗ୍ୟାସଫିକେସନ ଟେକ୍ନୋଲୋଜିର ବିକାଶର ଗବେଷଣା ସପକ୍ଷରେ ଯୁକ୍ତି ବାଢ଼ିଥିଲେ, ଯାହାକୁ ନିକଟରେ କେନ୍ଦ୍ର ସରକାର ଗମ୍ଭୀରତାର ସହ ବିଚାରକୁ ନେଇଛନ୍ତି ।

ସେ ବହୁ ପୂର୍ବରୁ ଜାଣିପାରିଥିଲେ ଯେ, ଓଡ଼ିଶାରେ ପ୍ରଚୁର ଭାବେ ଗଚ୍ଛିତ ଥିବା କୋଇଲାରେ ପାଉଁଶ ଏବଂ ସଲ୍‌ଫର୍‌ର ମାତ୍ରା ଅଧିକ ଥିବାରୁ ଶକ୍ତି ଉତ୍ପାଦନ କ୍ଷମତା ଏବଂ ପରିବେଶ ସୁରକ୍ଷାରେ ପ୍ରତିବନ୍ଧକ ସୃଷ୍ଟି ହୋଇଥାଏ ଏବଂ କୋଲ୍ ଗ୍ୟାସିଫିକେସନଦ୍ୱାରା ତାହା ଦୂର ହୋଇପାରିବ । ଏହି ଟେକ୍ନୋଲୋଜି ଓଡ଼ିଶା ପାଇଁ ଏକ ଆଶୀର୍ବାଦ ସ୍ୱରୂପ ହେବ, ଯେପରି ତୈଳର ଆବିଷ୍କାର ମଧ୍ୟ ପୂର୍ବ ଦେଶୀୟ ରାଷ୍ଟ୍ରମାନଙ୍କ ପାଇଁ ହୋଇପାରିଥିଲା ।

ଶିଳ୍ପପତି ଭାବେ ଅସାଧାରଣ ସଫଳତା ବିଜୁବାବୁଙ୍କ ପାଇଁ ସବୁକିଛି ନଥିଲା ଏହା କେବଳ ଥିଲା ଉଚ୍ଚତର ଲକ୍ଷ୍ୟ ହାସଲ କରିବାର ଏକ ମାଧ୍ୟମ ମାତ୍ର । ତାହା ମଧ୍ୟରେ ଅନ୍ୟତମ ହେଲା ୟୁନେସ୍କୋ ତରଫରୁ ପ୍ରଦତ୍ତ କଳିଙ୍ଗ ଆନ୍ତର୍ଜାତୀୟ ପୁରସ୍କାର, ଯାହାକୁ ବିଜୁବାବୁଙ୍କ କଳିଙ୍ଗ ଶିଳ୍ପ ଗୋଷ୍ଠୀର ଆର୍ଥିକ ସମର୍ଥନରେ ପ୍ରତିଷ୍ଠା କରାଯାଇଥିଲା । ବହୁ ଆନ୍ତର୍ଜାତୀୟ ଖ୍ୟାତିସମ୍ପନ୍ନ ବ୍ୟକ୍ତି ଏହି ପୁରସ୍କାର ଗ୍ରହଣ କରିସାରିଛନ୍ତି । ଏହାଛଡ଼ା ବହୁ ପ୍ରତିଭାବାନ୍ ଓଡ଼ିଆ ଯୁବକଯୁବତୀଙ୍କୁ ମଧ୍ୟ ଶିକ୍ଷାବୃତ୍ତି ଏବଂ ଆର୍ଥିକ ସହାୟତା ଦିଆଯାଇଛି ଫଳରେ ସେମାନେ ଦେଶ ବିଦେଶରେ ଉଚ୍ଚଶିକ୍ଷା ହାସଲ କରିପାରିଛନ୍ତି । ଏସବୁର କେନ୍ଦ୍ରରେ ରହିଛି ଆଧୁନିକ ଓଡ଼ିଆମାନଙ୍କ ମଧ୍ୟରେ ଦୃଢ଼ ବିଶ୍ୱାସ ଭରିଦେବା ପାଇଁ ବିଜୁବାବୁଙ୍କ ଅଦମ୍ୟ ଇଚ୍ଛା, ଯାହାଦ୍ୱାରା ଦୁଇ ଶତାବ୍ଦୀ ଧରି ଭରି ରହିଥିବା ଆତ୍ମସଂଶୟରୁ ସେମାନେ ନିଜକୁ ମୁକ୍ତ କରିପାରିବେ ।

'ନିର୍ଭୀକ' ଶବ୍ଦଟି ସତେ ଯେମିତି ତାଙ୍କଭଳି ବ୍ୟକ୍ତିଙ୍କ ନିମନ୍ତେ ଉଦ୍ଭାବିତ ହୋଇଥିଲା । ଯେତେବେଳେ ସମସ୍ତେ ବିଜୁବାବୁଙ୍କୁ କିମ୍ବଦନ୍ତୀ ଭାବେ ଗ୍ରହଣ କରି ତାଙ୍କର ଆବର୍ତ୍ତମାନରେ ଦୁଃଖ ପ୍ରକାଶ କରୁଛନ୍ତି ଆମେ କିନ୍ତୁ ଶିଳ୍ପୋଦ୍ୟୋଗୀ ବିଜୁବାବୁଙ୍କୁ କେବେବି ଭୁଲିଯିବା ଉଚିତ ହେବ ନାହିଁ ।

ମାନ୍ୟବର ସାଂସଦ, ରାଜ୍ୟସଭା
ଭୋଇ ନଗର, ପ୍ଲଟ ନଂ-୮
ପୋ: ନୟାପଲ୍ଲୀ, ଭୁବନେଶ୍ୱର

# ଶହୀଦ ପ୍ରମୋଦ ଶତପଥୀଙ୍କ ବିୟୋଗରେ ମନ୍ତ୍ରୀଙ୍କ ଶୋକ

ଚନ୍ଦକା ସ୍ପେଶାଲ ଅପରେସନ ଗ୍ରୁପ୍ ପ୍ରଶିକ୍ଷଣ କେନ୍ଦ୍ରର ଆସିଷ୍ଟାଣ୍ଟ କମାଣ୍ଡାଣ୍ଟ ତଥା ଯାଜପୁର ଜିଲ୍ଲାର ପ୍ରମୋଦ କୁମାର ଶତପଥୀଙ୍କ ଶହୀଦ ହେବା ଖବର ଶୁଣି ରାଜ୍ୟ ମହିଳା ଓ ଶିଶୁ ବିକାଶ ମନ୍ତ୍ରୀ ଶ୍ରୀମତୀ ପ୍ରମିଳା ମଲ୍ଲିକ ଗଭୀର ମର୍ମାହତ ହୋଇଛନ୍ତି । ସେ ତାଙ୍କ ମର ଶରୀରରେ ପୁଷ୍ପମାଲ୍ୟ ଦେଇ ଗଭୀର ଶ୍ରଦ୍ଧାଞ୍ଜଳି ଅର୍ପଣ କରିଛନ୍ତି ।

ଏକ ଶୋକବାର୍ତ୍ତାରେ ମନ୍ତ୍ରୀ ଶ୍ରୀମତୀ ମଲ୍ଲିକ ଶହୀଦ ଶତପଥୀଙ୍କୁ ଜଣେ ବୀର ଓଡ଼ିଆ ଭାବେ ବର୍ଣ୍ଣନା କରିବା ସହ ନକ୍ସଲ ଦମନ କ୍ଷେତ୍ରରେ ତାଙ୍କର ଅବଦାନ ଚିରସ୍ମରଣୀୟ ହୋଇ ରହିବ ବୋଲି ପ୍ରକାଶ କରିଛନ୍ତି ।

ତାଙ୍କ ଶୋକାକୁଳ ଆତ୍ମୀୟସ୍ୱଜନ ଓ ପରିବାର ସଦସ୍ୟମାନଙ୍କ ପ୍ରତି ଗଭୀର ସମବେଦନା ଜଣାଇବା ସହିତ ତାଙ୍କ ଅମର ଆତ୍ମାର ସଦ୍‌ଗତି କାମନା କରିଛନ୍ତି ।

# ବିଜୁଙ୍କ ଆହ୍ୱାନ - 'ଗାଁକୁ କାମ, ମାଆକୁ ସମ୍ମାନ'

ପବିତ୍ର ମୋହନ ବାରିକ

ଓଡ଼ିଆ ଜାତିର ଗର୍ବ, ଗୌରବ, ସ୍ୱାଭିମାନର ପ୍ରତୀକ ପ୍ରବାଦ ପୁରୁଷ ବିଜୁ ପଟ୍ଟନାୟକଙ୍କ ଅନେକ କାଳଜୟୀ କୃତିତ୍ୱ ମଧ୍ୟରୁ ନାରୀ ଜାଗରଣ ଓ ନାରୀ ଜାତିର ବିକାଶ ପ୍ରତି ଥିଲା ତାଙ୍କର ଅସୀମ ଶ୍ରଦ୍ଧା ଓ ସଭକ୍ତି ସମ୍ମାନ । ତାଙ୍କ ଜୀବଦ୍ଦଶାରେ ମହିଳାମାନଙ୍କ ମହତ୍ତ୍ୱକୁ ଶ୍ରେଷ୍ଠ ସ୍ଥାନ ଦେଇ ଆସିଥିଲେ । ଏକ ସ୍ୱାଭିମାନୀ, ବୀର ଓ ନିର୍ଭୀକ ଓଡ଼ିଆ ଜାତି ଗଠନ ଦିଗରେ ମା'ମାନଙ୍କର ଗୁରୁଦାୟିତ୍ୱ ରହିଛି - ଏହା ବିଜୁ ବାବୁ ଉପଲବ୍ଧି କରିଥିଲେ ।

ବିଜୁବାବୁଙ୍କ ମାତା ଆଶାଲତା ଦେବୀ ସ୍ୱାଧୀନତା ସଂଗ୍ରାମ ପରିପ୍ରେକ୍ଷୀରେ ମୁକ୍ତି ଯୋଦ୍ଧାମାନଙ୍କର ସଂଘର୍ଷପୂର୍ଣ୍ଣ କାହାଣୀ ବର୍ଣ୍ଣନା କରି ତାଙ୍କ ହୃଦୟରେ ଜାତିପ୍ରେମ ଓ ଦେଶଭକ୍ତିର ଭାବଧାରା ସୃଷ୍ଟି କରିପାରିଥିଲେ । ଆଶାଲତା ଦେବୀ ଥିଲେ ବିଜୁବାବୁଙ୍କ ପାଇଁ ପ୍ରେରଣା ଓ ଉତ୍ସାହର ଏକ ପ୍ରବାହମାନ ଧାରା । ଚିଟାଗଞ୍ଜ ଅସ୍ତ୍ରାଗାର ଲୁଣ୍ଠନ କାର୍ଯ୍ୟରେ ବିଜୁବାବଙ୍କ ମାତା ଆଶାଲତା ଦେବୀଙ୍କ ସାନ ଭାଇ ବିଜୟଶ୍ରୀ, ତାଙ୍କ ପୁତୁରା ଦେବ ପ୍ରସାଦ, ଆନନ୍ଦ ପ୍ରସାଦ ମୁଖ୍ୟ ନେତୃତ୍ୱ ନେଇଥିଲେ । ଦେବପ୍ରସାଦ ପୋଲିସ ଗୁଳିରେ କ୍ଷତବିକ୍ଷତ ହୋଇ ଛୁରି ଦ୍ୱାରା ଆତ୍ମହତ୍ୟା କଲେ । ଆନନ୍ଦ ପ୍ରସାଦ ବନ୍ଦୀ ହୋଇ ଜେଲଦଣ୍ଡରେ ଦଣ୍ଡିତ ହୋଇଥିଲେ । ଆଶାଲତା ଦେବୀ ଏମାନଙ୍କ ବୀରତ୍ୱପୂର୍ଣ୍ଣ କାହାଣୀ ବର୍ଣ୍ଣନା କରି ବିଜୁବାବୁଙ୍କ ମନରେ ସ୍ୱାଧୀନତା ସଂଗ୍ରାମ ପ୍ରତି ପ୍ରବଳ ଆଗ୍ରହ ସୃଷ୍ଟି କରିପାରିଥିଲେ । ମାତା ଆଶାଲତା ଦେବୀଙ୍କ ପ୍ରେରଣାରେ ଅନୁପ୍ରାଣିତ ହୋଇ ସେ ପରବର୍ତ୍ତୀ ସମୟରେ ସେ ସ୍ୱାଧୀନତା ସଂଗ୍ରାମରେ ଝାସ ଦେଇଥିଲେ । ପ୍ରଚଣ୍ଡ ବିପ୍ଳବିଣୀ ଶ୍ରୀମତୀ ଅରୁଣା ଆସଫ ଅଲ୍ଲୀଙ୍କୁ ବିଜୁବାବୁ ନିଜ ବିମାନରେ ଆଣି କଟକସ୍ଥିତ ତୁଳସୀପୁରର ବାସଭବନରେ ଗୋପନରେ ରଖିଥିଲେ ।



ଆଦିବାସୀ ମହିଳାଙ୍କ ଗହଣରେ ବିଜୁବାବୁ

ସାଧାରଣତଃ ଗ୍ରାମୀଣ ଓ ପଛୁଆବର୍ଗର ମହିଳାମାନଙ୍କର ଉନ୍ନତି ଆଣିବା ଦିଗରେ ଅନେକ ଯୋଜନା କାର୍ଯ୍ୟକାରୀ କରାଯାଇଅଛି । ମହିଳାମାନଙ୍କୁ ରାଜନୈତିକ ସଶକ୍ତିକରଣ, ଅର୍ଥନୈତିକ ସ୍ୱାବଲମ୍ବୀ ଓ ସାମାଜିକ ସମାନତା ପ୍ରଦାନ କରିବା ଦିଗରେ ଅନେକ ଦୂରଦୃଷ୍ଟିସଂପନ୍ନ ରାଷ୍ଟ୍ରନୀତିଜ୍ଞ, ଦାର୍ଶନିକ ଓ ବିଦ୍ୱାନମାନେ ନିରନ୍ତର ପ୍ରଚେଷ୍ଟା ଅବ୍ୟାହତ ରଖିଛନ୍ତି । ନାରୀଜାତିକୁ ତା'ର ନ୍ୟାଯ୍ୟ ଅଧିକାର ପ୍ରଦାନ ନିମନ୍ତେ ବିଜୁ ପଟ୍ଟନାୟକ ବହୁ ବୈପ୍ଳବିକ ପରିବର୍ତ୍ତନ ଆରମ୍ଭ କରିଥିଲେ । ତାଙ୍କ ମୁଖ୍ୟମନ୍ତ୍ରିତ୍ୱର ଦ୍ୱିତୀୟ ପର୍ଯ୍ୟାୟରେ ନାରୀ ସମାଜର ମଙ୍ଗଳ ନିମନ୍ତେ ଅନେକ ଯୁଗୋପଯୋଗୀ ପଦକ୍ଷେପମାନ ଗ୍ରହଣ କରିଥିଲେ । ବିଜୁବାବୁ ନାରୀ ନିର୍ଯ୍ୟାତନାକୁ ଦୃଢ଼ ହସ୍ତରେ ଦମନ କରିବା ନିମନ୍ତେ କଠୋର ପ୍ରଶାସନିକ ବ୍ୟବସ୍ଥା ପ୍ରଣୟନ କରିବା ସହିତ ନାରୀମାନଙ୍କୁ ପୁରୁଷମାନଙ୍କ ସହିତ ସମକ୍ଷମ କରିବା ପାଇଁ ଉଦ୍ୟମ କରିଥିଲେ ।

## ନାରୀଶିକ୍ଷା

ନାରୀମାନେ ଆତ୍ମନିର୍ଭରଶୀଳା ହୋଇପାରିଲେ ସେମାନଙ୍କର ଅଧିକାଂଶ ସମସ୍ୟାର ସମାଧାନ ହୋଇପାରିବ ବୋଲି ବିଜୁବାବୁ ଆଶାବାଦୀ ଥିଲେ । ଅନ୍ୟାନ୍ୟ ଖ୍ୟାତନାମା ବ୍ୟକ୍ତିତ୍ୱମାନଙ୍କ ପରି ବିଜୁବାବୁ ନାରୀଶିକ୍ଷା ସପକ୍ଷରେ ଥିଲେ । ସାମାଜିକ ଉନ୍ନତି ଓ ସଶକ୍ତିକରଣର ମୌଳିକ ବ୍ୟବସ୍ଥା ନାରୀଶିକ୍ଷା ଉପରେ ନିର୍ଭର କରେ, ଏହା ବିଜୁବାବୁ ଭଲ ଭାବରେ ହୃଦୟଙ୍ଗମ କରିଥିଲେ । ତାଙ୍କ ଶାସନ ସମୟରେ ଓଡ଼ିଶା ମଧ୍ୟରେ ଅନେକଗୁଡ଼ିଏ ବାଳିକା ବିଦ୍ୟାଳୟ, ମହିଳା ମହାବିଦ୍ୟାଳୟ, ମହିଳା ଶିକ୍ଷା ପ୍ରଶିକ୍ଷଣ ମହାବିଦ୍ୟାଳୟ ପ୍ରତିଷ୍ଠା କରିଥିଲେ । ଆଦିବାସୀ ଅଧ୍ୟୁଷିତ ଅଞ୍ଚଳରେ ମଧ୍ୟ ବିଜୁବାବୁ ଅନେକ ବାଳିକା ବିଦ୍ୟାଳୟ

ସ୍ଥାପନରେ ସହାୟତା ଯୋଗାଇ ଦେଇଥିଲେ । ବିଜୁବାବୁ ଅଧିକ ସଂଖ୍ୟାରେ ହରିଜନ ଓ ଆଦିବାସୀ ଛାତ୍ରୀମାନଙ୍କୁ ଛାତ୍ରବୃତ୍ତି ତାଙ୍କ ଶାସନ ସମୟରେ ପ୍ରଦାନ କରିଥିଲେ । ଘରୋଇ ଉଦ୍ୟମରେ ପ୍ରତିଷ୍ଠିତ ଏବଂ ସରକାରୀ ଅନୁଦାନ ପାଇଥିବା ବାଳିକା ଉଚ୍ଚବିଦ୍ୟାଳୟ ଓ ମହିଳା ମହାବିଦ୍ୟାଳୟମାନଙ୍କୁ ବିଭିନ୍ନ କ୍ଷେତ୍ରରେ ଅଧିକ ସହାୟତା ଯୋଗାଇ ଦେଇଥିଲେ । ଛାତ୍ରୀମାନଙ୍କୁ ବିଜ୍ଞାନ, ବୈଷୟିକ ଶିକ୍ଷା, ପ୍ରତିଭା ବିକାଶ ପ୍ରଭୃତି ବିଷୟରେ ଶିକ୍ଷା ଦେବାରେ ବିଜୁବାବୁ ଗୁରୁତ୍ୱ ଦେଉଥିଲେ ।

୧୯୯୪ ମସିହା ମାର୍ଚ୍ଚ ମାସ ୧ ତାରିଖରୁ ୮ ତାରିଖ ପର୍ଯ୍ୟନ୍ତ ଆନ୍ତର୍ଜାତିକ ମହିଳା ସପ୍ତାହ ପାଳନ ଅବସରରେ ରାଜ୍ୟ ସମାଜ ମଙ୍ଗଳ ପରିଷଦଦ୍ୱାରା ମହିଳାମାନଙ୍କୁ ସଶକ୍ତିକରଣ ଓ ସମାନତା ପ୍ରଦାନ ଦିଗରେ ଗଣ ସଚେତନତା କାର୍ଯ୍ୟକ୍ରମମାନ ଆରମ୍ଭ ହୋଇଥିଲା । ମହିଳାମାନଙ୍କ ନିମନ୍ତେ ଆୟୋଜିତ ରାଜ୍ୟସ୍ତରୀୟ ଆଲୋଚନାଚକ୍ରରେ ବିଜୁବାବୁ ନିଜେ ଅଂଶ ଗ୍ରହଣ କରି ମହିଳାମାନଙ୍କ ମଧ୍ୟରେ ବିଜ୍ଞାନ ଓ ବୈଷୟିକ ଜ୍ଞାନ ବୃଦ୍ଧି ନିମନ୍ତେ ଗୁରୁତ୍ୱାରୋପ କରିଥିଲେ । ଓଡ଼ିଶା ସରକାରଙ୍କର ବିଭିନ୍ନ ବିଭାଗରେ ଚାକିରି କରିବା ନିମନ୍ତେ ମହିଳା ପ୍ରାର୍ଥୀମାନଙ୍କର ବୟସସୀମା ପାଞ୍ଚବର୍ଷ ପର୍ଯ୍ୟନ୍ତ ବୃଦ୍ଧି କରିବା ପାଇଁ ବିଜୁବାବୁଙ୍କ ସରକାର ନିଷ୍ପତ୍ତି ଗ୍ରହଣ କରିଥିଲେ ।

୧୯୯୪ ମସିହାରେ ବିଜୁବାବୁ ସବାଇଘାସ ବିକାଶ ନିଗମ ନାମକ ଏକ ସଂସ୍ଥା ସ୍ଥାପନ କରିଥିଲେ । ସବାଇଘାସରୁ ସାଧାରଣତଃ ହରିଜନ ଓ ଆଦିବାସୀ ସଂପ୍ରଦାୟର ମହିଳାମାନେ ବିଭିନ୍ନ ଗୃହୋପକରଣ ପଦାର୍ଥମାନ ପ୍ରସ୍ତୁତ କରନ୍ତି । ସେମାନେ ଏଥିରୁ ମୁଖ୍ୟତଃ ଦଉଡ଼ି ପ୍ରସ୍ତୁତ କରନ୍ତି । ଗରିବ ମହିଳାମାନଙ୍କ ଦ୍ୱାରା ସବାଇଘାସରୁ ପ୍ରସ୍ତୁତ ପଦାର୍ଥମାନ ମଧ୍ୟସ୍ଥି ଓ ଅସାଧୁ ବ୍ୟବସାୟୀମାନେ ଶୋଷଣ କରୁଥିଲେ । ଏହାର ନିରାକରଣ ନିମନ୍ତେ ବିଜୁବାବୁ ସବାଇଘାସ ବିକାଶ ନିଗମ ପ୍ରତିଷ୍ଠା କରିଥିଲେ । ଏହି ନିଗମ ମାଧ୍ୟମରେ ଗରିବ ମହିଳାମାନଙ୍କୁ ଉନ୍ନତ କିସମର ସବାଇଘାସ ବିହନମାନ ଯୋଗାଇ ଦିଆଯାଉଥିଲା ଏବଂ ସେମାନଙ୍କୁ ସମସ୍ତ ବ୍ୟବସାୟୀଙ୍କର ସହଯୋଗ ମଧ୍ୟ ପ୍ରଦାନ କରାଯାଉଥିଲା । ଏହି ନିଗମ ମଧ୍ୟ ମହିଳାମାନଙ୍କର ଦକ୍ଷତା ବୃଦ୍ଧି ପାଇଁ ବୈଷୟିକ ତାଲିମର ବ୍ୟବସ୍ଥା କରିଥିଲେ । ସେମାନଙ୍କ ଦ୍ୱାରା ପ୍ରସ୍ତୁତ ପଦାର୍ଥର ବିକ୍ରୟ ଦାୟିତ୍ୱ ମଧ୍ୟ ଗ୍ରହଣ କରାଯାଇଥିଲା । ଗରିବ ଆଦିବାସୀ-ହରିଜନ ମହିଳାମାନଙ୍କ ସ୍ୱାର୍ଥପ୍ରତି ବିଜୁବାବୁଙ୍କର ଥିବା ଆନ୍ତରିକତାର ଏହା ପ୍ରକୃତ ଉଦାହରଣ । ମହିଳାମାନଙ୍କ ପାଇଁ ବିଭିନ୍ନ ସରକାରୀ ଓ ସରକାରଙ୍କ କର୍ତ୍ତୃତ୍ୱାଧୀନ ନିଗମମାନଙ୍କରେ ଶତକଡ଼ା ୩୦ ଭାଗ ଚାକିରି ସଂରକ୍ଷଣ କରିବାର ଏକ ଐତିହାସିକ ପଦକ୍ଷେପ ବିଜୁବାବୁ ଗ୍ରହଣ କରିଥିଲେ । ଏପର୍ଯ୍ୟନ୍ତ ଅନ୍ୟ କୌଣସି ରାଜ୍ୟ ଏହାକୁ କାର୍ଯ୍ୟକାରୀ କରି ନାହାନ୍ତି । ଅସହାୟ ବିଧବା ପେନ୍‌ସନଧାରୀମାନଙ୍କ ବୟସସୀମା ବିଜୁବାବୁ ଉଚ୍ଛେଦ କରିଥିଲେ ।

ମହିଳା ବିକାଶ ନିଗମ

ବିଜୁବାବୁଙ୍କ ମୁଖ୍ୟମନ୍ତ୍ରିତ୍ୱ ସମୟରେ ଓଡ଼ିଶା ସରକାର ମହିଳାମାନଙ୍କର ସର୍ବାଙ୍ଗୀନ ଉନ୍ନତିପାଇଁ ୧୯୯୧ ମସିହାରେ ମହିଳା ବିକାଶ ନିଗମ ସ୍ଥାପନ କରିଥିଲେ । ଏହା ଏକ ମିଳିତ ସଂଗଠନ । ଭାରତ ସରକାର, ଓଡ଼ିଶା ସରକାର ଓ ସ୍ୱେଚ୍ଛାସେବୀ ଅନୁଷ୍ଠାନମାନଙ୍କର ମିଳିତ ଉଦ୍ୟମରେ ଗଠିତ ମହିଳା ବିକାଶ ନିଗମ ଓଡ଼ିଆ ନାରୀମାନଙ୍କର ସର୍ବବିଧ ମଙ୍ଗଳ ସାଧନ ନିମନ୍ତେ ନିରନ୍ତର ଉଦ୍ୟମ ଅବ୍ୟାହତ ରଖିଅଛି । ମହିଳା ବିକାଶ ନିଗମର ଲକ୍ଷ୍ୟ ଓ ଉଦ୍ଦେଶ୍ୟ ବ୍ୟାପକ । ପ୍ରଥମତଃ ମହିଳାମାନଙ୍କ ପାଇଁ ଉଦ୍ଦିଷ୍ଟ ବିକାଶ ଯୋଜନାକୁ ଜିଲ୍ଲା, ବ୍ଲକ୍, ଗ୍ରାମପଞ୍ଚାୟତ, ଓ ଗ୍ରାମସ୍ତରରୁ ଆରମ୍ଭ କରିବା ଏହି ନିଗମର ଲକ୍ଷ୍ୟ ଅଟେ । ଦ୍ୱିତୀୟତଃ ମହିଳାମାନଙ୍କର ସାମାଜିକ ବିକାଶ ଓ ଅର୍ଥନୈତିକ ଅଭିବୃଦ୍ଧି ଦିଗରେ ମହିଳା ବିକାଶ ନିଗମ କାର୍ଯ୍ୟ କରିଥାଏ । ମହିଳା ଉଦ୍ୟୋଗୀମାନଙ୍କୁ ପ୍ରଶିକ୍ଷଣ ଦେବା ମହିଳା ବିକାଶ ନିଗମର ଅନ୍ୟତମ ଲକ୍ଷ୍ୟ । ମହିଳାମାନଙ୍କଦ୍ୱାରା ପରିଚାଳିତ ଉଦ୍ୟୋଗମାନଙ୍କ ପାଇଁ ମହିଳା ବିକାଶ ନିଗମ ବିଭିନ୍ନ ବ୍ୟାଙ୍କ ଓ ଅର୍ଥ ଲଗାଣକାରୀ ସଂସ୍ଥାଠାରୁ ଋଣ ଆଣି ମହିଳାମାନଙ୍କୁ ସହାୟତା ଯୋଗାଇ ଦେଇଥାଏ । ମହିଳା ବିକାଶ ନିଗମ ଦକ୍ଷତାର ସହିତ ତା'ର କାର୍ଯ୍ୟ ସମାପନ କରି ବିଜୁବାବୁଙ୍କ ସ୍ୱପ୍ନକୁ ସାକାର କରିବାରେ ଅଙ୍ଗୀକାରବଦ୍ଧ । ମହିଳାମାନଙ୍କର ଆର୍ଥିକ ଅଭିବୃଦ୍ଧି ନିମନ୍ତେ ମହିଳା ବିକାଶ ନିଗମ ଅନେକ ଆୟକାରୀ କାର୍ଯ୍ୟପନ୍ଥା ଗ୍ରହଣ କରିଛି । ସାମାଜିକ ସଶକ୍ତିକରଣ, ମହିଳାମାନଙ୍କ ଦ୍ୱାରା ପ୍ରସ୍ତୁତ ପଦାର୍ଥର ବିକ୍ରୟରେ ସହଯୋଗ, ମହିଳା ସ୍ୱୟଂ ସହାୟକ ଗୋଷ୍ଠୀ ଗଠନ ଏବଂ ମହିଳା ଉଦ୍ୟୋଗୀମାନଙ୍କର ସମ୍ମିଳନୀ ଇତ୍ୟାଦି ଆୟୋଜନ କରିବାରେ ମହିଳା ବିକାଶ ନିଗମ ମୁଖ୍ୟ ଭୂମିକା ଗ୍ରହଣ କରିଥାଏ । ମହିଳା ସ୍ୱୟଂ ସହାୟକ ଗୋଷ୍ଠୀକୁ ଆର୍ଥିକ ସହାୟତା ପ୍ରଦାନ କରିବା ଏବଂ ଅନ୍ୟାନ୍ୟ ଅର୍ଥ ଲଗାଣକାରୀ ସଂସ୍ଥାଠାରୁ ସେମାନଙ୍କୁ ସହଜରେ ଋଣ ମଂଜୁର କରାଇବାରେ ମହିଳା ବିକାଶ ନିଗମ ତା'ର ଗୁରୁଦାୟିତ୍ୱ ନିଷ୍ଠାର ସହିତ ସଂପାଦିତ କରିଥାଏ । ବିଭିନ୍ନ ପ୍ରତିଯୋଗିତାମୂଳକ ପରୀକ୍ଷାରେ ମହିଳା ପ୍ରାର୍ଥୀମାନଙ୍କର ଦକ୍ଷତା ବୃଦ୍ଧି ନିମନ୍ତେ ମହିଳା ଶିକ୍ଷା କେନ୍ଦ୍ରମାନ ଖୋଲାଯାଇ ସେମାନଙ୍କୁ ଉପଯୁକ୍ତ ପ୍ରଶିକ୍ଷଣ ଦେବାରେ ବ୍ୟବସ୍ଥା ମହିଳା ବିକାଶ ନିଗମ କାର୍ଯ୍ୟକାରୀ କରିଅଛି ।

**ଶାଶୁ ହାତକଡ଼ି ନଣନ୍ଦ ବେଡ଼ି**

ଯୌତୁକ ପ୍ରଥା ଏକ ସାମାଜିକ କଳଙ୍କ । ଯୌତୁକଜନିତ ବଧୂ ନିର୍ଯ୍ୟାତନା ଏକ ଅମାନବିକ ଓ ଅବିବେକିତା କାର୍ଯ୍ୟ । ଧନ କାଙ୍ଗାଳ, ଅର୍ଥଲୋଭୀମାନେ ଅନେକ ସମୟରେ ନବବଧୂର ପରିବାରଠାରୁ ନିଜ ଇଚ୍ଛା ମୁତାବକ ଯୌତୁକ ନପାଇଲେ ପରିଶେଷରେ ନବବଧୂକୁ ନିର୍ଯ୍ୟାତନା ଦେବାକୁ ଏପରିକି ହତ୍ୟା କରିବାକୁ ପଛଘୁଞ୍ଚା ଦିଅନ୍ତି ନାହିଁ ।

୧୯୯୦ ମସିହା ପୂର୍ବରୁ ଯୌତୁକ ଜନିତ ହତ୍ୟା ଓ ନିର୍ଯ୍ୟାତନା ଥିଲା ସର୍ବାଧିକ । ପ୍ରତିଦିନ ଏଭଳି ଜଘନ୍ୟ ଘଟଣା ସବୁ ସମ୍ବାଦପତ୍ରର ପୃଷ୍ଠାମଣ୍ଡନ କରୁଥିଲା । ଏପରି ଅମାନୁଷିକ ଓ ନିନ୍ଦନୀୟ ଘଟଣା ବିଜୁବାବୁଙ୍କୁ ଗଭୀର ଭାବରେ ମର୍ମାହତ ଓ ବ୍ୟଥିତ କରିଥିଲା । ଏହା ଅପ୍ରିୟସତ୍ୟ ଯୌତୁକଜନିତ ବଧୂହତ୍ୟା ଓ ନିର୍ଯ୍ୟାତନା ପଛରେ ଘରର ସ୍ତ୍ରୀଲୋକମାନଙ୍କର ମୁଖ୍ୟ ଭୂମିକା ଥାଏ । ସାଧାରଣତଃ ଶାଶୁ ଓ ନଣନ୍ଦ ଏହି ଘଟଣାମାନଙ୍କରେ ମୁଖ୍ୟ ଖଳ ନାୟିକା ସାଜିଥାନ୍ତି । ବିଜୁବାବୁ ହୃଦୟଙ୍ଗମ କରିଥିଲେ ଯେ ଘରର ମହିଳାମାନଙ୍କର ବିନା ପ୍ରରୋଚନା ଓ ସମର୍ଥନରେ ଏଭଳି ହୃଦୟହୀନ କାର୍ଯ୍ୟ କେବେ ସମ୍ଭବ ନୁହେଁ । ଶାଶୁ ଓ ନଣନ୍ଦର ମିଳିତ ଆକ୍ରମଣର ଶିକାର ହୋଇଥାଏ ନବବଧୂ । ବଧୂହତ୍ୟା ଓ ନିର୍ଯ୍ୟାତନାର ନିବାରଣ ନିମନ୍ତେ ବିଜୁବାବୁ ଏକ ପ୍ରଶଂସନୀୟ ଓ ଯୁଗାନ୍ତକାରୀ ପଦକ୍ଷେପ ଗ୍ରହଣ କରିଥିଲେ । ଯେଉଁ ପରିବାରରେ ଏଭଳି ଘଟଣାମାନ ଘଟିବ ସେହି ପରିବାରର ଶାଶୁ ଓ ନଣନ୍ଦଙ୍କୁ ପ୍ରଥମେ ଗିରଫ କରିବାକୁ ବିଜୁବାବୁ ପ୍ରଶାସନିକ ନିର୍ଦ୍ଦେଶ ଦେଇଥିଲେ । ଏପରି ଖଳ ପ୍ରକୃତିର ଶାଶୁ ଓ ନଣନ୍ଦଙ୍କୁ ଉପଯୁକ୍ତ ଶିକ୍ଷା ଦେବାପାଇଁ ବିଜୁବାବୁ ଗୋଟିଏ ସ୍ଲୋଗାନ ପ୍ରଣୟନ କରିଥିଲେ - 'ଶାଶୁ ହାତକଡ଼ି ନଣନ୍ଦ ବେଡ଼ି ।' ବିଜୁବାବୁଙ୍କର ଏହି ନିର୍ଦ୍ଦେଶକୁ କାର୍ଯ୍ୟକାରୀ କରି ପୋଲିସବାହିନୀ ବଧୂ ହତ୍ୟାକାରୀ ଶାଶୁ ଓ ନଣନ୍ଦମାନଙ୍କୁ ହାତକଡ଼ି ପକାଇ ରାଜରାସ୍ତାରେ ଚଲାଇ ଚଲାଇ ହାଜତକୁ ନେଉଥିଲେ । ବିଜୁବାବୁ ଥିଲେ ବାସ୍ତବବାଦୀ । ତାଙ୍କର ଏହି ଦୃଢ଼ ପଦକ୍ଷେପ ରାଜ୍ୟବ୍ୟାପି ବିପୁଳ ସମର୍ଥନ ଓ ପ୍ରଶଂସା ମିଳିଥିଲା । ବିଜୁବାବୁଙ୍କର ଏହି ପଦକ୍ଷେପର ଫଳାଫଳ ଥିଲା ସୁଦୂରପ୍ରସାରୀ ଏବଂ ଏହାଫଳରେ ଯୌତୁକଜନିତ ବଧୂହତ୍ୟା ଓ ନିର୍ଯ୍ୟାତନା ଅନେକାଂଶରେ କମି ଯାଇଥିଲା । ଯୌତୁକ ବିରୋଧରେ ସଂଗ୍ରାମ କରିବାକୁ ବିଜୁବାବୁ ରାଜ୍ୟବାସୀଙ୍କୁ ଆହ୍ୱାନ ଜଣାଇଥିଲେ । ସେ ମଧ୍ୟ ଏକ ସରକାରୀ ଆଦେଶନାମା ଜାରି କରିଥିଲେ ଯଦି କୌଣସି ସରକାରୀ କର୍ମଚାରୀ ଯୌତୁକଜନିତ ଅପରାଧରେ ଦୋଷୀ ସାବ୍ୟସ୍ତ ହୁଅନ୍ତି ତାଙ୍କୁ ଚାକିରିରୁ ନିଲମ୍ବିତ କରାଯିବ । ଯୌତୁକ ପ୍ରଥା ବିରୋଧରେ ଜନସଚେତନତା ସୃଷ୍ଟି କରିବା ପାଇଁ ବିଜୁବାବୁ ଅନେକ ପଦକ୍ଷେପ ଗ୍ରହଣ କରିଥିଲେ । ସ୍ୱେଚ୍ଛାସେବୀ ଅନୁଷ୍ଠାନମାନଙ୍କ ମାଧ୍ୟମରେ ଯୌତୁକ ପ୍ରଥା ବିରୁଦ୍ଧରେ ପଥପ୍ରାନ୍ତ ନାଟକ ଓ ଜାତୀୟ ଆଲୋଚନାଚକ୍ରମାନ ଆୟୋଜନ କରିବା ପାଇଁ ଆର୍ଥିକ ସହାୟତାର ବ୍ୟବସ୍ଥା ମଧ୍ୟ କରିଥିଲେ । ଯୌତୁକ ପ୍ରଥାର ସମୂଳେ ବିନାଶ ନିମନ୍ତେ ବିଜୁବାବୁଙ୍କର ଆନ୍ତରିକ ଉଦ୍ୟମ ପାଇଁ ନାରୀ ସମାଜ ସର୍ବଦା ଶ୍ରଦ୍ଧାର ସହିତ ତାଙ୍କୁ ସ୍ମରଣ କରୁଥିବ । ବିବାହ ଖର୍ଚ୍ଚ ୨୫ ହଜାର ଟଙ୍କା ମଧ୍ୟରେ ସୀମିତ ରଖିବାକୁ ବିଜୁବାବୁ ପ୍ରଶାସନିକ ନିର୍ଦ୍ଦେଶ ଦେଇଥିଲେ ।

### ଗାଁକୁ କାମ ମାଆକୁ ସମ୍ମାନ

ଓଡ଼ିଶାର ପ୍ରତ୍ୟେକ ଗ୍ରାମର ସର୍ବାଙ୍ଗୀନ ଉନ୍ନତି ଥିଲା ବିଜୁବାବୁଙ୍କର ସ୍ୱପ୍ନ । ଗ୍ରାମାଞ୍ଚଳର ଜନସାଧାରଣଙ୍କ ଅର୍ଥନୈତିକ ବିକାଶ ଉପରେ ବିଜୁବାବୁ ବିଶେଷ ଗୁରୁତ୍ୱ ଆରୋପ କରୁଥିଲେ । ବିଜୁବାବୁଙ୍କ ମୁଖ୍ୟମନ୍ତ୍ରିତ୍ୱ ସମୟରେ ଗ୍ରାମର ଦରିଦ୍ର ଜନସାଧାରଣଙ୍କୁ କାମ ସୃଷ୍ଟି କରିବା ଉଦ୍ଦେଶ୍ୟରେ ଅନେକ ସରକାରୀ ଯୋଜନାମାନ ପ୍ରଣୟନ କରାଯାଇଥିଲା । ଗ୍ରାମାଞ୍ଚଳରେ କୃଷି, ମତ୍ସ୍ୟଚାଷ, ପଶୁପାଳନ ଓ ଅନ୍ୟାନ୍ୟ କୁଟୀରଶିଳ୍ପ ମାଧ୍ୟମରେ ଜନସାଧାରଣଙ୍କ ଅର୍ଥନୈତିକ ଅଭିବୃଦ୍ଧି ନିମନ୍ତେ ବିଜୁବାବୁଙ୍କର ଉଦ୍ୟମ ପ୍ରଶଂସନୀୟ । ଗାଁର ଉନ୍ନତି ସହିତ ମାଆମାନଙ୍କୁ ସମ୍ମାନ ଦେବା ଥିଲା ବିଜୁବାବୁଙ୍କର ଇଚ୍ଛା । ମହିଳାମାନଙ୍କ ହାତରେ ୫୦ ଭାଗ କ୍ଷମତା ଅର୍ପଣ କରିବା ନିମନ୍ତେ ବିଜୁବାବୁ ଦୃଢ଼ଯୁକ୍ତି ଉପସ୍ଥାପିତ କରିଥିଲେ । ସେ ପ୍ରତ୍ୟେକ ମହିଳାଙ୍କୁ ମା'ର ସମ୍ମାନ ଦେଇ ଆସିଥିଲେ । ସେ ଅନୁଭବ କରିଥିଲେ ମହିଳାମାନଙ୍କର ଉନ୍ନତି ନହେବା ପର୍ଯ୍ୟନ୍ତ ଜାତି ତଥା ଦେଶ କେବେ ସମୃଦ୍ଧ ପଥରେ ଅଗ୍ରସର ହୋଇପାରିବ ନାହିଁ । ତେଣୁ ବିଜୁବାବୁ ମହିଳାମାନଙ୍କର, ସାମାଜିକ, ଆର୍ଥିକ ଓ ରାଜନୈତିକ ବିକାଶ ପ୍ରତି ବିଶେଷ ଦୃଷ୍ଟି ଦେବାକୁ ପରାମର୍ଶ ଦେଇଥିଲେ । ତେଣୁ ଏଥିପାଇଁ ତାଙ୍କର ଏକ ସ୍ଲୋଗାନ ଥିଲା - 'ଗାଁକୁ କାମ ମାଆକୁ ସମ୍ମାନ' । ବିଜୁବାବୁ ମାଆମାନଙ୍କ ମାଧ୍ୟମରେ ଏକ ସୁସ୍ଥ, ସୁନ୍ଦର, ସ୍ୱାଭିମାନୀ, ସାହସୀ ଓ ବୀରଜାତି ଗଢ଼ିବାରେ ସ୍ୱପ୍ନ ଦେଖିଥିଲେ । ସମ୍ପତ୍ତିରେ ମହିଳାମାନଙ୍କ ଅଧିକାର ରହୁନଥିବାରୁ ଏବଂ ଘରେ ସେମାନଙ୍କ ଅଧିକାରକୁ ସ୍ୱୀକୃତି ମିଳୁନଥିବାରୁ ବିଜୁବାବୁ ସରକାରୀ ଜମି ଲିଜ୍ ଦିଆଯିବା ସମୟରେ ଉଭୟ ସ୍ୱାମୀ ଓ ସ୍ତ୍ରୀଙ୍କ ନାମରେ ପଟ୍ଟା ଦେବା ପାଇଁ ନିର୍ଦ୍ଦେଶ ଦେଇଥିଲେ । ମହିଳାମାନଙ୍କ ସଶକ୍ତିକରଣ ନିମନ୍ତେ ବିଜୁବାବୁ ଅନେକ ବୈପ୍ଳବିକ ପଦକ୍ଷେପ ଗ୍ରହଣ କରିଥିଲେ । ବିଦ୍ୟାଳୟ ଓ ମହାବିଦ୍ୟାଳୟମାନଙ୍କରେ ଛାତ୍ର-ଛାତ୍ରୀଙ୍କର ନାମ ଲେଖା ସମୟରେ ରେଜିଷ୍ଟାରରେ ବାପାଙ୍କ ନାମ ସହିତ ମା'ଙ୍କ ନାମ ଲେଖାଯିବାକୁ ବିଜୁବାବୁ ବାଧ୍ୟତାମୂଳକ କରିଥିଲେ ।

ହାଇସ୍କୁଲ ବୋର୍ଡ଼ ସାର୍ଟିଫିକେଟରେ ମଧ୍ୟ ପିତା ଓ ମା'ଙ୍କ ନାମ ଲେଖାଯିବାକୁ ବିଜୁବାବୁ ନିର୍ଦ୍ଦେଶ ଦେଇଥିଲେ । କେତେକ ଉଚ୍ଚପଦସ୍ଥ ପୋଲିସ କର୍ମଚାରୀଙ୍କ ବିରୋଧ ସତ୍ତ୍ୱେ ବିଜୁବାବୁ ମହିଳାମାନଙ୍କୁ ପୋଲିସ ବିଭାଗରେ ନିଯୁକ୍ତି ଦେବାକୁ ନିର୍ଦ୍ଦେଶ ଦେଇଥିଲେ । ମହିଳାମାନେ ହୋମଗାର୍ଡ଼, ଏସ୍.ଆଇ., ଏ.ଏସ୍.ଆଇ. ପ୍ରଭୃତି ପଦ ପଦବୀରେ ନିଯୁକ୍ତି ପାଇ ନିଜ ଦକ୍ଷତା ଓ ପ୍ରତିଭାର ପରିଚୟ ଦେଇ ବିଜୁବାବୁଙ୍କ ସ୍ୱପ୍ନକୁ ସାକାର କଲେ । ମହିଳାମାନଙ୍କ ବିରୋଧରେ ହେଉଥିବା ବିଭିନ୍ନ ଅପରାଧକୁ ଦମନ କରିବା ନିମନ୍ତେ ବିଜୁବାବୁ ମହିଳା ଥାନା ପ୍ରତିଷ୍ଠା କରିଥିଲେ । ବିଜୁବାବୁଙ୍କ ଉଦ୍ୟମରେ ମହିଳାମାନଙ୍କ ଉଦ୍ଦେଶ୍ୟରେ ମହିଳା ବ୍ୟାଙ୍କ ପ୍ରତିଷ୍ଠା କରାଯାଇଥିଲା । ମହିଳାମାନଙ୍କ ପ୍ରତି ବିଜୁବାବୁଙ୍କର ଯେଉଁ ସମ୍ମାନବୋଧ ଥିଲା ତାହା ହିଁ ତା'ର ଉପଯୁକ୍ତ ପ୍ରମାଣ । ମହିଳାମାନେ ନିଜର ସୁରକ୍ଷା ପାଇଁ ଜୁଡ଼ୋ ଓ କରାଟେ ଶିକ୍ଷାଲାଭ ନିମନ୍ତେ ସେ ପରାମର୍ଶ ଦେଇଥିଲେ ।

ଆମ ରାଜ୍ୟର ପ୍ରାଚୀନ ନାମ କଳିଙ୍ଗ, ଏହି ଶବ୍ଦ ବିଜୁବାବୁଙ୍କର ଅତିପ୍ରିୟ । ପ୍ରାଚୀନ କଳିଙ୍ଗର ନୌବାଣିଜ୍ୟ ପରମ୍ପରାର ସ୍ମୃତିଚାରଣ ଉଦ୍ଦେଶ୍ୟରେ ପାରାଦୀପ ବନ୍ଦରରୁ ବାଲିଦ୍ୱୀପ ପର୍ଯ୍ୟନ୍ତ ଏକ ଐତିହାସିକ ଓ ରୋମାଞ୍ଚକର ନୌଯାତ୍ରାର ଆୟୋଜନ ବିଜୁବାବୁ କରିଥିଲେ । ଐତିହାସିକ ନୌଯାତ୍ରାରେ ଏକ ମାତ୍ର ଓଡ଼ିଆ ଝିଅ ନିବେଦିତା ଆଚାର୍ଯ୍ୟ ଅଂଶ ଗ୍ରହଣ କରିଥିଲେ । ବିଜୁବାବୁଙ୍କ ଉତ୍ସାହ ଓ ପ୍ରେରଣାରେ ଅନୁପ୍ରାଣିତ ହୋଇ ନିବେଦିତା ଆଚାର୍ଯ୍ୟ ଓଡ଼ିଆ ଜାତି ସ୍ୱାଭିମାନର ପ୍ରତୀକ ନୌଯାତ୍ରାରେ ଯୋଗଦାନ କରିଥିଲେ ।

### ଆଦିବାସୀ ମହିଳା ପରାମର୍ଶଦାତା

ବିଜୁବାବୁ ଭାରତର ପ୍ରଥମ ମୁଖ୍ୟମନ୍ତ୍ରୀ ଯିଏକି ପାଞ୍ଚଜଣ ଆଦିବାସୀ ମହିଳାଙ୍କୁ ନିଜର ଅଣ ସରକାରୀ ପରାମର୍ଶଦାତା ରୂପେ ନିଯୁକ୍ତି ଦେଇଥିଲେ । ଏମାନଙ୍କ ମଧ୍ୟରେ ସୁମନୀ ଝୋଡ଼ିଆଣୀ ଓ ଅନ୍ଧାରୀ ନାମକ ଦୁଇଜଣ ଆଦିବାସୀ ମହିଳାଥିଲେ ଅନ୍ୟତମ । ଏକ ସତର ଜଣିଆ ଆଦିବାସୀ ମହିଳା ପ୍ରତିନିଧି ସୁମନୀ ଝୋଡ଼ିଆଣୀଙ୍କ ନେତୃତ୍ୱରେ ଆସି ବିଜୁବାବୁଙ୍କୁ ସଚିବାଳୟସ୍ଥ ତାଙ୍କ କାର୍ଯ୍ୟାଳୟରେ ସାକ୍ଷାତ କରିଥିଲେ । ଆଦିବାସୀ ମହିଳାମାନଙ୍କର ବିଭିନ୍ନ ସମସ୍ୟା ଉପରେ ବିସ୍ତୃତ ଆଲୋଚନା କରାଯାଇଥିଲା । ପରିବାର ଓ ସମାଜର ବିକାଶ ପଥରେ ମୁଖ୍ୟ ପ୍ରତିବନ୍ଧକ ମଦ । ବିଜୁବାବୁ ସେମାନଙ୍କୁ ମଦ ଭାଟି ଭାଙ୍ଗି ଦେବାକୁ ପରାମର୍ଶ ଦେଇଥିଲେ ଓ ପୁରୁଷମାନଙ୍କୁ ମଦ ନ ପିଇବାକୁ ଉପଦେଶ ଦେଇଥିଲେ । ମଦ ଓ ମଦ୍ୟପମାନଙ୍କ ବିରୋଧରେ ଅଭିଯାନ ଆରମ୍ଭ କରିବା ନିମନ୍ତେ ସେହି ଆଦିବାସୀ ମହିଳାମାନେ ବିଜୁବାବୁଙ୍କ ଆହ୍ୱାନକୁ ସମ୍ମାନ ଜଣାଇଥିଲେ । ସେମାନଙ୍କର ସୁରକ୍ଷା ଓ କାର୍ଯ୍ୟ କରିବାର କ୍ଷମତା ପାଇଁ ବିଜୁବାବୁ ସେମାନଙ୍କୁ ପୋଲିସ କ୍ଷମତା ପ୍ରଦାନ କରିଥିଲେ । ପ୍ରତ୍ୟେକଙ୍କୁ ସରକାରଙ୍କ ପକ୍ଷରୁ ପରିଚୟ ପତ୍ର ପ୍ରଦାନ କରାଯାଇଥିଲା । ୨୦୦୧ ମସିହା ଭାରତର ମହିଳା ସଶକ୍ତିକରଣ ବର୍ଷରେ ଏହି ଆଦିବାସୀ ମହିଳାମାନଙ୍କ ମଧ୍ୟରୁ ସୁମନୀ ଝୋଡ଼ିଆଣୀଙ୍କୁ ଜାତୀୟ 'ଶ୍ରୀଶକ୍ତି' ସମ୍ମାନ ପ୍ରଦାନ ନିମନ୍ତେ ଓଡ଼ିଶା ସରକାରଙ୍କ ପକ୍ଷରୁ ତାଙ୍କ ନାମ ସୁପାରିଶ କରାଯାଇଥିଲା ।

> ବିଜୁବାବୁଙ୍କର ନିଷ୍ଠାପର ଉଦ୍ୟମ ପାଇଁ କିଛି ବର୍ଷ ପରେ ଭାରତ ସରକାର ପଞ୍ଚାୟତିରାଜ କ୍ଷେତ୍ରରେ ମହିଳାମାନଙ୍କ ପାଇଁ ଆସନ ସଂରକ୍ଷଣର ବ୍ୟବସ୍ଥା କରିଥିଲେ ।

### ମହିଳା ସମୃଦ୍ଧି ଯୋଜନା

ମହିଳାମାନଙ୍କର ଉଦ୍ଦେଶ୍ୟରେ ୧୯୯୩ ମସିହାରେ ମହିଳା ସମୃଦ୍ଧି ଯୋଜନା କାର୍ଯ୍ୟକାରୀ ହେଲା । ଗ୍ରାମାଞ୍ଚଳ ମହିଳାମାନଙ୍କୁ ଆତ୍ମନିର୍ଭରଶୀଳ ଓ ସେମାନଙ୍କର ଅର୍ଥନୈତିକ ଅଭିବୃଦ୍ଧି ପାଇଁ ମହିଳା ସମୃଦ୍ଧି ଯୋଜନା କାର୍ଯ୍ୟକାରୀ କରାଯାଇଥିଲା । ଏହି ଯୋଜନାରେ ଯଦି କୌଣସି ମହିଳା ବାର୍ଷିକ ୩୦୦ ଟଙ୍କା ଜମା ରଖିବେ, ତେବେ ସରକାର ଏଥିରେ ଶତକଡ଼ା ୨୧ ଭାଗ ପ୍ରଦାନ କରିବାର ବ୍ୟବସ୍ଥା ରହିଲା ।

### ରାଜନୈତିକ ସଶକ୍ତିକରଣ

ମହିଳାମାନଙ୍କୁ ରାଜନୈତିକ ସଶକ୍ତିକରଣ ଦିଗରେ ବିଜୁବାବୁଙ୍କର ଭୂମିକା ଗୁରୁତ୍ୱପୂର୍ଣ୍ଣ । ଏ ଦିଗରେ ତାଙ୍କର ବିହିତ ପଦକ୍ଷେପ ସମଗ୍ର ଭାରତବର୍ଷରେ ଚାଞ୍ଚଲ୍ୟ ସୃଷ୍ଟି କରିଥିଲା । ବିଜୁବାବୁ ଭାରତବର୍ଷର ମହିଳାମାନଙ୍କୁ ପ୍ରତ୍ୟକ୍ଷ ରାଜନୀତିରେ ଆସିବାକୁ ଉତ୍ସାହିତ ଓ ପ୍ରେରଣା ପ୍ରଦାନ କରିଥିଲେ । ତାଙ୍କର ଦ୍ୱିତୀୟ ଥର ମୁଖ୍ୟମନ୍ତ୍ରିତ୍ୱ ସମୟରେ ପଞ୍ଚାୟତିରାଜ ବ୍ୟବସ୍ଥାରେ ମହିଳାମାନଙ୍କ ପାଇଁ ସେ ୩୩ ଭାଗ ସ୍ଥାନ ସଂରକ୍ଷଣ କରିଥିଲେ । ବିଜୁବାବୁଙ୍କର ଏହି ଐତିହାସିକ ପଦକ୍ଷେପ ମହିଳାମାନଙ୍କ ମଧ୍ୟରେ ରାଜନୈତିକ ଜାଗରଣ ଓ ସଚେତନତା ସୃଷ୍ଟି କରିବାରେ ସାହାଯ୍ୟ କରିଥିଲା ।

ମହିଳାମାନଙ୍କ ପ୍ରତି ବିଜୁବାବୁଙ୍କର ଦୃଢ଼ ଆସ୍ଥା ଓ ବିଶ୍ୱାସ ଥିଲା । ବିଜୁବାବୁ ହୃଦୟଙ୍ଗମ କରିଥିଲେ ମା' ଓ ଭଉଣୀମାନେ ନିଜ ପରିବାରକୁ ଉପଯୁକ୍ତ ମାର୍ଗରେ ପରିଚାଳନା କରିପାରୁଥିବାରୁ ଜିଲ୍ଲା ପରିଷଦ, ପଞ୍ଚାୟତ ସମିତି ଓ ଗ୍ରାମପଞ୍ଚାୟତକୁ ନେତୃତ୍ୱ ଦେବାକୁ ସେମାନଙ୍କର କୌଣସି ଅସୁବିଧା ହେବ ନାହିଁ । ପଞ୍ଚାୟତ ବ୍ୟବସ୍ଥାରେ ମହିଳାମାନଙ୍କୁ ଶତକଡ଼ା ୩୩ ଭାଗ ଆସନ ସଂରକ୍ଷଣ କରି ଏକ କୀର୍ତ୍ତି ସ୍ତମ୍ଭ ସ୍ଥାପନ କଲେ, ଏହା ସ୍ୱାଧୀନ ଭାରତର ପ୍ରଥମ ଐତିହାସିକ ଘଟଣା । ପଞ୍ଚାୟତିରାଜ ବ୍ୟବସ୍ଥାରେ ମହିଳାମାନଙ୍କ ପାଇଁ ସଂରକ୍ଷିତ ଶତକଡ଼ା ୩୩ ଭାଗ ଆସନରେ ଆଦିବାସୀ ଓ ହରିଜନ ମହିଳା ପ୍ରାର୍ଥୀମାନେ ମଧ୍ୟ ଅନ୍ତର୍ଭୁକ୍ତ ଅଟନ୍ତି । ପଞ୍ଚାୟତର ଏକ ତୃତୀୟାଂଶ ପଦବୀ ମହିଳାମାନଙ୍କ ପାଇଁ ସଂରକ୍ଷିତ ରହିଲା । ବିଜୁବାବୁଙ୍କର ନିଷ୍ଠାପର ଉଦ୍ୟମ ପାଇଁ କିଛି ବର୍ଷ ପରେ ଭାରତ ସରକାର ପଞ୍ଚାୟତିରାଜ କ୍ଷେତ୍ରରେ ମହିଳାମାନଙ୍କ ପାଇଁ ଆସନ ସଂରକ୍ଷଣର ବ୍ୟବସ୍ଥା କରିଥିଲେ । ଏହା ଥିଲା ବିଜୁବାବୁଙ୍କର ବିଜୟ । ବିଜୁବାବୁଙ୍କ ଉଦ୍ୟମ ଦ୍ୱାରା ଗ୍ରାମାଞ୍ଚଳ ତଥା ସହରାଞ୍ଚଳ ସ୍ୱାୟତ୍ତ ଶାସନରେ ମହିଳା ଲୋକ ପ୍ରତିନିଧି ଆଜି ଗ୍ରାମାଞ୍ଚଳର ବିକାଶ ଦିଗରେ ନିଜକୁ ସମର୍ପିତ କରିଛନ୍ତି । ଏହି ମହିଳା ଲୋକ ପ୍ରତିନିଧିମାନଙ୍କ ଦକ୍ଷତା, କାର୍ଯ୍ୟଶୈଳୀ ବୃଦ୍ଧି ନିମନ୍ତେ ରାଜ୍ୟ ଗ୍ରାମାଞ୍ଚଳ ବିକାଶ ସଂସ୍ଥା, ମହିଳା ବିକାଶ ନିଗମ ଓ ଅନ୍ୟାନ୍ୟ ସ୍ୱେଚ୍ଛାସେବୀ ଅନୁଷ୍ଠାନମାନଙ୍କ ମାଧ୍ୟମରେ ପ୍ରଶିକ୍ଷଣ ଦେବାର ବ୍ୟବସ୍ଥା ବିଜୁବାବୁ କରିଥିଲେ । ନିର୍ବାଚିତ ମହିଳା ଲୋକ ପ୍ରତିନିଧିମାନଙ୍କର ରାଜନୈତିକ ଓ ପ୍ରଶାସନିକ ଜ୍ଞାନ ବୃଦ୍ଧି ଲକ୍ଷ୍ୟରେ ଏଭଳି ବ୍ୟବସ୍ଥା କରିବା ଲାଗି ବିଜୁବାବୁ ନିର୍ଦ୍ଦେଶ ଦେଇଥିଲେ ।

**ରାଜ୍ୟ ମହିଳା ଆୟୋଗ**

ନାରୀମାନଙ୍କର ସ୍ୱାର୍ଥ, ସ୍ୱାଭିମାନ ଓ ଅଧିକାରର ସୁରକ୍ଷା ନିମନ୍ତେ ବିଜୁବାବୁ ଓଡ଼ିଶାରେ ମହିଳା ଆୟୋଗ ପ୍ରତିଷ୍ଠା କଲେ । ନାରୀମାନଙ୍କ ପ୍ରତି ହେଉଥିବା ଯୌତୁକଜନିତ ନିର୍ଯ୍ୟାତନା ଓ ହତ୍ୟା ଏବଂ ପାରିବାରିକ ହିଂସା ପ୍ରଭୃତି ଘଟଣାର ଅଭିଯୋଗ ରଖିବା ମହିଳା ଆୟୋଗର ମୁଖ୍ୟ ଉଦ୍ଦେଶ୍ୟ । ମାନବିକ ଅଧିକାର ସୁରକ୍ଷା ମଞ୍ଚ ସହିତ ଏହି ଆୟୋଗ ସଂପର୍କ ରଖି ମହିଳାମାନଙ୍କ ବିରୋଧରେ ହେଉଥିବା ନିର୍ଯ୍ୟାତନାର ପ୍ରତିରୋଧ କରିବାରେ କାର୍ଯ୍ୟ କରିଥାଏ । ଏହି ଆୟୋଗର ଅନ୍ୟ ଏକ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟ ସ୍ୱେଚ୍ଛାସେବୀ ଅନୁଷ୍ଠାନମାନଙ୍କ ମାଧ୍ୟମରେ ଯୌତୁକ ସମସ୍ୟା ବିରୋଧରେ ସଂଗ୍ରାମ କରିଥିବା ଏବଂ ଅସହାୟ ବିଧବା ଓ ନିର୍ଯ୍ୟାତିତ ମହିଳାମାନଙ୍କୁ ସହାୟତା ଯୋଗାଇ ଦେବା । ଏହି ଆୟାଗ ସରକାରଙ୍କ ସହିତ ଆଲୋଚନା କରି ନାରୀ ଜାତିର ସମସ୍ୟା ସମାଧାନରେ କାର୍ଯ୍ୟ କରିଥାଏ । ବିବାହ ପଞ୍ଜିକରଣକୁ ବାଧ୍ୟତାମୂଳକ ଭାବରେ ଲାଗୁ କରିବାକୁ ମହିଳା ଆୟୋଗ ଗୁରୁତ୍ୱ ଦିଏ । ନାରୀମାନଙ୍କର ସ୍ୱାସ୍ଥ୍ୟର ଯତ୍ନ ଏବଂ ପ୍ରସବକାଳୀନ ସମସ୍ତ ସୁବିଧା ଯୋଗାଇ ଦେବାରେ ଏହି ଆୟୋଗ କାର୍ଯ୍ୟ କରିଥାଏ । ମହିଳାମାନଙ୍କ ଉନ୍ନତି ପାଇଁ ବିଜୁବାବୁ ଗ୍ରହଣ କରିଥିବା ବିଭିନ୍ନ ଯୋଜନାର ସୁଫଳ ବର୍ତ୍ତମାନ ସମାଜରେ ଉପଲବ୍ଧି ହୋଇପାରିଛି । ବର୍ତ୍ତମାନ ଗ୍ରାମାଞ୍ଚଳରେ ମହିଳାମାନେ ସଂଗଠିତ ଓ ସଂଘବଦ୍ଧ ହୋଇ ସ୍ୱୟଂ ସହାୟକ ଗୋଷ୍ଠୀ ମାଧ୍ୟମରେ ପରିବାର ଓ ସମାଜର ଅର୍ଥନୈତିକ ପ୍ରଗତିରେ ସହାୟକ ହୋଇପାରିଛନ୍ତି । ମାଆମାନେ ଏକ ସ୍ୱାଭିମାନୀ ଓଡ଼ିଆ ଜାତି ଗଢ଼ିବେ ଏହାଥିଲା ବିଜୁବାବୁଙ୍କର ସ୍ୱପ୍ନ । ନାରୀ ସମାଜପ୍ରତି ବିଜୁବାବୁଙ୍କର ଅତୁଳନୀୟ ଅବଦାନ ପାଇଁ ସେ ସେମାନଙ୍କ ନିକଟରେ ଚିରସ୍ମରଣୀୟ ଓ ବନ୍ଦନୀୟ ।

ଅଧ୍ୟାପକ, ଇତିହାସ ବିଭାଗ
ସନାତନ ହରିଚନ୍ଦନ ମହାବିଦ୍ୟାଳୟ
ମଦନପୁର, ଖୋର୍ଦ୍ଧା- ୭୫୨୦୫୪

# ସାମ୍ବାଦିକମାନଙ୍କ ସମସ୍ୟାର ସମାଧାନ ପାଇଁ ସୂଚନା ମନ୍ତ୍ରୀଙ୍କ ପ୍ରତିଶ୍ରୁତି

ସାମ୍ବାଦିକ ସଂଗଠନଗୁଡ଼ିକର ଦାବୀ ଓ ଉଚ୍ଚସ୍ତରୀୟ କମିଟିର ସୁପାରିଶକୁ ଆଧାର କରି ସାମ୍ବାଦିକମାନଙ୍କ ସମସ୍ୟାର ସମାଧାନ ପ୍ରକ୍ରିୟା ଆରମ୍ଭ ହୋଇଛି ବୋଲି ସୂଚନା ଓ ଲୋକ ସଂପର୍କ ତଥା କ୍ରୀଡ଼ା ଓ ଯୁବସେବା ମନ୍ତ୍ରୀ ଶ୍ରୀ ଦେବାଶିଷ ନାୟକ କହିଛନ୍ତି । ଖୁବ୍‌ଶୀଘ୍ର ଏ ବାବଦରେ ବିଧିବଦ୍ଧ ବିଜ୍ଞପ୍ତି ପ୍ରକାଶ ପାଇବ ବୋଲି ସେ ସୂଚନା ଦେଇଛନ୍ତି ।

ଗତ ଫେବୃଆରୀ ୧୫ ତାରିଖରେ ଓଡ଼ିଶା ସାମ୍ବାଦିକ ୟୁନିୟନ (ଓ.ୟୁ.ଜେ.) ପକ୍ଷରୁ ଏକ ପ୍ରତିନିଧି ଦଳ ମନ୍ତ୍ରୀ ଶ୍ରୀ ନାୟକଙ୍କୁ ତାଙ୍କ ବିଧାନସଭା ପ୍ରକୋଷ୍ଠରେ ସାକ୍ଷାତ କରି ସାମ୍ବାଦିକମାନଙ୍କର ଦାବୀ ସଂପର୍କିତ ସ୍ମାରକପତ୍ର ପ୍ରଦାନ କରି ଆଲୋଚନା କରିଥିଲେ । ଅଧିସ୍ୱୀକୃତି ନିୟମର ପରିବର୍ତ୍ତନ, ବିଭିନ୍ନ କମିଟିରେ ସାମ୍ବାଦିକ ସଂଗଠନଗୁଡ଼ିକୁ ଉପଯୁକ୍ତ ପ୍ରତିନିଧିତ୍ୱ ପ୍ରଦାନ, ସାମ୍ବାଦିକ ଚିହ୍ନଟ ପ୍ରକ୍ରିୟାକୁ ତ୍ୱରାନ୍ୱିତ କରିବା ଓ ପେନ୍‌ସନ୍ ଯୋଜନାର ବିଧିବଦ୍ଧ ରୂପରେଖ ଚୂଡ଼ାନ୍ତ କରିବା ଆଦି ସଂପର୍କରେ ପ୍ରତିନିଧି ଦଳ ବିସ୍ତୃତ ଆଲୋଚନା କରି ତୁରନ୍ତ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିବାକୁ ଦାବୀ ଜଣାଇଥିଲେ ।

ସାମ୍ବାଦିକମାନଙ୍କ ସମସ୍ୟା ପ୍ରତି ସରକାର ସଂପୂର୍ଣ୍ଣ ସଚେତନ ରହିଛନ୍ତି ଓ ଏ ଦିଗରେ ଆବଶ୍ୟକ କାର୍ଯ୍ୟାନୁଷ୍ଠାନକୁ ତ୍ୱରାନ୍ୱିତ କରାଯାଉଛି ବୋଲି ମନ୍ତ୍ରୀ ଶ୍ରୀ ନାୟକ ସୂଚନା ଦେଇ ସରକାର ଘୋଷଣା କରିବାକୁ ଯାଉଥିବା ନିଷ୍ପତ୍ତିରେ ସଂଘର ଦାବୀ ପ୍ରତି ଉପଯୁକ୍ତ ଗୁରୁତ୍ୱ ଓ ମାନ୍ୟତା ପ୍ରଦାନ କରାଯିବ ବୋଲି କହିଥିଲେ ।

ଜାତୀୟ ସାମ୍ବାଦିକ ୟୁନିଅନର ଉପସଭାପତି ଶ୍ରୀ ପ୍ରସନ୍ନ ମହାନ୍ତିଙ୍କ ନେତୃତ୍ୱରେ ଓ.ୟୁ.ଜେ.ର ଅନ୍ୟାନ୍ୟ କର୍ମକର୍ତ୍ତା ଯୋଗ ଦେଇଥିଲେ ।

# ବିଜୁବାବୁ ଓ ଏକବିଂଶ ଶତାବ୍ଦୀର ନାରୀ

ଦୀନକୃଷ୍ଣ ଘୋଷୀ

ଏକବିଂଶ ଶତାବ୍ଦୀକୁ 'ନାରୀ ଶତାବ୍ଦୀ' ବୋଲି ବିଭିନ୍ନ ଧାର୍ମିକ ସଂସ୍ଥା ତଥା ଭବିଷ୍ୟତ ଦ୍ରଷ୍ଟାମାନେ ଘୋଷଣା କରିଆସୁଛନ୍ତି । କିନ୍ତୁ ତାହାକୁ ସଫଳ ରୂପାୟନ କରିବାରେ ଯେଉଁମାନଙ୍କର ଅବଦାନ ରହିଛି, ସେମାନଙ୍କ ମଧ୍ୟରେ ବିଜୁବାବୁଙ୍କ ଅବଦାନ ଅବିସ୍ମରଣୀୟ । ପଞ୍ଚାୟତିରାଜ ବ୍ୟବସ୍ଥାରେ କ୍ଷମତାର ବିକେନ୍ଦ୍ରୀକରଣ ହେବା ସମସ୍ତେ ଜାଣନ୍ତି । କ୍ଷମତାକୁ ତଳସ୍ତରରେ ପହଞ୍ଚାଇବା ପାଇଁ ଏହି ବ୍ୟବସ୍ଥାର ଆରମ୍ଭ କରାଯାଇଥିଲା । ସମସ୍ତଙ୍କୁ ନ୍ୟାୟ ତଥା ବୃକ୍ଷରୋପଣ, କୁଟୀର ଶିଳ୍ପର ବିକାଶ ଇତ୍ୟାଦି ବିଭିନ୍ନ କାର୍ଯ୍ୟକ୍ରମ ମାଧ୍ୟମରେ ପଞ୍ଚାୟତିରାଜ ବ୍ୟବସ୍ଥାକୁ ସମାଜର ଏକ ଅଭିନ୍ନ ଅଙ୍ଗରୂପରେ ସ୍ଥାପନ କରିବା ବିଜୁବାବୁଙ୍କ ଉଦ୍ଦେଶ୍ୟ ଥିଲା । ମୁଖ୍ୟମନ୍ତ୍ରୀ ଥିବା ସମୟରେ ସେ କହିଥିଲେ ସରପଞ୍ଚ ହେଉଛି ଗ୍ରାମପଞ୍ଚାୟତର ମୁଖ୍ୟମନ୍ତ୍ରୀ । ଏହି ବ୍ୟବସ୍ଥାରେ ପ୍ରତିଯୋଗିତାମୂଳକ ମନୋଭାବ ସୃଷ୍ଟି କରିବା ପାଇଁ ଜିଲ୍ଲାସ୍ତରରେ ଆକର୍ଷଣୀୟ ପୁରସ୍କାର ବ୍ୟବସ୍ଥା କରାଯାଇଛି ।

ଦ୍ୱିତୀୟଥର ମୁଖ୍ୟମନ୍ତ୍ରୀ ଆସନରେ ରହିବାପରେ ବିଜୁବାବୁ ପଞ୍ଚାୟତିରାଜ ବ୍ୟବସ୍ଥା ଉପରେ ଯଥେଷ୍ଟ ଗୁରୁତ୍ୱ ପ୍ରଦାନ କରିଥିଲେ । ପଞ୍ଚାୟତିରାଜ ମାଧ୍ୟମରେ ଗ୍ରାମାଞ୍ଚଳର ବିକାଶ ନିମନ୍ତେ ବିଭିନ୍ନ ପ୍ରକାରର ଆଇନ ପ୍ରଣୟନ କରାଗଲା । ଶିକ୍ଷା, ସ୍ୱାସ୍ଥ୍ୟ, ଗମନାଗମନ, ବନୀକରଣ ଇତ୍ୟାଦି ଉପରେ ଯଥେଷ୍ଟ ଧ୍ୟାନ ଦିଆଯାଇଥିଲା । ମହିଳାମାନଙ୍କ ବିକାଶ ଉପରେ ଗୁରୁତର ସହିତ ବିଚାର କରି ନିର୍ବାଚନରେ ସ୍ଥାନ ସଂରକ୍ଷଣ କରାଯାଇଛି । ନିର୍ବାଚନରେ ଏହି ପ୍ରକ୍ରିୟାରେ ପ୍ରାୟ ୨୭ ହଜାର ମହିଳା ନିର୍ବାଚିତ ହୋଇ ପ୍ରତିନିଧିତ୍ୱ କରିବାର ସୌଭାଗ୍ୟ ଲାଭ କରିଥିଲେ । ପୁଣି ଅନ୍ୟ ଏକ ନିୟମ ଅନୁସାରେ ଯେଉଁ ପଞ୍ଚାୟତରେ ପୁରୁଷ ସରପଞ୍ଚ ନିର୍ବାଚିତ ହୋଇଥିବେ ସେଠାରେ ମହିଳା ନାୟବ ସରପଞ୍ଚ ଓ ଯେଉଁଠାରେ ପୁରୁଷ ଚେୟାରମ୍ୟାନ ହୋଇଥିବେ ସେଠାରେ ମହିଳା ଭାଇସ୍ ଚେୟାରମ୍ୟାନ ରହିବାର ବ୍ୟବସ୍ଥା କରାଗଲା ।

ମହିଳାମାନଙ୍କର କେତେକ ନାରୀ ସୁଲଭ ଗୁଣ ଯଥା- ସମ୍ବେଦନଶୀଳତା, ସହୃଦୟତା, ଅନ୍ୟକୁ ପ୍ରବର୍ତ୍ତାଇବା ଇତ୍ୟାଦି ଗୁଣଗୁଡ଼ିକର ଅନୁଶୀଳନ କରି ତାକୁ ପଞ୍ଚାୟତିରାଜ ବ୍ୟବସ୍ଥାରେ ଉପଯୋଗ କରିବା ନିମନ୍ତେ ଶିକ୍ଷା, ସ୍ୱାସ୍ଥ୍ୟ, ବନୀକରଣ ଓ ପୁଷ୍ଟିକର



ଖାଦ୍ୟଯୋଗାଣ କ୍ଷେତ୍ରରେ ମହିଳାମାନଙ୍କୁ ଅଗ୍ରାଧିକାର ଦେବା ଉପରେ ବିଜୁବାବୁ ନିର୍ଦ୍ଦେଶ ଦେଇଥିଲେ । ଗ୍ରାମପଞ୍ଚାୟତମାନଙ୍କରେ ବର୍ଷସାରା ଏହିସବୁ କାର୍ଯ୍ୟ ସଂପନ୍ନ କରାଯାଉଥିବାରୁ ମହିଳାମାନଙ୍କୁ ଏହି ଦାୟିତ୍ୱରେ ରଖିବାପାଇଁ ବିଜୁବାବୁଙ୍କର ନିର୍ଦ୍ଦେଶ ଥିଲା । ପୁରୁଷପ୍ରଧାନ ସମାଜରେ ନାରୀମାନଙ୍କର ସମସ୍ୟାପ୍ରତି ବିଶେଷ ଧ୍ୟାନ ଦିଆଯାଇ ନଥିବାରୁ ସେମାନଙ୍କର ବିଭିନ୍ନ କ୍ଷେତ୍ରରେ ଅବହେଳିତ ହୋଇଥିବାର ଅନୁମାନ କରି ନେତ୍ରୀ ଗଢ଼ିବାର ଉଦ୍ୟମ କରିଥିଲେ ବିଜୁବାବୁ । ମହିଳା କମିଶନ ମାଧ୍ୟମରେ ସେମାନଙ୍କର ସମସ୍ୟାକୁ ସମାଧାନ କରିବା ତଥା ଶୋଷଣ ଓ ଅତ୍ୟାଚାରରୁ ମୁକ୍ତିଦେବାର ପ୍ରଚେଷ୍ଟା ବାସ୍ତବରେ ଯୁଗାନ୍ତକାରୀ ପଦକ୍ଷେପ । ରାଜ୍ୟ ମହିଳା କମିଶନ ମାଧ୍ୟମରେ ଅନେକ ମହିଳା ଉପକୃତ ହୋଇଥିବାର ପ୍ରମାଣ ରହିଛି । ପୁଣି ପଞ୍ଚାୟତିରାଜ ବ୍ୟବସ୍ଥାରେ ଷ୍ଟାଣ୍ଡିଂ କମିଟିମାନଙ୍କରେ ମହିଳାମାନଙ୍କର ନେତୃତ୍ୱ ଉପରେ ଗୁରୁତ୍ୱାରୋପ କରାଯାଇଛି ।

ନାରୀଶିକ୍ଷା ଉପରେ ମଧ୍ୟ ବିଜୁବାବୁଙ୍କର ଅବଦାନ କମ୍ ନୁହେଁ । ବାଳିକା ବିଦ୍ୟାଳୟମାନଙ୍କୁ ସ୍ୱତନ୍ତ୍ର ଅନୁଦାନ ଦେବା, ଫି' ଛାଡ଼ କରିବା ଭଳି ବ୍ୟବସ୍ଥା ସହିତ ଅନ୍ୟାନ୍ୟ ସୁବିଧା ସୁଯୋଗ ମଧ୍ୟ ତାଙ୍କ ସମୟରେ କାର୍ଯ୍ୟକାରୀ ହୋଇଥିଲା । ମହିଳା ମହାବିଦ୍ୟାଳୟମାନଙ୍କୁ ସରକାରୀ ଘୋଷଣା ମଧ୍ୟ ତାଙ୍କର ନାରୀଶିକ୍ଷା ଦିଗରେ ଆଗ୍ରହ ଥିବାର ପ୍ରମାଣ ମିଳେ । ହରିଜନ ଆଦିବାସୀ ବାଳିକାମାନଙ୍କ ପାଇଁ ଆବାସିକ ବିଦ୍ୟାଳୟ ଓ କନ୍ୟାଶ୍ରମ ସ୍ଥାପନ ପାଇଁ ଅନେକ ପ୍ରୋତ୍ସାହନ ଦେଇଥିଲେ ।

ମହିଳା ବିକାଶ ନିଗମ, ମହିଳା ବ୍ୟାଙ୍କ ତଥା ବିଧବା ପେନ୍‌ସନରମାନଙ୍କ ବୟସସୀମା ଉଚ୍ଛେଦ ମଧ୍ୟ ତାଙ୍କ ପ୍ରଚେଷ୍ଟାରେ କାର୍ଯ୍ୟକାରୀ ହୋଇଥିଲା । ସରକାରୀ ଚାକିରି କ୍ଷେତ୍ରରେ ମହିଳାମାନଙ୍କୁ ଶତକଡ଼ା ୩୦ ସ୍ଥାନ ସଂରକ୍ଷଣ ବ୍ୟବସ୍ଥା କରାଯାଇଥିଲା ।

ନାରୀମାନଙ୍କୁ ପ୍ରତ୍ୟେକ କ୍ଷେତ୍ରରେ ପୁରୁଷ ସହିତ ସମକକ୍ଷ କରାଇବା ପାଇଁ ତାଙ୍କର ଆପ୍ରାଣ ଉଦ୍ୟମ ରହିଥିବାର ଉପରୋକ୍ତ ଉଦାହରଣମାନଙ୍କରୁ ସ୍ପଷ୍ଟ ଜଣାପଡ଼େ । ଅବଶ୍ୟ କେତେକ କ୍ଷେତ୍ରରେ ତାଙ୍କର ଅତିଶୟୋକ୍ତି ପାଇଁ କେତେକ ବିପକ୍ଷବାଦୀ ଅନେକ କଟୁ ମନ୍ତବ୍ୟ ପ୍ରଦାନ କରିଛନ୍ତି । ଏପରି ଏକ ଉଦାହରଣ ହେଉଛି - ନାରୀମାନଙ୍କୁ ଅତ୍ୟାଚାର କରୁଥିବା ତଥା ଧର୍ଷଣରେ ସାମିଲ ଥିବା ବ୍ୟକ୍ତିର ଲିଙ୍ଗ ଛେଦନ ଘୋଷଣା ତାଙ୍କଦ୍ୱାରା କରାଯାଇଥିଲା । କିନ୍ତୁ ତାଙ୍କର ଉଦ୍ଦେଶ୍ୟ ଥିଲା ଯେ ଏପରି ଅତ୍ୟାଚାରରେ ସାମିଲ ଥିବା ବ୍ୟକ୍ତିକୁ କଠିନ ଶାସ୍ତି ଦେବା ଦରକାର । ୧୯୯୧ ମସିହାର ଜିଲ୍ଲା ପରିଷଦ ଆଇନ ଓ ୧୯୯୨ ମସିହାର ପଞ୍ଚାୟତ ସମିତି ଆଇନ ନାରୀମାନଙ୍କର ଶାସନକ୍ଷେତ୍ରରେ ପ୍ରବେଶର ଅୟମାରମ୍ଭ ହୋଇ ବର୍ତ୍ତମାନ ବିଭିନ୍ନ କ୍ଷେତ୍ରରେ ସ୍ୱାଧୀନ ଭାବରେ ଜୀବିକା ଅର୍ଜନର ପଥ ପରିଷ୍କାର ହୋଇସାରିଛି । ଆଜିର ନାରୀ ଘରକୋଣରେ ନିଜର ଅର୍ଦ୍ଧାଧିକ ଜୀବନ ବିତାଇବାକୁ ଘୃଣ୍ୟ ମନେକରୁଛି । ସେ ପ୍ରତ୍ୟେକ କ୍ଷେତ୍ରରେ ପୁରୁଷ ସହିତ କାନ୍ଧକୁ କାନ୍ଧ ମିଳାଇ ଅଗ୍ରସର ହେବା ପଛରେ ଓଡ଼ିଶା ମାଟିର 'ଭୂମିପୁତ୍ର' ଆଖ୍ୟା ଅର୍ଜନ କରିଥିବା ମହାନ୍ ନାୟକ ବିଜୁବାବୁଙ୍କର ପ୍ରଚେଷ୍ଟା ଯେ ନିଶ୍ଚିତ ଭାବରେ ସହାୟକ ହୋଇଛି ତାହା ନିଃସନ୍ଦେହରେ କୁହାଯାଇପାରେ । ଏହି ମହାନ୍ ନାୟକଙ୍କର ଆତ୍ମା ଅମର ହୋଇ ଓଡ଼ିଶାର ନାରୀ ସମାଜକୁ ପଥ ପ୍ରଦର୍ଶନ କରୁଥାଉ । ଅପ୍ରେଲ ୧୭, ୧୯୯୭ ମସିହାରେ ସେ ଇହଧାମ ତ୍ୟାଗ କରିଥିଲେ ମଧ୍ୟ ପ୍ରତ୍ୟେକ ଓଡ଼ିଶାବାସୀଙ୍କ ହୃଦୟରେ ଅଦ୍ୟାବଧି ଜୀବିତ ।

ରିସର୍ଚ୍ଚ ସ୍କଲାର
ଇତିହାସ ପି.ଜି. ବିଭାଗ
ସମ୍ବଲପୁର ବିଶ୍ୱବିଦ୍ୟାଳୟ, ସମ୍ବଲପୁର



ବରଗଡ଼ ଜିଲ୍ଲାର ଭେଡେନ୍‌ଠାରେ ରାଜ୍ୟ ସରକାରଙ୍କଠାରୁ ଜମିପଟ୍ଟା ପାଇଥିବା ଜଣେ ଚାଷୀ

ସୌଜନ୍ୟ : ବରଗଡ଼ ଜିଲ୍ଲାପାଳଙ୍କ କାର୍ଯ୍ୟାଳୟ

# ପଞ୍ଚାୟତିରାଜ ବ୍ୟବସ୍ଥା - ଏକ ଦୃଷ୍ଟିପାତ

ନିର୍ମଳା କୁମାରୀ ମହାପାତ୍ର

**ସ୍ୱା**ଧୀନ ଭାରତ । ସ୍ୱାଧୀନ-ଗଣତନ୍ତ୍ର-ସାଧାରଣତନ୍ତ୍ର-ସମାଜବାଦୀ ରାଷ୍ଟ୍ର ଭାରତବର୍ଷ । ବିକାଶୋନ୍ମୁଖୀ ଭାରତ ପାଇଁ ଯେତେଗୁଡ଼ିଏ ଜନହିତକାରୀ ଓ ପ୍ରଗତିଶୀଳ ବ୍ୟବସ୍ଥା କରାଯାଇଛି / କରାଯାଉଛି, ତନ୍ମଧ୍ୟରୁ ପଞ୍ଚାୟତିରାଜ ବ୍ୟବସ୍ଥା ଲୋକମାନଙ୍କ ମଧ୍ୟରେ ଅଧିକ ଉଦ୍ଦୀପନା, ଉତ୍ସାହ ଓ ପ୍ରେରଣା ସୃଷ୍ଟି କରିପାରିଛି । ଏଇ ବ୍ୟବସ୍ଥା ହେଉଛି ଏକ ମାଧ୍ୟମ ଯାହାଦ୍ୱାରା ଦେଶର ଗରିବତମ ବ୍ୟକ୍ତି ପାଖରେ ବିକାଶର ଯୋଜନା ପହଞ୍ଚି ପାରିବାର ସୁଯୋଗ ରହିଅଛି । ୧୯୪୮-୪୯ ମସିହାରୁ ଏହି ବ୍ୟବସ୍ଥାର ଆରମ୍ଭ ହୋଇଅଛି । ୧୯୯୩ ମସିହାରେ ସମ୍ବିଧାନର ୭୩ତମ ସାମ୍ବିଧାନିକ ସଂଶୋଧନ ଆଇନ ଏପ୍ରିଲ ୨୪ ତାରିଖରୁ ଓ ୭୪ତମ ସଂଶୋଧନ ଆଇନ ଜୁନ୍ ୦୧ ତାରିଖରୁ କାର୍ଯ୍ୟକାରୀ ହେଲା । ଦେଶରେ ପ୍ରୋକ୍ତ ଯୁଗାନ୍ତକାରୀ ସଂଶୋଧନ ଆଇନ ପ୍ରଣୟନ ଯୋଗୁଁ ଉଲ୍ଲେଖନୀୟ ପରିବର୍ତ୍ତନ ସ୍ପଷ୍ଟ ହେଲା । ଅତଏବ ୧୯୯୩ ମଇ ମାସ ୩୦ ତାରିଖରୁ ୧୯୯୪ ଏପ୍ରିଲ ୨୩ ତାରିଖ ମଧ୍ୟରେ (ପାଖାପାଖି ଏକବର୍ଷ ମଧ୍ୟରେ) ଆମ ଦେଶର ସମସ୍ତ ରାଜ୍ୟ ସରକାର ଉପରୋକ୍ତ ସଂଶୋଧିତ ଆଇନକୁ ନିଜ ନିଜ ରାଜ୍ୟରେ କାର୍ଯ୍ୟକାରୀ କରାଇବାକୁ ପଦକ୍ଷେପ ନେଲେ ।

> ୧୯୫୩ ମସିହା ଜାନୁଆରୀରେ ବଳବନ୍ତ ରାୟ କମିଟି ଗଠନ କରାଗଲା ଓ ସେଇବର୍ଷ ନଭେମ୍ବର ୨୪ ତାରିଖରେ ଏହି କମିଟି ରିପୋର୍ଟ ପ୍ରଦାନ କଲେ । କମିଟିର ସୁପାରିଶ ଅନୁଯାୟୀ ଦେଶରେ ତ୍ରିସ୍ତରୀୟ ପଞ୍ଚାୟତିରାଜ ବ୍ୟବସ୍ଥା ଲାଗୁ କରାଗଲା । ୧୯୫୯ ମସିହା ଅକ୍ଟୋବର ୦୨ ତାରିଖରେ ରାଜସ୍ଥାନର 'ନାଗାଉର'ଠାରେ ଦେଶର ପ୍ରଥମ ପଞ୍ଚାୟତକୁ ତତ୍କାଳୀନ ପ୍ରଧାନମନ୍ତ୍ରୀ ପଣ୍ଡିତ ଜବାହରଲାଲ ନେହେରୁ ଉଦ୍‌ଘାଟନ କଲେ ।

୧୯୯୬ ମସିହା ଡିସେମ୍ବର ୨୪ ତାରିଖ ଦିନ ସମ୍ବିଧାନର ୭୩ତମ ସଂଶୋଧନର ସଂପ୍ରସାରିତ ଆଇନ ଅନୁଯାୟୀ ଅନୁସୂଚିତ ଅଞ୍ଚଳ ପାଇଁ ଏଇ ଆଇନ କାର୍ଯ୍ୟକାରୀ ହେଲା । ୧୯୯୭ ମସିହାରେ ୭୩ତମ ସାମ୍ବିଧାନିକ ସଂଶୋଧନ ଆଇନ ଅନୁସାରେ ଓଡ଼ିଶାରେ ପଞ୍ଚାୟତ ନିର୍ବାଚନ କରାଗଲା । ୨୦୦୧ ମସିହାରେ ବିହାର ରାଜ୍ୟରେ ଦୀର୍ଘ ୨୩ ବର୍ଷ ପରେ ପଞ୍ଚାୟତ ନିର୍ବାଚନ କରାଗଲା । ୧୯୯୭ ମସିହାରୁ ୨୦୦୨, ପାଞ୍ଚବର୍ଷ ପଞ୍ଚାୟତିରାଜ ବ୍ୟବସ୍ଥା ସଫଳତାର ସହ କାର୍ଯ୍ୟକାରୀ ହୋଇସାରିବା ପରେ ୨୦୦୨ ଜାନୁଆରୀ ମାସରେ ଓଡ଼ିଶାରେ ନିର୍ବାଚନ ହୋଇଥିଲା । ଏହି ଆଇନର ଠିକ୍ ପରିଚାଳନାରେ ପୁଣି ୨୦୦୭ ମସିହା ଫେବୃଆରୀରେ ହେଲା ପଞ୍ଚାୟତ ନିର୍ବାଚନ ।

ସୁଖର କଥା ଯେ ୨୦୦୪ ମସିହାରେ କେନ୍ଦ୍ରରେ ସ୍ୱତନ୍ତ୍ର ଭାବେ ପଞ୍ଚାୟତିରାଜ ମନ୍ତ୍ରଣାଳୟ ସୃଷ୍ଟି ହୋଇଅଛି । ଓଡ଼ିଶାରେ ପଞ୍ଚାୟତିରାଜ ଆଇନରେ ସଂଶୋଧନ ଅଣାଯାଇ ଜିଲ୍ଲାପାଳଙ୍କ ହାତରୁ ସରପଞ୍ଚ ନିଲମ୍ବନ କରିବା କ୍ଷମତା ଅପସାରିତ କରାଯାଇଅଛି । ପ୍ରତି ପଞ୍ଚାୟତରେ କାର୍ଯ୍ୟ ନିର୍ବାହୀ ଅଧିକାରୀଙ୍କ ନିଯୁକ୍ତି ମଧ୍ୟ ଦିଆଯାଇଅଛି ।

**ପଞ୍ଚାୟତିରାଜ ସଂପର୍କରେ କେତେଗୋଟି ଗୁରୁତ୍ୱପୂର୍ଣ୍ଣ ଘଟଣା**

୧୯୪୮-୪୯ ମସିହାରେ ପଞ୍ଚାୟତିରାଜ ବ୍ୟବସ୍ଥାର ଭୂମିକା ନେଇ ସମ୍ବିଧାନ ପ୍ରଣୟନ ସଭା (Constituent Assembly)ରେ ଆଲୋଚନା ହୋଇଥିଲା । ୧୯୫୩ ମସିହା ଜାନୁଆରୀରେ ବଳବନ୍ତ ରାୟ କମିଟି ଗଠନ କରାଗଲା ଓ ସେଇବର୍ଷ ନଭେମ୍ବର ୨୪ ତାରିଖରେ ଏହି କମିଟି ରିପୋର୍ଟ ପ୍ରଦାନ କଲେ । କମିଟିର ସୁପାରିଶ ଅନୁଯାୟୀ ଦେଶରେ ତ୍ରିସ୍ତରୀୟ ପଞ୍ଚାୟତିରାଜ ବ୍ୟବସ୍ଥା ଲାଗୁ କରାଗଲା । ୧୯୫୯ ମସିହା ଅକ୍ଟୋବର ୦୨ ତାରିଖରେ ରାଜସ୍ଥାନର 'ନାଗାଉର'ଠାରେ ଦେଶର ପ୍ରଥମ ପଞ୍ଚାୟତକୁ ତତ୍କାଳୀନ ପ୍ରଧାନମନ୍ତ୍ରୀ ପଣ୍ଡିତ ଜବାହରଲାଲ ନେହେରୁ ଉଦ୍‌ଘାଟନ କଲେ । ଏହା ପରେ କେରଳ ଜିଲ୍ଲା ପରିଷଦ ବିଲ୍ ସେ ରାଜ୍ୟର ବିଧାନସଭାରେ ଅଣାଗଲା । ମାତ୍ର ବିଧାନସଭା ଭଙ୍ଗ ହେବା କାରଣରୁ ସେଠାରେ ତାହା କାର୍ଯ୍ୟକାରୀ ହୋଇପାରିଲା ନାହିଁ । ୧୯୭୪-୭୭ ମସିହା ହେଲା ପଞ୍ଚାୟତିରାଜ ବ୍ୟବସ୍ଥାର ଅଧଃପତନ କାଳ । ୧୯୭୮ ମସିହା ଜୁନ୍ ୪ ତାରିଖରେ ପଶ୍ଚିମବଙ୍ଗରେ ପଞ୍ଚାୟତ ନିର୍ବାଚନ ଦଳ ଭିତ୍ତିରେ କରାଗଲା । ସେହି ବର୍ଷ ଅଗଷ୍ଟ ୨୧ ତାରିଖରେ ଅଶୋକ ମେହେଟ୍ଟା କମିଟି ପଞ୍ଚାୟତିରାଜର କାର୍ଯ୍ୟକାରିତା ଉପରେ ମନ୍ତବ୍ୟ

ତଥା ମତାମତ ଫର୍ଦ୍ଦ ପ୍ରଦାନ କଲେ । ୧୯୮୩ ମସିହାରେ କର୍ଣ୍ଣାଟକ ସରକାର ନୂଆ ପଞ୍ଚାୟତିରାଜ ନିୟମ କାର୍ଯ୍ୟକାରୀ କରାଇଲେ ।

ପ୍ରକାଶ ଥାଉ କି ୧୯୮୨ ମସିହା ସେପ୍ଟେମ୍ବର ମାସରେ ଯୋଜନା କମିଶନରଙ୍କ ଦ୍ୱାରା ହନୁମନ୍ତ ରାଓଙ୍କ ଅଧ୍ୟକ୍ଷତାରେ ଏକ କମିଟି ବସାଗଲା । ଏହି କମିଟି ଜିଲ୍ଲାସ୍ତରୀୟ ଯୋଜନା ସମ୍ବନ୍ଧରେ ଏକ ବିସ୍ତୃତ ରିପୋର୍ଟ ୧୯୮୪ ମଇ ମାସରେ ପ୍ରଦାନ କଲେ ।

୧୯୮୫ ମସିହାର କଥା । କର୍ଣ୍ଣାଟକ ରାଜ୍ୟର ପଞ୍ଚାୟତ ନିୟମ ରାଷ୍ଟ୍ରପତିଙ୍କର ଅନୁମୋଦନ ଲାଭ କଲା ଜୁଲାଇ ମାସରେ । ସେହି ୧୯୮୫ ମସିହା ଅଗଷ୍ଟ ୧୪ ତାରିଖରେ ତାହା କାର୍ଯ୍ୟକାରୀ ହେଲା । ସେହି ବର୍ଷ ଜି.ଭି..କେ. ରାଓ କମିଟି ମାର୍ଚ୍ଚ ୨୫ରୁ କାର୍ଯ୍ୟାରମ୍ଭ କରି ସେଇ ବର୍ଷ ଡିସେମ୍ବରରେ ରିପୋର୍ଟ ପ୍ରଦାନ କରିଥିଲେ । ଗ୍ରାମାଞ୍ଚଳ ବିକାଶରେ ପ୍ରଶାସନିକ ଦିଗ୍‌ବିଦିଗ ନିର୍ଣ୍ଣୟ ଉଦ୍ଦେଶ୍ୟରେ ଏହି କମିଟି ଯୋଜନା କମିଶନରଙ୍କ କର୍ତ୍ତୃକ ବସାଯାଇଥିଲା ।

ଆଗରୁ ଆଲୋଚିତ ହୋଇଛି ଯେ ପଶ୍ଚିମବଙ୍ଗ ଓ କର୍ଣ୍ଣାଟକ - ଏଇ ଦୁଇରାଜ୍ୟ ଏଇ ପଞ୍ଚାୟତିରାଜ ବ୍ୟବସ୍ଥାକୁ କାର୍ଯ୍ୟକାରୀ କରାଇବାରେ ଆଗୁଆ ଅଟନ୍ତି । ଉପରୋକ୍ତ ଦୁଇ ରାଜ୍ୟର ସଫଳତାକୁ ଦୃଷ୍ଟିରେ ରଖି ଆନ୍ଧ୍ରପ୍ରଦେଶ ସରକାର ଯୋଜନା ପ୍ରସ୍ତୁତ କଲେ ୧୯୮୬ ମସିହାରେ । ସେଇ ବର୍ଷ ଅର୍ଥାତ୍ ୧୯୮୬ ମସିହା ନଭେମ୍ବର ୨୭ ତାରିଖରେ ଏଲ୍.ଏମ୍. ସିଂହଭି କମିଟି ପଞ୍ଚାୟତର ସାମ୍ବିଧାନିକ ସ୍ଥିତି ଉପରେ ଏକ ରିପୋର୍ଟ ପ୍ରଦାନ କଲେ । ୧୯୮୮ ମସିହାରେ ସାମ୍ବିଧାନିକ ସଂଶୋଧନ ଉଦ୍ଦେଶ୍ୟରେ ପାର୍ଲିଆମେଣ୍ଟ ସବ୍‌କମିଟି ଶ୍ରୀ ପି.କେ. ଥୁଙ୍ଗନ୍‌ଙ୍କ ଅଧ୍ୟକ୍ଷତାରେ ବସିଥିଲା । ସେଇ କମିଟି ଯଥାବିଧି ରିପୋର୍ଟ ମଧ୍ୟ ଦେଇଥିଲେ ।

୧୯୮୯ ମସିହାରେ ସମ୍ବିଧାନର ୬୪ତମ ସଂଶୋଧନ ବିଲ୍ ମଇ ୧୫ ତାରିଖରେ ପାର୍ଲିଆମେଣ୍ଟରେ ଆଗତ କରାଗଲା । ମାତ୍ର ଅକ୍ଟୋବର ୧୫ ତାରିଖ ସୁଦ୍ଧା ଏହା ରାଜ୍ୟ ସଭାରେ ଗୃହୀତ ହୋଇପାରିଲା ନାହିଁ । ୧୯୯୧ ମସିହାରେ ସମ୍ବିଧାନର ୭୨ତମ ଓ ୭୩ତମ ସଂଶୋଧନ ବିଲ୍ ଲୋକସଭାରେ ଆଗତ କରାଗଲା । ୧୯୯୨ ମସିହାରେ ଉଭୟ ବିଲ୍ ଡିସେମ୍ବର ୨୨ ତାରିଖରେ ଲୋକସଭାରେ ଓ ତା' ପରଦିନ (୨୩.୧୨.୧୯୯୨) ରାଜ୍ୟସଭାରେ ଅନୁମୋଦନ ଲାଭ କଲା ଯାହାର ସୁଫଳ ୧୯୯୩ ମସିହାରୁ ମିଳୁଅଛି । ଯଥା- ସମ୍ବିଧାନର ୭୩ତମ ସଂଶୋଧନ ଆଇନ ୧୯୯୩ ଏପ୍ରିଲ ୨୪ରୁ କାର୍ଯ୍ୟକାରୀ ହେଉଅଛି । ସମ୍ବିଧାନର ୭୪ତମ ସଂଶୋଧନ ଆଇନ ୧୯୯୩ ଜୁନ୍ ୧ ତାରିଖରୁ କାର୍ଯ୍ୟକାରୀ ହେଉଅଛି ।

**ସମ୍ବିଧାନର ୭୩ତମ ସଂଶୋଧନରେ ନୂତନତ୍ୱ**

୧. ତ୍ରିସ୍ତରୀୟ ପଞ୍ଚାୟତିରାଜ ଅନୁଷ୍ଠାନମାନଙ୍କର କାର୍ଯ୍ୟକାଳ ପାଞ୍ଚବର୍ଷ ବଳବତ୍ତର ରହିବ ଏବଂ ସେଇ ସମୟସୀମା ପୂର୍ବରୁ ଭାଙ୍ଗିଗଲେ ସେଥିପାଇଁ ବାଧ୍ୟତାମୂଳକ ଭାବେ ଛଅମାସ ମଧ୍ୟରେ ନିର୍ବାଚନ ହେବ ।

୨. ପଞ୍ଚାୟତିରାଜ ବ୍ୟବସ୍ଥାରେ ଗ୍ରାମସ୍ତରରେ ଗ୍ରାମପଞ୍ଚାୟତ, ବ୍ଲକ୍ ସ୍ତରରେ ପଞ୍ଚାୟତ ସମିତି ଓ ଜିଲ୍ଲାସ୍ତରରେ ଜିଲ୍ଲା ପରିଷଦ ରହିବ ।

୩. ସମ୍ବିଧାନର ୧୧ତମ ଅନୁସୂଚୀ ଅନୁଯାୟୀ ପଞ୍ଚାୟତ ଅନୁଷ୍ଠାନଗୁଡ଼ିକୁ ୨୯ଟି ବିଷୟରେ କାର୍ଯ୍ୟ କରିବା ପାଇଁ କ୍ଷମତା ଦିଆଯାଇଅଛି ।

୪. ପ୍ରତି ଗ୍ରାମଶାସନ ସ୍ତରରେ ସମସ୍ତ ଭୋଟରଙ୍କୁ ନେଇ ଏକ ଗ୍ରାମସଭା ଗଢ଼ାଯିବ । ଗ୍ରାମସଭାର ନିଷ୍ପତ୍ତିକୁ ପରିବର୍ତ୍ତନ କରାଯାଇ ପାରିବ ନାହିଁ । ଏହା ଗ୍ରାମର ଆର୍ଥିକ ବିକାଶ, ସାମାଜିକ ନ୍ୟାୟ ଓ ଯୋଜନାଗୁଡ଼ିକ ସଂପର୍କରେ ବିଚାରବିମର୍ଷ କରି ନିଷ୍ପତ୍ତି ନେବେ ।

୫. ପଞ୍ଚାୟତିରାଜ ବ୍ୟବସ୍ଥାରେ ପ୍ରତିନିଧିମାନେ ସିଧାସଳଖ ଭାବେ ଭୋଟରମାନଙ୍କଦ୍ୱାରା ନିର୍ବାଚିତ ହେବେ । କିନ୍ତୁ ପଞ୍ଚାୟତ ସମିତିର ଅଧ୍ୟକ୍ଷ, ଉପାଧ୍ୟକ୍ଷ, ଜିଲ୍ଲା ପରିଷଦର ଅଧ୍ୟକ୍ଷ, ଉପାଧ୍ୟକ୍ଷ ଓ ଗ୍ରାମପଞ୍ଚାୟତର ନାଏବ ସରପଞ୍ଚ ସେମାନଙ୍କ ସ୍ତରରେ ନିର୍ବାଚିତ ହୋଇଥିବା ପ୍ରତିନିଧିମାନଙ୍କଦ୍ୱାରା ନିର୍ବାଚିତ ହେବାର ବ୍ୟବସ୍ଥା ରହିଅଛି । ଆମ ରାଜ୍ୟରେ ସରପଞ୍ଚମାନେ ସିଧାସଳଖ ଭୋଟରମାନଙ୍କ ଦ୍ୱାରା ନିର୍ବାଚିତ ହେଉଛନ୍ତି ।

୬. ତିନୋଟିଯାକ ସ୍ତରରେ ମହିଳା ପ୍ରତିନିଧିଙ୍କ ପାଇଁ ଅତିକମ୍‌ରେ ୩୩ ପ୍ରତିଶତ ସ୍ଥାନ ସଂରକ୍ଷଣ କରାଯାଇଅଛି ।

୭. ତଫସିଲଭୁକ୍ତ ଜାତି, ଅନୁସୂଚିତ ଜନଜାତି ପାଇଁ ଜନସଂଖ୍ୟା ଅନୁପାତରେ ଆସନ ସଂରକ୍ଷିତ ରହିବାର ବ୍ୟବସ୍ଥା ହୋଇଛି ।

୮. ପ୍ରତ୍ୟେକ ରାଜ୍ୟରେ ପଞ୍ଚାୟତିରାଜ ପାଇଁ ଏକ ସ୍ୱତନ୍ତ୍ର ଅର୍ଥ କମିଶନ ଗଠନ କରାଯିବ । ରାଜ୍ୟର ମୋଟ ଆୟରୁ କେତେ ଭାଗ ଅନୁଦାନ ପଞ୍ଚାୟତ ଅନୁଷ୍ଠାନମାନେ ପାଇବେ, ତାହାର ନିଷ୍ପତ୍ତି ଅର୍ଥ କମିଶନ ହାତରେ ନ୍ୟସ୍ତ ହୋଇଅଛି ।

୯. ତ୍ରିସ୍ତରୀୟ ପଞ୍ଚାୟତ ବ୍ୟବସ୍ଥାର ନିର୍ବାଚନ ନିମନ୍ତେ ରାଜ୍ୟ-ନିର୍ବାଚନ କମିଶନ ଗଠନ କରାଯିବ । ରାଜ୍ୟ ନିର୍ବାଚନ କମିଶନର ଏହି ତ୍ରିସ୍ତରୀୟ ଅନୁଷ୍ଠାନଗୁଡ଼ିକର ନିର୍ବାଚନ ପରିଚାଳନା, ତଦାରଖ ଏବଂ ନିୟନ୍ତ୍ରଣ ଦାୟିତ୍ୱରେ ରହିବେ ।

ଗ୍ରାମପଞ୍ଚାୟତ ନିମ୍ନରେ ପ୍ରଦତ୍ତ ୨୯ ଗୋଟି ବିଷୟ ପ୍ରତି ଅତି ସଚେତନ ରହିବେ । ଏଗୁଡ଼ିକ କେବଳ ସାଙ୍କେତିକ । ଏହାଛଡ଼ା ବିଭିନ୍ନ ସ୍ତରରେ ଅନ୍ୟାନ୍ୟ ବିଷୟଗୁଡ଼ିକ ମଧ୍ୟ ପଞ୍ଚାୟତ କ୍ଷମତା ପରିସର

କରିପାରିବେ । ଏଥିପାଇଁ ସଂପୃକ୍ତ ବିଭାଗଗୁଡ଼ିକ ଆବଶ୍ୟକ କ୍ଷମତା ବିକେନ୍ଦ୍ରୀକରଣ କରିବାକୁ ବାଧ ହେବେ । ତେବେ ପଞ୍ଚାୟତ ଅନୁଷ୍ଠାନର ବହୁମୁଖୀ କାର୍ଯ୍ୟର ତାଲିକା ନିମ୍ନରେ ପ୍ରଦତ୍ତ । ସେଗୁଡ଼ିକ ହେଲା-

୧. କୃଷିର ପ୍ରସାର

୨. ଭୂ-ଉନ୍ନୟନ, ଭୂ-ସଂସ୍କାର, ଚକବନ୍ଦୀ ଓ ମୃତ୍ତିକା ସଂରକ୍ଷଣକୁ କାର୍ଯ୍ୟକାରୀ କରିବା

୩. ପଶୁପାଳନ

୪. ମତ୍ସ୍ୟ ସଂପଦର ବିକାଶ

୫. କ୍ଷୁଦ୍ର ଜଳସେଚନ, ଜଳଯୋଗାଣ ଓ ଅବବାହିକାର ଉନ୍ନୟନ

୬. ସାମାଜିକ ବନୀକରଣ ଓ କୃଷିକ୍ଷେତ୍ର ନିକଟରେ ବନୀକରଣ

୭. ଜଙ୍ଗଲଜାତ ଦ୍ରବ୍ୟ ସଂଗ୍ରହ

୮. ଖାଦ୍ୟ ପ୍ରକ୍ରିୟାକରଣ ଶିଳ୍ପ ଓ କ୍ଷୁଦ୍ରଶିଳ୍ପ

୯. ଖଦି ଓ ଗ୍ରାମ୍ୟ କୁଟୀର ଶିଳ୍ପ

୧୦. ଗ୍ରାମ୍ୟ ବାସଗୃହ

୧୧. ପାନୀୟ ଜଳ

୧୨. ଜାଳେଣି, ଘାସ, ତୃଣାଦି ପଶୁଖାଦ୍ୟ

୧୩. ରାସ୍ତା, ନାଳ, ପୋଲ, ଘାଟ, ଜଳପଥ ଓ ଗମନାଗମନର ଅନ୍ୟାନ୍ୟ ଉପାୟ ।

୧୪. ବିଦ୍ୟୁତ୍ ବଣ୍ଟନ ସମେତ ଗ୍ରାମ୍ୟ ବିଦ୍ୟୁତିକରଣ

୧୫. ଅଣପାରମ୍ପରିକ ଶକ୍ତିଉତ୍ସ

୧୬. ଦାରିଦ୍ର୍ୟ ଦୂରୀକରଣ ଯୋଜନା

୧୭. ପ୍ରାଥମିକ ଓ ମାଧ୍ୟମିକ ବିଦ୍ୟାଳୟ ଶିକ୍ଷା

୧୮. ବୈଷୟିକ ପ୍ରଶିକ୍ଷଣ ଓ ବୃତ୍ତିଗତ ଶିକ୍ଷା

୧୯. ପ୍ରୌଢ଼ ଓ ଅଣଆନୁଷ୍ଠାନିକ ଶିକ୍ଷା

୨୦. ପାଠାଗାର

୨୧. ସାଂସ୍କୃତିକ କାର୍ଯ୍ୟକ୍ରମ

୨୨. ବଜାର ଓ ମେଳା

୨୩. ଡାକ୍ତରଖାନା, ପ୍ରାଥମିକ ସ୍ୱାସ୍ଥ୍ୟକେନ୍ଦ୍ର ସମେତ ସ୍ୱାସ୍ଥ୍ୟ ଓ ସ୍ୱାସ୍ଥ୍ୟରକ୍ଷା ବ୍ୟବସ୍ଥା

୨୪. ପରିବାରକଲ୍ୟାଣ

୨୫. ମହିଳା ଓ ଶିଶୁବିକାଶ

୨୬. ଶାରୀରିକ ଅକ୍ଷମ ଓ ମାନସିକ ଦୁର୍ବଳ ବ୍ୟକ୍ତିଙ୍କର କଲ୍ୟାଣ ସମେତ ସମାଜ ମଂଗଳ

୨୭. ଦୁର୍ବଳ ଶ୍ରେଣୀ - ବିଶେଷତଃ ତଫସିଲଭୁକ୍ତ ଜାତି ଓ ଜନଜାତିର କଲ୍ୟାଣ

୨୮. ସାର୍ବଜନୀନ ବଣ୍ଟନ ବ୍ୟବସ୍ଥା ବା ବଣ୍ଟନ ପଦ୍ଧତିର ପରିଚାଳନା

୨୯. ଗୋଷ୍ଠୀ ସଂପଦର ରକ୍ଷଣାବେକ୍ଷଣ

ଗ୍ରାମାଞ୍ଚଳରେ ସ୍ୱାୟତ୍ତ ଶାସନ ତିନିଗୋଟି ପାହାଚ ଦେଇ ଗଠିତ ହୋଇଥାଏ । ପ୍ରଥମ ପାବଚ୍ଛରେ ଦୁଇ ହଜାରରୁ ଦଶହଜାର ପର୍ଯ୍ୟନ୍ତ ଲୋକଙ୍କ ପାଇଁ ଗଠନ କରାଯାଏ ଗ୍ରାମପଞ୍ଚାୟତ ଯାହାର ମୁଖ୍ୟ ହେଲେ ସରପଞ୍ଚ । ସରପଞ୍ଚ ମହାଶୟ ଆମ ରାଜ୍ୟରେ ସିଧାସଳଖ ସାବାଳକ ଭୋଟରମାନଙ୍କ ଦ୍ୱାରା ନିର୍ବାଚିତ ହୁଅନ୍ତି । ପଞ୍ଚାୟତ ସମିତି ହେଲା ତ୍ରିସ୍ତରୀୟ ପଞ୍ଚାୟତିରାଜର ଦ୍ୱିତୀୟ ପାବଚ୍ଛ । କେତେଗୁଡ଼ିଏ ଗ୍ରାମପଞ୍ଚାୟତକୁ ନେଇ ପଞ୍ଚାୟତ ସମିତି ଗଠିତ ହୋଇଥାଏ । ଆମ ରାଜ୍ୟରେ ୩୧୪ଟି ପଞ୍ଚାୟତ ସମିତି ଅର୍ଥାତ୍ ସେତିକି ଗୋଟି ଗୋଷ୍ଠୀ ଉନ୍ନୟନ ମଣ୍ଡଳ (Community Development Blocks)/CD Blocks ଅଛି । ପଞ୍ଚାୟତ ସମିତି ବା CD Blocks ଅଧୀନରେ ଥିବା ଗ୍ରାମପଞ୍ଚାୟତଗୁଡ଼ିକ ପଞ୍ଚାୟତ ସମିତି ପାଇଁ ସଭାଧ୍ୟକ୍ଷ (Chairman) ନିର୍ବାଚନ କରନ୍ତି ।

ଜିଲ୍ଲା ପରିଷଦ ହେଲା ତ୍ରିସ୍ତରୀୟ ପଞ୍ଚାୟତିରାଜର ତୃତୀୟ ତଥା ଉଚ୍ଚତମ ପାହାଚ । ଜିଲ୍ଲା ପରିଷଦର ସଦସ୍ୟମାନଙ୍କୁ ଲୋକେ ସିଧାସଳଖ ଭୋଟ ଦେଇ ନିର୍ବାଚନ କରିଥାଆନ୍ତି । ଏତଦ୍‌ବ୍ୟତୀତ ଜିଲ୍ଲାର ବିଧାନସଭା ସଦସ୍ୟ (ଏମ୍.ଏଲ୍.ଏ), ଲୋକସଭା/ରାଜ୍ୟସଭା ସଦସ୍ୟ (ଏମ୍.ପି.), ପ୍ରତି ପଞ୍ଚାୟତର ସମିତିର ଅଧକ୍ଷମାନେ ନିଜ ନିଜର ପଦବୀ ବଳରେ ଜିଲ୍ଲା ପରିଷଦର ସଭ୍ୟ ଅଟନ୍ତି । ନିର୍ବାଚିତ ସଭ୍ୟମାନେ ନିଜ ଭିତରୁ ଜଣକୁ ସଭାଧ୍ୟକ୍ଷ ଓ ଅନ୍ୟ ଜଣକୁ ଉପସଭାଧ୍ୟକ୍ଷ ଭାବେ ବାଛନ୍ତି ବା ନିର୍ବାଚନ କରନ୍ତି । ପ୍ରତିସ୍ତରରେ ନିର୍ବାଚିତ ସଦସ୍ୟମାନଙ୍କର ଲକ୍ଷ୍ୟ ଗ୍ରାମାଞ୍ଚଳର ବିକାଶ ହୋଇ ପାରିଲେ ଗଣତନ୍ତ୍ର ଶାସନର ପୂର୍ଣ୍ଣତା ଅନୁଭବ ହେବ । ସ୍ୱାୟତ୍ତ ଶାସନ ଗାଁରୁ ସହରଯାଏଁ ସବୁଠିଁ ଚାଲିଛି ବୋଲି ଉପଲବ୍ଧି ହେବା ପ୍ରକୃତରେ ଆମ ହାତରେ ରହିଛି ।

ଟିଚର ଏଡୁକେଟର
ଜିଲ୍ଲା ଶିକ୍ଷା ଓ ପ୍ରଶିକ୍ଷଣ ପ୍ରତିଷ୍ଠାନ
ଟିକାବାଲି, କନ୍ଧମାଳ

# ଅନିର୍ବାଣ ଅଗ୍ନିଶିଖା, କୁନ୍ତଳା କୁମାରୀ

ଯଶୋଧାରା ଶତପଥୀ

**ଜା**ତୀୟ ଜୀବନ ସ୍ରୋତରେ ଆଜୀବନ ସାରସ୍ୱତ ସାଧିକା ଉତ୍କଳ ଭାରତୀ କୁନ୍ତଳା କୁମାରୀ ସାବତ ଏକ କ୍ରାନ୍ତିକାରୀ ବିରଳ ବ୍ୟକ୍ତିତ୍ୱ ତଥା ଓଡ଼ିଆ ସାହିତ୍ୟାକାଶରେ ଏକ ଉଜ୍ଜ୍ୱଳ ନକ୍ଷତ୍ର । ବହୁମୁଖୀ ପ୍ରତିଭାର ଅଧିକାରିଣୀ କୁନ୍ତଳା କୁମାରୀ ଏକାଧାରରେ ଥିଲେ ଜଣେ ପ୍ରଖ୍ୟାତଯଶା ଔପନ୍ୟାସିକା, ରହସ୍ୟବାଦୀ ନାରୀକବି, ପତ୍ରିକା ସଂପାଦିକା, ସୁସଂଗଠିକା, ସୁବକ୍ତା, ନାରୀନେତ୍ରୀ, ସମାଜ ସେବିକା ଏବଂ ସୁଚିକିତ୍ସିକା । ସଂଗ୍ରାମ, ସଂଘାତ, ନିର୍ଭୀକତା, ଆତ୍ମବିଶ୍ୱାସ ସହିତ ସତ୍ୟନିଷ୍ଠ ଭାବରେ ସର୍ବଦା ନିଜ ମାତୃଭୂମି ଓ ମାତୃଭାଷାକୁ ଗଭୀର ଭାବେ ପ୍ରେମ କରୁଥିବା ସେହି ମହିୟସୀ କ୍ଷୀଣଜୀବୀ ନାରୀ ପ୍ରତିଭାଙ୍କ ଜନ୍ମ ୧୯୦୦ ମସିହା ଫେବୃଆରୀ ୮ ତାରିଖ । ଓଡ଼ିଶାର ଅନ୍ୟତମ ବିଚ୍ଛିନ୍ନାଞ୍ଚଳ ବସ୍ତରଭୁକ୍ତ ସ୍ଥାନ ଜଗଦଳପୁରଠାରେ ସେ ଜନ୍ମଗ୍ରହଣ କରିଥିଲେ । ପିତା ଦାନିଆଲ ସାବତ ଓ ମାତା ମନିକା ଦେବୀଙ୍କର ସେ ଥିଲେ ଜ୍ୟେଷ୍ଠାକନ୍ୟା ।



ସ୍ୱାଧୀନତାର ପ୍ରାକ୍କାଳରେ ୧୯୩୨ରେ ବାଲେଶ୍ୱରଠାରେ ଅନୁଷ୍ଠିତ ନାରୀ ସମ୍ମିଳନୀରେ (ବାମରୁ) ଉପରେ ବସିଛନ୍ତି ରମା ଦେବୀ, ନାରୀକବି କୁନ୍ତଳା କୁମାରୀ ସାବତ, ଜାହ୍ନବୀ ଦେବୀ ଓ ପୁରୁବାଇ, ତଳେ ବସିଛନ୍ତି (ବାମରୁ) ସରଳା ଦେବୀ ଓ କୋକିଳା ଦେବୀ

ଓଡ଼ିଆ ସାରସ୍ୱତ କ୍ଷେତ୍ରରେ କୁନ୍ତଳାକୁମାରୀ ହେଉଛନ୍ତି ଅନନ୍ୟା ଓ ଅଦ୍ୱିତୀୟା । ଜଣେ ଭକ୍ତ, ସାଧିକା, ପ୍ରେମିକା, ପ୍ରଣୟିନୀ, ଶିଳ୍ପୀ ଓ ଦେଶପ୍ରେମୀ ଭାବରେ ନିଜ ବଳିଷ୍ଠ ବ୍ୟକ୍ତିତ୍ୱର ପରିଚୟ ସେ ଦେଇଯାଇଛନ୍ତି । ତାଙ୍କ ସ୍ୱପ୍ନମୟ ଚିନ୍ତା ଓ ଚେତନାରେ ବାସ୍ତବତାର ସ୍ଫୁଲିଙ୍ଗ ସର୍ବଦା ଦୃଶ୍ୟମାନ ହେଉଥିଲା । ପ୍ରଚଣ୍ଡ କର୍ମପ୍ରେରଣାର ସେ ସତେ ଯେପରି ଥିଲେ ଏକ ସ୍ଫୁଲିଙ୍ଗମୟୀ ଆଗ୍ନେୟ ଉତ୍ସ । ତାଙ୍କ ଜୀବନଦର୍ଶନ, ଆଧ୍ୟାତ୍ମିକ ଭାବାବେଗ ଏବଂ ମାନବିକତାରେ ଛଳ ଛଳ ପ୍ରାଣ ସତ୍ତାରେ ଫୁଟି ଉଠିଛି ଅମଳିନ ଆତ୍ମା-ଫୁଲ । 'ଶେଫାଳୀ ପ୍ରତି' କବିତାରେ ସେ ଲେଖିଛନ୍ତି -

'ତୋହପରି କ୍ଷୁଦ୍ର ମୁହିଁ, ତୋହ ପରି କ୍ଷଣିକ
ହସେ ବାସେ ରସେ ମାତ୍ର ଫୁଟି ଅଛି ଘଡ଼ିକ ।
ମାଟିରେ ମିଶିବୁ ତୁହି, ମାଟିରେ ମିଶିବି ମୁହିଁ
ତଥାପି ମୋ' ଆତ୍ମାଫୁଲ ନ ଯିବରେ ମଉଳି
ତେଣୁ ଆଶା ବହି ଦିନ କାଟେ ଗଙ୍ଗଶିଉଳି ।'

ନଶ୍ୱର ଜୀବନ ମଧ୍ୟରେ ଅବିନାଶୀ ଆତ୍ମାର ଅକ୍ଷୟତାକୁ ସେ ଗଭୀର ଭାବରେ ଉପଲବ୍ଧି କରିପାରିଛନ୍ତି ଏବଂ ସେହି ଆତ୍ମପ୍ରତ୍ୟୟ ଭିତରେ ସେ ବଞ୍ଚି ରହିଛନ୍ତି ।

କୁନ୍ତଳାଙ୍କ ଶୈଶବ ଓ କୈଶୋର ଉଭୟ ସମୟ ସ୍ନେହ ଓ ମମତାପୂର୍ଣ୍ଣ ପରିବେଶରେ ବିତିଥିଲା ବର୍ମାରେ । ତାଙ୍କ ପିତା ଡାକ୍ତରୀ ବ୍ୟବସାୟ କରୁଥିବା ଦୃଷ୍ଟିରୁ ସେ ସେଠାରେ ଚଉଦବର୍ଷ ବିତାଇଥିଲେ । ସଂପୂର୍ଣ୍ଣ ଅଣଓଡ଼ିଆ ଅଞ୍ଚଳ ଓ ଅଣଓଡ଼ିଆ ଭାଷା ସହିତ ଜୀବନ ତାଙ୍କର ଆରମ୍ଭ ହୋଇଥିଲା । ସେଠାରେ ଓଡ଼ିଆ ସ୍କୁଲ ଆଦୌ ନଥିଲା । ସମସ୍ତେ ସେଠାରେ ହିନ୍ଦୀରେ କଥାବାର୍ତ୍ତା କରନ୍ତି । କିନ୍ତୁ ଘରେ ତାଙ୍କ ମା' ତାଙ୍କୁ ଓଡ଼ିଆ ଭାଷା ଶିକ୍ଷା ଦିଅନ୍ତି । ବାପା ଇଂରାଜୀ ଶିକ୍ଷା ଦେଉଥିଲେ ମଧ୍ୟ ଓଡ଼ିଆ ଭାଷା ଶିକ୍ଷାର ପ୍ରଥମ ପୁସ୍ତକ ବର୍ଣ୍ଣବୋଧ, ଶିଶୁପାଠ ଇତ୍ୟାଦି ଯୋଗାଇ ଦିଅନ୍ତି । ପିଲାଦିନରୁ କୁନ୍ତଳାଙ୍କ ଓଡ଼ିଆ ଭାଷା ପ୍ରତି ଆଗ୍ରହ ସଂଚାର ହୋଇଥିଲା । କ୍ରମେ ତାଙ୍କ ପିତା ଓଡ଼ିଆ ବ୍ୟାକରଣ, ଇତିହାସ, ଭୂଗୋଳ ବହି ଆଣି ଦେଉଥିଲେ । ଛୋଟବେଳୁଁ ସେ ହିନ୍ଦୀ, ବଙ୍ଗଳା ଭାଷା ଶିକ୍ଷାପ୍ରତି ମଧ୍ୟ ଆଗ୍ରହୀ ହୋଇଥିଲେ । କୈଶୋରରୁ ସେ ସଂଗୀତ ପ୍ରିୟ ଥିଲେ । ଖ୍ରୀଷ୍ଟିଆନ ପରିବାର ହେତୁ ଯୀଶୁଙ୍କ ଜୀବନ ଓ ଆଦର୍ଶମୟ କର୍ମାବଳୀକୁ ନେଇ ଲିଖିତ ଭଜନକୁ

ସେ ସୁନ୍ଦର ଭାବରେ ଗାନ କରୁଥିଲେ ଏବଂ ତାହା ହିଁ ତାଙ୍କୁ କବିତା ଲେଖିବାକୁ ପ୍ରେରଣା ଦେଇଥିଲା ।

ଓଡ଼ିଆ ଭାଷାର ସ୍ୱଳ୍ପ ଜ୍ଞାନକୁ ସମ୍ବଳକରି ସେ ମାତ୍ର ଦଶବର୍ଷ ବୟସରେ କବିତା ରଚନା ପାଇଁ ଲେଖନୀ ଧରିଥିଲେ । ସେ ବୟସରୁ ଆରମ୍ଭ କରି ସେ ଆଜୀବନ ସାହିତ୍ୟ ଉପାସିକା ହୋଇ ରହିଗଲେ ।

ମାନବିକତାର ମହାନ୍ ଚିନ୍ତାଧାରାର ମୂଳମନ୍ତ୍ର ତାଙ୍କ ହୃଦୟ କନ୍ଦରରେ ସଦା ଝଙ୍କୃରିତ ହେଉଥିଲା । ଦେଶପ୍ରେମର ଛଳଛଳ ଧାରାଟିଏ ସଦା ତାଙ୍କ ମନକୁ ଆଚ୍ଛନ୍ନ କରି ରଖିଥାଏ । ସନ୍ଥକବି ଭୀମଭୋଇ, ଗୋପବନ୍ଧୁଙ୍କର ସେହି ମାନବ ପ୍ରୀତି, ମାଟି ମା' ପାଇଁ ଯେଉଁ ପ୍ରେମ ତାହା ତାଙ୍କୁ ଗଭୀର ଭାବେ ପ୍ରଭାବିତ କରିଥିଲା । ପ୍ରକୃତରେ ଯିଏ ଦୀନଦୁଃଖୀର ହୃଦୟକୁ ଚିହ୍ନିପାରେ, ସେ ହିଁ ପ୍ରକୃତ କବିଟିଏ ହୋଇପାରେ । ନିଜସ୍ୱ ଶୈଳୀରେ ରଚିତ ଅଞ୍ଜଳି, ଅର୍ଚ୍ଚନା, ସ୍ଫୁଲିଙ୍ଗ, ଆହ୍ୱାନ, ପ୍ରେମଚିନ୍ତାମଣି ଇତ୍ୟାଦି କାବ୍ୟ ରଚନା କରି ସେ ଓଡ଼ିଆ ସାହିତ୍ୟକୁ ଋଦ୍ଧିମନ୍ତ କରିବା ସହ ଗଦ୍ୟ ସାହିତ୍ୟରେ ଭ୍ରାନ୍ତି, କାଳିବୋହୂ, ନଅତୁଣ୍ଡି, ପରଶମଣି, ରଘୁଅରକ୍ଷିତ ଇତ୍ୟାଦି ଅନେକ ଉପନ୍ୟାସ ରଚନା କରିଛନ୍ତି । ସାହିତ୍ୟର ବିଭିନ୍ନ ବିଭାଗରେ ସେ ଲେଖନୀ ଚାଳନା କରି ଯଶସ୍ୱିନୀ ହୋଇଛନ୍ତି । କାବ୍ୟ-କବିତା, କଥାସାହିତ୍ୟ, ଗଦ୍ୟରଚନା ପ୍ରଭୃତିରେ ସେ ନିଜର ଭାବରାଜିକୁ ଉପସ୍ଥାପନ କରିଛନ୍ତି ।

ତାଙ୍କ ଜୀବନ ଓ ସାହିତ୍ୟ ସାଧନାରୁ ଗୋଟିଏ ବିଷୟ ସ୍ପଷ୍ଟ ଯେ ସେ ଓଡ଼ିଆ ଚଳଣି, ପରମ୍ପରା, ଭାଷା, ସାହିତ୍ୟ ଓ ସଂସ୍କୃତି ପ୍ରତି ବିଶେଷ ଅନୁରାଗ ପ୍ରଦର୍ଶନ କରିଥିଲେ । ପରମ୍ପରାଚ୍ୟୁତ ହେବାର ସେ ପକ୍ଷପାତୀ ନଥିଲେ କିମ୍ବା ପରମ୍ପରାର ଅନ୍ଧ ସ୍ତାବକତା ଲାଗି ଉତ୍ସାହ ମଧ୍ୟ ଦେଉନଥିଲେ । ମାତ୍ର ସଂସ୍କାରର କଷଟିରେ ତାଙ୍କ ଚିନ୍ତାଧାରା ନବୀନ ରୂପ ନେଇଥିଲା । ଜଣେ ମହିଳା ହୋଇ ତତ୍କାଳୀନ କୁସଂସ୍କାରଗ୍ରସ୍ତ ସମାଜରେ ନୂତନ ଚେତନା ଭରି ଦେଇ ବିଜୟ ବୈଜୟନ୍ତୀ ଉଡ଼ାଇବାର ପ୍ରୟାସ ବେଳେ ସେ ତୀବ୍ର ବିରୋଧର ସମ୍ମୁଖୀନ ହୋଇଥିଲେ, ମାତ୍ର ସେସବୁକୁ କୁନ୍ତଳା ଭ୍ରୁକ୍ଷେପ ନକରି ଏହି ଗରଳକୁ ପାନ କରି ସେ ନୀଳକଣ୍ଠୀ ହୋଇଥିଲେ ।

ଜୀବନରେ ସାହସୀ ଓ ନିର୍ଭୀକ ହେବାପାଇଁ ବର୍ମା (ଏବର ମିଆଁମାର) ହିଁ ତାଙ୍କୁ ପ୍ରେରଣା ଦେଇଥିଲା । ବର୍ମା ନାରୀର ବୈଶିଷ୍ଟ୍ୟ ହେଉଛି - ସ୍ୱାଧୀନତାବୋଧ ଓ ନିର୍ଭୀକତା । କିନ୍ତୁ ସ୍ୱେଚ୍ଛାଚାରିତା ସେମାନଙ୍କଠାରେ ଦେଖାଯାଏ ନାହିଁ । ସେମାନେ ସୁଗୃହିଣୀ ମଧ୍ୟ । ଏହିସବୁ ଆଦର୍ଶ କୁନ୍ତଳାଙ୍କୁ ପିଲାଦିନୁ ଅନୁପ୍ରାଣୀତ କରିଥିଲା ଏବଂ ତାଙ୍କୁ ସାମାଜିକ ଜୀବନରେ ସାଧାରଣ ନାରୀଠାରୁ ଭିନ୍ନ ରୂପେ ଗଢ଼ିଥିଲା । ସଂପ୍ରଦାୟ, ସମାଜ, ଗୋଷ୍ଠୀ ନିର୍ବିଶେଷରେ ସେ ସବୁଠି ମୁଣ୍ଡ ସଳଖି ଚାଲିପାରନ୍ତି ଏବଂ ସ୍ପଷ୍ଟ, ନିରପେକ୍ଷ ମତ ଦିଅନ୍ତି ।

ବର୍ମାରୁ ଆସିବା ପରେ ଅନେକ ଘାତପ୍ରତିଘାତ ଏବଂ ଅଭାବକୁ ସହି କୁନ୍ତଳା ଡାକ୍ତରୀ ପାଠ ପଢ଼ିଥିଲେ । ସେତେବେଳେ ତାଙ୍କୁ ଜଣେ ଉଦାରମନା ଶିକ୍ଷକ ଡ. କୈଳାଶ ଚନ୍ଦ୍ର ରାଓ ଅନେକ ସାହାଯ୍ୟ କରିଥିଲେ । ୧୯୨୧ ମସିହାରେ ସେ ମେଡ଼ିକାଲ ପରୀକ୍ଷାରେ କୃତିତ୍ୱର ସହ ପ୍ରଥମ ସ୍ଥାନ ଅଧିକାର କରି ସ୍ୱର୍ଣ୍ଣପଦକ ହାସଲ କରିଥିଲେ । ୧୯୨୧ରୁ ୧୯୨୮ ପର୍ଯ୍ୟନ୍ତ ସମୟ କୈଳାଶଙ୍କ ସହ କୁନ୍ତଳାଙ୍କ ଆନ୍ତରିକତା ପ୍ରଗାଢ଼ ହୋଇଥିଲା । କୁନ୍ତଳା ଡାକ୍ତରୀ ପାସ୍ କଲାପରେ ସ୍ୱାଧୀନ ଭାବରେ ରୋଗୀ ଚିକିତ୍ସା ଆରମ୍ଭ କଲେ ଏବଂ ତାଙ୍କ ବ୍ୟବହାର ଓ ରୋଗୀସେବା ଗୁଣ ଯୋଗୁଁ ଅଳ୍ପଦିନ ଭିତରେ ସେ ସମସ୍ତଙ୍କର ପ୍ରିୟ ହୋଇପାରିଥିଲେ । ସେ ସମୟରେ ମଧ୍ୟ କୈଳାଶବାବୁ ତାଙ୍କୁ ସାହାଯ୍ୟ କରିଥିଲେ ଏବଂ ଜଣେ ଲେଖିକା ଭାବରେ ତାଙ୍କୁ ଲୋକଲୋଚନକୁ ଆଣିବା ଦିଗରେ ମଧ୍ୟ ତାଙ୍କର ଯଥେଷ୍ଟ ଭୂମିକା ରହିଛି । ଜଣେ ନୀରବ ସାଧିକା ଭାବରେ କୁନ୍ତଳା ସାହିତ୍ୟ ସୃଷ୍ଟି କରି ଚାଲିଥାନ୍ତି । ସେତେବେଳେ ଉତ୍କଳ ସାହିତ୍ୟ ନାମକ ଏକ ଉଚ୍ଚକୋଟୀର ପତ୍ରିକା ଓଡ଼ିଶାରେ ପ୍ରକାଶିତ ହେଉଥାଏ । ତହିଁରେ କୁନ୍ତଳାଙ୍କ ରଚିତ 'ତାରାପ୍ରତି' ଓ ପରେ ପରେ 'ଶେଫାଳୀ ପ୍ରତି', 'କମଳପ୍ରତି', 'ପୂଜା' ଇତ୍ୟାଦି ପ୍ରକାଶିତ ହେଲା । ମାତ୍ର ବାଇଶି ବର୍ଷ ବୟସରେ ସେ ଓଡ଼ିଆ ସାହିତ୍ୟରେ ନିଜ ପ୍ରତିଭା ଓ ସାଧନାର ପରିଚୟ ଦେଇପାରିଥିଲେ ।

୧୯୨୫ ମସିହାରେ କଟକରେ ମାତୃମଙ୍ଗଳ କେନ୍ଦ୍ର ପ୍ରତିଷ୍ଠିତ ହେଲା ଓ ତହିଁରେ ସେ ନିଯୁକ୍ତି ପାଇଲେ । ଡ. କୈଳାଶଙ୍କ ପରାମର୍ଶରେ ସେ ବ୍ରାହ୍ମସମାଜ ସହ ସଂପର୍କ ସ୍ଥାପନ କଲେ । କିନ୍ତୁ କିଛି ଫଳ ମିଳିଲା ନାହିଁ । ନିରାଶା ଓ ହତାଶାରେ ଦିନ କାଟୁଥିବାବେଳେ ତାଙ୍କ ଜୀବନ ପରିଧି ମଧ୍ୟକୁ ଆସିଲେ ଦିଲ୍ଲୀର କୃଷ୍ଣ ପ୍ରସାଦ ବ୍ରହ୍ମଚାରୀ । ଅହଲ୍ୟାଙ୍କ ଜୀବନରେ ଯେପରି ତିନିଜଣ ପୁରୁଷଙ୍କ ଆବିର୍ଭାବ ଘଟିଥିଲା, ଜଣେ ପୁରୁଷ ସ୍ୱାମୀ ଗୌତମ ଋଷି ରୂପରେ, ଦ୍ୱିତୀୟ ପୁରୁଷ କପଟାଚାରୀ ଇନ୍ଦ୍ର ରୂପରେ ଏବଂ ତୃତୀୟରେ ଆସିଥିଲେ ମର୍ଯ୍ୟାଦା ପୁରୁଷୋତ୍ତମ ଶ୍ରୀରାମଚନ୍ଦ୍ର, ସ୍ୱୟଂ ପରଂବ୍ରହ୍ମ । ଯାହାଙ୍କ ପଦସ୍ପର୍ଶରେ ଶାପଗ୍ରସ୍ତା ଅହଲ୍ୟା ଶାପମୁକ୍ତା ହୋଇ, ନିଥର, ପଥର ଜୀବନରେ ଜୀବନ୍ୟାସ ପାଇ ଧନ୍ୟା ହୋଇଥିଲେ । କିନ୍ତୁ ସବୁନାରୀଙ୍କ ଭାଗ୍ୟରେ କ'ଣ ପରଂବ୍ରହ୍ମଙ୍କ ପଦସ୍ପର୍ଶ ସମ୍ଭବ ? ହୁଏତ ଅନେକ ଗୌତମ, ଅନେକ ଇନ୍ଦ୍ର ନାରୀର ଜୀବନ ଭିତରକୁ ଆସିପାରନ୍ତି କିନ୍ତୁ ମର୍ଯ୍ୟାଦା ପୁରୁଷୋତ୍ତମଙ୍କ ଆବିର୍ଭାବ କାହା ଭାଗ୍ୟରେ ସମ୍ଭବ ? ପରଂବ୍ରହ୍ମଙ୍କ ଆବିର୍ଭାବ ସମ୍ଭବ ନହେଲେ ମଧ୍ୟ ଏ ଯୁଗରେ ତାଙ୍କ କରୁଣା ଓ କୃପା ପ୍ରାପ୍ତି ସମ୍ଭବ । ତାହା ହିଁ ଘଟିଥିଲା କୁନ୍ତଳାଙ୍କ ଜୀବନରେ । ଅନେକ ଯଶ ଖ୍ୟାତି ତାଙ୍କର ବ୍ୟାପିବାରେ ଲାଗିଥିଲା ।

୧୯୨୮ ମସିହାରେ ସେ ଓଡ଼ିଶା ଛାଡ଼ି ଦିଲ୍ଲୀ ଚାଲିଗଲେ ଏବଂ ସେଠାରେ ସେ ବୈଦିକ ରୀତିରେ କୃଷ୍ଣପ୍ରସାଦ ବ୍ରହ୍ମଚାରୀଙ୍କୁ ବିବାହ କଲେ ଏବଂ ଡାକ୍ତରୀ ବ୍ୟବସାୟ ଖୁବ୍ ନିଷ୍ଠାର ସହିତ କରିଚାଲିଲେ । ଦିଲ୍ଲୀରେ ସେ ଉର୍ଦ୍ଦୁ ଭାଷା ଶିଖିଲେ । ସେତେବେଳେ ସେ ହିନ୍ଦୀରେ ଅନେକ ସାହିତ୍ୟ ରଚନା କରିବା ସହ ତାଙ୍କର ହିନ୍ଦୀ

କବିତାଗୁଡ଼ିକ 'ବରମାଳା' ନାମକ ଏକ କବିତା ସଂକଳନ ରୂପରେ ପ୍ରକାଶିତା ହେଲା । ଦିଲ୍ଲୀର ହିନ୍ଦୀ ସାହିତ୍ୟ ପରିଷଦ ଓ ହିନ୍ଦୀ ନାଟ୍ୟ ସଂସଦର ସେ ସଭାନେତ୍ରୀ ମଧ ହୋଇଥିଲେ । ଉତ୍ତର-ଭାରତର ବିଭିନ୍ନ ସ୍ଥାନରେ, ସଭାସମିତିରେ ସେ ହିନ୍ଦୀରେ ଭାଷଣ ପ୍ରଦାନ କରି ଉଚ୍ଚ ପ୍ରଶଂସିତ ହୋଇଥିଲେ ଏବଂ ବିଭିନ୍ନ ହିନ୍ଦୀ ପତ୍ରପତ୍ରିକାରେ ମଧ ତାଙ୍କ ଭାଷଣ ପ୍ରକାଶିତ ହୋଇଥିଲା । ସମଗ୍ର ଉତ୍ତର ଭାରତରେ ଏହି ମହିୟସୀ ମହିଳା ନିଜର ପ୍ରଚଣ୍ଡ ପ୍ରତିଭା ବଳରେ ଉଚ୍ଚ ଆସନରେ ଅଧିକାରୀ ହୋଇପାରିଥିଲେ । ଜଣେ ଓଡ଼ିଆ ମହିଳା ଭାବରେ ସେତେବେଳେ ଏଭଳି ଖ୍ୟାତି ଅର୍ଜନ କରିବା ସହଜ ନଥିଲା ।

ହିନ୍ଦୀ ସାହିତ୍ୟର ପ୍ରଖ୍ୟାତ ସ୍ରଷ୍ଟା ଶ୍ରୀ ଜୈନେନ୍ଦ୍ର କୁମାର କୁନ୍ତଳାଙ୍କ ଜୀବନକୁ ନେଇ 'କଲ୍ୟାଣୀ' ଉପନ୍ୟାସ ରଚନା କରିଥିଲେ । ଜଣେ ସାରସ୍ୱତ ସାଧକ ବା ସାଧିକାଙ୍କୁ ନେଇ ଏପରି ଉପନ୍ୟାସ ରଚନା ସାହିତ୍ୟ କ୍ଷେତ୍ରରେ ଏହା ପ୍ରଥମ ଏବଂ ଏକ ବିରଳ ଘଟଣା ଥିଲା ।

କୁନ୍ତଳାଙ୍କ ଆଧାତ୍ମିକ ଚେତନା ତଥା ଈଶ୍ୱର ଭକ୍ତି, ଦେଶପ୍ରେମ ଓ ମାନବିକତା ତାଙ୍କ ଜୀବନକୁ ମହିମାନ୍ୱିତା କରିଥିଲା । କୁନ୍ତଳାଙ୍କ ଏହିପରି ବଳିଷ୍ଠ ବ୍ୟକ୍ତିତ୍ୱ ଲାଗି ଅନ୍ୟ ଭାଷାଭାଷୀ ବୁଦ୍ଧିଜୀବୀ ମହଲରେ ସେ କିପରି ଭାବରେ ଆଦୃତା ହୋଇଥିଲେ, 'କଲ୍ୟାଣୀ' ଉପନ୍ୟାସ ତାହାର ଏକ ଜ୍ୱଳନ୍ତ ଉଦାହରଣ ।

ଆଧାତ୍ମିକ କୁସୁମର ସୁବାସରେ ମହକିତ ତାଙ୍କ କାବ୍ୟ ଉପବନ ଓ ଦେଶପ୍ରେମର ନିର୍ମଳ ଧାରାରେ ପ୍ଲାବିତ ତାଙ୍କ ହୃଦୟ ସଦାସର୍ବଦା ଓଡ଼ିଶାବାସୀଙ୍କ ପାଇଁ ବ୍ୟାକୁଳିତ ହେଉଥିଲା । କୁନ୍ତଳା ଦିଲ୍ଲୀରେ ଅବସ୍ଥାନ କରୁଥିଲେ ହେଁ ତାଙ୍କ ମନପ୍ରାଣ ଓ ଲକ୍ଷ୍ୟ ରହିଥାଏ ଓଡ଼ିଶାରେ । ଜଗନ୍ନାଥଙ୍କପ୍ରତି ତାଙ୍କର ଥାଏ ପ୍ରଗାଢ଼ ଭକ୍ତି । ପୁରୀର ବିଖ୍ୟାତ 'ମୁକ୍ତିମଣ୍ଡପ' ପଣ୍ଡିତ ପରିଷଦ ସେତେବେଳେ ତାଙ୍କ କାବ୍ୟ ପ୍ରତିଭାକୁ ଭୂରି ଭୂରି ପ୍ରଶଂସା କରିଥିଲେ । ଏଠାକାର 'ମହିଳାବନ୍ଧୁ ସମିତି' ପକ୍ଷରୁ ସେ ଉତ୍କଳ ଭାରତୀ ଉପାଧି ପାଇଥିଲେ ।

ସେତେବେଳେ ପରାଧୀନ ଭାରତବର୍ଷରେ ଓଡ଼ିଆ ନାରୀର ଉନ୍ନତି ବିଧାନ ଲାଗି ତାଙ୍କ ପରି ଅନ୍ୟ ଜଣେ ମହିୟସୀ ମହିଳା କେହି ନାହିଁ ଯେ କି ହୃଦୟ ଢାଳି ନାରୀ ସମାଜର ବିକାଶ ଦିଗରେ ଉଦ୍ୟମ କରିଛନ୍ତି । ମହାତ୍ମା ଗାନ୍ଧୀଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇ ତାଙ୍କର ପଟ୍ଟଶିଷ୍ୟା ଭାବରେ ନାରୀ ଜାଗରଣ ପାଇଁ ଉଗ୍ର ଜାତୀୟତାବୋଧରେ ମହିଳାମାନଙ୍କୁ ସଚେତନ କରି ସଭାସମିତି ଜରିଆରେ ଭାଷଣ ପ୍ରଦାନ କରି ସେମାନଙ୍କୁ ଦେଶପ୍ରେମରେ ଉଦ୍‌ବୁଦ୍ଧ କରୁଥିଲେ ।

ଦିଲ୍ଲୀ ଅବସ୍ଥାନ କାଳରେ ସେ ମହିଳା ସଂଗଠିକାର ପରିଚୟ ଦେଇଥିଲେ । ସେ ସମୟରେ 'ଦିଲ୍ଲୀ ଚିଠି' ତାଙ୍କ ଗଦ୍ୟ ରଚନା କ୍ଷେତ୍ରରେ ଉଲ୍ଲେଖନୀୟ କୃତି । ପ୍ରଥମେ ତାହା 'ସମାଜ'ରେ ଓ ପରେ 'ସହକାର'ରେ ପ୍ରକାଶିତ ହୋଇ ପ୍ରବଳ ଜନଆଦୃତ ହେଲା । ଆଠଟି ଦିଲ୍ଲୀ ଚିଠି ପ୍ରକାଶ ପାଇଥିଲା । ଏହା ସାଧାରଣ ରଚନା ନଥିଲା । ଏଥିରେ ସାହିତ୍ୟିକ ମୂଲ୍ୟବୋଧ ସହ ସାମାଜିକ ଜୀବନକୁ ଉନ୍ନତ ଓ ମାର୍ଜିତ କରିବା ପାଇଁ ପ୍ରେରଣା ଭରି ରହିଥିଲା । କେତେବେଳେ କୁସଂସ୍କାର ବିରୋଧରେ, ଅନ୍ଧବିଶ୍ୱାସ ବିରୋଧରେ ତ କେତେବେଳେ ନାରୀଜାତିକୁ ଜାଗ୍ରତ ହେବାପାଇଁ ଆହ୍ୱାନ ତ କେତେବେଳେ ଦେଶ ମିଶ୍ରଣ ଲାଗି ପରାମର୍ଶ ଶୁଣାଇଛନ୍ତି ।

କୁନ୍ତଳା କୁମାରୀ ତାଙ୍କ ନେତୃତ୍ୱ ଓ ବାଗ୍ମିତା ପାଇଁ ୧୯୩୦, ଡିସେମ୍ବର ୨୫ ତାରିଖରେ ଗୁରୁକୁଳ ବୃନ୍ଦାବନ ସଂଗଠନର ବାର୍ଷିକ ସମାରୋହରେ ନାରୀ ପରିଷଦର ସଭାପତି ଆସନ ଅଳଙ୍କୃତ କରିଥିଲେ । ୧୯୩୨ ମସିହାରେ ରାଜ୍ୟସ୍ତରୀୟ ମହିଳା ସମ୍ମିଳନୀରେ ସଭାପତିତ୍ୱ କରିବାକୁ ବାଲେଶ୍ୱର ଯାଇଥିବାବେଳେ ସେ ଓଡ଼ିଶା ମାଟିରେ ପଦାର୍ପଣ କଲାବେଳେ ଭାବବିହ୍ୱଳ ହୋଇପଡ଼ିଥିଲେ । ଏଇ ମୋ' ଓଡ଼ିଶା, ଏହାର ପାଣିପବନ ମୋତେ ପୁଷ୍ଟ କରିଛି ! ସେଠାରେ ସେ ନାରୀଜାତି ପ୍ରତି ଅତ୍ୟନ୍ତ ସାର ଗର୍ଭକ ଭାଷଣ ପ୍ରଦାନ କରି ଶ୍ରୋତାଙ୍କୁ ମୁଗ୍ଧ କରି ଦେଇଥିଲେ । ୧୯୩୦ ଓ ୧୯୩୧ ମସିହାରେ ବ୍ରହ୍ମପୁରର ଆଶା ଓ ନବୀନ ପତ୍ରିକା ସହିତ ସଂପୃକ୍ତ ଥାଇ ସେ ଦୁଇ ତିନିଥର ବ୍ରହ୍ମପୁର ଆସି ଉଦ୍‌ବୋଧନ ଦେଇଯାଇଛନ୍ତି । ୧୯୩୨ ମସିହାରେ ବରେଲି ଆର୍ଯ୍ୟ ମହିଳା ମହାସମ୍ମିଳନୀରେ ସେ ସଭାପତିତ୍ୱ କରି ହିନ୍ଦୀରେ ଦୀକ୍ଷାନ୍ତ ଭାଷଣ ପ୍ରଦାନ କରିଥିଲେ । କ୍ରମଶଃ ତାଙ୍କ ସାଂଗଠନିକ ଦକ୍ଷତା ଓ କର୍ମକୁଶଳତା ତାଙ୍କୁ କଂଗ୍ରେସ ସଂଗଠନକୁ ଟାଣି ନେଇଥିଲା । ସେ ୧୯୩୫ ମସିହାରେ ଷ୍ଟୁଡେଣ୍ଟସ୍ ଫେଡ଼େରେସନ୍‌ର ସଭାନେତ୍ରୀ ହୋଇଥିଲେ ।

କବୟିତ୍ରୀ କୁନ୍ତଳାଙ୍କ ସାଧନା ଥିଲା ବହୁମୁଖୀ । କେତେବେଳେ ଜଣେ ଭଗବତ ବିଶ୍ୱାସୀ ଭକ୍ତ ତ ଆଉ କେତେବେଳେ ଜଣେ ଦେଶପ୍ରେମୀ ଅବା ସୌନ୍ଦର୍ଯ୍ୟର ଉପାସିକା ତ ପୁଣି କେତେବେଳେ ଜଣେ ବାସ୍ତବବାଦୀ କବି ଏବଂ ପୁଣି କେତେବେଳେ ରହସ୍ୟବାଦୀ ଚେତନାରେ ଉଦ୍‌ବୁଦ୍ଧ । କିନ୍ତୁ ବିଶେଷ ଭାବରେ ଆଧାତ୍ମିକତାର ଭାବବିହ୍ୱଳତା କବିଙ୍କୁ ପରମାର୍ଥିକ ଆସନରେ ଆସୀନ କରିଛି । ପରମାର୍ଥିକ ଦର୍ଶନର ମାହାତ୍ମ୍ୟ, ଗାମ୍ଭିର୍ଯ୍ୟ ତାଙ୍କ ଜୀବନକୁ ଆବୋରି ବସିଛି । ସାଧିକା କୁନ୍ତଳା ଅନୁଭବରେ ଦେବତାର ସନ୍ଧାନ ପାଇଛନ୍ତି । ଏହି ସତ୍ୟତାର ଆଲୋକ ରେଖା ଯେପରି ବ୍ୟକ୍ତି-ବିଶ୍ୱକୁ ଏବଂ ବିଶ୍ୱ-ବ୍ୟକ୍ତିକୁ ପ୍ରସାରିତ ହୋଇଯାଇଛି । ଏହି ବହୁମୁଖୀ ପ୍ରତିଭାର ଅଧିକାରିଣୀ କୁନ୍ତଳା କୁମାରୀଙ୍କ ୧୯୩୮ ମସିହା ଅଗଷ୍ଟ ୨୩ ତାରିଖରେ ଦେହାନ୍ତ ହୋଇଥିଲା ।

ମାତ୍ର ୩୮ ବର୍ଷ ବୟସ ସୀମା ମଧ୍ୟରେ ସେ ଅନେକ ଅତୁଳନୀୟ କାର୍ଯ୍ୟ କରି ନାରୀ ଅବଳା ବା ଦୁର୍ବଳା ନୁହେଁ, ମହାଶକ୍ତିଶାଳିନୀ ବୋଲି ପ୍ରମାଣିତ କରିଯାଇଛନ୍ତି । ସେ ଥିଲେ ଏକ ଅନିର୍ବାଣ ଅଗ୍ନିଶିଖା । ଯାହା କେବେ ଲିଭି ନାହିଁ ବା ନିର୍ବାପିତ ହୋଇନାହିଁ ।

ଜରଡ଼ା ବଙ୍ଗଳୋ
ବ୍ରହ୍ମପୁର-୪

# ଚୈତ୍ର ମଙ୍ଗଳା ଓଷା

ଡକ୍ଟର କାଙ୍ଗାଳି ଚରଣ ନାୟକ



ଓଡ଼ିଶା ଏକ ପର୍ବପର୍ବାଣିର ରାଜ୍ୟ ହୋଇଥିବାରୁ ଏଠାରେ ବାର ମାସରେ ତେର ପର୍ବ ପାଳନ କରାଯାଏ । ସେହି ବ୍ରତ ଓ ଓଷା ମଧ୍ୟରେ ଚୈତ୍ର ମଙ୍ଗଳା ଓଷା ଅନ୍ୟତମ । ଏହି ଓଷା ବାଟରେ କରାଯାଉଥିବାରୁ କେହି କେହି ଏହାକୁ ବାଟ ମଙ୍ଗଳା ଓଷା ବୋଲି କହିଥାନ୍ତି । ଚୈତ୍ର ମାସରେ ଏହି ଓଷା କରାଯାଉଥିବାରୁ ଏହାକୁ ମଧ୍ୟ କେହି କେହି ଚଇତି ମଙ୍ଗଳା ଓଷା ବୋଲି କହିଥାନ୍ତି । ଏହି ଓଷା ଅତି ପ୍ରାଚୀନ । ପ୍ରାଚୀନ ଭଜନ ଜଣାଣରେ ଏହାର ଉଲ୍ଲେଖ ଅଛି-

‘ଥକା ମନ ଚାଲ ଯିବା ଚକା ନୟନ ଦେଖିବା
ଶଙ୍ଖନାଭି ମଣ୍ଡଳରେ ବେନିନେତ୍ର ପଖାଳିବା
ବାଟରେ ବାଟ ମଙ୍ଗଳା ଦେଖିବା ଅଠର ନଳା ।’

ମା’ ଦୁର୍ଗା ଚୈତ୍ର ମାସରେ ପୂଜା ପାଇବାର ବିଧି । ମାତ୍ର ରାମାୟଣରେ ରାମଚନ୍ଦ୍ର ଦେବୀ ଦୁର୍ଗାଙ୍କୁ ଅସମୟରେ ଅର୍ଥାତ୍ ଆଶ୍ୱିନ ମାସରେ ବା ଶରତ ଋତୁରେ ପୂଜା କରିଥିଲେ । ତେଣୁ ଆଶ୍ୱିନ ମାସରେ ଦେବୀଙ୍କୁ ଶାରଦୀୟ ଦେବୀ ଓ ଚୈତ୍ର ମାସର ଦେବୀଙ୍କୁ ଚଇତି ଦେବୀ ବୋଲି କୁହାଯାଏ । ପୁନଶ୍ଚ ବଙ୍ଗାଳୀମାନଙ୍କ ମତରେ ଦେବୀ ଦଶଭୁଜା କିନ୍ତୁ ଉତ୍କଳୀୟମାନଙ୍କ ମତରେ ଦେବୀ ଅଷ୍ଟଭୁଜା । ଆମେ ଶାରଦୀୟ ଦେବୀଙ୍କୁ ବଙ୍ଗାଳୀମାନଙ୍କ ପ୍ରଭାବରେ ଦଶଭୁଜା କରିବା ବେଳେ ଚଇତି ଦେବୀଙ୍କୁ ଅଷ୍ଟଭୁଜା କରିଥାଉଁ । ଦେବୀ ଦୁର୍ଗା ହେଉଛନ୍ତି - ମଙ୍ଗଳା, ଶାରଳା, ଓ କାଳୀ ମଧ୍ୟ । ସେ ପୁଣି ଶକ୍ତି ସ୍ୱରୂପିଣୀ ପାର୍ବତୀ । ତାଙ୍କର ମୃଣ୍ମୟ ମୂର୍ତ୍ତି ଗଢ଼ି ସର୍ବସାଧାରଣରେ ବା ଗାଁ ଗଣ୍ଡାରେ ପୂଜା କରିବା ଅତ୍ୟନ୍ତ କଷ୍ଟକର ବ୍ୟାପାର ହୋଇଥିବାରୁ ଶରତଋତୁରେ ତାଙ୍କୁ ମଙ୍ଗଳା ରୂପେ ଓ ଚୈତ୍ର ମାସରେ ବାଟ ମଙ୍ଗଳା ରୂପେ ପୂଜା କରାଯାଏ ।

ଏହି ଓଷା ସାଧାରଣତଃ ନାରୀମାନେ କରିଥାନ୍ତି । ଚୈତ୍ରମାସର ମଙ୍ଗଳବାର ଦିନ ଏହି ଓଷା କରାଯାଏ । ଅର୍ଥାତ୍ ଫାଲଗୁନ୍ ପୂର୍ଣ୍ଣିମାଠାରୁ ଚୈତ୍ର ପୂର୍ଣ୍ଣିମା ଯାଏ ପାଞ୍ଚପାଳି ଏହି ଓଷା କରାଯାଏ । ବାଟରେ ବା ଦାଣ୍ଡରେ ମଙ୍ଗଳାଙ୍କର କୋଠି କରି ଗୋମୟରେ ଲିପାପୋଛା କରି ଆମ୍ବ ଫୁଲଡାଳରେ ବିଚିତ୍ର ରୂପେ ମଣ୍ଡି ନାନା ପୁଷ୍ପରେ କୋଠି ମଣ୍ଡନ କରିବ । ସିନ୍ଦୂର ଓ କଜ୍ଜଳ ଆଦି ସଜାଡ଼ି ଥୋଇବ । ତଣ୍ଡୁଳ, ଦୁବ ଓ ବରକୋଳି ପତ୍ର ସଜାଡ଼ି ରଖିବ, ଗନ୍ଧ ଧୂପ, ଦୀପ ମଧ୍ୟ ଦେବ । ଅର୍ଘ୍ୟ ଥାଳିରେ ନାନାଜାତି ଫୁଲ ସହିତ ପାଞ୍ଚବର୍ଣ୍ଣର ବସ୍ତ୍ର ନେଇ ମଙ୍ଗଳାଙ୍କ ପାଦରେ ସମର୍ପଣ କରିବ ।

ଭୋଗ ସାମଗ୍ରୀ ଭାବରେ - ନଡ଼ିଆ, କଦଳୀ, ଆମ୍ବ, ଜମ୍ବୀର, ନାରଙ୍ଗ, ମହୁଲରାଇ, କଣ୍ଟେଇ କୋଳି, କମଳା, ପିଜୁଳି, ଟଭା ଆଦି ନାନା ମିଠା ଫଳ, ଛେନା, ସର, ଦହି, ଦୁଗ୍ଧ, ନବାତ ସହିତ ରାଶିଲଡ୍ଡୁ, ଗଜାମୁଆଁ, ପିଠା ପଣା, ପଞ୍ଚାମୃତ ସବୁ ନେଇ କୋଠିରେ ମଙ୍ଗଳାଙ୍କୁ ପୂଜା କରିବ । ନାସି ନଡ଼ିଆ ଦ୍ୱାରା କଳସ ସ୍ଥାପନ କରିବାକୁ ହେବ ।

ଏ ଓଷାରେ ଧଳା ବା ପାଟ ସୂତାରେ ଏକ ବ୍ରତ ଡୋର କରିବାକୁ ହେବ । ସେଥିରେ ପୁଣି ୧୩ଟି ଗଣ୍ଠି ପଡ଼ିବ । ପ୍ରତ୍ୟେକ ଗଣ୍ଠିରେ ମା’ ମଙ୍ଗଳାଙ୍କ ନାମ ସ୍ମରଣ କରି ତେରଟି ଗଣ୍ଠି ଦେବାକୁ ହେବ ଯଥା-

‘ସିଦ୍ଧମୟୀ ସିଦ୍ଧକର ବୋଲି ଯେ ବୋଲିବ,
ମଙ୍ଗଳା ନାମରେ ଏକ ଗଣ୍ଠି ପକାଇବ ।
ଦ୍ୱିତୀୟରେ ମହାମାୟୀ ତୃତୀୟେ ଶାରଳା,
ଚତୁର୍ଥେ ଦେବ ଗଣ୍ଠି ଧରିଣ ହିଙ୍ଗୁଳା ।
ପଞ୍ଚମେ ଦେବ ବିରଜା ଷଷ୍ଠେ ଭଗବତୀ,
ସପ୍ତମେ ରାଜନନ୍ଦିନୀ ସିଦ୍ଧ ଯେ ପାର୍ବତୀ ।

ଅଷ୍ଟମରେ ଅମ୍ବିକା ନବମେ କାଳିକା,
ଦଶମେ ବିମଳା ଦେବୀ ମଣ୍ଡି ଯେ ମାଳିକା ।
ଏକାଦଶ ଗଣ୍ଠି ଦେବ ନାମେ ନାରାୟଣୀ,
ଦ୍ୱାଦଶରେ ଗଣ୍ଠି ଦେବ ଶିବଙ୍କ ଘରଣୀ ।
ତ୍ରୟୋଦଶେ ଗଣ୍ଠି ଦେବ ନାମେ ବରୁଣାଇ
ସନ୍ତୋଷ ଚିତ୍ତରେ ଗଣ୍ଠି ପକାଇବ ତହିଁ ।'

ଏହି ଓଷା ସମ୍ବନ୍ଧରେ ଦୁଇଟି ଓଷା ବହି ମିଳେ, ପ୍ରଥମଟି 'ଚୈତ୍ର ମଙ୍ଗଳା ଓଷା କଥା ।' ଏହାକୁ ନରହରି ଦାସ ରଚନା କରିଛନ୍ତି ।

ଦ୍ୱିତୀୟଟି- 'ଚୈତ୍ର ମଙ୍ଗଳା ଓଷା କଥା' । ପୁସ୍ତକଟି ବଳରାମ ଦାସଙ୍କଦ୍ୱାରା ରଚନା କରାଯାଇଛି । ଦୁଇଟି ବହିର ବିଷୟବସ୍ତୁ ଭିନ୍ନ ହେଲେ ମାତ୍ର ବ୍ରତର ଗଣ୍ଠିପକା ଓ ପୂଜା ପଦ୍ଧତି ଏକାପରି ଅନୁମେୟ ହୁଏ । ତଥାପି ଏହି ଦୁଇଟି ବହି ବିଭିନ୍ନ ଓଷା ମଣ୍ଡପରେ ପଢ଼ାଯାଏ । ନିମ୍ନରେ ଓଷା ବହି ଦୁଇଟିର ବିଷୟବସ୍ତୁ ସଂକ୍ଷେପରେ ପ୍ରଦାନ କରାଗଲା -

ପ୍ରଥମ ପୁସ୍ତକ ଅନୁଯାୟୀ- ଦିନେ ନାରଦ ମୁନି ଦ୍ୱାରିକାରେ ପହଞ୍ଚି ଦେବୀ ରୁକ୍ମିଣୀଙ୍କୁ ଭେଟିବା ପରେ ରୁକ୍ମିଣୀ ନିଜର ଜନ୍ମିତ ପୁତ୍ରକୁ କିଏ ଅପହରଣ କରିବା ସହିତ ସେ ସ୍ୱାମୀ ଦ୍ୱାରିକାପତି କୃଷ୍ଣଙ୍କଦ୍ୱାରା ଅବହେଳିତ କଥା କହିଛନ୍ତି । ଏହା ଶୁଣି ନାରଦ ମୁନି ବ୍ରହ୍ମାଙ୍କ ମୁଖରୁ ଶୁଣିଥିବା ଚୈତ୍ର ମଙ୍ଗଳାଙ୍କ ଓଷା କରିବାକୁ କହିଛନ୍ତି ।

ନାରଦଙ୍କ ମୁହଁରୁ ଶୁଣି ରୁକ୍ମିଣୀ ଏ ବ୍ରତ କଲେ । ରୁକ୍ମିଣୀଙ୍କ ପୁତ୍ର ପ୍ରଦ୍ୟୁମ୍ନଙ୍କୁ ସମରାସୁର ମାରିବାକୁ ନେଇଥିଲା । ରୁକ୍ମିଣୀ ବ୍ରତ କରିବାରୁ ପ୍ରଦ୍ୟୁମ୍ନ ଏତେ ଓଜନ ହେଲେ ଯେ ସେ ସମୁଦ୍ରରେ ଫିଙ୍ଗି ଦେଇ ଚାଲିଗଲା । ତାଙ୍କୁ ଗୋଟିଏ ବଡ଼ମାଛ ଗିଳିଲା । ସେ ମାଛକୁ ଧୀବର ଧରି ସମରାସୁରକୁ ଦେଲା । ମାଛକୁ ରତି ଦେବୀ ପନିକି ଧରି କାଟନ୍ତେ ମାଛ ପେଟରୁ ପ୍ରଦ୍ୟୁମ୍ନକୁ ପାଇ ପୁତ୍ର ପରି ଲାଳନପାଳନ କଲେ । ଶିବଙ୍କଦ୍ୱାରା ଭସ୍ମ ହୋଇଥିବା କନ୍ଦର୍ପ ପୁଣି ପ୍ରଦ୍ୟୁମ୍ନ ରୂପରେ ଜନ୍ମ ହେଲେ । ତେଣୁ ରତି ଦେବୀ ପ୍ରଦ୍ୟୁମ୍ନକୁ ଲାଳନପାଳନ କରି ବଡ଼ କରି ତାଙ୍କୁ ପୂର୍ବର ସମସ୍ତ ବୃତ୍ତାନ୍ତ କହି ପ୍ରେମ କଲେ । ମାତା ସହିତ ପୁତ୍ରର ପ୍ରେମ ରାଜ୍ୟରେ ପ୍ରଚାର ହୁଅନ୍ତେ ସମରାସୁର କ୍ରୋଧାନ୍ୱିତ ହୋଇ ପ୍ରଦ୍ୟୁମ୍ନକୁ ମାରିବାକୁ ସୈନ୍ୟ ପ୍ରେରଣ କଲା । ରତି ଦେବୀ ପ୍ରଦ୍ୟୁମ୍ନକୁ ଫୁଲ ଧନୁ ଓ ଶର ଦେଲେ । ପ୍ରଦ୍ୟୁମ୍ନ ଯୁଦ୍ଧରେ ସୈନ୍ୟମାନଙ୍କୁ ବଧ କରିବା ସହିତ ସମରାସୁରକୁ ମାରି ଦ୍ୱାରିକାକୁ ରତିଦେବୀଙ୍କ ସହ ଫେରିଲେ । ରୁକ୍ମିଣୀ ଏହି ବ୍ରତ କରିବାରୁ ହଜିଲା ପୁତ୍ର ସହ ରତିଦେବୀଙ୍କୁ ପୁତ୍ରବଧୂ ରୂପେ ପାଇଲେ ।

ଏହି ପୁସ୍ତକରେ ଉଲ୍ଲେଖ ଅଛି ଯେ ଏହି ବ୍ରତ ଯେଉଁ ନାରୀ କରେ ସେ ପୁତ୍ରବତୀ ହେବା ସହିତ ରୁକ୍ମିଣୀଙ୍କପରି ସ୍ୱାମୀ ସୁହାଗିନୀ ମଧ୍ୟ ହୁଏ । ଏହି ପୁସ୍ତକ ସଂପର୍କରେ କବି ଲେଖିଛନ୍ତି-

'ଭକତ ବତ୍ସଳ ମାତା ପୂରାଅ ମାନସ,
ଆଜ୍ଞା ତୋର ମାଗେ ନରହରି ଦାସ
ପଉଷ ଶୁକ୍ଳ ତୃତୀୟା ରବିବାର ଦିନ,
ତାରିଖ ଦ୍ୱାବିଂଶ ସନ ଅଠଷଠି ଜାଣ ।
ବାଳକଟା ବନ୍ଧ ସାହି ଶ୍ରୀଗୁରୁ ମନ୍ଦିରରେ,
ଲେଖିଲି ଆନନ୍ଦ ମନେ ମାତାଙ୍କ କୃପାରେ ।'

ଦ୍ୱିତୀୟ ପୁସ୍ତକ- ତାହା ବଳରାମ ଦାସଙ୍କଦ୍ୱାରା ରଚିତ । ସେହି ଓଷା ବହିରେ ଦେବୀ ଶାରଳାଙ୍କୁ ସ୍ତୁତି କରାଯାଇଛି -

'ବନ୍ଦଇ ଶାରଳା ମାଗୋ ତୁମ୍ଭ ଶ୍ରୀଚରଣେ,
ଲେଖୁଅଛି ପଦମାନ କହିଦେବ ମତେ ।
ନମଇ ଶାରଳା ମାଗୋ ଶିବଙ୍କ ଘରଣୀ,
ଝଙ୍କଡ଼ପୁର ବାସିନୀ ମହିଷାମର୍ଦ୍ଦିନୀ ।
ଅମ୍ବିକା କାଳିକା ବେତାଳିକା ତୋ'ର ନାମ,
ଦୁର୍ଗା ମହାମାୟୀ ଗୋ ମଙ୍ଗଳା ତୋ'ର ନାମ ।
ଜୟଶ୍ରୀ ମଙ୍ଗଳା ମାଗୋ ତାରା କାତ୍ୟାୟିନୀ,
ସଙ୍ଗତରେ ରଖିଅଛୁ ଚଉଷଠୀ ଯୋଗିନୀ ।
ମୁହିଁ ମୂର୍ଖ ଅପାଣ୍ଡୁକ ନ ଜାଣଇ କିଛି,
କଣ୍ଠରେ ବସିଣ ପଦ କହି ଦେବୁ ବାଛି ।'

କୃଷ୍ଣ ଓ ଅର୍ଜୁନଙ୍କ କଥୋପକଥନରେ ଓଷାର ବିଷୟବସ୍ତୁ କୃଷ୍ଣଙ୍କ ମୁହଁରେ ଶ୍ରୀମଦ୍ ଭଗବଦ୍ ଗୀତା ପରି କୁହାଯାଇଛି । ଲକ୍ଷ୍ମୀପୂଜା ବହିରେ ଶ୍ରୀୟା ଚଣ୍ଡାଳୁଣୀ ଲକ୍ଷ୍ମୀଙ୍କୁ ପୂଜା କରି ସନ୍ତୁଷ୍ଟ କରିବା ପରି ଏଥିରେ ଚଣ୍ଡାଳୁଣୀ ମଙ୍ଗଳାଙ୍କୁ ସନ୍ତୁଷ୍ଟ କରିଛି ଓ ପୁତ୍ର କନ୍ୟା ଲାଭ କରିଛି । ନିଶା ମଙ୍ଗଳବାର ଓଷା ବହିରେ ଖୁଲଣା ସୁନ୍ଦରୀଙ୍କୁ ବହୁତ ଦଣ୍ଡ ଦିଆଯାଇଛି ମାତ୍ର ତା'ର ଭକ୍ତିରେ ସନ୍ତୁଷ୍ଟ ହୋଇ ମା' ମଙ୍ଗଳା ତାକୁ ରକ୍ଷା କରିବା ପରି ଏଠାରେ ମଙ୍ଗଳାଙ୍କ ଭକ୍ତ ଚଣ୍ଡାଳୁଣୀକୁ ରାଜା ଦଣ୍ଡ ଦେବାକୁ ଯାଇ ତା'ର ପୁତ୍ରମାନଙ୍କୁ ମାରନ୍ତେ ମା' ମଙ୍ଗଳା ବଞ୍ଚାଇ ଦେଇଛନ୍ତି । ଶେଷକୁ ରାଜା ଓ ରାଜ୍ୟବାସୀମାନେ ମଙ୍ଗଳାଙ୍କୁ ପୂଜା କରି ପୁତ୍ରବତୀ ହୋଇଛନ୍ତି । ତାହା ଏଠାରେ ସଂକ୍ଷେପରେ ପ୍ରଦାନ କରାଗଲା -

ଅର୍ଜୁନ ମଙ୍ଗଳାଙ୍କ ବିଷୟ ପଚାରନ୍ତେ ଭଗବାନ ଶ୍ରୀକୃଷ୍ଣ ମା' ମଙ୍ଗଳାଙ୍କ ବିଷୟ କହିଛନ୍ତି । ଦିନେ ମା' ମଙ୍ଗଳା ତାଙ୍କ ପୂଜାଦିନରେ ବୁଢ଼ୀ ରୂପ ଧରି କେନ୍ଦୁଚାର ବିକିବା ନିମନ୍ତେ ନଗରରେ ପ୍ରବେଶ କଲେ । ସେ କତରା ପିନ୍ଧିଛନ୍ତି ଓ ତାଙ୍କ ଆଖିରୁ ମେଞ୍ଚା ମେଞ୍ଚା ଲେଞ୍ଚରା ବୋହି ପଡୁଥିବାରୁ ତାଙ୍କର ଏହି ରୂପ ଦେଖି କେହି କେନ୍ଦୁଚାର କିଣିଲେ ନାହିଁ । କିନ୍ତୁ ଜଣେ ଚାଣ୍ଡାଳୁଣୀ ତାଙ୍କୁ କେଉଁଠାରୁ ଆସିଲେ ଓ କେଉଁଠାକୁ ଯିବେ ବୋଲି ପଚାରନ୍ତେ ମଙ୍ଗଳା ତାଙ୍କୁ ଦୟାକରି ନିଜର ପରିଚୟ ଦେଲେ ଓ କେନ୍ଦୁଚାର ଦେଇ ତାଙ୍କର ପୂଜା କରିବାକୁ କହିଲେ । ତାଙ୍କର ପୂଜା କଲେ ସେ ପୁତ୍ରବତୀ ଓ ଧନବତୀ ହେବେ । ନଗରବାସୀ ତାଙ୍କର ପୂଜା ନକରିଥିବାରୁ ସମସ୍ତେ ଆଣ୍ଠୁକୁଡ଼ା ହେବେ ବୋଲି କହିଲେ ।

ଚଣ୍ଡାଳୁଣୀ ନଗରରୁ ଖଇମୁଆଁ, ନବାତ, ସାକର, ଛେନା ପଣା, ଗୁଡ଼, ଦୁଧ, ମିଠେଇ ଇତ୍ୟାଦି ପୂଜା ସାମଗ୍ରୀ, କିଣିଆଣି ଚନ୍ଦନ, କର୍ପୂର ପାଣିଗୃହରେ ସିଞ୍ଚି, ଗୋବରରେ ଘରଦ୍ୱାର ଲିପି, ଝୋଟି ଲେଖି ଜୟଶ୍ରୀମଙ୍ଗଳା ବୋଲି ଘଟ ସ୍ଥାପନ କଲା । ହଳଦୀ ଗୁଣ୍ଡରେ ଏକ ମୂର୍ତ୍ତି ତିଆରି କରି ଗଙ୍ଗାଜଳ ସିଞ୍ଚି ମଙ୍ଗଳାକୁ ସ୍ତୁତିକରି କେନ୍ଦୁଚାର ଭୋଗ ଲଗାଇଲେ । ଛେଳି, ମେଣ୍ଢା, କୁକୁଡ଼ା ବଳି ପକାଇ ପୂଜା କଲା । କିଛି ଦିନ ପରେ ଚାଣ୍ଡାଳୁଣୀର ଗୋଟିଏ ଝିଅ ହେଲା । ଏହିପରି ତା'ର ସାତପୁଅ ଓ ଗୋଟିଏ ପୁଅ ହେଲା ।

ଦିନେ ଚାଣ୍ଡାଳୁଣୀ ପ୍ରଭାତରୁ ଉଠି ରାଜନଅରକୁ ଗଲା । ରାଜାଙ୍କର ପୁତ୍ର ନଥିବାରୁ ସେ ଆଣ୍ଠୁକୁଡ଼ା ରାଜାଙ୍କ ମୁହଁ ଦେଖିବାରୁ ଆଜି ଅନ୍ନ ଜଳ ମିଳିବ ନାହିଁ ବୋଲି କହିଛି । ରାଜା ଏକଥା ଶୁଣି ମନଦୁଃଖ କରି ଚାର ପଠାଇ ଚାଣ୍ଡାଳୁଣୀ ଉପବାସ ରହିବାର ଜାଣି ତାହାର ଗର୍ବକୁ ଭାଙ୍ଗିବା ପାଇଁ ଦୂତ ପଠାଇ ତା'ର ପୁତ୍ରମାନଙ୍କୁ ହାଣି ପକାଇଲେ । ଚାଣ୍ଡାଳୁଣୀ ଏହା ଶୁଣି ମନଦୁଃଖ କରି କାନ୍ଦି କାନ୍ଦି ଘରକୁ ଫେରିବା ବାଟରେ ମଙ୍ଗଳା ଚାଣ୍ଡାଳୁଣୀକୁ ଭେଟି ତା'ର ମନବାଞ୍ଛା ପୂରଣ କରିବା କଥା କହିଲେ । ଚାଣ୍ଡାଳୁଣୀ ନଗରରୁ ଜିନିଷ କିଣି ମଙ୍ଗଳାଙ୍କୁ ପୂଜା କଲା । ସେ ଗୋଟିଏ ବ୍ରତ କରି ମଙ୍ଗଳାଙ୍କର ବିଭିନ୍ନ ନାମରେ ତେରଟି ଗଣ୍ଠି ଦେଲା । ମା' ମଙ୍ଗଳାଙ୍କୁ ପୂଜା କରନ୍ତେ ମଙ୍ଗଳା ତା'ର ପୁତ୍ରମାନଙ୍କୁ ପ୍ରାଣଦାନ ଦେଲେ । ପୁତ୍ରମାନେ କାଠପତ୍ର, ମାଛ ଶାଗ ଘେନି ଘରକୁ ଫେରିଲେ ।

ରାଜା ଏହା ଶୁଣି ଆସନ୍ତା ମଙ୍ଗଳବାର ଦିନ ଗଜ ଦନ୍ତରେ ପ୍ରହାର କରି ମାରିବା ସହିତ ଶବଗୁଡ଼ିକୁ ଶ୍ୱାନ, ଶୃଗାଳଙ୍କୁ ଝୁଣି ଖାଇବା ଓ ବନିଶୀ ଥୋପ କରିବାକୁ ଆଦେଶ ଦେଲେ । ଏ କଥା ଶୁଣି ଚାଣ୍ଡାଳୁଣୀ କାନ୍ଦି କାନ୍ଦି ଘରକୁ ଫେରିବା ବାଟରେ ମା' ମଙ୍ଗଳା ତାଙ୍କୁ ଭେଟି ତାଙ୍କର ପୂଜା କରିବାକୁ କହିଲେ । ଚାଣ୍ଡାଳୁଣୀ ପୂଜା କରନ୍ତେ ମଙ୍ଗଳା ମାତା ପୁତ୍ରମାନଙ୍କୁ ଜୀବନ୍ୟାସ ଦେଲେ ।

ଏ କଥା ଶୁଣି ରାଜା କ୍ରୋଧ ହୋଇ ଆସନ୍ତା ମଙ୍ଗଳାବାର ଦିନ ପୁଣି ଚାଣ୍ଡାଳୁଣୀର ପୁତ୍ରମାନଙ୍କୁ ହାଣି ଢିଙ୍କିରେ କୁଟି ଶିଳରେ ମାଂସକୁ ବାଟି କୂଅରେ ପୋତିବାକୁ ଆଦେଶ ଦେଲେ । ଚାଣ୍ଡାଳୁଣୀ ନଗରରୁ ଘରକୁ ଫେରିବା ବାଟରେ ଏ କଥା ଶୁଣି ମନଦୁଃଖ କଲା । ବାଟରେ ପୁଣି ମା' ମଙ୍ଗଳା ତାକୁ ତାଙ୍କର ପୂଜା କରିବାକୁ କହିଲେ ଓ ସେ ପୂଜା କରନ୍ତେ ପୁଣି ତାଙ୍କୁ ଜୀବନ୍ୟାସ ଦେଲେ । ପୁତ୍ରମାନେ ଜୀବନ ପାଇ ମାଛ, ଶାଗ, କାଠପତ୍ର ଘେନି ଘରେ ପହଞ୍ଚିଲେ । ପୁତ୍ରଙ୍କୁ ପାଇ ଚାଣ୍ଡାଳୁଣୀ ଖୁସି ହେଲା ।

ରାଜା ଦୂତ ମୁଖରୁ ଏ ଖବର ପାଇ କ୍ରୋଧାନ୍ୱିତ ହୋଇ ଆସନ୍ତା ମଙ୍ଗଳବାର ଦିନ ପୁତ୍ରମାନଙ୍କୁ ମାରି ତାଙ୍କର ମାଂସକୁ ତୁଳା ପରି କାଟି ଧୂଳିରେ ଫିଙ୍ଗିବାକୁ ଆଦେଶ ଦେଲେ । ଚାଣ୍ଡାଳୁଣୀ ନଗରକୁ ଜିନିଷ କିଣିବାକୁ ଯାଇ ଫେରିବା ବାଟରେ ପୁତ୍ରମାନଙ୍କର ମୃତ୍ୟୁ କଥା ଶୁଣି ଗଭୀର ଭାବରେ ପୁଣି ଦୁଃଖ କଲା । ମା' ମଙ୍ଗଳା ତାକୁ ଭେଟି ତା'ର ଭକ୍ତିପଣ ଦେଖି ତା'ର ପୁତ୍ରମାନଙ୍କୁ ଜୀବନଦାନ କଲେ । ପୁତ୍ରମାନେ ଶାଗ, କାଠ ଘେନି ଘରକୁ ଫେରିଲେ । ଚାଣ୍ଡାଳୁଣୀ ଫୁଲ ପ୍ରସାଦ ତା'ର ପୁତ୍ରମାନଙ୍କ ମୁଣ୍ଡରେ ଦେଲା । ପୁତ୍ରମାନେ ମାଂସ, ମଦ ଭୁଞ୍ଜି ଆନନ୍ଦିତ ହୋଇଗଲେ ।

ପୁତ୍ରମାନେ ବଞ୍ଚିବାର କଥାଶୁଣି ଏଥର ରାଜା ଜଉଘରେ ପୋଡ଼ିବାକୁ ଆଦେଶ ଦେଲେ । କିନ୍ତୁ ମଙ୍ଗଳାଙ୍କ ଦୟାରୁ ସାତପୁତ୍ର ପୁଣି ଜୀବନ ଫେରି ପାଇଲେ । ଏଥର ପୁତ୍ରମାନେ ବଞ୍ଚିବାର ଶୁଣି ରାଜା ଆଶ୍ଚର୍ଯ୍ୟ ହେଲେ ଓ ଚାଣ୍ଡାଳୁଣୀ ସହିତ ମିତ୍ରବସି ନିଜର ଦୋଷ କ୍ଷମା ମାଗିବାକୁ ଗଲେ । ଚାଣ୍ଡାଳୁଣୀ ମା' ମଙ୍ଗଳାଙ୍କର ପୂଜା କରୁଥିବାର ଶୁଣି ରାଣୀ ଓ ନଗରର ନାରୀମାନେ ପୂଜା କରିବାକୁ ଆସିଲେ । ରାଜା ଚାଣ୍ଡାଳୁଣୀ ସହିତ ମଇତ୍ର ବସିଲେ ଓ ମଙ୍ଗଳାଙ୍କ ପୂଜା କରି ମଦ ଓ ମାଂସକୁ ଖାଇ ବସନ୍ତେ ମାଂସ ଅମୃତ ଓ ମଦ ଦୁଧ ହୋଇଗଲା । ମଙ୍ଗଳାଙ୍କ ପୂଜା କରି ରାଣୀ ଓ ନଗରର ନାରୀମାନେ ପୁତ୍ରବତୀ ହେଲେ ।

ଏହିପରି ମଙ୍ଗଳାଙ୍କ ପୂଜା କରି ରାଜ୍ୟର ସମସ୍ତେ ଧନବତୀ ଓ ପୁତ୍ରବତୀ ହେଲେ ବୋଲି ଶ୍ରୀକୃଷ୍ଣ ଅର୍ଜୁନକୁ ବୁଝାଇଲେ । କବି ଲେଖିଛନ୍ତି - 'ଅର୍ଜୁନକୁ ବୁଝାଇ କହନ୍ତି ପୀତବାସ, ଭାବରେ ଭଣିଲେ ଏହା ବଳରାମ ଦାସ ।'

ଏହି ପୁସ୍ତକଟି ବଳରାମ ଦାସଙ୍କଦ୍ୱାରା ରଚିତ । ସେ ଲକ୍ଷ୍ମୀ ପୁରାଣର ରଚୟିତା ବଳରାମ ଦାସ ବା ପଞ୍ଚସଖା ଯୁଗର ବଳରାମ ହୋଇପାରନ୍ତି କିମ୍ବା ଅନ୍ୟ କେହି ଲେଖି ବଳରାମ ଦାସଙ୍କ ନାମରେ ଭଣିତା କରି ଦେଇପାରିଥାନ୍ତି । ଏହା ଦୁତିବାହନ ଓଷା ପରି ପୁତ୍ରମାନେ ବାରମ୍ବାର ଜୀବିତ ହୋଇଛନ୍ତି ।

ଓଡ଼ିଶାର ପ୍ରାଚୀନ ନୌବାଣିଜ୍ୟ ସହିତ ମା' ମଙ୍ଗଳାଙ୍କ ଓଷା ସଂଶ୍ଳିଷ୍ଟ ଥିଲା । ନୌବାଣିଜ୍ୟ ଧୀରେ ଧୀରେ ଲୋପ ପାଇଯିବା ପରେ ମଙ୍ଗଳାଙ୍କ ଓଷା ବିଧିମାନ ଧୀରେ ଧୀରେ କମିଯିବାରେ ଲାଗିଛି । ଏବେ ଏହା କେବଳ ଗାଁଗଣ୍ଡାରେ ଦେଖାଯାଉଛି । କେତେବେଳେ ଏହା ସମୂଳେ ଲୋପ ପାଇଯିବ ତାହା କହିହେବ ନାହିଁ । ଓଡ଼ିଶାର ସଂସ୍କୃତି, ପର୍ବପର୍ବାଣି ଓଷା ବ୍ରତକୁ ରକ୍ଷା କରିବାକୁ ହେଲେ ଏହି ଓଷାକୁ ଜନସାଧାରଣ ଦୃଷ୍ଟି ହେବା ଉଚିତ ।

**ସହାୟକ ଗ୍ରନ୍ଥ**


୧. ଚୈତ୍ର ମଙ୍ଗଳା ଓଷା କଥା- ରଚୟିତା - ନରହରି ଦାସ ।

୨. ଚୈତ୍ର ମଙ୍ଗଳା ଓଷା କଥା- ରଚୟିତା - ବଳରାମ ଦାସ ।



ଓଡ଼ିଆ ଅଧ୍ୟାପକ
ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ମାର୍ଗ, କରାପଲ୍ଲୀ
ପୋ: ନାରାୟଣପୁର, ଗୋପାଳପୁର (ସାଗର ବେଳା)

# ଚଇତ ପରବ

ଡଃ ପ୍ରମୋଦିନୀ ହୋତା

'**କୋ**ରାପୁଟ' ଯେଉଁ ମାଟିର ପାଣି, ପବନ ସବୁଜ ବଳୟରେ କବି, ଭାବୁକଙ୍କ ସ୍ୱପ୍ନଭରା ମନ ପୂରି ଉଠେ, ଯାହାର ସ୍ୱର୍ଶରେ ପଥିକଟି ଆଷାଢ଼ୀ କନ୍ୟାର ମେଘୁଆ ପଣତ ତଳେ କେତେବେଳେ ଘୁମେଇ ପଡ଼ିଥାଏ କ୍ଳାନ୍ତିର ଅପମୋଦନ ପାଇଁ ପୁଣି କେତେବେଳେ କୁରେଇ, କୁନ୍ଦ ଫୁଲର ମଳୟ ପବନ ତାକୁ କରିଥାଏ ଉତ୍ତାଳ । ଏହି ଅପରୂପା ଲାବଣ୍ୟବତୀ କୋରାପୁଟ ଯେଉଁଠି ଆଦିବାସୀର ସଂଗୀତ ହିଁ ଜୀବନ, ନୃତ୍ୟ ହିଁ ପ୍ରାଣକେନ୍ଦ୍ର । ଯେଉଁ ମାଟିକୁ ସ୍ୱର୍ଶ କରିବା ମାତ୍ରେ ମନେ ପକାଇ ଦିଏ ତା'ର ଅତୀତର ଗାଥା । ରାମାୟଣର ଉତ୍ତରାକାଣ୍ଡରେ ବର୍ଣ୍ଣିତ ଦଣ୍ଡରାଜାଙ୍କ ରାଜଧାନୀ 'ଦଣ୍ଡକାରଣ୍ୟ'ର କଥା । ମହାରାଜା 'ଭୋଜ' ଯେତେବେଳେ ବତ୍ରିଶ ସିଂହାସନର ପ୍ରତିଟି ପାହାଚରେ ପାଦ ରଖନ୍ତି, ସେତେବେଳେ ପ୍ରତି ପାହାଚରେ ପୁତ୍ତଳିକା ଦଣ୍ଡାୟମାନ ହୋଇ ବିକ୍ରମାଦିତ୍ୟଙ୍କ ଗୁଣଗାନ କରି ଗଳ୍ପ କହି ଉଭାନ ହୋଇଯାଇଥାଏ । ବର୍ତ୍ତମାନ ସୁଦ୍ଧା ନନ୍ଦପୁରରେ ସେହି ଲୋକକଥା ରହିଛି । ଏଥିରୁ ସ୍ପଷ୍ଟ ଅନୁମାନ ହୁଏ ଯେ, କୋରାପୁଟ ଦିନେ ରାଜା ବିକ୍ରମାଦିତ୍ୟଙ୍କ ଆୟତ୍ତାଧୀନ ଥିଲା, ଏଠାରେ ନନ୍ଦରାଜାମାନେ ରାଜତ୍ୱ କରୁଥିଲେ । ପରବର୍ତ୍ତୀ ସମୟରେ କୋରାପୁଟ ମତ୍ସ୍ୟ ବଂଶୀୟ ରାଜାମାନଙ୍କ ଅଧୀନକୁ ଆସିଥିଲା । ସେମାନେ 'ଡୁଡୁମା' ନିକଟସ୍ଥ ନଦୀର ନାମ 'ମତ୍ସ୍ୟକୁଣ୍ଡ' ଦେଇଥିଲେ ଏବଂ ତାହା ପରବର୍ତ୍ତୀ କାଳରେ ମାଛକୁଣ୍ଡ ନାମରେ ନାମିତ କରାଯାଇଥିଲା । ଏହାବ୍ୟତୀତ କୋରାପୁଟର ପ୍ରତିଟି ଗ୍ରାମମାନଙ୍କରେ ଶାକ୍ତ, ବୌଦ୍ଧ, ଜୈନ, ଶିବ ଶକ୍ତି (ଶୈବ) ସଂସ୍କୃତି ବିଦ୍ୟମାନ । କାଳିଦାସଙ୍କ 'ମେଘଦୂତ' ଏହି ଜିଲ୍ଲାର ସୌନ୍ଦର୍ଯ୍ୟକୁ ନେଇ ଲିଖିତ ବୋଲି କୁହାଯାଇଥାଏ ।

ବିଭିନ୍ନ ପର୍ବପର୍ବାଣି ମଧ୍ୟରେ 'ଚଇତ ପରବ' କୋରାପୁଟ ଆଦିବାସୀମାନଙ୍କର ପ୍ରଧାନ ପର୍ବ । ଋତୁରାଜ ବସନ୍ତର ଆଗମନରେ ତନୁରେ କୁହୁକ ଲାଗେ, ମନ ଓ ଆତ୍ମାରେ ଖେଳିଯାଏ ଅପୂର୍ବ ପୁଲକ, ଶୁଖିଲା ଓଠରେ ଉକୁଟି ଯାଏ ହସର ଅମୃତ । ଚଇତି ପବନର ଉନ୍ମାଦନାରେ ଖେଳିଯାଏ ଡଙ୍ଗର, ପାହାଡ଼, ବଣ, ଜଙ୍ଗଲ, ଶିମୁଳି ପଳାଶର ରଂଗରେ ଲାଲ ଟହ ଟହ ହସି ଉଠେ । ମହୁଲ ସଲପ ଗଛରୁ ଟପ ଟପ ଖସିପଡ଼େ ଅସୁମାରୀ ମୋତି, ସରଗି ଗଛରେ ଚୂନା ଚୂନା ଫୁଲର ମହକ । ମତୁଆଲା ହୋଇ ନାଚିଉଠେ ପାହାଡ଼ି ଲଳନା । ଫୁଲ ଫଗୁଣର ନିମନ୍ତ୍ରଣ ନେଇ ଆସେ 'ଚଇତ ପରବ' । ବଉଳ ଫୁଲର ବାସ୍ନାରେ, ପୋଡ଼ା ବଣ ଭୂଇଁ ଗନ୍ଧରେ, ମହୁଲି ରସରେ ବିଭୋର ହୋଇ ସଂଗୀତ ଓ ନୃତ୍ୟର ତାଳେ ତାଳେ ନାଚି ନାଚି ବେଦମ୍ ହୁଅନ୍ତି କୋରାପୁଟର ଧାଙ୍ଗଡ଼ା ଧାଙ୍ଗିଡ଼ିମାନେ । ଏହି ପର୍ବ ମଧୁମାସ ଚୈତ୍ରରେ ପାଳିତ ହୁଏ । ଏହିପର୍ବ ବିଭିନ୍ନ ଆଦିବାସୀ ସମ୍ପ୍ରଦାୟର ଲୋକେ ବିଭିନ୍ନ ରୂପରେ ପାଳନ କରନ୍ତି । ପରଜାମାନେ ଏହାକୁ ଗୁଡ଼ି ଘରେ (ମନ୍ଦିରରେ), ବୃକ୍ଷମୂଳର ଝାଙ୍କରରେ ନିଷ୍ଠାର ସହିତ ପାଳନ କରିଥା'ନ୍ତି । ଚୈତ୍ର ମାସରେ ଆକାଶର ନକ୍ଷତ୍ରମାନଙ୍କର ଗତିବିଧି ଦେଖି, ଯୋଗପାଗ, ଶୁଭ ଦିନ ଠିକ୍ କରେ 'ଦିଶାରୀ' ଏବଂ ଗାଁର ଧାଙ୍ଗଡ଼ାଧାଙ୍ଗିଡ଼ିମାନଙ୍କୁ ଡାକି 'ବେଜୁଣୀ' ଜଣାଇ ଦିଏ ଚୈତ୍ରପର୍ବ କଥା । କେଉଁ ଦିନ ବେଣ୍ଟ (ଶିକାର)କୁ ଯିବେ । ସେହିଦିନଠାରୁ ପ୍ରତ୍ୟେକ ବ୍ୟକ୍ତି ଘରକୁ ଗୋବର ଏବଂ ରଙ୍ଗମାଟିରେ ଘର ଲିପାପୋଛା କରି କାନ୍ଥରେ ରଙ୍ଗବେରଙ୍ଗ ଝୋଟି ଦେଇ ଚିତ୍ରିତ କରିଥା'ନ୍ତି । ବେଜୁଣୀ କୁକୁଡ଼ାକୁ ଚାଉଳ ଖାଇବାକୁ ଦେଇ ପୂଜା ଆରମ୍ଭ କରିଦିଏ । ଏହି ପୂଜାରେ ଛେଳି, କୁକୁଡ଼ା ବଳି ଦିଆଯାଏ । ସେହି ମାଂସକୁ ବନ୍ଧୁବାନ୍ଧବମାନଙ୍କ ମଧ୍ୟରେ ବଣ୍ଟା ଯାଇଥାଏ । ଚଇତ ପରବର 'ଡେମ୍ସା' ଓ 'ସାଇଲଡ଼ି' ନାଚରେ ବନଭୂମି ମୁଖରିତ ହୁଏ ।

'ପାନିମାରିଗଲା ଝାଇଁ ପାନିମାରିଗଲା ଝାଇଁ
ପାନିମାରିଗଲା ଝାଇଁରେ ଦାଦା

ପାନି ମାରିଗଲା ଝାଇଁ ।
ବାଟର କୁଡ଼ିଆ ତୁମରି ପାଇଁ
ପିରି ଛାଇଁବାର ନାଇଁରେ ଦାଦା
ପାନି ମାରିଗଲା ଝାଇଁ ।'

ଗୀତ ଗାଇ ଗାଇ ଗାଁ ଗାଁ ବୁଲି ଟଙ୍କା ମାଗିଥାନ୍ତି କିମ୍ବା ସୀତା କନିଆଁ ବିଭା ହୋଇଲା ... ଗୀତ ଗାଇଥାନ୍ତି । ଏହି ସମୟରେ ଗ୍ରାମ ଦେବତାଙ୍କ ପୂଜା କରାଯାଏ ।

'ଜୟପୁର ନଏଁ ଜୟ ନଗର
ମଝିଦାଣ୍ଡେ ଅଛେ ଗୁଡ଼ିପଦର
ଦଇଖଣ ଦିଗେ ହୁଣ୍ଡି
ତା'ର ନାମ ଧରି ଗୀତ୍ ମୁଇଁ ଗାଏବି
ଲାଗ୍‌ଲାତ ଠାକୁରାନୀ ।'

ଏହି ସମୟରେ ବୈପାରୀଗୁଡ଼ାର ବୀରଖମ୍ବ, ନବରଙ୍ଗପୁରର ଭଣ୍ଡାର ଘରଣୀ, ବୋରିଗୁମ୍ମାର ବୁଢ଼ା ଭୈରବ, ଗୁପ୍ତେଶ୍ୱର ଗୁମ୍ଫାର ମାଉଳି, ପୋଡ଼ାଗଡ଼ର ଭୈରବ, ଜୟପୁରର ହୁଣ୍ଡି, ରାମ ଓ ସୀତା, ଜଗନ୍ନାଥଙ୍କୁ ପୂଜା କରିଥା'ନ୍ତି ।

'ରାମଗିରିଠାନେ ଗୁପତସର
ତଇରେ ପାକନା ତାରକୁ ତାର
ଭିତରେ ଦେଖିଲେ ଭିଙ୍ଗ ଅନ୍ଧାର
ବସିଛେ ମା' ଦେବ ବର
ଦଶ ଆଙ୍ଗୁଠିକେ ବିନୀତ ଯୋଡ଼ିଲେ
କାଲି ଗାଇ ଦେବ କ୍ଷୀର ।'

ଏହି ଗୀତ କୁଡ଼ିଆ ଓ ଗୀତ କୁଡ଼ିଆଣୀଙ୍କ ଗୀତରେ ବିଭୋର ହୁଅନ୍ତି ଧାଙ୍ଗଡ଼ାଧାଙ୍ଗିଡ଼ିମାନେ । ଯାତ୍ରାମେଳାରୁ କିମ୍ବା ନାଟ ଦେଖା ସ୍ଥାନରୁ ସେମାନେ ପରସ୍ପର ଆକର୍ଷିତ ହୋଇ ଗାନ୍ଧର୍ବ ମତରେ ବିବାହ କରନ୍ତି । ଏହାକୁ 'ଉଦୁଲିଆ' କୁହାଯାଏ । ପିତାମାତା କନ୍ୟାର ସଦଳବଳେ ବର ଘରେ ପହଞ୍ଚି 'ଜୋରିମାନା' ଗାଈ, ଛେଳି, ଚାଉଳ ଆଦାୟ କରନ୍ତି ଭୋଜି ଭାତ କରି ବିବାହକୁ ସ୍ୱୀକୃତି ଦେଇଥାନ୍ତି । ଏହାକୁ 'ଝୋଲା' କୁହାଯାଏ । ଗାଁଦାଣ୍ଡରେ ବାଜାଦାରମାନେ ବାଦ୍ୟକୁ ଉଷୁମ କରିଥା'ନ୍ତି ମାଦଳର ତାଳେ ତାଳେ ଧାଙ୍ଗଡ଼ା ଧାଙ୍ଗିଡ଼ିମାନେ ନାଚିଥା'ନ୍ତି ହାତକୁ ହାତ ଛନ୍ଦି, ଦେହକୁ ଦେହ ମିଶାଇ, ଆଣ୍ଠୁଟେକା ଲୁଗାପିନ୍ଧି, ଗୋଡ଼ରେ ବଳାପିନ୍ଧି ଶାଳୀନତା ଭୁଲି ଲଜ୍ଜା ସଙ୍କୋଚ ଭୁଲି ନାଚି ଚାଲିଥା'ନ୍ତି । ସେତେବେଳେ ସେମାନେ କହିଥାନ୍ତି ଲାଜ କରି ଲାଭ ନାହିଁ ପେଟରେ କଥାରଖି ସବୁ କହିଦେବା ଭଲ । ଧାଙ୍ଗଡ଼ା ଧାଙ୍ଗିଡ଼ିକୁ ଏହି ପର୍ବ ନିର୍ଲ୍ଲଜ କରିଦିଏ, ମୁକ୍ତ କରେ ଥଟ୍ଟା ତାମ୍‌ସା ରାତି ସାରା ଲାଗି ରହେ । ଯାହାକୁ ଯିଏ ପସନ୍ଦ କରେ ସେ ତାକୁ 'ଉଦୁଲିଆ' ନେଇଯାଏ । ସେମାନେ ବିଶ୍ୱାସ କରନ୍ତି ରାମ ସୀତା ଏହି ମାସରେ ବିବାହ କରିଥିଲେ । ଏହି ମାସରେ ଡୁମା (ପିତୃପୁରୁଷ)ଙ୍କୁ ଅର୍ପଣ କରାଯାଏ, ଆମ୍ବ ନୂଆଁଖିଆ । ଶିରା ବା ଦେବୀ ସାଧକ ଓ ଦିଶାରୀଦ୍ୱାରା ଦିନ ଗଣନା କରି ନୂଆଁ କାନ୍ଦୁଲ (ହରଡ଼) ନୂଆଁ ହାଣ୍ଡିରେ ଭାଜି ଖାଆନ୍ତି । ଏହା ପୂର୍ବରୁ କାନ୍ଦୁଲ ଖାଇଲେ ବାଘ ଖାଇଯିବ ବୋଲି ସେମାନଙ୍କର ବିଶ୍ୱାସ ରହିଛି । ଘର ତୁଳିଆ ଚାଳ ଉପରେ ସେମାନେ ମାଟିର ବଳଦ ମୂର୍ତ୍ତି ସ୍ଥାପନ କରିଥାନ୍ତି । 'ଚଇତ ପରବ' ଗୀତର ପ୍ରତିଯୋଗିତାରେ ଯଦି ଅବିବାହିତ ପୁରୁଷ ହାରିଯାଏ, ତେବେ ଝିଅ ଘରେ ଘର ଜୋଇଁଆ ହୋଇ ରହେ । 'ଫୁଲମାଳିଆ'ମାନେ ଚଇତ ପରବ ଗୀତ ଗାଇ ଲୋକଙ୍କୁ ଅଧିକ କର୍ମପ୍ରବଣ କରିଥା'ନ୍ତି ।

'ଚଇତ ପରବ' ଗୀତର ପ୍ରତିଯୋଗିତାରେ ଯଦି ଅବିବାହିତ ପୁରୁଷ ହାରିଯାଏ, ତେବେ ଝିଅ ଘରେ ଘର ଜୋଇଁଆ ହୋଇ ରହେ । 'ଫୁଲମାଳିଆ'ମାନେ ଚଇତ ପରବ ଗୀତ ଗାଇ ଲୋକଙ୍କୁ ଅଧିକ କର୍ମପ୍ରବଣ କରିଥା'ନ୍ତି ।

ଏହି ସମୟରେ ଫଗୁ, ଅଳତା, କାଦୁଅରେ ଶରୀରକୁ ରଙ୍ଗବେରଙ୍ଗ କରି କନ୍ଦା, ସଲପ, ମହୁଲି, ଗୁଡ଼ମଦ ଓ ପେଣ୍ଡମ୍ ଆଦି ନିଶାଦ୍ରବ୍ୟ ପାନ କରିଥାନ୍ତି । ବେଣ୍ଟ ସମୟରେ ଆଣିଥିବା ଶିକାରକୁ ଗାଁର ମଧ୍ୟଭାଗରେ ରଖାଯାଏ, ବେଜୁଣୀ ମନ୍ତ୍ର ପଢ଼େ । ଗାଁର ସ୍ତ୍ରୀମାନେ ସେହି ପଶୁକୁ ଆନନ୍ଦରେ ପାଛୋଟି ନିଅନ୍ତି । ପରସ୍ପର ମଧ୍ୟରେ ପୂଜା ପରେ ମାଂସକୁ ବାଣ୍ଟିନେଇ ଭୋଜନ କରିଥା'ନ୍ତି । 'ଭୂମିଆଁ'ମାନଙ୍କ ଚଇତ ପରବ ସାତଦିନ ଧରି ପାଳିତ ହୁଏ । ପ୍ରଥମେ ଚଇତ ବଉଳାଣି ହୁଏ । ଏଥିରେ ବିଭିନ୍ନ ରଙ୍ଗର ପାଞ୍ଚଟି କୁକୁଡ଼ା, ଛେଳି, ନଡ଼ିଆ, ଅଣ୍ଡା, ଗୁଡ଼, ଧୂପଦୀପ, କ୍ଷୀର, ପଣା, ମଦ ଧରି 'ଦିଶାରୀ' ଗାଁ ବାହାରେ ଗୁଡ଼ିରେ 'ହୁଣ୍ଡି' ପୂଜା କରେ । ଏହାକୁ ଜଗରନା ବା ନିଉତା କୁହାଯାଏ । ପର୍ବଦିନ କେଉଁ ମାସରେ ଆମ୍ବ ତୋଳାଯିବ, ହୁଣ୍ଡି ପୂଜା ହେବ ତାହା ଦିଶାରୀ କହିଥାଏ । ସମସ୍ତ ଚାଷୀ ପୂଜା ହୋଇଥିବା ବିହନ ଆଞ୍ଜୁଳା ଆଣନ୍ତି, ଏହାକୁ 'ବିହନ ଛିନିବା' କୁହାଯାଏ । ଏହିଦିନ ରାତିରେ ହଳଦୀ ଭାତରେ ଗୋଟା କୁକୁଡ଼ା ଦୁଇଫାଳ କରି ଭାତ ସହିତ ମିଶାଇ ରନ୍ଧାଯାଏ । କୁକୁଡ଼ା ମାଂସ ଓ ଭାତକୁ ତିନିଭାଗ କରି କାଉମାନଙ୍କୁ ଖାଇବାକୁ ଦେଇଥାନ୍ତି । ଏହାସହିତ ସୁଆଁ ଚାଉଳର ଲନ୍ଦା (ହାଣ୍ଡିଆ) ଦେଇଥା'ନ୍ତି । ରାତି ତିନିଟାରେ ଜଗରନାଙ୍କୁ ଶିଆଳି ପତ୍ରରେ ଦିନରେ ପୂର୍ବ ଦିଗରେ ଦିଆଯାଏ । କୌଣସି କାମ ଯଦି କିଏ କରିଥାଏ, ତା'ଠାରୁ ପାଜର ମଗାଯାଏ, ଜୋରିମାନା କରାଯାଏ । ପ୍ରଥମ ଦିନ ଆମ୍ବ ନୂଆଖିଆ, ଦ୍ୱିତୀୟ ଦିନ ଟିଙ୍ଗିରିବେଣ୍ଟ, ଠାଡ଼୍‌ଚାଉଳ ମଗାଯାଏ । ଟିଙ୍ଗିରିବେଣ୍ଟ ଦିନ ବଣରେ ପୂଜାରୀ ଠାଡ଼୍‌ଚାଉଳରେ ଚରୁ ରାନ୍ଧି ସରଗୀ ପତ୍ରରେ ବାଢ଼ି ପୂଜା କରିଥାଏ । ପିଲାମାନେ ସରୀସୃପ ଓ ପକ୍ଷୀମାରି ଖଜୁରୀ ଡାଳରେ ବିମାନ ଭଳି କରି ଗାଁ ଗାଁ ବୁଲି ଗୀତଗାଇ ଚାଉଳ ଓ ଟଙ୍କା ମାଗିଥାନ୍ତି । ଅସ୍ତ୍ରଶସ୍ତ୍ରରେ ସଜ୍ଜିତ ହୋଇ ତୃତୀୟ ଦିନ ବଡ଼ବେଣ୍ଟରେ

ପିଲାମାନେ ମୁଖ୍ୟ ଲୋକଙ୍କ ଘରକୁ ଯାଇ ମାଗିଥାନ୍ତି । ପ୍ରତିଘରେ ସ୍ତ୍ରୀମାନେ ହଳଦୀ ପାଣିରେ ପିଲାମାନଙ୍କ ପାଦ ଧୋଇ ଚାଉଳର ଟୀକା ମୁଣ୍ଡରେ ଲଗେଇ ଟଙ୍କାଟିଏ ଦେଇଥାନ୍ତି । ରାତିରେ କୁକୁଡ଼ା, ଟେଣ୍ଡକା (ଏଣ୍ଡୁଅ), ଝିଣ୍ଟିକା, ହୋମ ପାଇଁ ଚଟିଆ ବସା, ଅଣ୍ଡା, କାଠ ଏକବିଡ଼ା, ପତର ଏକବିଡ଼ା, କଳା ମୁରୁଜ, ରଂଗ ମୁରୁଜ ହୁଣ୍ଡି ଘରେ ସବୁ ରଖାଯାଏ ଏବଂ ହୁଣ୍ଡି ଦେବତାଙ୍କ ମନ୍ତ୍ର ବୋଲି ଦିଶାରୀ ପୂଜା କରେ । ଚତୁର୍ଥ ଦିନ ଥାଏ ବେଣ୍ଟ (ଶୀକାର)କୁ ଯିବା ଦିନ । ଏହିଦିନ ଦିଶାରୀ ବଣରେ ଚିତ୍ରା କୁକୁଡ଼ା, ଅଣ୍ଡା ଆଦି ପୂଜା କରି କେଉଁ ଦିଗରୁ ଜନ୍ତୁ, ଜିଆଦ ପଶୁମାନେ ବାହାରିବେ ତାହା ନିରୂପଣ କରିଥାଏ । ଏହିଦିନ ଜଣେ ସ୍ତ୍ରୀକୁ ଜିଆଦ (ସମ୍ବର) ବେଶରେ ଓ ଆଉଜଣେ ସ୍ତ୍ରୀକୁ ଶୀକାରୀ ବେଶରେ ସଜ୍ଜା ଯାଇଥାଏ । ଶୀକାରୀ ସ୍ତ୍ରୀଟି ସମ୍ବର ସ୍ତ୍ରୀଟିକୁ ମିଛିମିଛିକା ମାରିଥାଏ । ସେହି ସମ୍ବର ସ୍ତ୍ରୀକୁ ଚାରିଜଣ ସ୍ତ୍ରୀ ବୋହି ଆଣନ୍ତି ଘର ଅଗଣାକୁ ସେଇଠି ବଜାର ବସିଥାଏ । ଏହାକୁ ଡାଳସମ୍ବର କହିଥାନ୍ତି । ଯଦି ଦୈବାତ୍ ପୁରୁଷମାନେ ସମ୍ବର ମାରି ଆଣିଥାନ୍ତି ତେବେ ସମ୍ବର ମାରିଥିବା ପୁରୁଷକୁ କାନ୍ଧରେ ବସାଇ ଗାଁ ସାରା ବୁଲାହୁଏ । ବାଜଣିଆ ମହୁରୀ, ମୃଦଙ୍ଗ ବଜାଇ ଢେମ୍‌ସାନାଚ କରି ସେହି ସ୍ତ୍ରୀମାନଙ୍କୁ ବନ୍ଦାପନା କରନ୍ତି ଓ ମାଂସକୁ ଗାଁ ସାରା ବଣ୍ଟାଯାଇଥାଏ । ବେଣ୍ଟକୁ ନଯାଇଥିବା ଲୋକଙ୍କୁ ସ୍ତ୍ରୀ ଲୋକମାନେ ଗୋବର ପାଣି ପକାଇଥାନ୍ତି । ଗାଁର ପୁରୁଷମାନେ ପର୍ବର ଚତୁର୍ଥ ଦିନ ତିନିଦିନ ବେଣ୍ଟକୁ ଯାଇଥା'ନ୍ତି । ଏହିପରି ସାତଦିନରେ 'ଚଇତ ପରବ' ସରିଥାଏ । ପରବ ସରିବା ଦିନ ବାଉଁଶକାଟି ନଳାକରି ପାଣି ଢଳାଯାଏ, ତାକୁ 'ହୁଣ୍ଡି' ଘରେ ପୂଜା କରାଯାଏ ଏବଂ ଧନୁକାଣ୍ଡରେ ସେହି ବାଉଁଶ ନଳାକୁ ବନ୍ଦାଯାଏ । ତାହାପରେ ଚଇତ ପରବ ସରିଥାଏ ।

ଏହି ଚଇତ ପରବ କନ୍ଧ ଓ ସଉରାମାନେ ଅନ୍ୟପ୍ରକାରର ପାଳନ କରିଥା'ନ୍ତି । ଚୈତ୍ରମାସର ଅମାବାସ୍ୟା ପରେ ବୁଧବାରଠାରୁ ତିନିଦିନ କିମ୍ବା ରବିବାରଠାରୁ ତିନିଦିନ ପର୍ଯ୍ୟନ୍ତ ପାଳନ କରାଯାଏ । ଏହାକୁ 'ହିରେ ପରବ' ଓ 'ଚତୁରା ପାର୍ବୁ' ମଧ୍ୟ କହିଥାନ୍ତି । ଗାଁ ଲୋକମାନେ ଏକତ୍ର ହୋଇ ସଭା କରିଥାନ୍ତି । ଗାଁ ମୁଖିଆର ନିର୍ଦ୍ଦେଶ ଅନୁସାରେ ତିନୋଟି କିମ୍ବା ପାଞ୍ଚୋଟି ଲମ୍ବା ବାଉଁଶ ଅଣାଯାଏ । ସେହି ବାଉଁଶର ଅଗ୍ରଭାଗରେ ଧଳା କନା ଗୁଡ଼ାଯାଏ, ସେହି କନା କିଣିବା ପାଇଁ ଯିଏ ଟଙ୍କା ଦିଏ ତା'ର ନାମ ଗୁପ୍ତ ରଖାଯାଏ । ଏଥିପାଇଁ ଗାଁ ମଝିରେ ଗୋଟିଏ କୁଣ୍ଡ କରାଯାଇଥାଏ । କୁଣ୍ଡର କିଛି ଦୂରରେ ବାଲି ବିଛା ଯାଇଥାଏ । ଯିଏ କୁଣ୍ଡରେ ପଇସା ପକାଇବା ପାଇଁ ଇଚ୍ଛା କରେ ସେ ବାଲି ଉପରେ ଠିଆ ହୋଇ କୁଣ୍ଡରେ ପଇସା ପକାଇଥାଏ । ଯଦି ତିନି ଜଣଠାରୁ ଅଧିକ ବ୍ୟକ୍ତି କୁଣ୍ଡରେ ପଇସା ପକାଇ ଦିଅନ୍ତି, ତେବେ ସେହି ପଇସାରେ ଧଳାକନା କିଣା ହୁଏ ନାହିଁ ଏବଂ ସେହି ବର୍ଷକୁ ଅଶୁଭ ଭାବି ପୂଜା କରାଯାଇ ନଥାଏ । ସେହି ପଇସାରେ ମଦ କିଣା ହୁଏ ଏବଂ ଗାଁ ମୁଣ୍ଡରେ ପଶୁବଳି ଦିଆଯାଏ । ସେମାନେ ଭାବନ୍ତି ଯେ ଅଶୁଭ ବର୍ଷ ଯୋଗୁଁ ଯାହା ଅସୁବିଧା ହୁଏ, ତାହା ଗାଁର ପଶୁବଳିଦ୍ୱାରା ସମାଧାନ ହୋଇ ଗାଁରେ ଶାନ୍ତି ସ୍ଥାପନ ହୋଇପାରିବ । ଚଇତ ପରବରେ 'ଟାଙ୍ଗି ପେନୁ' (ଦୁର୍ଗା)ଙ୍କୁ ପୂଜା କରାଯାଏ । ପଲାଶ ଫୁଲକୁ 'ଟାଙ୍ଗି ପେନୁ' ଭଲ ପାଉଥିବା ଯୋଗୁଁ ଦେବୀଙ୍କୁ ପଲାଶ ଫୁଲରେ ମଣ୍ଡିତ କରାଯାଏ, ଏଥିରେ ବଳି ଦିଆଯାଏ ନାହିଁ ଏବଂ ଅଳସୀ ଗଛ ମୂଳରେ ଝୁଣା, ଦୀପ ଦେଇ କ୍ଷୀର ଢାଳି ପୂଜା କରାଯାଏ । ଏହାକୁ 'ଏରିପି ପର୍ବୁ' ବୋଲି କହିଥାନ୍ତି । ଏଥିରେ ମହୁଲ ଗଛକୁ ମଧ୍ୟ ପୂଜା କରାଯାଏ । 'ବେଜୁଣୀ' ନିଜକୁ ସୁନ୍ଦର ଭାବରେ ସଜାଇ ଥାଏ । ସେ ମୁଣ୍ଡରେ ମୟୂରଚୂଳ ସହିତ ଅନେକ ପ୍ରକାରର ରଂଗୀନ ସୂତାକୁ ମୁକୁଟ କରି ପିନ୍ଧିଥାଏ । ପାଦରେ ଘୁଙ୍ଗୁର ମଧ୍ୟ ବନ୍ଧା ଯାଇଥାଏ । ଯୁବକ ଓ ଯୁବତୀମାନେ ସୁନ୍ଦର ସୁନ୍ଦର ଶାଢ଼ୀ ପିନ୍ଧି 'ଡେମ୍‌ସା ନାଚ' ନାଚିଥାନ୍ତି, ଡାମ୍ପ, ଝାଞ୍ଜ ଓ ମହୁରୀରେ ଚାରିଆଡ଼ ଝଙ୍କୃତ ହୋଇଥାଏ । ଗୁରୁମାଇଁ କୁଲାର ଚାଉଳ ଛୁଇଁ ଗାଁର ଲୋକମାନଙ୍କର ଆଗତ ଭବିଷ୍ୟତ କଥା କହିଥାଏ । ଯେଉଁ ସ୍ତ୍ରୀମାନେ ଗୁଡ଼ପାଣି ସାଥୀରେ ଆଣିଥାନ୍ତି, ତାହାକୁ ସେହି ବେଜୁଣୀ (ଗୁରୁମାଇଁ) ପିଇଥାଏ । କନ୍ଧ ସଂପ୍ରଦାୟର ଆଦିବାସୀମାନେ ଗାଁ ଗାଁ ବୁଲି ନାଚ କରିଥାନ୍ତି । ସେମାନଙ୍କ ବିଶ୍ୱାସ ଏହା ଫଳରେ ଚାଷ କାମ ପରବର୍ଷ ଭଲ ହୋଇଥାଏ ।

କୋରାପୁଟ ଜିଲ୍ଲା ଆଦିବାସୀଙ୍କ ଜୀବନରେ ପୂଜା କୃଷିଭିତ୍ତିକ । ସେମାନଙ୍କ ଜୀବନ ସାମାଜିକ ଚଳଣି ଓ ଗୋଷ୍ଠୀ ଜୀବନ ଉପରେ ଆଧାରିତ । ଏମାନେ ଲୋଭ, ଅହଂକାରଠାରୁ ବହୁଦୂରରେ ରହି ସରଳ, ନିଷ୍କପଟ ଜୀବନ ବିତାଇଥାନ୍ତି । ଏମାନେ ବର୍ଷସାରା ପ୍ରକୃତିର ପୂଜା କରି ନିଜର ଜୀବନ ଜୀବିକା ଅତିବାହିତ କରିଥା'ନ୍ତି ।

କୋରାପୁଟ ଜିଲ୍ଲା ଆଦିବାସୀଙ୍କ ଜୀବନରେ ପୂଜା କୃଷିଭିତ୍ତିକ । ସେମାନଙ୍କ ଜୀବନ ସାମାଜିକ ଚଳଣି ଓ ଗୋଷ୍ଠୀ ଜୀବନ ଉପରେ ଆଧାରିତ ।

ବିଭାଗୀୟ ମୁଖ୍ୟ
ଶିକ୍ଷା ବିଭାଗ, ଖଲ୍ଲିକୋଟ (ସ୍ୱୟଂ ଶାସିତ) ମହାବିଦ୍ୟାଳୟ
ବ୍ରହ୍ମପୁର



# ବାୟୁ ପ୍ରଦୂଷଣ ଓ ଯାନବାହାନ

ଶ୍ରୀକାନ୍ତ କୁମାର ପାଣିଗ୍ରାହୀ

**ବି**ଶ୍ୱରେ ଏବେ ମୋଟର ଯାନର ସଂଖ୍ୟା ଆଶାତୀତ ଭାବେ ବୃଦ୍ଧି ପାଇବାରେ ଲାଗିଛି । କ୍ରମାଗତ ବିପୁଳ ଜନସଂଖ୍ୟା ବୃଦ୍ଧି, ସହରାଞ୍ଚଳର ପ୍ରସାର ଏବଂ ଦ୍ରୁତ ଶିଳ୍ପାୟନ ଏହାର କାରଣ । ସାଧାରଣତଃ ଶିଳ୍ପୋନ୍ନତ ଦେଶମାନଙ୍କରେ ଏହାର ବ୍ୟବହାର ଅଧିକ । ଉଦାହରଣ ସ୍ୱରୂପ, ପାଶ୍ଚାତ୍ୟ ରାଷ୍ଟ୍ରସମୂହ, ୟୁରୋପ ଏବଂ ପ୍ରାଚ୍ୟ ଭୂଖଣ୍ଡରେ ଜାପାନ ମୋଟର ଯାନର ବ୍ୟବହାର ନିମିତ୍ତ ପ୍ରସିଦ୍ଧ । ଏଥିରୁ ଘଟୁଥିବା ବାଷ୍ପୀୟ ନିର୍ଗମନ ହେତୁ ପୃଥିବୀର ଅଧିକାଂଶ ମହାନଗରୀ ଏବଂ ବିଶେଷ କରି ବେଜିଙ୍ଗ୍, ବ୍ୟାଙ୍ଗକକ୍, ସାଣ୍ଟିଆଗୋ, ହଂକଙ୍ଗ୍, ସିଙ୍ଗାପୁର, ଦିଲ୍ଲୀ, ମେକ୍ସିକୋ, ସିଓଲ୍, ମାନିଲା ଇତ୍ୟାଦିର ବାୟୁ ଅତିମାତ୍ରାରେ ପ୍ରଦୂଷଣଯୁକ୍ତ । ଭାରତବର୍ଷରେ ଦିଲ୍ଲୀ ବ୍ୟତୀତ ମୁମ୍ବାଇ, କୋଲକାତା, ଚେନ୍ନାଇ, ବାଙ୍ଗାଲୋର, ହାଇଦ୍ରାବାଦ, ପୁନେ, ଅହମଦାବାଦ ଇତ୍ୟାଦି ନଗରଗୁଡ଼ିକ ମଧ୍ୟ ପ୍ରଦୂଷଣଦ୍ୱାରା ଆକ୍ରାନ୍ତ । ଏହି ପ୍ରଦୂଷଣର ବିଷ ପ୍ରକ୍ରିୟାରୁ ରକ୍ଷା ପାଇବା ନିମନ୍ତେ ବର୍ତ୍ତମାନ ବିଶ୍ୱରେ ଅନେକ ରାଷ୍ଟ୍ରରେ ନାନାପ୍ରକାର ଗବେଷଣା କରାଯାଇ ଏହାକୁ ନିୟନ୍ତ୍ରଣରେ ରଖିବା ପାଇଁ ଅହରହ ଉଦ୍ୟମ ଚାଲିଛି ।

ଭାରତ ଭଳି ତୃତୀୟ ବିଶ୍ୱର ଦେଶମାନଙ୍କରେ ଯାନବାହନ ସଂଖ୍ୟା ଅପେକ୍ଷାକୃତ କମ୍ । କିନ୍ତୁ ତନ୍ମଧ୍ୟରୁ ଅଧିକାଂଶ ଠିକ୍ ଅବସ୍ଥାରେ ନଥାଏ । ତେଣୁ ତହିଁରୁ ନିର୍ଗତ ଧୂମ ଅଧିକ ପ୍ରଦୂଷଣକାରୀ । ପରିଣାମରେ କୋଲକାତା ଭଳି ନଗରୀମାନଙ୍କରେ ଏହା ହିଁ ୫୦ ଶତାଂଶ ବାୟୁ ପ୍ରଦୂଷଣ ଲାଗି ଦାୟୀ ।

ବ୍ୟବହୃତ ଇଞ୍ଜିନ୍‌ର ପ୍ରକାରଭେଦ ବିଚାରକୁ ନେଇ ଯାନବାହନଗୁଡ଼ିକୁ ଦୁଇ ଶ୍ରେଣୀରେ ବିଭକ୍ତ କରାଯାଏ । ତହିଁରୁ ଗୋଟିଏ ହେଲା କାର, ବସ୍, ଆଦି ଚାରିଷ୍ଟ୍ରୋକ୍ ଇଞ୍ଜିନ୍ ବିଶିଷ୍ଟ ଯାନବାହନ ଏବଂ ଅନ୍ୟଟି ହେଉଛି ସ୍କୁଟର୍, ମୋଟରସାଇକେଲ ଭଳି ଦୁଇଷ୍ଟ୍ରୋକ୍ ଇଞ୍ଜିନ୍ ବିଶିଷ୍ଟ ଯାନବାହନ । ପ୍ରଥମ ଶ୍ରେଣୀର ଯାନର ମୁଖ୍ୟତଃ ତିନୋଟି ଉତ୍ସରୁ ପ୍ରଦୂଷଣକାରୀ ବାଷ୍ପ ନିର୍ଗତ ହୁଏ । ସେଗୁଡ଼ିକ ହେଲା, ଇନ୍ଧନ ପେଟିକା ଓ ଯୋଗାଣ ବ୍ୟବସ୍ଥା, କ୍ରାଂକ୍ ପେଟିକା ଏବଂ ପୁଚ୍ଛନଳୀ । ତେବେ ତନ୍ମଧ୍ୟରେ ପୁଚ୍ଛନଳୀ ହିଁ ଏହାର ପ୍ରଧାନ ଉତ୍ସ । ଅନ୍ୟପକ୍ଷରେ ଦୁଇଷ୍ଟ୍ରୋକ୍ ଇଞ୍ଜିନଯୁକ୍ତ ଯାନରୁ ପ୍ରାୟ ସମସ୍ତ ବାଷ୍ପ ନିର୍ଗତ ହୋଇଥାଏ



ପୁଚ୍ଛନଳୀ ଦେଇ । କାର୍ ବା ବସ୍‌ରୁ ନିର୍ଗତ ସମୁଦାୟ ହାଇଡ୍ରୋକାର୍ବନ୍‌ସର ପ୍ରାୟ ୧୮ ଶତାଂଶ ଇନ୍ଧନ୍ ପେଟିକା ଓ ଯୋଗାଣ ବ୍ୟବସ୍ଥା ଦେଇ ନିର୍ଗତ ହେଲାବେଳେ ୨୦ ଶତାଂଶ କ୍ରାଂକ୍ ପେଟିକା ଏବଂ ଅବଶିଷ୍ଟ ୫୨ ଶତାଂଶ ହାଇଡ୍ରୋକାର୍ବନ୍ ତଥା ସମସ୍ତ କାର୍ବୋନ୍ ମନୋକ୍ସାଇଡ୍ ଯବକ୍ଷାରଜାନର ଅକ୍ସାଇଡ୍ ସମୂହ ପୁଚ୍ଛନଳୀ ଦେଇ ନିର୍ଗତ ହୁଏ । ଅତଏବ, ଏହା ହାଇଡ୍ରୋକାର୍ବନ୍‌ଭିତ୍ତିକ ଇନ୍ଧନ ବ୍ୟବହାର କରୁଥିବା ସବୁପ୍ରକାର ଯାନବାହନର ସର୍ବାଧିକ ବାୟୁ ପ୍ରଦୂଷଣକାରୀ ଅଙ୍ଗ ।

ଉଭୟ ପେଟ୍ରୋଲ ଓ ଡିଜେଲ୍ ଇଞ୍ଜିନ୍‌ର ପୁଚ୍ଛଧୂମରେ ଏକ ପ୍ରକାର ବାଷ୍ପମାନ ଥାଏ । କିନ୍ତୁ ତହିଁରେ ଏହି ଉପାଦାନଗୁଡ଼ିକର ଅନୁପାତ ବିଭିନ୍ନ (ସାରଣୀ - ୧ ଦ୍ରଷ୍ଟବ୍ୟ) । ପୁନଶ୍ଚ, ଗାଡ଼ିର ତିଆରି, ତାହା ଚଳାଇବା ପଦ୍ଧତି ଓ ଇଞ୍ଜିନ୍‌ର ଅବସ୍ଥା ଉପରେ ନିର୍ଭର କରି ମଧ୍ୟ ଏଥିରେ କେତେକ ପରିବର୍ତ୍ତନ ଆସେ ।

ସାରଣୀ-୧ରୁ ଏହା ସୁସ୍ପଷ୍ଟ ଯେ ପେଟ୍ରୋଲ ଇଞ୍ଜିନ୍ ଅଧିକ ପ୍ରଦୂଷଣକାରୀ । ପୁନଶ୍ଚ ଗାଡ଼ି ସ୍ଥିର ଥିଲାବେଳେ ଏବଂ ବେଗ ହ୍ରାସ କଲା ସମୟରେ ତହିଁରେ ସୂଚିତ ୪ଟିଯାକ ବାୟୁ ପ୍ରଦୂଷଣକାରୀ ଉପାଦାନରୁ ତିନୋଟିର ମାତ୍ରା ବୃଦ୍ଧି ଘଟେ । ଅତଏବ ଇଞ୍ଜିନ୍ ଚାଲୁରଖି ଗାଡ଼ିକୁ ସ୍ଥିର ରଖିଲେ ତାହା ବାୟୁକୁ ଅଧିକ ଦୂଷିତ କରେ ।

ସାରଣୀ 1 - ଇଞ୍ଜିନ୍ ଚାଲୁଥିବାବେଳେ ବିଭିନ୍ନ ଅବସ୍ଥାରେ ଯାନବାହନର ପୁଚ୍ଛଧୂମରେ ଭିନ୍ନ ଭିନ୍ନ ବାଷ୍ପର ଅନୁପାତ (ନିୟୁତ ଭାଗ ପ୍ରତି)

| ବାଷ୍ପ ବା ଉପାଦାନ | ଯାନ ସ୍ଥିର ଥିଲାବେଳେ | ବେଗ ବୃଦ୍ଧି ସମୟରେ | ଦ୍ରୁତବେଗରେ ଚାଲୁଥିବାବେଳେ | ବେଗ ହ୍ରାସ କଲା ସମୟରେ |
|---|---|---|---|---|
| ପେଟ୍ରୋଲ ଇଞ୍ଜିନ୍ | | | | |
| କାର୍ବନ ମନୋକ୍ସାଇଡ୍ | ୬୯,୦୪୦ | ୨୯,୦୦୦ | ୨୭,୦୦୦ | ୩୯,୦୦୦ |
| ହାଇଡ୍ରୋକାର୍ବନ୍ସ | ୫,୩୦୦ | ୧,୬୦୦ | ୧,୦୦୦ | ୧୦,୦୦୦ |
| ଯବକ୍ଷାରଯାନର ଅକ୍ସାଇଡ଼ ସମୂହ | ୩୦ | ୧,୦୬୦ | ୬୫୦ | ୨୦ |
| ଆଲ୍‌ଡିହାଇଡ୍‌ସ | ୩୦ | ୨୦ | ୧୦ | ୨୯୦ |
| ଡିଜେଲ ଇଞ୍ଜିନ୍ | | | | |
| କାର୍ବନ ମନୋକ୍ସାଇଡ୍ | ସାମାନ୍ୟ | ୧,୦୦୦ | ସାମାନ୍ୟ | ସାମାନ୍ୟ |
| ହାଇଡ୍ରୋକାର୍ବନ୍ସ | ୪୦୦ | ୨୦୦ | ୧୦୦ | ୩୦୦ |
| ଯବକ୍ଷାରଯାନର ଅକ୍ସାଇଡ୍ ସମୂହ | ୬୦ | ୩୫୦ | ୨୪୦ | ୩୦ |
| ଆଲ୍‌ଡିହାଇଡ୍‌ସ | ୧୦ | ୨୦ | ୧୦ | ୩୦ |

ସେହିପରି ଇଞ୍ଜିନ୍ ଠିକ୍ ଅବସ୍ଥାରେ ନଥିଲେ ମଧ୍ୟ ତହିଁରୁ ଏହିସବୁ ବାଷ୍ପ ଅଧିକ ପରିମାଣର ନିର୍ଗତ ହୁଏ । ଆମ ଦେଶରେ ଅଧିକାଂଶ ସହରରେ ଚାଲୁଥିବା ବହୁ ଯାନବାହନର ଇଞ୍ଜିନ୍ ଠିକ୍ ଅବସ୍ଥାରେ ନଥାଏ । ଏଥିରୁ ଅଧିକ ଧୂମ ଓ ଶବ୍ଦ ବାହାରେ । ପୁନଶ୍ଚ ଓ ସର୍ବସାଧାରଣଙ୍କ ପାଇଁ ବ୍ୟବହୃତ ଏପରି ଯାନବାହନଗୁଡ଼ିକୁ ବସଷ୍ଟାଣ୍ଡ ବା ରାସ୍ତାକଡ଼ରେ ଇଞ୍ଜିନ୍ ଚାଲୁ କରି ଦୀର୍ଘ ସମୟ ଧରି ଠିଆକରି ରଖିବାର ଦେଖାଯାଏ । ଆମ ରାଜଧାନୀ ଭୁବନେଶ୍ୱରରେ ଚାଲୁଥିବା ଅଧିକାଂଶ ଟାଉନବସ ଅବସ୍ଥା ଏହିପରି । ପରିବେଶ ପ୍ରଦୂଷଣ ଦୃଷ୍ଟିରୁ ଏହା ଅତି ମାରାତ୍ମକ ।

ଆମ ଦେଶରେ ଅଧିକାଂଶ ସହରରେ ଚାଲୁଥିବା ବହୁ ଯାନବାହନର ଇଞ୍ଜିନ୍ ଠିକ୍ ଅବସ୍ଥାରେ ନଥାଏ । ଏଥିରୁ ଅଧିକ ଧୂମ ଓ ଶବ୍ଦ ବାହାରେ । ପୁନଶ୍ଚ ଓ ସର୍ବସାଧାରଣଙ୍କ ପାଇଁ ବ୍ୟବହୃତ ଏପରି ଯାନବାହନଗୁଡ଼ିକୁ ବସଷ୍ଟାଣ୍ଡ ବା ରାସ୍ତାକଡ଼ରେ ଇଞ୍ଜିନ୍ ଚାଲୁ କରି ଦୀର୍ଘ ସମୟ ଧରି ଠିଆକରି ରଖିବାର ଦେଖାଯାଏ । ଆମ ରାଜଧାନୀ ଭୁବନେଶ୍ୱରରେ ଚାଲୁଥିବା ଅଧିକାଂଶ ଟାଉନବସ ଅବସ୍ଥା ଏହିପରି । ପରିବେଶ ପ୍ରଦୂଷଣ ଦୃଷ୍ଟିରୁ ଏହା ଅତି ମାରାତ୍ମକ ।

ସ୍କୁଟର, ମୋଟର ସାଇକେଲ ଆଦି ଯାନରେ ଦୁଇଷ୍ଟ୍ରୋକ୍ ବିଶିଷ୍ଟ ପେଟ୍ରୋଲ ଇଞ୍ଜିନ୍ ବ୍ୟବହୃତ ହୁଏ । ଚାରିଷ୍ଟ୍ରୋକ୍ ଇଞ୍ଜିନ୍ ବିଶିଷ୍ଟ ଯାନଠାରୁ ଏହା ଅଧିକ ପ୍ରଦୂଷଣକାରୀ । କାରଣ ଏଥିରେ ଦହନ ହେଉଥିବା ବାୟୁ-ଇନ୍ଧନର ମିଶ୍ରଣରେ ଇନ୍ଧନର ଅନୁପାତ ତୁଳନାତ୍ମକ ଭାବେ ଅଧିକ । ଚାରିଷ୍ଟ୍ରୋକ୍ ଇଞ୍ଜିନ୍‌ଯୁକ୍ତ କାର, ବସ ଆଦି ଯାନରେ ଏହା ୧୪.୭:୧ ହେବା ସ୍ଥଳେ ଏଥିରେ ତାହା ୧୨:୧ ଅଟେ । ଅତଏବ ତାହାର ପୁଚ୍ଛଧୂମରେ ୧୦ରୁ ୩୦ ଗୁଣ ହାଇଡ୍ରୋକାର୍ବନ ଏବଂ ଯଥେଷ୍ଟ ଅଧିକ କାର୍ବନ ମନୋକ୍ସାଇଡ୍ ଥାଏ । ଅବଶ୍ୟ ଏଥିରେ ଯବକ୍ଷାରଜାନ୍ ଅକ୍ସାଇଡ଼ଗୁଡ଼ିକର ଅନୁପାତ କମ୍ ।

ମୋଟର ଯାନରୁ ନିର୍ଗତ ସମସ୍ତ ବାଷ୍ପୀୟ ବିଷାକ୍ତ ପଦାର୍ଥମାନଙ୍କର ମନୁଷ୍ୟର ସ୍ୱାସ୍ଥ୍ୟ ଉପରେ ଏଗୁଡ଼ିକ ମାରାତ୍ମକ କୁପ୍ରଭାବମାନ ରହିଛି । ଅରଣ୍ୟସଂପଦ, କୃଷିଠାରୁ ଆରମ୍ଭ କରି ନଦୀ, ହ୍ରଦ, ଝରଣା ଇତ୍ୟାଦିର ଜଳଜ ଜୀବନ ମଧ୍ୟ ଏହାଦ୍ୱାରା ପ୍ରଭାବିତ ହୋଇଥାଏ ।

ଏହି ଧୂଆଁର ଅନ୍ୟତମ ମୁଖ୍ୟ ପ୍ରଦୂଷଣକାରୀ ଉପାଦାନ କାର୍ବନ ମନୋକ୍ସାଇଡ୍, ଇନ୍ଧନର ଅସଂପୂର୍ଣ୍ଣ ଦହନ ହେତୁ ସୃଷ୍ଟି ହୋଇଥାଏ । ପେଟ୍ରୋଲ ଓ ଡିଜେଲ ଆଦି ହାଇଡ୍ରୋକାର୍ବନ ଭିତ୍ତିକ ଇନ୍ଧନ ଅଙ୍ଗାର ଏବଂ ଉଦ୍‌ଜାନ ପରମାଣୁ ନେଇ ଗଠିତ ରାସାୟନିକ ପଦାର୍ଥ । ଏହା ସଂପୂର୍ଣ୍ଣ ଦହନ ହେଲେ ବାୟୁର ଅମ୍ଳଜାନ ସହିତ ମିଳିତ ହୋଇ ତାହା ଯଥାକ୍ରମେ ଅଙ୍ଗାରକାମ୍ଳ ବାଷ୍ପ ଏବଂ ଜଳ ସୃଷ୍ଟି କରନ୍ତି । କିନ୍ତୁ ଦହନ ଅସଂପୂର୍ଣ୍ଣ ହେଲେ ଅଙ୍ଗାରକାମ୍ଳ ବାଷ୍ପ ପରିବର୍ତ୍ତେ କାର୍ବନ ମନୋକ୍ସାଇଡ୍ ଜାତ ହୁଏ । ଏହି କାରଣରୁ ଯାନ ସ୍ଥିର ଥିଲେ ଏହାର ଧୂଆଁରେ ଏ ବାଷ୍ପର ମାତ୍ରା ବୃଦ୍ଧି ଘଟେ । କାର୍ବନ ମନୋକ୍ସାଇଡ୍ ରକ୍ତର ହେମୋଗ୍ଲୋବିନ୍ ସହିତ ସହଜରେ ରାସାୟନିକ ବନ୍ଧନରେ ବାନ୍ଧି ହୋଇପଡ଼େ । ଫଳରେ ତାହାର ଅମ୍ଳଜାନ ବହନକାରୀ ଗୁଣ ନଷ୍ଟ ହୋଇଥାଏ । କାର୍ବନ ମନୋକ୍ସାଇଡ୍‌ର ରକ୍ତରେ ମିଶିବା ଗୁଣ ଅମ୍ଳଜାନଠାରୁ ଅନେକଗୁଣ ଅଧିକ ।

ସେହିପରି ନାଇଟ୍ରୋଜେନ ଅକ୍ସାଇଡ଼ ସେବନଦ୍ୱାରା ବିବିଧ ଶ୍ୱାସଜନିତ ବ୍ୟାଧିର ସମ୍ଭାବନା ବୃଦ୍ଧିପାଏ । ଏଥିଯୋଗୁଁ ସହରାଞ୍ଚଳରେ ବସବାସ କରୁଥିବା ଲୋକେ ଉପରୋକ୍ତ ରୋଗଦ୍ୱାରା ଅଧିକ ମାତ୍ରାରେ ଆକ୍ରାନ୍ତ ହୋଇଥାନ୍ତି । ବୈଜ୍ଞାନିକମାନେ ବିଶ୍ୱାସ କରନ୍ତି ଯେ ଏହି ବିଷାକ୍ତ ବାଷ୍ପ ଉଦ୍ଭିଦ ଜଗତକୁ ମଧ୍ୟ ପ୍ରଭାବିତ କରେ ।

ଇନ୍ଧନରେ ଥିବା ହାଇଡ୍ରୋକାର୍ବନ ପୁଚ୍ଛଧୂମରେ ବାଷ୍ପ ଆକାରରେ ତଥା କ୍ଷୁଦ୍ରାଦପି କ୍ଷୁଦ୍ର କଣିକା ଆକାରରେ ନିର୍ଗତ ହୋଇ ବାୟୁରେ ମିଶି ଆମ ଫୁସ୍‌ଫୁସ୍ ମଧ୍ୟକୁ ପ୍ରବେଶ କରିବା ସ୍ୱାସ୍ଥ୍ୟପକ୍ଷେ କ୍ଷତିକାରକ । ପୁନଶ୍ଚ, ବାଷ୍ପୀଭୂତ ହାଇଡ୍ରୋକାର୍ବନର କିଛି ଅଂଶ ସୂର୍ଯ୍ୟାଲୋକ ଉପସ୍ଥିତିରେ ବାୟୁର ଅମ୍ଳଜାନ ସହିତ ମିଶି ଆଲଡ଼ିହାଇଡ୍‌ରେ ପରିଣତ ହୋଇଯାଏ । ଏହା ଆଖି ଓ ଫୁସ୍‌ଫୁସ୍‌କୁ କ୍ଷତି ପହଞ୍ଚାଏ । ଇଞ୍ଜିନର ଉତ୍ତାପ ହେତୁ ବାୟୁରେ ଥିବା ଯବକ୍ଷାରଜାନ ଓ ଅମ୍ଳଜାନ ମିଳିତ ହୋଇ ବିବିଧ ଅକ୍ସାଇଡ୍‌ସ ମଧ୍ୟ ସୃଷ୍ଟି କରନ୍ତି । ଏହି ଅମ୍ଳଗୁଣଧାରୀ ବାଷ୍ପଗୁଡ଼ିକ ଉଭୟ ଉଦ୍ଭିଦ ଏବଂ ମନୁଷ୍ୟ ସମେତ ଅନ୍ୟ ଜୀବମାନଙ୍କର ସ୍ୱାସ୍ଥ୍ୟହାନି ଘଟାଏ । ଯବକ୍ଷାରଜାନର ଅକ୍ସାଇଡ଼ଗୁଡ଼ିକ ଯାନବାହନରୁ ନିର୍ଗତ ହାଇଡ୍ରୋକାର୍ବନର ଧୂମରେ ସୂର୍ଯ୍ୟ କିରଣର ଉପସ୍ଥିତିରେ ମିଶି ପେରେକ୍ସି ଏସିଟୋ ନାଇଟ୍ରାଇଲ ନାମକ ବିପଜ୍ଜନକ ପଦାର୍ଥ ଉତ୍ପନ୍ନ କରେ । ଏଥିରୁ ସ୍ମଗ ସୃଷ୍ଟି ହୁଏ, ଯାହାକି ଶ୍ୱାସକ୍ରିୟାଜନିତ ବିବିଧ ବ୍ୟାଧିର କାରଣ । ଏହାବ୍ୟତୀତ ଯବକ୍ଷାରଜାନର ଅକ୍ସାଇଡ୍‌ମାନେ ଅମ୍ଳବୃଷ୍ଟିକୁ ତ୍ୱରାନ୍ୱିତ କରିବା ସଂଗେସଂଗେ ରବର ଓ କାର୍ପାସ ନିର୍ମିତ ବସ୍ତୁକୁ ମଧ୍ୟ କ୍ଷତି ପହଞ୍ଚାଏ । ପୁନଶ୍ଚ ଏହି ବାଷ୍ପଗୁଡ଼ିକ ସୂର୍ଯ୍ୟାଲୋକର ଉପସ୍ଥିତିରେ ଫ୍ରିରାଡ଼ିକାଲସ ଶ୍ରେଣୀର ନାନାଦି ସକ୍ରିୟ ପଦାର୍ଥ ସୃଷ୍ଟି କରନ୍ତି ଯାହାକି ଉଭୟ ପ୍ରାଣୀ ଓ ଉଦ୍ଭିଦଜଗତ ଲାଗି ହାନିକାରକ ।

ଯାନବାହନରୁ ନିର୍ଗତ ଧୂଆଁର ଅନ୍ୟତମ ଉପାଦାନ ସଲଫର୍ ଡାଇଅକ୍ସାଇଡ୍ ($SO_2$) ଅମ୍ଳଗୁଣ ବିଶିଷ୍ଟ ଏବଂ ଏହା ଅମ୍ଳବୃଷ୍ଟିର ପ୍ରଧାନ କାରଣ । ଆମ ଶ୍ୱାସକ୍ରିୟା ବ୍ୟବସ୍ଥାକୁ ମଧ୍ୟ ଏହା କ୍ଷତିଗ୍ରସ୍ତ କରେ । ଅନ୍ୟ ପକ୍ଷରେ ଯାନବାହନର ପୁଚ୍ଛଧୂମରୁ ନିର୍ଗତ ଅଙ୍ଗାରକଣିକା ବିଷାକ୍ତ ନହେଲେ ବି ତାହା ଶ୍ୱାସକ୍ରିୟା ବ୍ୟବସ୍ଥାରେ ପ୍ରବେଶ କରି ତାହାକୁ ହାନି ପହଞ୍ଚାଇ ଥାଏ ।

ନିକଟରେ ମୁମ୍ବାଇଠାରେ ହୋଇଥିବା ଏକ ଅଧ୍ୟୟନରୁ ଜଣାପଡ଼ିଛି ଯେ, ସେଠାରେ ଯାନବାହନରୁ ପ୍ରତ୍ୟହ ୪୦,୦୦୦ ଟନ କାର୍ବନ ମନୋକ୍ସାଇଡ୍, ୫୮ ଟନ୍ ଯବକ୍ଷାରଜାନର ଅକ୍ସାଇଡ୍ ସମୂହ ୩୩୮ ଟନ ହାଇଡ୍ରୋକାର୍ବନ ଏବଂ ୮୨ ଟନ୍ ସଲ୍‌ଫର ଡାଇଅକ୍ସାଇଡ଼ ନିର୍ଗତ ହୁଏ । ଆମ ଦେଶର ଅନ୍ୟାନ୍ୟ ମହାନଗରୀର ଅବସ୍ଥା ପ୍ରାୟ ଏଭଳି ଏବଂ ଧୀରେ ଧୀରେ ଏଗୁଡ଼ିକର ମାତ୍ରା ବୃଦ୍ଧି ପାଇଲାଣି । ଅତଏବ ଏହି ଧାରା ଅବ୍ୟାହତ ରହିଲେ ସହର, ନଗରମାନଙ୍କରେ ବାୟୁ ପ୍ରଦୂଷଣ କ୍ରମାଗତ ଭାବେ ବଢ଼ି ଚାଲିବ ଏବଂ ଏହାର ଅଧିବାସୀମାନଙ୍କ ପାଇଁ ତାହା ଗଭୀର ଉଦ୍‌ବେଗର କାରଣ ହେବ ।

ପରିବେଶ ନିର୍ଦ୍ଦେଶକ
ଯୋଜନା ଆୟୋଗ, ନୂଆଦିଲ୍ଲୀ



ନୂଆପଡ଼ାର ଅପର ଜଙ୍କ ଜଳାଶୟ

# ଜଳ ସଂପଦ : ବିକାଶ ଓ ଯୋଜନା

ମୋହନ ଚରଣ ମାଝୀ

ରାଜ୍ୟର ଜଳସଂପଦ ସମ୍ବନ୍ଧୀୟ ଯୋଜନା ଓ ଉନ୍ନତିକରଣ ତଥା ଜଳସେଚନ, ଜଳଯୋଗାଣ, ଜଳ ନିଷ୍କାସନ ଓ ବନ୍ୟା ନିୟନ୍ତ୍ରଣ ଆଦି କାର୍ଯ୍ୟ ସହ ବୃହତ୍, ମଧ୍ୟମ, କ୍ଷୁଦ୍ର ଜଳସେଚନ ଓ ଉଠା ଜଳସେଚନ ଯୋଜନାଗୁଡ଼ିକ ପରିଚାଳନା, ରକ୍ଷଣାବେକ୍ଷଣ, ଭୂତଳ ଜଳର ଅନ୍ୱେଷଣ ଓ ନିୟନ୍ତ୍ରଣ, ମନୋନୀତ ସେଚାଞ୍ଚଳରେ କ୍ଷେତ୍ରନାଳୀ ନିର୍ମାଣ ଆଦି କାର୍ଯ୍ୟକ୍ରମର ସଫଳ ରୂପାୟନ ପାଇଁ ଜଳସଂପଦ ବିଭାଗ କାର୍ଯ୍ୟ କରିଥାଏ ।

ଜଳସେଚନ ସାମଗ୍ରିକ ଉନ୍ନତିକରଣର ଏକ ପ୍ରମୁଖ ଅଙ୍ଗ । ଜଳସେଚନର ଅଭିବୃଦ୍ଧି ଖାଦ୍ୟ ନିରାପତ୍ତା ଏବଂ ଅର୍ଥନୈତିକ ଅଭିବୃଦ୍ଧିରେ ସହାୟକ ହୋଇଥାଏ । ରାଜ୍ୟର ମୋଟ ୬୧.୬୫ ଲକ୍ଷ ହେକ୍ଟର ଚାଷୋପଯୋଗୀ ଜମି ମଧ୍ୟରୁ ୪୯.୯୦ ଲକ୍ଷ ହେକ୍ଟର ଜମି ସେଚ ଉପଯୋଗୀ ଅଟେ । ୨୦୦୬ ମସିହା ଜୁନ୍ ମାସ ସୁଦ୍ଧା ୨୧.୬୪ ଲକ୍ଷ ହେକ୍ଟର ଚାଷ ଜମିରେ ଜଳସଂପଦ ବିଭାଗ ଅନ୍ତର୍ଗତ ବୃହତ୍, ମଧ୍ୟମ, କ୍ଷୁଦ୍ର ଓ ଉଠାଜଳସେଚନ ପ୍ରକଳ୍ପଗୁଡ଼ିକ ମାଧ୍ୟମରେ ସେଚ ବ୍ୟବସ୍ଥା କରାଯାଇଛି ।

> ରାଜ୍ୟର ମୋଟ ୧୮ ଗୋଟି ପ୍ରକଳ୍ପ କେନ୍ଦ୍ର ସରକାରଙ୍କ ଅନୁମୋଦନ ଲାଭ କରିଛି । ଏହାର ଅଦ୍ୟାବଧି ଆକଳିତ ମୂଲ୍ୟ ୫୦୮୫.୫୫ କୋଟି ଟଙ୍କା ଏବଂ ଏହା ଶେଷ ହେଲେ ୩.୧୧ ଲକ୍ଷ ହେକ୍ଟର ଅଧିକ ଜମିକୁ ଜଳସେଚିତ କରାଯାଇପାରିବ ।

୨୦୦୬-୦୭ ଆର୍ଥିକ ବର୍ଷରେ ୫୦,୨୬୦ ହେକ୍ଟର ଜମିକୁ ଜଳସେଚିତ କରିବା ଲାଗି ୫୫୩.୫୦ କୋଟି ଟଙ୍କା ବ୍ୟୟବରାଦ ପ୍ରସ୍ତାବ କରାଯାଇଥିଲା । ବର୍ତ୍ତମାନ ଏହି କାର୍ଯ୍ୟ ପାଇଁ ଅଧିକ ୨୩୫.୩୪ କୋଟି ଟଙ୍କା ବ୍ୟୟବରାଦର ପ୍ରସ୍ତାବ ରଖାଯାଇଛି, ଯେଉଁଥିରେ ବୃହତ୍ ଓ ମଧ୍ୟମ ଜଳସେଚନ ପାଇଁ ୧୯୦.୫୩ କୋଟି ଟଙ୍କା, କ୍ଷୁଦ୍ର ଜଳସେଚନ ପାଇଁ ୨୮.୧୪୮ କୋଟି ଟଙ୍କା, ଉଠାଜଳସେଚନ ପାଇଁ ୩.୦୦ କୋଟି ଟଙ୍କା, ବନ୍ୟା ନିୟନ୍ତ୍ରଣ ପାଇଁ ୮.୬୦ କୋଟି ଟଙ୍କା ଅନ୍ତର୍ଭୁକ୍ତ ରହିଛି । ବୃହତ୍ ଓ ମଧ୍ୟମ ଜଳସେଚନ ଜରିଆରେ ସମଗ୍ର ରାଜ୍ୟର ୩୧.୩୦ ଲକ୍ଷ ହେକ୍ଟର ଚାଷପୋଯୋଗୀ ଜମିକୁ ଜଳସେଚିତ କରାଯିବାର ଲକ୍ଷ୍ୟଧାର୍ଯ୍ୟ କରାଯାଇଛି । ୨୦୦୬-୦୭ ଆର୍ଥିକ ବର୍ଷରେ ବୃହତ୍ ଓ ମଧ୍ୟମ ଜଳସେଚନ ବାବଦକୁ ମୋଟ ୪୭୧.୦୫ କୋଟି ଟଙ୍କାର ବ୍ୟୟବରାଦ ପ୍ରସ୍ତାବ ଥିଲା । ସେହିପରି ଅଧିକ ୧୮,୨୧୦ ହେକ୍ଟର ଜମିକୁ ଜଳସେଚନ ସୁବିଧା ଯୋଗାଇ ଦେବାକୁ ଯୋଜନା କରାଯାଇଛି ।

ଜଳସଂପଦ ବିଭାଗ ବିଭିନ୍ନ ସଂସ୍ଥା (ବୈଦେଶିକ ତଥା ଆନ୍ତର୍ଜାତିକ)ମାନଙ୍କ ଆର୍ଥିକ ସହାୟତାରେ ବିଭିନ୍ନ କାର୍ଯ୍ୟ ରୂପାୟନ କରିଥାଏ । ରାଜ୍ୟରେ ଚାଲିଥିବା ବିଭିନ୍ନ ପ୍ରକଳ୍ପ ଲାଗି ଜାପାନ ଆନ୍ତର୍ଜାତୀୟ ସେବା ବ୍ୟାଙ୍କ (ଜେ.ବି.ଆଇ.ସି.), ବିଶ୍ୱବ୍ୟାଙ୍କ, ନାବାର୍ଡ଼ ତଥା କେନ୍ଦ୍ର ସରକାରଙ୍କ ତ୍ୱରିତ ଜଳସେଚନ ସୁବିଧା କାର୍ଯ୍ୟକ୍ରମ (ଏ.ଆଇ.ବି.ପି.) ସହାୟତା ଯୋଗାଇ ଦେଇଆସୁଛନ୍ତି । ରେଙ୍ଗାଲି ବାମପାର୍ଶ୍ୱ କେନାଲର ନିର୍ମାଣ କାର୍ଯ୍ୟ ଜାପାନ ଆନ୍ତର୍ଜାତିକ ସେବା ବ୍ୟାଙ୍କ ଋଣ ସହାୟତାରେ ୧୯୯୭ରୁ ଚାଲିଛି । ଏହି ପ୍ରକଳ୍ପ ଲାଗି ବର୍ତ୍ତମାନ ସୁଦ୍ଧା ୪୨୬.୯୩ କୋଟି ଟଙ୍କା ବ୍ୟୟ କରାଯାଇଛି । ପ୍ରକଳ୍ପ ଶେଷ ହେଲେ ୨୯,୧୭୬ ହେକ୍ଟର ଚାଷ ଜମି ଜଳସେଚିତ ହୋଇପାରିବ । ସେହିପରି ଜଳ ବିଜ୍ଞାନ ପ୍ରକଳ୍ପ ବିଶ୍ୱବ୍ୟାଙ୍କ ସହାୟତାରେ ପରିଚାଳିତ ହେଉଛି । ଭୂପୃଷ୍ଠ ଓ ଭୂତଳ ଜଳର ସଦୁପଯୋଗ, ମରୁଡ଼ି ସମ୍ବନ୍ଧୀୟ ପର୍ଯ୍ୟବେକ୍ଷଣ ଓ ପରିଚାଳନା ଆଦି ଏହି ପ୍ରକଳ୍ପ ମଧ୍ୟରେ ରହିଛି । ଜଳସେଚନର ପ୍ରଗତିକୁ ଗତିଶୀଳ କରିବା ପାଇଁ କେନ୍ଦ୍ର ସରକାରଙ୍କ ପକ୍ଷରୁ ତ୍ୱରିତ ଜଳସେଚନ ସୁବିଧା କାର୍ଯ୍ୟକ୍ରମ ପ୍ରଚଳନ କରିଛନ୍ତି । ରାଜ୍ୟରେ ନିର୍ମାଣାଧୀନ ବୃହତ୍ ଜଳସେଚନ ପ୍ରକଳ୍ପଗୁଡ଼ିକର ନିର୍ମାଣକୁ ତ୍ୱରାନ୍ୱିତ କରିବା ଏବଂ ଶେଷ ପର୍ଯ୍ୟାୟରେ ଥିବା ନିର୍ମାଣାଧୀନ ପ୍ରକଳ୍ପଗୁଡ଼ିକୁ ଶୀଘ୍ର ଶେଷ କରିବା ଏହି କାର୍ଯ୍ୟକ୍ରମର ମୁଖ୍ୟ ଲକ୍ଷ୍ୟ ।

ରାଜ୍ୟର ମୋଟ ୧୮ ଗୋଟି ପ୍ରକଳ୍ପ କେନ୍ଦ୍ର ସରକାରଙ୍କ ଅନୁମୋଦନ ଲାଭ କରିଛି । ଏହାର ଅଦ୍ୟାବଧି ଆକଳିତ ମୂଲ୍ୟ ୫୦୮୫.୫୫ କୋଟି ଟଙ୍କା ଏବଂ ଏହା ଶେଷ ହେଲେ ୩.୧୧ ଲକ୍ଷ ହେକ୍ଟର ଅଧିକ ଜମିକୁ ଜଳସେଚିତ କରାଯାଇପାରିବ । ଜୁନ୍ ୨୦୦୬ ସୁଦ୍ଧା ଏହି ପ୍ରକଳ୍ପମାନଙ୍କ ଦ୍ୱାରା ୫୫,୨୭୪ ହେକ୍ଟର ଜମିକୁ ଜଳସେଚନ

ସୁବିଧା କରାଯାଇଛି । ଏହାସହ ଭିତ୍ତିଭୂମି ଉନ୍ନୟନ ପାଇଁ ୧୯୯୫ରୁ ଜାତୀୟ କୃଷି ଓ ଗ୍ରାମାଞ୍ଚଳ ଉନ୍ନୟନ ବ୍ୟାଙ୍କ ନାବାର୍ଡ଼-ଆର୍‌ଆଇଡିଏଫ୍ ଯୋଜନା ପ୍ରଚଳନ କରିଛି । ଏହାଦ୍ୱାରା ରାଜ୍ୟ ସରକାରଙ୍କୁ ବିଭିନ୍ନ ପ୍ରକଳ୍ପ ଲାଗି ଆର୍ଥିକ ସହାୟତା ମିଳିଥାଏ । ଏହି ପ୍ରକଳ୍ପ ଅଧୀନରେ ୨୦୦୬ ଜୁନ୍ ସୁଦ୍ଧା ୪୮,୦୯୭ ହେକ୍ଟର ଜମିକୁ ଜଳସେଚିତ କରାଯାଇପାରିଛି । ତେବେ ଏହି ସହାୟତା ରାଶିରେ ୫୮ଟି ପ୍ରକଳ୍ପର କାର୍ଯ୍ୟ ଚାଲିଛି । ଏହି ପ୍ରକଳ୍ପଗୁଡ଼ିକ ଶେଷ ହେଲେ ରାଜ୍ୟର ୪୮,୬୨୦ ହେକ୍ଟର ଜମି ଜଳସେଚିତ ହୋଇପାରିବ ।

୨୦୦୬-୦୭ ଆର୍ଥିକ ବର୍ଷରେ କ୍ଷୁଦ୍ର ଜଳସେଚନଦ୍ୱାରା ୧୨,୦୫୦ ହେକ୍ଟର ଅଧିକ ଜମିକୁ ସେଚକ୍ଷମ କରାଇବା ପାଇଁ ୪୫.୭୦ କୋଟି ଟଙ୍କାର ବ୍ୟୟବରାଦ ରଖାଯାଇଥିଲା । ବର୍ତ୍ତମାନ ଅତିରିକ୍ତ ବ୍ୟୟବରାଦ ୧୫.୨୧ କୋଟି ଟଙ୍କା ବ୍ୟୟବରାଦର ପ୍ରସ୍ତାବ ରହିଛି । ତେବେ ଚଳିତ ବର୍ଷ ଅକ୍ଟୋବର ଶେଷ ସୁଦ୍ଧା ୧୬.୫୯ କୋଟି ଟଙ୍କା ବ୍ୟୟ କରାଯାଇଛି । ତେବେ ଜୁନ୍ ୨୦୦୬ ସୁଦ୍ଧା ୨୩ ଗୋଟି ପ୍ରକଳ୍ପ ନାବାର୍ଡ଼ ସହାୟତାରେ ଓ ୩ ଗୋଟି ପ୍ରକଳ୍ପ ଏ.ଆଇ.ବି.ପି. ଯୋଜନାରେ ଶେଷ କରାଯାଇଛି ଓ ମୋଟ ୭,୮୨୪ ହେକ୍ଟର ଜମିକୁ ଜଳସେଚିତ କରାଯାଇ ପାରିଛି ।

ଓଡ଼ିଶା ସରକାରଙ୍କପକ୍ଷରୁ ଅଚଳ ହୋଇପଡ଼ିଥିବା କ୍ଷୁଦ୍ର ଜଳସେଚନ ପ୍ରକଳ୍ପର ପୁନରୁଦ୍ଧାର ପାଇଁ କେନ୍ଦ୍ର ସରକାରଙ୍କୁ ୨୦୦୫ରେ ଏକ ପ୍ରସ୍ତାବ ଦିଆଯାଇଥିଲା । ପରବର୍ତ୍ତୀ ପର୍ଯ୍ୟାୟରେ କେନ୍ଦ୍ର ସରକାରଙ୍କର ନିର୍ଦ୍ଦେଶକ୍ରମେ ବିଶ୍ୱବ୍ୟାଙ୍କ ସହାୟତାରେ ପ୍ରାୟ ୧୪୦୦ ଗୋଟି ଅଚଳ କ୍ଷୁଦ୍ର ଜଳସେଚନ ପ୍ରକଳ୍ପର ପୁନରୁଦ୍ଧାର ପାଇଁ ୫୦୦ କୋଟି ଟଙ୍କାର ପ୍ରସ୍ତାବ ରହିଛି । ଏହାଦ୍ୱାରା ୧,୩୨,୦୦୦ ହେକ୍ଟର ଜମି ଜଳସେଚିତ ହୋଇପାରିବ ବୋଲି ଲକ୍ଷ୍ୟଧାର୍ଯ୍ୟ କରାଯାଇଛି ।

ଏହିସବୁ ପ୍ରକଳ୍ପ ଲାଗି ଆର୍ଥିକ ଅନୁଦାନ ଠିକ୍ ଭାବେ ମିଳିପାରିଲେ, ରାଜ୍ୟରେ ଜଳସଂପଦର ଉପଯୋଗ ମଧ୍ୟ ଠିକ୍ ଭାବେ ହୋଇପାରିବ । ଏହାଦ୍ୱାରା କୃଷିଜନିତ ଉତ୍ପାଦନ ବୃଦ୍ଧି ଓ ଗ୍ରାମାଞ୍ଚଳରେ ଜୀବନଧାରଣର ମାନରେ ପରିବର୍ତ୍ତନ ଆସିବା ସମ୍ଭବପର ହେବ ।

ରାଜ୍ୟ ସରକାର ୨୦୦୧ରେ 'ବିଜୁ କୃଷକ ବିକାଶ ଯୋଜନା' ନାମକ ଏକ ନୂତନ ସ୍କିମ୍ ପ୍ରବର୍ତ୍ତନ କରିଛନ୍ତି । ସାଧାରଣ ଲୋକଙ୍କ ଭାଗିଦାରୀ ଏବଂ ସହଯୋଗରେ ଅଚଳ ହୋଇଯାଇଥିବା କ୍ଷୁଦ୍ର ଜଳସେଚନ ପ୍ରକଳ୍ପଗୁଡ଼ିକର ପୁନରୁଦ୍ଧାର ସହ ନୂଆ କ୍ଷୁଦ୍ର ଜଳସେଚନ ପ୍ରକଳ୍ପ ନିର୍ମାଣ ଏହି ଯୋଜନାର ମୁଖ୍ୟ ଲକ୍ଷ୍ୟ ।

ଏହି ଯୋଜନାରେ ହିତାଧିକାରୀମାନେ ପ୍ରକଳ୍ପ ମୂଲ୍ୟର ଶତକଡ଼ା ୨୦ ପ୍ରତିଶତ ଅଂଶ ଶ୍ରମ ବା ଆର୍ଥିକ ସହାୟତାଦ୍ୱାରା ବହନ କରିବେ ଏବଂ ଅବଶିଷ୍ଟ ୮୦ ପ୍ରତିଶତ ଖର୍ଚ୍ଚ ସରକାର ବହନ କରିବେ । ବର୍ତ୍ତମାନ ସୁଦ୍ଧା ୩,୬୩୭ଟି ଉଠା ଏବଂ ୨୨୬ଟି କ୍ଷୁଦ୍ର ସେଚପ୍ରକଳ୍ପକୁ ଏହି ଯୋଜନା ମାଧ୍ୟମରେ ଅନୁମୋଦନ କରାଯାଇଛି ଯାହାଦ୍ୱାରା ୯୫,୬୪୦ ହେକ୍ଟର ଜମିକୁ ଜଳସେଚିତ କରାଯାଇପାରିବ । ଚଳିତ ଆର୍ଥିକ ବର୍ଷରେ ଅତିରିକ୍ତ ବଜେଟ୍‌ରେ ଏହି ଯୋଜନାରେ ଉଠାଜଳସେଚନ ପ୍ରକଳ୍ପ ନିମନ୍ତେ ୧୨୯୩.୭୬ ଲକ୍ଷ ଟଙ୍କାର ବ୍ୟୟବରାଦର ପ୍ରସ୍ତାବ ରଖାଯାଇଛି ଓ କ୍ଷୁଦ୍ର ଜଳସେଚନ ପ୍ରକଳ୍ପ ନିମନ୍ତେ ୩୦୦.୦୨ ଲକ୍ଷ ଟଙ୍କାର ବ୍ୟୟବରାଦ ରଖାଯାଇଛି । ଉଠାଜଳସେଚନ ପ୍ରକଳ୍ପ ରାଜ୍ୟରେ ୧୭,୬୧୮ଟି ପ୍ରକଳ୍ପ ସ୍ଥାପନ କରି ୩,୪୧,୭୬୦ ହେକ୍ଟର ଉଠାଜଳସେଚନ ଜମି ସୃଷ୍ଟି କରିଅଛି । ଏଥିରୁ ୧୦,୪୬୬ଟି ପ୍ରକଳ୍ପ ପାଣିପଞ୍ଚାୟତକୁ ହସ୍ତାନ୍ତର କରାଯାଇଛି । ତେବେ ଗତ ବନ୍ୟାରେ ୪,୬୧୨ଟି ପ୍ରକଳ୍ପ ପ୍ରଭାବିତ ହୋଇ ଅଚଳ ହୋଇପଡ଼ିଛି । ସ୍ୱତନ୍ତ୍ର ରିଲିଫ୍ କମିଶନଙ୍କଠାରୁ ମିଳିଥିବା ଆର୍ଥିକ ସହାୟତାରେ ବର୍ତ୍ତମାନ ସୁଦ୍ଧା ୬୫୯ଟି ପ୍ରକଳ୍ପ ମରାମତି କରାଯାଇଛି ।

ଜଳସଂପଦର ବିକାଶକୁ ଦୃଷ୍ଟିରେ ରଖି, ନଦୀ ଅବବାହିକାଗୁଡ଼ିକର ସାମୂହିକ ଉନ୍ନତି ପାଇଁ ଯୋଜନା ରୂପରେଖ ପ୍ରସ୍ତୁତ କରାଯାଉଛି । ବନ୍ୟା ନିୟନ୍ତ୍ରଣ, ଜଳ ନିଷ୍କାସନ, ଜଳସେଚନ, କୃଷି ତଥା ଅନ୍ୟାନ୍ୟ କାର୍ଯ୍ୟକ୍ରମକୁ ଭିତ୍ତିକରି ରାଜ୍ୟ ସରକାରଙ୍କ ପକ୍ଷରୁ ବହୁବିଧ ପଦକ୍ଷେପ ଗ୍ରହଣ କରାଯାଉଛି । ରାଜ୍ୟର ବିକାଶରେ ଜଳସଂପଦର ପ୍ରମୁଖ ଭୂମିକା ରହିଛି । କୃଷି ଓ ଶିଳ୍ପ ଉଭୟ ଜଳସଂପଦ ଉପରେ ନିର୍ଭରଶୀଳ ।

ସରକାରୀ ଉପମୁଖ୍ୟ ସଚେତକ
ଓଡ଼ିଶା ବିଧାନସଭା

ଜଳସଂପଦର ବିକାଶକୁ ଦୃଷ୍ଟିରେ ରଖି, ନଦୀ ଅବବାହିକାଗୁଡ଼ିକର ସାମୂହିକ ଉନ୍ନତି ପାଇଁ ଯୋଜନା ରୂପରେଖ ପ୍ରସ୍ତୁତ କରାଯାଉଛି । ବନ୍ୟା ନିୟନ୍ତ୍ରଣ, ଜଳ ନିଷ୍କାସନ, ଜଳସେଚନ, କୃଷି ତଥା ଅନ୍ୟାନ୍ୟ କାର୍ଯ୍ୟକ୍ରମକୁ ଭିତ୍ତିକରି ରାଜ୍ୟ ସରକାରଙ୍କ ପକ୍ଷରୁ ବହୁବିଧ ପଦକ୍ଷେପ ଗ୍ରହଣ କରାଯାଉଛି ।

# ଚଳିତ ରେଳ ବଜେଟରେ ଓଡ଼ିଶା

**ଗ**ତ ଫେବୃଆରୀ ୨୬ ତାରିଖ ଦିନ ରେଳମନ୍ତ୍ରୀ ଶ୍ରୀ ଲାଲୁ ପ୍ରସାଦ ଯାଦବ ୨୦୦୮-୦୯ ପାଇଁ ରେଳ ବଜେଟ ଆଗତ କରିଛନ୍ତି । ଏଥିରେ ୧୦ଟି ନୂତନ ଗରିବୀ ରଥ ପ୍ରଚଳନ ପାଇଁ ଘୋଷଣା କରାଯାଇଥିବା ବେଳେ ୫୩ଟି ନୂଆ ଟ୍ରେନ୍ ପ୍ରଚଳନ ପାଇଁ ଘୋଷଣା କରାଯାଇଛି । ୧୬ଟି ଟ୍ରେନର ଗତିପଥକୁ ବୃଦ୍ଧି କରାଯାଇଥିବାବେଳେ ୧୧ଟି ଟ୍ରେନର ଯାତାୟାତ ବୃଦ୍ଧି କରାଯାଇଛି ।

ଏହି ବଜେଟରେ ଓଡ଼ିଶା ପାଇଁ ଘୋଷଣା କରାଯାଇଛି । ନୂତନ ଭାବେ (ଦ୍ୱିସାପ୍ତାହିକ) ଟ୍ରେନ ଭାୟା ସମ୍ବଲପୁରର ବେଳେ ପୁରୀ-ଦରଭଙ୍ଗା ଏକ୍ସପ୍ରେସ ଏକ୍ସପ୍ରେସ (ଦୈନିକ) ଏବଂ (ସାପ୍ତାହିକ)ର ପ୍ରଚଳନ କରାଯାଇଛି । ଗତିପଥ ବୃଦ୍ଧି କରାଯାଇଛି । ୮୬୧୧/ ରାଉରକେଲା (ଦ୍ୱିସାପ୍ତାହିକ)କୁ ଦେଇ କରାଯାଇଛି । ସେହିପରି ଦୁଇଟି ଟ୍ରେନର ୨୮୯୨ ବାରିପଦା-ଭୁବନେଶ୍ୱର ୬ ଦିନ ଯାତାୟତ କରିବ । ୨୪୨୧/



୪ଟି ନୂଆ ଟ୍ରେନର ପ୍ରଚଳନ ନିମନ୍ତେ ଭୁବନେଶ୍ୱର-ମୁମ୍ବାଇ ଏକ୍ସପ୍ରେସ ପ୍ରଚଳନ ନିମନ୍ତେ ଘୋଷଣା କରାଯାଇଥିବା (ସାପ୍ତାହିକ), ପାରାଦ୍ୱୀପ-ଭୁବନେଶ୍ୱର କେନ୍ଦୁଝରଗଡ଼-ପୁରୀ ଏକ୍ସପ୍ରେସ ଏହି ବଜେଟରେ ଓଡ଼ିଶାର ଗୋଟିଏ ଟ୍ରେନର ୮୬୧୨ ବାରଣାସୀ-ରାଞ୍ଚିରୁ ଭାୟା ସମ୍ବଲପୁର ଯାଏଁ ଗତିପଥ ବୃଦ୍ଧି ଯାତାୟତ ବୃଦ୍ଧି କରାଯାଇଛି । ୨୮୯୧/ ଏକ୍ସପ୍ରେସ ସପ୍ତାହରେ ତିନି ଦିନ ବଦଳରେ ୨୪୨୨ ଭୁବନେଶ୍ୱର-ନୂଆଦିଲ୍ଲୀ ରାଜଧାନୀ ଏକ୍ସପ୍ରେସ ସପ୍ତାହରେ ଦୁଇ ଦିନ ବଦଳରେ ତିନି ଦିନ ଚାଲିବ ବୋଲି ଶ୍ରୀ ଯାଦବ ଘୋଷଣା କରିଛନ୍ତି ।

(ପି.ଆଇ.ବି.)

## ମୁଖ୍ୟମନ୍ତ୍ରୀଙ୍କ ପ୍ରତିକ୍ରିୟାକୁ କେନ୍ଦ୍ରର ଗୁରୁତ୍ୱ

ରେଳବାଇ ବଜେଟ ଉପରେ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ତାଙ୍କର ପ୍ରତିକ୍ରିୟା ପ୍ରକାଶ କରି କହିଥିଲେ ଯେ- ଦେଶ ସ୍ୱାଧୀନ ହେଲା ପୂର୍ବରୁ ଏବଂ ପରବର୍ତ୍ତୀ ସମୟରେ ରେଳବାଇ କ୍ଷେତ୍ରରେ ଓଡ଼ିଶାକୁ କ୍ରମାଗତ ଭାବେ ଅବହେଳା ପ୍ରଦର୍ଶନ କରାଯାଉଛି । ଚଳିତ ରେଳ ବଜେଟରେ ମଧ୍ୟ ଓଡ଼ିଶାକୁ ଉପେକ୍ଷା କରାଯାଇଛି ଏବଂ ରାଜ୍ୟ ପାଇଁ ଏହା ଅତ୍ୟନ୍ତ ନୈରାଶ୍ୟଜନକ ବୋଲି ମୁଖ୍ୟମନ୍ତ୍ରୀ ତାଙ୍କ ପ୍ରତିକ୍ରିୟାରେ କହିଛନ୍ତି । ଗତ ଫେବୃଆରୀ ୨୬ରେ ଲୋକସଭାରେ ରେଳବାଇ ବଜେଟ ପରିପ୍ରେକ୍ଷୀରେ ସେ କହିଥିଲେ 'ଲାଲୁଙ୍କ ଓଡ଼ିଶା ପାଇଁ ଗରିବ ରଥ କୁଆଡ଼େ ଗଲା ?' ରେଳମନ୍ତ୍ରୀ ଯେତିକି ପ୍ରତିଶ୍ରୁତି ଦେଇଥିଲେ ତାହା ମଧ୍ୟ ରଖିଲେ ନାହିଁ । ବଜେଟରେ ତାହା ଉଲ୍ଲେଖ ନାହିଁ । ଏହାବ୍ୟତୀତ ନକ୍ସଲ ପ୍ରବଣ ମାଲକାନଗିରି, ଜୟପୁର, ନୂଆପଡ଼ା ଓ ଗୁଣୁପୁର ଆଦି ରେଳପଥରେ ଅଞ୍ଚଳକୁ ସଂଯୋଗ କରିବା ପାଇଁ କୌଣସି ବ୍ୟବସ୍ଥା ହେଲା ନାହିଁ । ସେହିପରି କେବିକେ ଜିଲ୍ଲା ପାଇଁ କେନ୍ଦ୍ର ରେଳ ବିଭାଗ ଦୃଷ୍ଟି ଦେଇ ନାହିଁ । ମୁଖ୍ୟମନ୍ତ୍ରୀ କହିଲେ, ଚଳିତବର୍ଷ ଜାନୁଆରୀ ୧୦ ତାରିଖରେ ସେ ନିଜେ ରେଳମନ୍ତ୍ରୀଙ୍କୁ ଭେଟି ଓଡ଼ିଶା ପାଇଁ ୧୩୩୦ କୋଟି ଟଙ୍କାର ବ୍ୟୟବରାଦ କରିବାକୁ ଅନୁରୋଧ କରିଥିଲେ । ମାତ୍ର ଏଥର ୯୭୨ କୋଟି ଟଙ୍କାର ରେଳ ବଜେଟ ବ୍ୟବସ୍ଥା ହୋଇଛି । ଏହାଦ୍ୱାରା କୌଣସି ଗୋଟିଏ ହେଲେ ପ୍ରକଳ୍ପ ସଂପୂର୍ଣ୍ଣ ହେବ ନାହିଁ ବୋଲି ମୁଖ୍ୟମନ୍ତ୍ରୀ ଶ୍ରୀ ପଟ୍ଟନାୟକ କହିଛନ୍ତି ।

ଅବଶ୍ୟ ମୁଖ୍ୟମନ୍ତ୍ରୀଙ୍କ ପ୍ରତିକ୍ରିୟାକୁ ଗୁରୁତ୍ୱ ଦେଇ କେନ୍ଦ୍ର ସରକାର ତା.୦୭.୦୩.୦୮ରିଖରୁ ଭୁବନେଶ୍ୱରରୁ ରାଞ୍ଚି ପର୍ଯ୍ୟନ୍ତ ଓ ରାଞ୍ଚିରୁ ଭୁବନେଶ୍ୱର ପର୍ଯ୍ୟନ୍ତ ସପ୍ତାହରେ ତିନି ଦିନ 'ଗରିବ ରଥ'ର ପ୍ରଚଳନ କରିଛନ୍ତି ।



## ସମ୍ବାଦ ପରିକ୍ରମା

# ଓଡ଼ିଶାର ବାର୍ଷିକ ଯୋଜନା ଅଟକଳ ୭୫୦୦ କୋଟି ଟଙ୍କା

ଓଡ଼ିଶାର ଯୋଜନା ଅଟକଳ ୨୦୦୮-୦୯ ବର୍ଷ ପାଇଁ ୭୫୦୦ କୋଟି ଟଙ୍କା ସ୍ଥିର କରାଯାଇଛି । ପୁନର୍ବାର ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ଓଡ଼ିଶା ପାଇଁ ସ୍ୱତନ୍ତ୍ର ରାଜ୍ୟ ପାହ୍ୟାର ମାନ୍ୟତା ଦାବି କରିଛନ୍ତି । ଓଡ଼ିଶା ଯୋଜନା ଅଟକଳ ୭୧୦୦ କୋଟି ଟଙ୍କାର ଅଟକଳ କରିଥିବାବେଳେ ଯୋଜନା କମିଶନ ୭୫୦୦ କୋଟି ଟଙ୍କା ମଞ୍ଜୁର କରିଛନ୍ତି । ଦଶମ ପଞ୍ଚବାର୍ଷିକ ଯୋଜନା କାଳରେ ରାଜ୍ୟର ଅଭିବୃଦ୍ଧି ହାର ୬.୨% ଥିବାବେଳେ ରାଜ୍ୟ ୮.୫୯% ହାସଲ କରିବା ପରେ ଯୋଜନା କମିଶନ ଏତେ ଅଧିକ ଅର୍ଥ ମଞ୍ଜୁର କରିଥିବା ଜଣାପଡ଼ିଛି । ଏଥିରେ ବିଜୟୱାଡ଼ା-ରାଞ୍ଚି ଜାତୀୟ ରାଜପଥ ପ୍ରତିଷ୍ଠା ପାଇଁ ୩୦୦ କୋଟି ଟଙ୍କା ରହିଛି ।

ଗତ ତା.୩.୦୩.୦୮ରିଖ ଦିନ ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ଓ ଅର୍ଥମନ୍ତ୍ରୀ ଶ୍ରୀ ପ୍ରଫୁଲ୍ଲ ଚନ୍ଦ୍ର ଘଡାଇ ଯୋଜନା କମିଶନ ଉପାଧ୍ୟକ୍ଷ ମଣ୍ଟେକ ସିଂହ ଆଲୁୱାଲିଆଙ୍କୁ ନୂଆଦିଲ୍ଲୀରେ ଭେଟି ଯୋଜନା ଅଟକଳ ଉପରେ ଆଲୋଚନା କରିଥିଲେ । ଗତ ତିନି ବର୍ଷ ମଧ୍ୟରେ ରାଜ୍ୟ ସରକାର ଯୋଜନା ଅଟକଳ ଦ୍ୱିଗୁଣିତ କରିଥିବା ଦୃଷ୍ଟିରୁ ଏକାଦଶ ପଞ୍ଚବାର୍ଷିକ ଯୋଜନା କାଳରେ ଅଭିବୃଦ୍ଧି ହାର ୯% କରିବାକୁ ଲକ୍ଷ୍ୟ ରଖିଛନ୍ତି । ଏହାକୁ ଯୋଜନା କମିଶନ ସମର୍ଥନ କରିଛନ୍ତି । ୨୦୦୮ ବର୍ଷକୁ ରାଜ୍ୟ ସରକାର ଜଳସେଚନର ବର୍ଷ ଭାବେ ଘୋଷଣା କରିଥିବାରୁ ଯୋଜନା ଅଟକଳର ୨୦% ଅର୍ଥ ଜଳସେଚନ ପାଇଁ ଉଦ୍ଦିଷ୍ଟ ବୋଲି କହିଛନ୍ତି । ସେହିପରି ଯୋଜନା ଅଟକଳରେ ଭିତ୍ତିଭୂମି ବିକାଶ, ଆଦିବାସୀ ବାଳିକାଙ୍କ ଶିକ୍ଷା, ସ୍ୱାସ୍ଥ୍ୟ ଉପରେ ମଧ୍ୟ ଗୁରୁତ୍ୱ ଦିଆଯାଇଛି । ମହିଳାଙ୍କୁ ସଶକ୍ତିକରଣ କରିବା ଦିଗରେ ମିଶନ ଶକ୍ତି ଜରିଆରେ ୯୦୦ କୋଟି ଟଙ୍କା ଋଣ ପ୍ରଦାନ କରାଯାଇଛି ବୋଲି ପ୍ରକାଶିତ ବିଜ୍ଞପ୍ତିରେ କୁହାଯାଇଛି । ୨୦୦୮-୦୯ ଆର୍ଥିକ ବର୍ଷରେ ବିଜୟୱାଡ଼ା-ରାଞ୍ଚି ଜାତୀୟ ରାଜପଥ ପ୍ରତିଷ୍ଠା ପାଇଁ ୩୦୦ କୋଟି ଟଙ୍କା ବ୍ୟବସ୍ଥା କରାଯାଇଛି । ରାଜ୍ୟ ସଡ଼କ ପରିବହନ ମନ୍ତ୍ରଣାଳୟକୁ ଏହି ଅର୍ଥ ପ୍ରଦାନ କରାଯିବ । ଆସନ୍ତା ତିନି ବର୍ଷ ମଧ୍ୟରେ ଏହି ରାସ୍ତା ସମ୍ପୂର୍ଣ୍ଣ କରାଯିବାକୁ ଲକ୍ଷ୍ୟ ରହିଥିବା ଜଣାପଡ଼ିଛି ।

ଯୋଜନା କମିଶନ ଉପାଧ୍ୟକ୍ଷଙ୍କ ସହ ଆଲୋଚନାବେଳେ ମୁଖ୍ୟମନ୍ତ୍ରୀ ଶ୍ରୀ ପଟ୍ଟନାୟକ ରାଜ୍ୟ ପାଇଁ ବିଭିନ୍ନ ଯୋଜନାରେ ଅଧିକ ଟଙ୍କା ପ୍ରଦାନ କରିବାକୁ ଦାବି କରିଥିଲେ । ରାଜୀବ ଗାନ୍ଧୀ ଗ୍ରାମୀଣ ବିଦ୍ୟୁତକରଣ ଯୋଜନା, ଜାତୀୟ ଗ୍ରାମୀଣ ନିଶ୍ଚିତ କର୍ମନିଯୁକ୍ତି ଯୋଜନା, ଜବାହରଲାଲ ନେହେରୁ ସହର ନବୀକରଣ ମିଶନ ଆଦି ଯୋଜନାରେ ଅଧିକ ଅର୍ଥ ପ୍ରଦାନ ପାଇଁ ମୁଖ୍ୟମନ୍ତ୍ରୀ ଦାବି କରିଛନ୍ତି । ସେହିପରି ରାଜ୍ୟରେ କେନ୍ଦ୍ରୀୟ ବିଶ୍ୱବିଦ୍ୟାଳୟ, ଆଇ.ଆଇ.ଟି. ଆଇ.ଆଇ.ଆଇ.ଟି. ଓ ଆଇ.ଆଇ.ଏମ୍. ପରି ଶିକ୍ଷାନୁଷ୍ଠାନ ପ୍ରତିଷ୍ଠା ଦାବିକୁ ମୁଖ୍ୟମନ୍ତ୍ରୀ ଦୋହରାଇ ଥିଲେ । ରାଜ୍ୟରେ ଦ୍ରୁତ ଶିଳ୍ପାୟନ ହେଉଥିବାବେଳେ ସେଥିପାଇଁ ଆବଶ୍ୟକ କୁଶଳୀ ମାନବସମ୍ବଳର ଆବଶ୍ୟକତା ପୂର୍ଣ୍ଣ କରିବାକୁ ଏପରି ଶିକ୍ଷାନୁଷ୍ଠାନର ଆବଶ୍ୟକ ବୋଲି ମୁଖ୍ୟମନ୍ତ୍ରୀ ଯୁକ୍ତି ଦର୍ଶାଇଛନ୍ତି । ରାଜ୍ୟର ପଛୁଆ ଅଞ୍ଚଳ କେବିକେରେ ପୁଞ୍ଜିନିବେଶକୁ ଆକର୍ଷିତ କରିବା ପାଇଁ ସେଠାରୁ ୧୦ ବର୍ଷ ପାଇଁ ଆୟକର ଓ କେନ୍ଦ୍ରୀୟ ଏକ୍ସାଇଜ୍ ଟେକ୍ସ ଛାଡ଼ କରିବାକୁ ସେ ପ୍ରସ୍ତାବ ଦେଇଛନ୍ତି । କୋଇଲା ଓ ଅନ୍ୟ ଖଣିଜ ଦ୍ରବ୍ୟର ରୟାଲଟି ଆଡ଼ଭେଲୋରମ୍ ପଦ୍ଧତିରେ ନିର୍ଣ୍ଣୟ କରିବାରେ ଆଉ ବିଳମ୍ବ କରାନଯିବା ଉଚିତ ବୋଲି ସେ ଉପାଧ୍ୟକ୍ଷଙ୍କୁ ପ୍ରସ୍ତାବ ଦେଇଥିଲେ । ସେହିପରି ଲୁହାପଥର ରପ୍ତାନିରୁ କେନ୍ଦ୍ର ସରକାର ପାଉଥିବା ଟିକସ ରାଜ୍ୟକୁ ପ୍ରଦାନ କରିବା ନିମନ୍ତେ ଓଡ଼ିଶା ସମେତ ଅନ୍ୟ ଖଣିଜଦ୍ରବ୍ୟ ଉତ୍ତୋଳନକାରୀ ରାଜ୍ୟଗୁଡ଼ିକ ଦେଇଥିବା ପ୍ରସ୍ତାବ ଉପରେ ମଧ୍ୟ ତୁରନ୍ତ କାର୍ଯ୍ୟାନୁଷ୍ଠାନ ପାଇଁ ମୁଖ୍ୟମନ୍ତ୍ରୀ ଦାବି କରିଥିଲେ । ଓଡ଼ିଶା ମୁଖ୍ୟମନ୍ତ୍ରୀଙ୍କ ନେତୃତ୍ୱରେ ରାଜସ୍ଥାନ, ମଧ୍ୟପ୍ରଦେଶ, ଛତିଶଗଡ଼ ଓ ଝାଡ଼ଖଣ୍ଡର ମୁଖ୍ୟମନ୍ତ୍ରୀମାନେ ପ୍ରଧାନମନ୍ତ୍ରୀଙ୍କୁ ଏହି ପ୍ରସ୍ତାବ ଦେଇଥିଲେ । ସେହି ପ୍ରସ୍ତାବ ଏବେ କେନ୍ଦ୍ର ସରକାରଙ୍କ ବିଚାରାଧୀନ ରହିଛି ବୋଲି ଯୋଜନା କମିଶନ ସଦସ୍ୟ ଅନୱରୁଲ ହୋଦା ମୁଖ୍ୟମନ୍ତ୍ରୀଙ୍କୁ ଜଣାଇଥିଲେ । ରାଜ୍ୟରେ ବିପୁଳ ପରିମାଣର କୋଇଲା ମହଜୁଦ ଥିବାରୁ ଶକ୍ତି ପ୍ରକଳ୍ପ ପ୍ରତିଷ୍ଠାର ବ୍ୟାପକ ସୁଯୋଗ ରହିଛି । ଶକ୍ତି ପ୍ରକଳ୍ପ ପ୍ରତିଷ୍ଠା ହେବା ପରେ ଓଡ଼ିଶା ଦେଶର ଶକ୍ତି କେନ୍ଦ୍ର ହୋଇପାରିବ । କିନ୍ତୁ ସେଥିପାଇଁ ରାଜ୍ୟକୁ ଆବଶ୍ୟକ କ୍ଷତିପୂରଣ ଦିଆଯିବା ଉଚିତ ବୋଲି ମୁଖ୍ୟମନ୍ତ୍ରୀ ଦାବି କରିଥିଲେ । ଫଳରେ ପ୍ରକଳ୍ପ ପାଇଁ ପରିବେଶ ପ୍ରଦୂଷଣ ଓ ବାସଚ୍ୟୁତ ସମସ୍ୟାର କ୍ଷତିଭରଣା କରାଯାଇପାରିବ ବୋଲି ଆମ ମୁଖ୍ୟମନ୍ତ୍ରୀ ଶ୍ରୀ ପଟ୍ଟନାୟକ ପ୍ରସ୍ତାବ ଦେଇଥିଲେ ।